# କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ

କୃଷ୍ଣଚନ୍ଦ୍ର ତ୍ରିପାଠୀ
କବି-କୁଟୀର
ଭୀମପୁର, ବାଣପୁର,
ପୁରୀ



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ . କଟକ - ୨

# କୃଷ୍ଣଚନ୍ଦ୍ର ଗ୍ରନ୍ଥାବଳୀ

## ପ୍ରଥମ ଖଣ୍ଡ


**ପ୍ରଥମ ପ୍ରକାଶ :**

ବିଷୁବ ସଂକ୍ରାନ୍ତି
୧୯୭୯

**ପ୍ରକାଶକ :**

ସତ୍ୟଦେବ ପ୍ରଧାନ,
ଫ୍ରେଣ୍ଡସ୍ ପବ୍ଲିଶର୍ସ,
ବିନୋଦ ବିହାରୀ, କଟକ-୨

**ଚିତ୍ରଶିଳ୍ପୀ :**

ଅଜିତ ମୂଖର୍ଜୀ

**ମୁଦ୍ରକ**

ମଞ୍ଜୁଲେଖା ପ୍ରିଣ୍ଟର୍ସ,
କଟକ—୧

**ମୂଲ୍ୟ . ପଚିଶ ଟଙ୍କା**

ଆମ ଦେଶର ବରେଣ୍ୟ କବି

**ଡକ୍ଟର ମାୟାଧର ମାନସିଂହ**

କରକମଳେଷୁ—

# ସୂଚନା

ଗତ ଅର୍ଦ୍ଧଶତାବ୍ଦୀ ଧରି ଯେଉଁ କେତେ ଜଣ ସାରସ୍ୱତ-ସାଧକ ଓଡ଼ିଆ ସାହିତ୍ୟକୁ ସେମାନଙ୍କ ସାହିତ୍ୟିକ ଦାନରେ ସମୃଦ୍ଧିମନ୍ତ କରିଛନ୍ତି, ସେମାନଙ୍କ ମଧ୍ୟରେ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଅନ୍ୟତମ । ଠିକ୍ ସବୁଜଯୁଗ ମଝିରେ ବା ପରେ ପରେ ଏଇ ବରେଣ୍ୟ କବିଙ୍କର ଆବିର୍ଭାବ ଓଡ଼ିଆ ସାହିତ୍ୟରେ ଆମେ ଦେଖିବାକୁ ପାଉଁ । ଜୀବନର ନାନା ଘାତ-ପ୍ରତିଘାତ ଭିତରେ ଏଇ ନୀରବ ସାଧକ କବି ସାଧନାର ବେଦୀରେ ବସି ସହସ୍ରାଧିକ କବିତା ଲେଖିଅଛନ୍ତି । ଆଜି ଓଡ଼ିଶାର କାବ୍ୟ-ଜଗତରେ ଜଣେ ନିପୁଣ ସ୍ରଷ୍ଟା ଭାବରେ ସେ ତାଙ୍କର ଆସନ ଗଢ଼ିପାରିଛନ୍ତି । ଆମର ମନେହୁଏ, ତାଙ୍କର ଏହି ଆସନ ସ୍ୱକୀୟ ସ୍ୱତନ୍ତ୍ର ଦୀପ୍ତିରେ ଚିରଭାସ୍ୱର ରହିବ ।

ବହୁ କବିଙ୍କର ଜନ୍ମସ୍ଥାନ ଭାବରେ ବାଣପୁର ବହୁ ପ୍ରାଚୀନ କାଳରୁ ପ୍ରସିଦ୍ଧି ଲାଭ କରି ଆସିଛି । କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ପ୍ରକୃତି-ସୁନ୍ଦର ଏଇ ବାଣପୁର ଅଞ୍ଚଳର ଖ୍ରୀମପୁର ଗ୍ରାମରେ ୧୯୧୧ ମସିହା ଜାନୁୟାରୀ ୧୪ ତାରିଖ ଠିକ୍ ପୌଷପୂର୍ଣ୍ଣିମା ଦିନ ଜନ୍ମଗ୍ରହଣ କରି-ଥିଲେ । ତାଙ୍କର ପିତା ଜଣେ ଜ୍ୟୋତିର୍ବିଦ ପଣ୍ଡିତ, ଋଷିପ୍ରାଣ ବ୍ୟକ୍ତି । ପିଲାଦିନେ ତାଙ୍କ ମା ନିମ ଦେଈ କବିଙ୍କୁ ବହୁତ ଗାଁଉଲି ଗୀତ ଓ ଗପ ଶୁଣାଉଥିଲେ । କବି ପିଲାଦିନେ ପାଲା, ଦଣ୍ଡନାଚ, ଦାସକାଠିଆ ଇତ୍ୟାଦି ନାଟ ଦେଖିବାକୁ ଅତି ସୁଖ ପାଉଥିଲେ । ବାଲ୍ୟଶିକ୍ଷା ପରେ ୧୯୨୩ ମସିହାରେ ସେ ବାଣପୁର ମାଇନର ସ୍କୁଲରେ ପଢ଼ିଲେ । ତାହା ସତ୍ୟବାଦୀ ବନବିଦ୍ୟାଳୟର ଗୋଟିଏ ଶାଖା ଅନୁଷ୍ଠାନ ପରି ରହିଥିଲା ଏବଂ ସାହିତ୍ୟ ଓ କାବ୍ୟକବିତା ଚର୍ଚ୍ଚାର ପୀଠସ୍ଥଳୀ ଭାବରେ ବହୁ କିଶୋର ଛାତ୍ରଙ୍କ ପ୍ରାଣକୁ ମୁଗ୍ଧ କରିପାରୁଥିଲା ।

ବାଳକବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଏହି ସାହିତ୍ୟିକ ପରିବେଶ ମଧ୍ୟରେ ରହି ଅନେକ କ୍ଷୁଦ୍ର କ୍ଷୁଦ୍ର କବିତା ରଚନା କରୁଥିଲେ ଏବଂ ସେଗୁଡ଼ିକ ସେହି ସ୍କୁଲର ହାତଲେଖା ପତ୍ରିକାରେ ପ୍ରକାଶ ପାଉଥିଲା । ବାଲ୍ୟକାଳରୁ ତାଙ୍କର ଏ ପ୍ରକାର କବି-ପ୍ରତିଭା ସେହି ସ୍କୁଲ୍‌ର ଶିକ୍ଷକ-ମାନଙ୍କୁ କେବଳ ଯେ ମୁଗ୍ଧ କରିଥିଲା ତା ନୁହେଁ—ଭବିଷ୍ୟତରେ ଶ୍ରୀଯୁକ୍ତ ତ୍ରିପାଠୀ ଯେ ଦେଶର ଜଣେ ପ୍ରତିଷ୍ଠିତ କବି ହୋଇପାରିବେ, ଏ ସମ୍ପର୍କରେ ସେମାନେ ନିଃସନ୍ଦେହ ଥିଲେ ।

୧୯୨୭ ଠାରୁ ୧୯୩୧ ପର୍ଯ୍ୟନ୍ତ ସେ ଓଲସିଂହ ହାଇସ୍କୁଲର ଛାତ୍ର ଥିଲେ ଏବଂ ଏଇଠି ୧୯୨୯ ମସିହାରେ ଭାରତ ସେବକ ସମାଜ ସଭ୍ୟ ଲକ୍ଷ୍ମୀନାରାୟଣ ସାହୁଙ୍କ ସହିତ କବିଙ୍କର ପ୍ରଥମ ସାକ୍ଷାତ ଓ ପରିଚୟ ହୁଏ । ଲକ୍ଷ୍ମୀନାରାୟଣ ସାହୁ ଏଇ ଛାତ୍ର-କବିଙ୍କର 'ମା' ନାମକ ଗୋଟିଏ ଦେଶାତ୍ମବୋଧକ କବିତା ତାଙ୍କର ସମ୍ପାଦିତ ସହକାର ପତ୍ରିକାରେ ପ୍ରକାଶ କରି କବିଙ୍କୁ ବହୁ ଉତ୍ସାହ ଓ ପ୍ରେରଣା ଦେଇଥିଲେ କବିତା ଲେଖିବା ପାଇଁ । ସେଇ କବିତା ହିଁ ତାଙ୍କର ପ୍ରଥମ ଛପା-କବିତା । ମାଟ୍ରିକୁଲେସନ ପାଶ୍ ପରେ କବି ୧୯୩୧ରେ ଯେତେବେଳେ କଟକ ଟ୍ରେନିଂ ସ୍କୁଲରେ ପଢ଼ନ୍ତି, ସେତେବେଳେ ତାଙ୍କର ଏକ କ୍ଷୁଦ୍ର କବିତାରୁ ତାଙ୍କର ଭବିଷ୍ୟତ କବି-ଜୀବନର ସୁସ୍ପଷ୍ଟ ସୂଚନା ମିଳୁଥିଲା ।—

'କାହାଠି କି ଶିଖି ରହିଚି ଗୁପତେ କିଏ ବା ଜାଣିଚି କାହିଁ ?
ଜାଣିବାର ବେଳ ରହିଚି ବହୁତ, ସରିନାଇଁ, ସରିନାଇଁ !
ବୁହା ଅନ୍ଧକାରେ ଜନମିବ ପଛେ ବଢ଼ାଇବ ମୋର ବିଭା
ଖୋଜା ପଡ଼ିବ ମୁଁ କଣ୍ଟକିପୁ ବନେ ଗୋ
ପଦ୍ମରାଗ ହୋଇ କିବା ?

ଟ୍ରେନିଂ ପାଶ୍ କରି ସେ ଓଡ଼ିଶାର ବିଭିନ୍ନ ମାଇନର ଓ ହାଇସ୍କୁଲରେ ଶିକ୍ଷକତା କରୁଥିଲେ; କିନ୍ତୁ କବିତାଲେଖା ଜୀବନର ବ୍ରତ ପରି ଲାଗି ରହିଥିଲା ।

୧୯୩୧ ମାଟ୍ରିକ ପରୀକ୍ଷା ପାଶ୍ ପରେ ପରେ ଆର୍ଥିକ ଦୁଃସ୍ଥିତି ହେତୁ କଲେଜଶିକ୍ଷା ପାଇପାରି ନ ଥିଲେ । ମାତ୍ର ତାଙ୍କ ପତ୍ନୀଙ୍କ ବାରମ୍ବାର ଅନୁରୋଧରେ ସେ ଘରୋଇ ଭାବେ ଆଇ.ଏ., ବି.ଏ.,ଡ଼ି.ଇଡ଼. ପରୀକ୍ଷାମାନ ପାଶ୍ କରି ଏ ପର୍ଯ୍ୟନ୍ତ ଶିକ୍ଷକତା କରି ଆସୁଛନ୍ତି ।

ଖିବ୍ କମ୍ ସମୟର ବ୍ୟବଧାନରେ କବି ତାଙ୍କର ବାପା, ବୋଉ ଓ ବଡ଼ଭାଇଙ୍କୁ ହରାଇ ସାଂସାରିକ ଜୀବନରେ ମ୍ରିୟମାଣ ହୋଇ ପଡ଼ିଥିଲେ ମଧ୍ୟ କବିତା ସୃଷ୍ଟିରୁ ତିଳେ ମାତ୍ର ବିଚ୍ୟୁତ ହୋଇ ନ ଥିଲେ ; କବି ତାଙ୍କରି ଭାଷାରେ ସତେ ଯେପରି ଶପଥ ନେଲା ପରି ଗାଇ ଉଠିଛନ୍ତି—

"ଏ ଜନମେ ଆର ଜନ୍ମେ ଶତ ଜନ୍ମ ପରେ
ଗାଇଥିବି ସୀମାହୀନ କବିତା ! ମୁଁ କବି,

କବିତାରୁ ଯେ ଅମୃତ ପାଇଛି ଧରାରେ
ସେଇ ମୋର କୋଟିନିଧି କାଳେ କାଳେ କାଳେ ।"

୧୯୪୭ ଠାରୁ ତାଙ୍କର ଶତ ଶତ କବିତା ପ୍ରଜାତନ୍ତ୍ର, ରବିବାର ପ୍ରଜାତନ୍ତ୍ର, ଝଙ୍କାର, ସହକାର, ସତ୍ୟବାଦୀ ଓ ସମାଜ ଇତ୍ୟାଦି ବିଭିନ୍ନ ପତ୍ରପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶ ପାଇ ଆସିଛି ।

ଖୋରଧା ପାଇକ କବିତା ଲେଖି ସେ ପାଇକକବି ଭାବରେ ସାରା ଓଡ଼ିଶାରେ ସୁପରିଚିତ । ତାଙ୍କ କବିତାରେ ତାଙ୍କ ଜନ୍ମମାଟି ବାଣପୁରର ବିଲ, ବନ, ନଦୀ, ପାହାଡ଼ର ଚିତ୍ର ଯେପରି ସୁନ୍ଦର ଭାବରେ ଫୁଟିଉଠିଛି, ସେହିପରି ଐତିହାସିକ ବା ସାମାଜିକ କିମ୍ବଦନ୍ତୀ ସେଇଭଳି ନିଖୁଣ ଭାବରେ ରୂପ ପାଇ ପାରିଛି । ଠାକୁର ମାନସିଂହ, ପଣ୍ଡିତ ଗୋଦାବରୀଶ, ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, କବି ପଦ୍ମଚରଣ ପଟ୍ଟନାୟକ ପ୍ରଭୃତି ଓଡ଼ିଶାର ବହୁ ମାନ୍ୟଗଣ୍ୟ କବି ଓ ସାହିତ୍ୟିକ କବିଙ୍କ ଅନବଦ୍ୟ ସୃଷ୍ଟିଗୁଡ଼ିକୁ ଉଚ୍ଛ୍ୱସିତ ପ୍ରଶଂସା କରି ଆସିଛନ୍ତି । 'ମୃଷାହାଡ଼', 'ଜୟୀ ରାଜଗୁରୁ', 'ଉତ୍ସାହବାଣୀ' 'ଗୋଲଦାସ' 'ରାଣୀର ଅଭିଶାପ' 'ଗୃହିଣୀ-ପ୍ରିୟା' 'ମାନସୀର ରାଣୀ' 'ବଞ୍ଚିବି ବିରାଟ ହୋଇ' 'ଲାଲ ମାଟିର ଖୋର୍ଦ୍ଧା ଗଡ଼ ସ୍ଥାନାନ୍ତର" 'ନିର୍ଯ୍ୟାତିତର ଆତ୍ମବିଳାପ', 'ଅଗ୍ନିଶଙ୍ଖ', 'ବଞ୍ଚିତର ବାଣୀ', 'ହେ ମୋର ମଣିଷ" ଇତ୍ୟାଦି ବହୁ ଉଚ୍ଚକୋଟୀର କବିତା ଆଜି ଓଡ଼ିଆ ସାହିତ୍ୟରେ କବିଙ୍କୁ ଗୋଟିଏ ଉଜ୍ଜ୍ୱଳ ଆସନ ଦେଇ ପାରିଛି ।

ତାଙ୍କର ମାଟିପ୍ରୀତି କେତେ ଅଧିକ ସୁଦୂର ପ୍ରସାରୀ, ବାଣୀ କବିଙ୍କର ଏଇ ଗୋଟିଏ ପଂକ୍ତିରୁ ଅନୁଭବ କରାଯାଇପାରେ ।

"ଏ ବିରାଟ ମାଟିପରେ ସଭିଏ ମୋ ଆପଣାର
ବନ୍ଧୁ ପ୍ରିୟତମ, ଚାହିଁଦେଲେ ସକଳରେ ଅନୁଭବେ ମୋତେ ମୋ
ଛାତିର ସ୍ପନ୍ଦନ ।"

ଆଜି ଓଡ଼ିଶାର ସେଇ ବରେଣ୍ୟ କବି ତ୍ରିପାଠୀଙ୍କର ଗ୍ରନ୍ଥାବଳୀ ଆତ୍ମପ୍ରକାଶ କରିବାକୁ ଯାଉଛି । ଏହା ତିନି ଭାଗରେ ସଂକଳନ କରାଯିବାର ପରିକଳ୍ପନା ରହିଛି ।

ପ୍ରଥମ ଖଣ୍ଡ—କବିତା
ଦ୍ୱିତୀୟ ଖଣ୍ଡ—କବିତା
ତୃତୀୟ ଖଣ୍ଡ—କବିଙ୍କର ଆତ୍ମଜୀବନୀ (ଗଦ୍ୟଲେଖା) ଓ ଆଉ କିଛି କବିତା ।

ଏହି ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡରେ କବିଙ୍କର ୧୦ଟି କବିତା ପୁସ୍ତକରେ ପ୍ରକାଶ ପାଇଥିବା ପ୍ରାୟ ୪୦୦ କବିତା ସ୍ଥାନ ପାଇଛି । ତାଙ୍କର ଖଣ୍ଡି ଖଣ୍ଡି ଅପ୍ରକାଶିତ କବିତା ରହିଚି ଯାହା କି ଅନ୍ୟ ଖଣ୍ଡ-ମାନଙ୍କରେ ପ୍ରକାଶ କରିବାର ଆୟୋଜନ କରାଯାଉଅଛି ।

ତ୍ରିପାଠୀଙ୍କ ଗ୍ରନ୍ଥାବଳୀର ଏଇ ପ୍ରଥମ ଖଣ୍ଡକୁ ଶ୍ରୀସମ୍ପନ୍ନ କରିବା ପାଇଁ ଆପ୍ରାଣ ଚେଷ୍ଟା କରାଯାଇଚି । ଅନେକ ସ୍ଥଳରେ ହୁଏ ତ କେତେକ ମୁଦ୍ରଣଜନିତ ତ୍ରୁଟି ରହିଯାଇଛି, ସେଥିପାଇଁ ମୁଁ ପାଠକମାନଙ୍କଠାରୁ କ୍ଷମା ମାଗି ନେଉଚି । ସୁଧୀ ପାଠକମାନଙ୍କର ସଦିଚ୍ଛା, ସହାନୁଭୂତି ଓ ପ୍ରେରଣା ମୋତେ ଏ ଗ୍ରନ୍ଥାବଳୀ ପ୍ରକାଶ କରିବାରେ ଉତ୍ସାହ ଦେଇଚି । ମୋର ବିଶ୍ୱାସ, ବରେଣ୍ୟ କବି ତ୍ରିପାଠୀଙ୍କର ଏଇ ଗ୍ରନ୍ଥାବଳୀ ପାଠକସମାଜର ଆଦୃତି ଲାଭ କରିବ । । ଇତି ।

କଟକ
ତା। ୧୩-୪-୬୯

**ପ୍ରକାଶକ**

---

# ଗ୍ରନ୍ଥସୂଚୀ

ବିଷୟ | ପୃଷ୍ଠା

## ଦିଗ୍‌ବଳୟ

| ବିଷୟ | ପୃଷ୍ଠା |
| --- | --- |
|  |

ବିଷୟ | ପୃଷ୍ଠା

## ଆତ୍ମଲିପି

ବିଷୟ | ପୃଷ୍ଠା

ବିଷୟ ପୃଷ୍ଠା

ବିଷୟ ପୃଷ୍ଠା



## ରୂପାୟନ



## ଆହୁତି

| ବିଷୟ | ପୃଷ୍ଠା |
|---|---|
| ମୋଲ୍‌ଗି ! | ୬୬୩ |
| ନୂତନ ବର୍ଷେ | ୬୬୩ |
| ମାଇଲ-ପଥର | ୬୬୪ |
| ଅପରଚିତାର ଦାନ | ୬୬୪ |
| ଆସିବ ! | ୬୬୫ |
| ପାଣ୍ଡୁଲିପିଟିଏ ହଜିଗଲା ପରେ ! | ୬୬୫ |
| କି କଥା ପଶୁର ବୁଦ୍ଧି | ୬୬୬ |
| କା' ଅଭବ ଲାଗି ! | ୬୬୭ |
| ଯେଉଁ ପାରେ ଥାଅ | ୬୬୭ |
| ଯାଇଚ ତମେ ! | ୬୬୮ |
| ଲେଉଟି ଚାହିଁବ ନାଇଁ ? | ୬୬୮ |
| ନଭନାଇଁ | ୬୬୯ |
| ହଜାଇ ତୁମରେ | ୬୭୦ |
| କା' ଲାଗି ମୁଁ | ୬୭୦ |
| ଆଉ କି ଅଧିକ ! | ୬୭୧ |
| କଥା | ୬୭୧ |
| କୁଣ୍ଠିତ | ୬୭୨ |
| ନଅ ମୋ ଇସ୍ତଫା | ୬୭୩ |
| ତୁମେ କି କରୁଚ ଈର୍ଷା ? | ୬୭୩ |
| ହାୟ ମୋର ଦେଶ ! | ୬୭୪ |
| ଯୋଜନ ଯୋଜନ ପାରେ | ୬୭୪ |
| ହଠାତ ପ୍ରତୀକ୍ଷା— | ୬୭୫ |
| ବହୁ ବର୍ଷ ପରେ | ୬୭୬ |
| ନାଇଁ ଭଜେ ପରାଜୟ | ୬୭୬ |
| ଦେଉଥାନ୍ତୁ ! | ୬୭୭ |
| ସଂପଦେ ବିପଦେ | ୬୭୭ |
| ମଧୁ-ମିଳନ | ୬୭୮ |
| ଏ ପତାକା ତଳେ ! | ୬୭୯ |

---

# ଦୂର ଦିଗ୍‌ବଳୟ

-ଏକ-

ଦୂର ଦିଗ୍‌ବଳୟ !
ସାଥି ତୁମେ, ବନ୍ଧୁ ତୁମେ, ପ୍ରିୟ ତୁମେ,
ତୁମେ ମୋର ଆପଣାର ଅତି ପରିଚୟ ।।
କରମେ ଧରମେ ଅବା ଜୀବନର
ବିପନ୍ନ ସମୟେ
ତୁମରେ ମୁଁ କେତେ ଗୃହିଁ ରହେ !!
ତୁମର ସେ ପାହାଡ଼ ପ୍ରାନ୍ତର
ତୁମର ସେ ଘନ ବନମାଳ;
ତୁମର ସେ ମହା ବିଜନତା
ଆକାଶ ଅବନୀ ଧରି—
ଦୂର ରହିବାର,
ତୁମର ସେ ସୁନେଲି ସୂର୍ଯ୍ୟାସ୍ତ
ଅବା ସୂର୍ଯ୍ୟୋଦୟ,
ତୁମ ସନ୍ଧ୍ୟା, ତମ୍ଭ ଉଷା,
ତୁମର ସେ ଦୀପ୍ତ ଦ୍ୱିପ୍ରହର—
ମରୀଚିକାମୟ !
ତୁମର ସେ ମେଘର ଘୂର୍ଣ୍ଣନ୍ତ ଲୀଳା ଗିରିଚଳ—
ମହା ସ୍ୱପ୍ନବୋଳା,

ତୁମର ସେ ଶ୍ୟାମଳ ବନମାଳ
ଲାଗି ରହେ ଯହିଁ ନେତ୍ର ଡୋଳା,
ତୁମର ସେ ମେଷ-ମୃଗ-ଗୋ ଧନ ପଲରୁ
ଶୁଭିବାର ଗୋପାଳ ବାଳକ---
ମନ୍ଦ୍ର ବେଣୁ ତାନ,
ସମସ୍ତ ଭିତରେ ମୁହିଁ ହଜାଇ ନିଜରେ
ପାଏ କିବା ସୀମା ହୀନ ଆନନ୍ଦ କଲ୍ୟାଣ !!

-ଦୁଇ-

ଦୂର ଦିଗ୍‌ବଳୟ !
ମଣିଷ ରଖିଚ ମତେ
କରି କେଡ଼େ ଘନ ନିଃସହାୟ !
ମୁହୂର୍ତ୍ତି ମୁହୂର୍ତ୍ତି ଧରି ବକ୍ଷ ମୋର ଯାଉଅଛି ଫାଟି
ପାରୁନି ପାରୁନି ମୁହିଁ କରି ଅଗଣିତ
ସୀମାହୀନ ଶିଳାଖଣ୍ଡ ପଥପ୍ରାନ୍ତେ କାଟି;
ସାଥି ବୋଲି ବନ୍ଧୁ ବୋଲି କାହାରେ ଯେବେ
ଡାକ ଦିଏ ଥରେ,
ଫେରି ଆସେ ଡାକ ମୋର
ପଶେ ନାହିଁ କା' କର୍ଣ୍ଣ-କୁହରେ ।
ବ୍ୟଥା ମୋର, ବାଣୀ ମୋର,
ମୋ ଅନ୍ତର ଦୁଃସହ ଯନ୍ତ୍ରଣା,
ମୋ ଅନ୍ତରେ ଜମି ରହେ;
ନୁହେଁ ମୁହିଁ ସାତ ପାଞ୍ଚେ ଗଣା !
ମୋରେ କେହି ବୁଝିବାକୁ---
ହୁଏ ନାହିଁ ଲବେ ଆଗଭର,
ପୃଥିବୀର ଆବର୍ଜ୍ଜନା ପରି
ମୁଁ ଯେପରି ରହିଚି ପଡ଼ି
ଯୁଗ ଯୁଗାନ୍ତର !
ବୁଲୁ ଚାଲୁ ଯାଇଅଛି ମରି ସିଂହର ବିକ୍ରମ
ଓଠୁ ପୁଚୁ ମରିଅଛି ହାସ
ପ୍ରସ୍ଫୁଟିତ ପଦ୍ମଫୁଲ ସମ !
ଜୀବନର କେତେ ସୁନେଲି କଳ୍ପନା—

କେତେ କେତେ ଭୁଙ୍ଗ ଅଭିଳାଷ
ଧମନ୍ତର ହୋଇଛି ସମାଧି;
ରହିବ ମୁଁ ହୋଇ ଯେମନ୍ତେ
ନିରଗ୍ନ ନିରାଶ !!

-ତିନି-

ଦୂର ଦିଗ୍‌ବଳୟ !
ତୁମରେ ମୁଁ ଗୃହାଁ ଦେଲେ
ମୋର ମୃତ ଜଡ଼ ଅନ୍ତର ଭିତରେ
ନୂତନ ପ୍ରାଣର କମ୍ପା—
ହୁଏ ଅଭ୍ୟୁଦୟ !

ମଣିଷର ବନ୍ଧର ହୃଦୟ ମତେ ଯେବେ ଫିଙ୍ଗିଦିଏ
ଦୂରେ ଦୂରେ ବହୁ ଦୂରେ କାହିଁ
ଜନମରୁ ବଳ, ସୀମାହୀନ ମମତା କମ୍ପିତ କରେ
ତୁମେ ମୋରେ ଆଣ ହେ ଗୋଠାଇ !

ଝର ଝର ନେତ୍ର ପ୍ରାନ୍ତୁ ଅଶ୍ରୁ ଗଲେ ବୋହି
ମୋରେ ଯେବେ ଏ ପୃଥିବୀ
କରେ ଉପହାସ,
ବଳୟୁ ବନ୍ଧୁରୁ ବଳ, କ ସାହସ, ଉନ୍ମାଦନା
ଦିଅ ତୁମେ ବୋଳି
ମୋର ପ୍ରତି ରକ୍ତ କଣିକାରେ
ଜାଗିଉଠେ ଧର କବା ଅମିତ ଉଚ୍ଛ୍ୱାସ !!

କେହି ନାହିଁ ମୋର ବୋଲି ନୈରାଶ୍ୟର ଏକ ବନ୍ଧ୍ୟ
ମୋ ଅନ୍ତରେ ବସ୍ତାରଲେ
ତା'ର ଶୀର୍ଣ୍ଣ ଛାୟା,
ଶାନ୍ତ ସୁଖ ଶୌର୍ଯ୍ୟ ବୀର୍ଯ୍ୟ ଉତ୍ସାହ ଓ ଉଦ୍ଦୀପନା---
ଜୀବନ୍ତ ବିଗ୍ରହ ପରି
ତୁମେ ମୋ ସମ୍ମୁଖେ ବାଡ଼ିଦିଅ କ ଅପୂର୍ବ ମାୟା ।

-ଗୃହ-

ଦୂର ଦିଗ୍‌ବଳୟ !
ରହିଥାଅ ତୁମେ ଏଇପରି
ନୀଳ ବଣ ନଦୀ ସିନ୍ଧୁ ଶ୍ୟାମଳ ପ୍ରାନ୍ତର ମାଳେ
ବିଜନତା ବଇଭବ ଧରି !
ଅମୃତ ଅନ୍ତରେ ତୁମେ ହେଉଥାଅ ନୀତ ତଳ ତଳ !
ବନ୍ଧୁର ଘେରି ରହିଥାଅ ଚତୁର୍ଦ୍ଦିଗେ ମହାଜଗତର !
ହେ ଅଶେଷ, ହେ ଅସୀମ ! ଅନ୍ତରର ହେ ଅନ୍ତରତମ !
ଅନନ୍ତର ବୀଣା ତାନ ଯୁଗ ଯୁଗ ଧରି
କରୁଥାଅ ତୁମେ ଗୁଞ୍ଜରଣ !!
ତୁମରି ଅନନ୍ତ ସ୍ପର୍ଶେ—ଦୋଳଉଠୁ ମଣିଷର ମାଟି
ଅନନ୍ତେ ଅନନ୍ତେ ଦୋଳ ପାଏ ମୁହିଁ ମଣିଷ ଭିତରୁ
ଅନନ୍ତର ସାଥୀ !!!

---

## ସପନ ଭୂଇଁ

ମୁଁ ଗୋ ଆକାଶର ନୀଳ ଦେହେ
ଭାସି ଭାସିଯାଏ କେବା ସ୍ନେହେ !
ମୁଁ ତ କୁସୁମ ପାଖୁଡ଼ା ରଙ୍ଗେ,
ଗୋଳ ହୋଇଯାଏ ମଧୁ ଭଙ୍ଗେ;

ମୁଁ ତ ମଳୟ ଭିତରେ ଜାଗେ
ଦୂରେ ବହିଯାଏ ଅନୁରାଗେ,
ମୁଁ ଗୋ ଶୁଭ୍ର ବାଦଲ ଚୂଳେ
ବୁଲି ସପନ ଦେଖଇ ଦୂରେ

ମୁଁ ଗୋ ଜ୍ୟୋସ୍ନା ଢେଉରେ ତଳ,
ଉଠେ କି ମଧୁ ପୁଲକେ ଭରି !
ମୁଁ ଗୋ କୁହୁ-କେକା-ଗାନେ ଗାନେ
କେବା ମିଶିଯାଏ ପ୍ରାଣେ ପ୍ରାଣେ !

ମୁଁ ଗୋ ନୀଳ ପ୍ରାନ୍ତର ଘାସେ,
ଶୋଇ ପଡ଼େ କି ଅମର ହାସେ ।
କେଉଁ ଶ୍ୟାମଳ ବିଜନ ଭୂଇଁ—
ଭୁଲେ କଥା ହେଉଥାଏ ମୁହିଁ ।

ମୁଁ ଗୋ ପ୍ରଭା ତାରକାରେ ଗୁହ୍ନିଁ,
କବା ସଙ୍ଗୀତ ଯାଏ ଗାଇ ।
ମୁଁ ଗୋ ତଟିନୀ ତରଳ ଗାନେ—
ବୁଡ଼ ବୁଝୁଥାଏ ତା'ର ମାନେ ।

ମୁଁ ଗୋ ଶିଶୁର ଦରେଟି ବାଣୀ—
ତନୁ କି ପୀୟୂଷ ଯାଏ ଆଣି !
ମୁଁ ଗୋ ନବଯଉବନା ବଧୂ—
ଓଠୁ ପିଏ କି ସେନେହ-ମଧୁ !

ମୁଁ ଗୋ ନବ କଶଳୟ ପରି—
କେଉଁ କଶୋରୀ ବକ୍ଷେ ତଳ,
ତାରେ ଭୁନ ଭୁନ କହେ କଥା
ଢାଏ ସେନେହେ ଆଉଁସି ମଥା—

ମୋର ବୁକୁ ତଳ ଉଠେ ଭର
କବା ଅମୃତ ଶିଖା ଧର;
ମୁଁ ଗୋ ସାଗର ସିକତା—ଶେଯେ
ତଳ ବୁଡ଼େ କି ଧୁଆନେ ସେ ଯେ;

ମୁଁ ଗୋ ସନ୍ଧ୍ୟା ତାରାରେ ଗୁହ୍ନିଁ
ମାରେ କବା ଶିଖା ମୋହ ପାଇଁ !
ଯେବେ ରଇତ ଗୋଧୂଳି ସଞ୍ଜେ,
ଦୂର ବାରୁଣୀ ଆକାଶ ରଞ୍ଜେ,

ବୁଡ଼ ବୁଡ଼ ଯାଉଥିବା ରବି
ଯେମ୍ନ ଶତ ସପନର ଛବି,
ମୁଁ ଗୋ ଗୁହ୍ନେଁ ବସି ନଈ ତଟେ
ଯାଏ ଭାସି ମୋର ମନପଟେ

କେତେ ବଚନ ମଧୁ ଆଶା,
ନାହିଁ କହିବାକୁ ମୋର ଭାଷା;
ଯେବେ ପାହାନ୍ତ କାକର ପଡ଼େ
ଏଇ ଶାଳ ଦୁବଘାସ ପରେ

ମୋର ଅନ୍ତର ପଡ଼େ ଢଳ,
ତାରେ ଦେଖିବାକୁ ମନ ଭରି ।
ଯେବେ ସିନ୍ଦୂର ଫାଟେ ନଭେ
ଲାଗେ ପାଟ ଶାଢ଼ୀ ଗଉରବେ—

ଅବା ପିନ୍ଧୁଚି ଉଷାରାଣୀ
ମୋର ମନଟି ସେ ନିଏ ଟାଣି ।
ଲାଗେ ଧରଣୀ ସାଗର ନଭ
କିବା ମୂଲକ ଯେ ଅଭିନବ !

କିବା ଅମର ପୁଲକେ ମାତ
ମୋର ନାଚ ଉଠୁଥାଏ ଗାତ
ମୋର ରୂପାରାଧୀ ଏଇ ମନ—
ପିଏ କିବା ଶିରୀ ଅନୁପମ

ଦୂରୁ ତପନ ଆସିଲେ ଢଳ,
ଯାଏ ବଣ୍ଟ ପ୍ରନ୍ତର ଭଳ,
କିବା ଘୁ ରୁ ଗମ୍ଭୀର ଗାନ
ମୋର ଉଚ୍ଛୁଳାଏ ମନ ପ୍ରାଣ !

ବଟ ଆମ୍ବ ସୁନାରି ଗୁଆ
କିବା ସେନେହ ମମତା ମାୟା
ଘେରି, ରହିଥାଏ ଘରଆଡ଼ ।
ଲଘୁ କରିବାକୁ ବ୍ୟଥାଭାର;

ତହିଁ ବୁଲୁଥାଏ ବହୁବାର;
ମୋର ଚଉଦିଗେ ସମ୍ଭାର ।
ମତେ କିଏ ସେ ଜନମ ଦେଲା
ଏଥି କରିବାକୁ ନିତି ଖେଳା ।

ସବୁ ସମ୍ଭିଳ୍ପ ଅଜାତରେ
ମତେ କରନ୍ତ ସେନେହ କରେ ।
ମୋର ଅଭାବ କଅଣ କହ
ମୋର ବ୍ୟଥା କଥାଁ ଦୁଃସହ ?

ମୁଁ ଗୋ ଯହିଁ ଯାଏ ଯହିଁ ଗୃହେଁ
ମୋର ହୃଦୟ ଉଚ୍ଛଳ ଯାଏ !
ଏଇ ସୀମାହୀନ ଧବ ନଭ—
କୋଟି ଅନ୍ତର ସଉରଭ—

ମତେ ଭଲ ଲାଗେ ! ଭଲ ଲାଗେ !
ମୁଁ ତ ଆଉ କଛୁ ନାଇଁ ମାଗେ;
ଯାଉ ସୀମାହୀନ ଯୁଗ ବହି
ମୁଁ ତ ଏହାର ଭିତରେ ରହି—

ହୁଏ ସବୁର ଭୁଲରେ ସାଥି
ଭର ଉଠୁ ମୋ ଗରବ ଗ୍ରନ୍ଥି ।
ମୋର ଅନ୍ତର ଖାଲି ଲୋଡ଼େ
ଗୃହିଁ ଏ ଭୁଇଁ ନୟନ ଡୋଳେ---

ହସି ହସି ହଦନ ନେବ ବାହି,
ସବୁ ଶିଖି ମୁଁ ପାରବ ପାଇ ।
ଏ ତ ମୋ ଶର ସପନ—ଭୁଇଁ
ଏହା ଲାଗି ଆସିଅଛୁ ମୁହିଁ !!

---

# ଅଭିଯୋଗ ଭଳେ ବଳୟ ଯହିଁ

ମଣିଷ ମନର ସକଳ ଅଭାବ
ଅଭିଯୋଗ ଭଳେ ବଳୟ ଯହିଁ,
କହ ମତେ କହ ! କାନେ କାନେ କହ ।
ଚଞ୍ଚଳ ମୁହିଁ ଯିବଇଁ ତହିଁ ।

ଛନ ଛନ ମୋର ଅନ୍ତର ମନ,
ଦେଖିବ ମୁଁ ସେହୁ ମୁଗ୍‌ଧ ଭୁବନ,
ମଳୟ ପବନ ଦୂରେ ବହୁ ଦୂରେ ଯିବ ମୁଁ ବହୁ;

ମଣିଷ ମନର ସକଳ ଅଭାବ
ଅଭିଯୋଗ ଭଜେ ବଲସ୍ଥ ଯହିଁ ।

ଭୁଲିବ ସକଳ ଗୁରୁ ଅଭିମାନ,
ଭୁଲିବ ସକଳ ଅହଂକାର
ମତେ ନେଇ ଚାଲ ମତେ ନେଇ ଚାଲ
ଦେଖିବ ମୁଁ ସେଇ ସଂସାର ।
ସେଠି ତଟିନୀର କଳ କଳ ବାଣୀ
ଆହୁରି ଲାଗିବ ମଧୁର ତର
ସେଠି କୁସୁମର ଗନ୍ଧ ଆହୁରି
ମୁଗ୍‌ଧ କରିବ ଏ ଅନ୍ତର ।
ଶୀତଳ ଧବଳ ଜ୍ୟୋସ୍ନାରେ ତହିଁ,
ମନ ମତାଣିଆ ଗୀତ ଗାଇ ଗାଇ,
ସନ୍ତରୁ ଥିବ ଅର୍ଧୀର ପୁଲକେ,
ଚାହିଁ ବଲ ବଣ ପାହାଡ ନଈ,

ମଣିଷ ମନର ସକଳ ଅଭାବ
ଅଭିଯୋଗ ଭଜେ ବଲସ୍ଥ ଯହିଁ ।

ସେଇ ରାଇଜରୁ ଫୁଲ ଆଣେ ତା'ର
ଗନ୍ଧ ବରଣ ବୁକୁରେ ବହି,
ସେଇ ରାଇଜରୁ ପିକ ପଞ୍ଚମ
ଭାସି ଆସେ ଏଇ ସୁଦୂର ମହୀ;
ସେଇ ରାଇଜରୁ ବିଦ୍ୟୁତ ବାଳା
ଝଟକ ଝଟକ ଆସଇ ନାଚ,
ସେଇ ରାଇଜରୁ ଜୋଛନା ଝରଇ
ଧରଣୀରେ ବୁଣି ସପନ ରାଜ;
ସେଇ ରାଇଜରୁ ସାଗର ଉର୍ମି
ମାଳ ଆଭା ଧରି ଆସଇ ଖେଳ
ସେଇ ରାଇଜରୁ ଜନ୍ମ ଲଭି କ
ଆକାଶ ଧରଣୀ ଏ ଭଳି ନେଲ ?

ସେଇ ଗାଇଲେ ମୁଁ ହସି ଖେଳି ନିତି,
        ଅସୀମ ସୋହାଗେ ପାଟିବ ରହି,
ମଣିଷ ମନର ସକଳ ଅଭାବ
        ଅଭିଯୋଗ ଭଜେ ବିଲୟୁ ଯହିଁ !

ଉନ୍ମନ ମୁହିଁ, ଚଞ୍ଚଳ ମୁହିଁ,
କାନ ପାତି ଶୁଣେ କାହାର ବାଣୀ,
ଦୂରୁ ବହୁ ଦୂରୁ କେ ତାର ସେନେହ
ଯାଚି ଦିଏ ମୋର ମରମ ଜାଣି !
ଯିବି ମୁଁ ତହିଁ ଯିବି ମୁଁ ତହିଁ,
ବହି ଆସେ ଯହୁଁ ଅସୀମ ପ୍ରାଣର ଅସରା ନଈ,
ମଣିଷ ମନର ସକଳ ଅଭାବ
        ଅଭିଯୋଗ ଭଜେ ବିଲୟୁ ଯହିଁ !

---

# ଗୁହାଁ ! ଗୁହାଁ !!

ତାହାର ଅଧର କଣେ ଟିକଏ ଫୁଟୁଚି ହସ
ଆଖିରେ ଜାଗୁଚି ଟିକେ ଆନନ୍ଦର ଛଇ;
ବୁକୁ ତଳେ ଜାଗୁଅଛି, ଟିକେ ଉନ୍ମାଦନା;
ପ୍ରାଣବୋଳା ବାଣୀ ତା'ର ଓଠ ଫୁଟୁ ଆସୁଅଛି ଫୁଟି;
ଶରତର ଶ୍ୟାମ ଘାସ ପରି, ଦେହେ ମନେ
ଉଠୁଚି ଉକୁଟି ଟିକେ ପ୍ରସନ୍ନର ଆଭା;
ନିର୍ଭୀକ ପ୍ରାଣର ଯେଉଁ ସୀମାହୀନ ସାହସ ଉତ୍ସାହ
ଅନ୍ତରର ଭ୍ରଷ୍ଟ ରେଣୁ ତଳେ,
ଟିକେ ଟିକେ ଆସୁଅଛି ଛୁଇଁ;
ହଅନା ହଅନା ମାର
ତୋ' ବୁକୁର ଉତ୍କଟ ଗରଳ ଢାଳି,
ଗୁହାଁ ! ଗୁହାଁ ! ଜୀବନର ଫୁଲ
ବର୍ଣ୍ଣ ନେଇ ଗନ୍ଧ ନେଇ, ରସ ନେଇ
କମିତି ଉଠୁଚି ଫୁଟି
ଅପୂର୍ବ ମହକ ବୁଣି ଚତୁର୍ଦ୍ଦିଗେ ତା'ର !

ଗୃହାଁ ! ଗୃହାଁ !! ଖାଲି ଗୃହାଁ !
ଗୃଲ ପ୍ରତି ପଦେ ହୋଇ ହୃସିଆର !
ଆହୁରି ଫୁଟିବ ସିଏ ଆହୁରି ହସିବ ସିଏ,
ଆହୁରି ଢଳିବ ସିଏ, ଜୀବନ୍ତ ଜୀବନ୍ତ !
ଆହୁରି ମୋହନ ଗନ୍ଧ
ଉଠିବ ପ୍ରସରି ତହୁଁ;
ଜୀବନର ଫୁଲ
କି ଅତୁଳ !
କି ମାଧୁର୍ଯ୍ୟ ଭରା !
ମଥା ତୋର ଆସେ ନାଇଁ ଲଇଁ ?
ଦେଖି ତାର ପ୍ରାଣବନ୍ତ ଛଇ !

ଗୃହାଁ ! ଗୃହାଁ !
ଆହୁରି ଆହୁରି ଗୃହାଁ !
ଅନୁଭବ ଗର୍ବ ଗଉରବ !
ତୋ ପାଇଁ, ତୋହରି ଏ
ସୀମାହୀନ ମାଟି ପାଇଁ,
ଫୁଟୁଚି ସେ ଅନନ୍ତ ସମ୍ବାଦ ଧରି;
ଢଅନା ଢଅନା ତାରେ
ଢଅନା ଝିଡ଼ାଇ !
ଅନ୍ତରର ପ୍ରତି ବିନ୍ଦୁ ରକ୍ତ ଦେଇ
ଭଲ ପାଅ ତା'ରେ !

ଗୃହାଁ ! ଗୃହାଁ ! କି ଭଳି ରୋମାଞ୍ଚ ଉଠି
ସୀମାହୀନ ପୁଲକରେ,
ଫୁଟୁଚି ସେ ଛୁଟୁଚି ସେ,
ଅନନ୍ତ ବିଶ୍ୱରେ !

---

# ପ୍ରଶ୍ନ

ସାଥି ମୋର ! ପ୍ରିୟ ମୋର ! ସୁଦୂର ବିଦେଶ ବାସେ
ରହିଅଛ ହୀନମାନେ, ଫେରିବାକୁ ଗୃହ ପାଶେ—
ଯେତେ ଚେଷ୍ଟା କଲେ ମଧ୍ୟ ଯାଉଛି ବିଫଳ ହୋଇ
ବିଜନ ବନ୍ଦୀଟି ପରି ରହିଚ କି ବ୍ୟସ୍ତ ନୋହି ?

ସାହାଯ୍ୟ ସହାନୁଭୂତି ଗୋଟିଏ ବିନ୍ଦୁ ବି ହାୟ !
ତୁମ ଲାଗି ଝରୁନାହିଁ କି ବିରାଟ ଅନ୍ତରାୟ—
କିଏ ସେ ଦେଇଚି ଖଞ୍ଜି ? ଏ ସୃଷ୍ଟିର ଗୃହଆଡ଼
ପ୍ରାଣହୀନ ତୁମଲାଗି, ମରୁଗୃହୀ ଅସମ୍ଭାଳ—

ତୃଷାର୍ତ୍ତ ଜୀବନ ଧରି ତୁମେ ଯେ ଚାଲିଚ ପଥ
ମରୂଦ୍ୟାନ ମଧୁସ୍ୱପ୍ନ ଦେଖି ଦେଖି ଅବିରତ—
ଶତ ଝଡ଼ ଝଞ୍ଜା ସହି, କୋମଳ ଅନ୍ତରେ ତବ
ଏତେ ଆଶା ଏତେ ସ୍ୱପ୍ନ ସବୁ କଣ ବ୍ୟର୍ଥ ହବ ?

ଅଗ୍ନିରେ ଯେ ହାସ ଦେଇ ଜଳିଅଛୁ କାଳକାଳ
ପରାଜୟ ପରାଭବ ହେବ କି ତା ପୁରସ୍କାର ?

---

# ରାମ

ଏ ମହାସୃଷ୍ଟିରେ ତୁମେ ଆନନ୍ଦର ଅମୃତର
ଗୋଟିଏ ଭାବମୟ ପ୍ରାଣୀ;
ଯୁଗେ ଯୁଗେ କାଳେ କାଳେ
ତୁମେ ବଞ୍ଚି ରହିଅଛ
ଆକାଶ ଅବନୀ ଭରି
ଅଭିରାମ ବେଶେ,
ଶ୍ରବଣେ ଶ୍ରବଣେ
ତାଳ ସୁମଙ୍ଗଳ ବାଣୀ !

ତୁମେ ନୁହ, ମୋ ଆଖିରେ
ଦେବତା, ମନୁଷ୍ୟ,
ତୁମେ ନୁହ ରଜା ବା ସମ୍ରାଟ,
ଏ ସୃଷ୍ଟିର ସୀମାହୀନ—
ଅତ୍ୟାଚ୍ଚର, ଅନାଚ୍ଚର
ପାପ କଳଙ୍କ ବିଷର
ଅବିଶ୍ୱାସ, ହିଂସାହତ୍ୟା—
ମହା ଅନ୍ଧକାର
ଭୀମ ଭୟଙ୍କର ମରୁଦେଶେ,
ତୁମେ ସୀମାହୀନ
ସବୁଜ ସମ୍ପଦ ଶୋହା
ଉଠୁଚ ପଲ୍ଲବ,
ଅମୃତ ଉଦ୍ଦେଶେ;

କବି, ଶିଳ୍ପୀ, ସାଧକ, ସନ୍ନ୍ୟାସୀ,
ରଜା, ପ୍ରଜା, ଧନୀ, ମାନୀ,
ଅତ୍ୟାଚ୍ଚରୀ, ଅନାଚ୍ଚରୀ,
ପାପୀ, ତାପୀ, ରୁଗ୍ଣ, ପଙ୍ଗୁ,
ସକଳର ଦେହେ ଦେହେ,
ମନେ ମନେ,
ଆତ୍ମାରେ, ଆତ୍ମାରେ,
ବରଷି ଯାଉଚ ତୁମେ
ପୁଲକ-କଲ୍ୟାଣ,
ସବୁଶ ସତ୍ତ୍ୱରେ
ହୋଇ ବିରଜିତ;
ତୁମେ ମହା ଧରଣୀର
ତନ୍ତ୍ରେ ତନ୍ତ୍ରେ ବାଜୁଅଛ
ବିଶ୍ୱ ବିମୋହନ
ବିରାଟ ବିପୁଳ ସଙ୍ଗୀତ ! ! !

———

## ଯଥାର୍ଥ

ସେଇ ତ ଯଥାର୍ଥ ଦାନ ଯେତିକ ଦେଇଛ ମତେ
ଦାତ ଯୋଡ଼ି ଆଉ କଷ୍ଟ ମାଗେ ନାହିଁ ଅବିରତେ;
ଯେତିକ ଦେଇଛ ମତେ ତହିଁରେ ସନ୍ତୋଷ ମମ
ତାହା ଯେନ ବାନ୍ଧି ନିଏ ମୋ ତରଣୀ ପ୍ରିୟତମ !

ଏତିକ ମାଗୁଣି ମୋର ତବ ଶ୍ରୀ ଚରଣ ତଳେ
ଦେଇଛ ଯା ମସ୍ତକରେ ଆନନ୍ଦେ ମୁଁ ଗଣ୍ଡି କରେ ।
ଫୁଟାଏ ଅମୃତ ଜ୍ୟୋତି ତୁମ ସେଇ ମହା ଦାନେ,
ଯେତେଦିନ ରହିଥିବ ଏ ବିଶାଳ ଧରାଧାମେ !

ମୋ ପାଇଁ ମୁଁ ଆଉ କଷ୍ଟ କରେନାହିଁ ଲବେ ଅଳି
ତୁମ ଦାନେ ଫୁଟି ଉଠୁ ମୋ କ୍ଷୁଦ୍ର ଅନ୍ତର କଳି !

---

## ମାଟିରେ

ଗମ୍ଭାର ଏ ଗଛ ଗୁଳି ତଳେ
ଯେଉଁଠି ପଡ଼ଇ ଝରି ଫୁଲ ଅଗଣନ,
ଯେଉଁଠି ହେଲେ ବି ଠିଆ ଦଣ୍ଡେ ବା ଘଡ଼ିଏ
କୁସୁମର ମଧୁଗନ୍ଧ, ପାହାଡ଼ର ମାଳକାନ୍ତ ଛବି
ଅଯାଚିତେ ମୋ ପରାଣେ ଢାଳିଦିଏ ଆନନ୍ଦ ପରମ,
ଯେଉଁଠି କେତେ କେତେ ପରାଣରେ
କେତେ ସ୍ମୃତି-କେତେ ହାସ, କେତେ ଅଶ୍ରୁ-
ଜୟ ପରାଜୟ ଚଢ଼ିଯାଏ ମନେ
ସେଠି ଆଜ ଏକା ଏକା ହୋଇଛି ମୁଁ ଠିଆ
ଆପଣାକୁ ଏ ମାଟିର ପ୍ରତି ରେଣୁ ସହ
ବାନ୍ଧି କିବା ମୋହନ ବନ୍ଧନେ !

ଜୀବନରେ କେତେ କେତେ ଥାନେ
ଆସିଛି ମୁଁ ବୁଲି,

ସବୁର ଭିତରେ ମୋରେ କମ୍ପା
ଭଲ ଲାଗେ ଏତେ
ଏ ପାହାଡ଼ ଏଇ ବଣ ବୁଦା
ଏଇ ମାଟି ଧୂଳ !
ମୋ ଆଖିରୁ ଝର ଗଲେ
ଟୋପାଟିଏ ଲୁହ
ମୋ ଅନ୍ତର ଝିକକ ବେଦନାରେ
ହେଲେ ତରଙ୍ଗିତ
ଏଇ ଧୂଳ ମାଟି ଭିତରୁ
ଘେନି କାହା ମୋହନ ଇଙ୍ଗିତ
ସବୁ ଭୁଲିଯାଏ
ଏଥି ସତେ ମୋହ ଲାଗି
କ ଯାଦୁ ମନ୍ତ୍ର ଥାଏ !

ହେ ରସ୍ତା ! ଯହିଁ ପଦ ସ୍ପରଣ କର
ସ୍ପଳିତ ବହୁବାର !
ହେ ଶାନ୍ତ ଶୀତଳ ପୁଷ୍ପିତ ତରୁଟି ମୋର !
ତୁମର ଜୀବନରେ କେତେ ବାର ରହିଅଛୁ ସ୍ପହିଁ
ତୁମ ଛାଇ ତଳେ ବସି
ଦେଖିଛୁ ବ ସପନ ସମ୍ଭାର !

ହେ ସବୁଜ ପାହାଡ଼ !
ତୁମକୁ ଦେଖିଲେ ଜୀବନ ମୋର
କ ଅପରସୀମ ମୁଗ୍ଧ ଆନନ୍ଦରେ
ହୋଇ ନାହିଁ ସତେ ତଳ ତଳ
ହେ ଜନତା ! ମୋ ପାଇଁ ରହିଚ କପର
ତୁମର ପ୍ରସାରିତ ମୋହନ ଅନ୍ତର !

ଏ ଜନ୍ମର ବଦାୟ ପରେ
ମୋତେ କେ ରଖିବ ଧର ?
ମୋତେ କେ ସ୍ପହିଁବ ଏତେ
ଆପଣାର କର !
ଭଲି ହୁଏ, ଏଇ ରସ୍ତା, ଏ ପାହାଡ଼ ସନ୍ନିକଟ

ଏ ବିମୋହନ ଗଛ ଗୁଛର ତଳ
ମୁଁ ଏ ସବୁ ପାଆନ୍ତ ନାଇଁ ଗୁଡ଼;
ମୋ ଆତ୍ମା ମୋର ଦେହ ମନ
ଏଇଠି ଘୂରି ବୁଲୁଥାନ୍ତା ଦିନ ରାତ ଷୋଳ ଘଡ଼ି !!
ଶାନ୍ତ ଆଉ ଆନନ୍ଦର ବିପୁଳ ପ୍ଲାବନେ
ଚିର ଦିନ ବୁଡ଼ି ।

ମୁଁ ରାଜାର ସନ୍ତାନ ନୁହେ
ନାଇଁ ମୋର ରାଜ-ସିଂହାସନ,
ବିପୁଳ ସମ୍ପତ୍ତି
ମୁଁ ଗଣ୍ୟ ମାନ୍ୟ ପ୍ରତିପତ୍ତିଶାଳୀ—
ଜୀବନର ଐଶ୍ୱର୍ଯ୍ୟରେ
ବଳାଇନି ମତି
ଏ ସବୁର ରୂପ ଅଛି, ଗନ୍ଧ ନାଇଁ,
ଏ ସବୁର ସ୍ମିତ ଅଛି, ପ୍ରୀତି ନାଇଁ;
ମତେ ଗନ୍ଧେ ଗନ୍ଧେ
ଅନ୍ଧ ଦିଅ କରି,
ପ୍ରୀତିର କନକ ସୂଏ
ବାନ୍ଧି ନିଅ ମୋର ନିଃସ୍ୱ ତନ୍ତ୍ରୀ
ମାଗେ ଆଜ, ବକ୍ଷ ପାତି ମାଗେ
ଏଇ ରାସ୍ତା, ଏଇ ଗଛ ଗୁଛ
ଏ ପାହାଡ଼,
ଏଇ ସରଳ ଶାନ୍ତ ଜନତାର ଆଗେ
ରଖ ମୋରେ ଚିର ଦିନ ପାଇଁ
ତୁମ ବୁକୁ ତଳ କୋଟି ଅନୁରାଗେ ।

---

# ଅଜଣାର ସାଥୀ

ସେ ଯେ ମୋର ସୀମାହୀନ ବେଦନାର ସାଥି ଗୋ !
ନୟନୁ ବହିଲେ ଲୁହ ଦେଇଯାଏ ସେ ଅଭୟ
ଲୁଚି ଲୁଚି ଛପି ଛପି ଥିରି ଥିରି ଆସି ଗୋ
ତୁନି ତୁନି ଘଷେ କେତେ ଭଷି ଗୋ
ଆସେ ସେହୁ ଆସେ ଆସେ
ମୋହରି ଗରବ ବାସେ
ଯେତେ ଦୂର ହେଉ ତାର ଆପତ୍ତି ନାହିଁ ଗୋ
ସବୁ ସିଏ ସହି ପାରେ ଖାଲି ମୋହ ପାଇଁ ଗୋ ।

ଏ ଜୀବନେ କେତେ ବାର ହତାଶ ନୟନେ ଗୃହିଁ ରହିନି !
କେତେ ଲୁହ ଏ ମରମ ତଳୁ ମୋର, ବହିନି ?
କେତେ ଝଡ଼ ଝଞ୍ଜାର ଭିତରେ ଭିତରେ ମୋର—
ନିଃସ୍ୱ ଏ ବୁକୁ ତଳ କୋରି ହୋଇ ଯାଇନି !
ଏ ସାରା ଧରଣୀ ମୋତେ
କେତେ ବିଦ୍ରୂପ କଥା କହିନି !
ଦୁଃସହ ବ୍ୟଥା ଭରେ ମୁଁ ଗୃହିଁ ରହିଲେ
ଦୂର ବଳୟେ !
ସେ ଗୋ ଆସେ କେଉଁ ମହା ଶୂନ୍ୟରୁ
ନିଃସ୍ୱ ମୋ ଆଳୟେ !

"ବ୍ୟଥିତ କାହିଁକି କବ ! କହ ମତେ କହ ହେ
ପାଖେ ପାଖେ ଅଛୁ ମୁହିଁ ତୁମ ଆଶ୍ରୟ ହେ !"
ନୂତନ ଜୀବନ ମତେ ଆଣିଦେଲା ପରି ଗୋ
ସେ କଥା ପଦକ ହିଏ, କି ଅଜଣା ବଇଭବ ଭରି ଗୋ !
କେତେ ଆଶା ପଲ୍ଲବ ଯାଏ ବୁକୁ ତଳରେ
ଭଗ୍ନଜାନୁ ମୁଁ କବି
ଠିଆ ହୁଏ ପୁଣି ନବ ବଳରେ !

କିଏ ମୋର ଅଜଣାର ସାଥି ସେ ?
ଅଜଣାରୁ ଆସି ମୋତେ—
କହିଯାଏ କାନେ କାନେ ଅଜଣାର ବାରତା,

ନୂତନ ସପନ ଦେଖେ ନବ ଅରୁଣିମା ପର
ଫିଙ୍ଗି ସୁଦୂରେ ସବୁ ଜଡ଼ତା !
ଫୁଲ ପରି ମତେ ଯିଏ ଫୁଟାଏ, ମନ୍ଦ ମଳୟ ପରି ଛୁଟାଏ
ସବୁଜିମା ତଳ ତଳ ଗିରି ବନ ପ୍ରାନ୍ତର—
ପରି ମତେ ଧରି ରଖେ,
ବେଦନା କାଳିମା ଦାଗ ରଖେନି ମୋ ଦେହେ ମନେ ଲୁଚାଏ !
ଚିରଦିନ ଅଜଣା ଅଶୁଣା ମୋର ସାଥି ସେ
ଚିରଦିନ ମୋହପାଇଁ ରଖିଚି ତା' ବୁକୁତଳ ପାତି ସେ !
ମୋରେ ସେ ପାଇଚି ଭଲ, ତାଳି ତାର ଅନ୍ତର
ପ୍ରତିଦାନ କିଛି ଆଶା କରିନି ।
ଯେତେ ଯାହା ଭୁଲ୍ ମୋର
କିଛି ସେ ତ ଅଭିମାନେ ଧରିନି !
ମୁଁ ତାକୁ ଦେଇନି କିଛି ଦାନ ଯେ,
ତଥାପି ସେ ଭରିଦିଏ ତାହାରି
ଗୋଟିକଯାକ ପ୍ରାଣ ଯେ !
ମରିବେ ମୁଁ କହେ ତା'ରେ ଲୁହଭରା ନୟନେ,
"ମୋରେ ତୁମେ ନେଇ ଯାଅ
ତୁମ ସେହି ଚିର ଅନ୍ତରଭରା ଅୟନେ ।
ଆବଦ୍ଧ ଜଳ ପରି ରହିବନି ପଡ଼ିଏ
ତଟିନୀର ସୁଅପରି ବହିଯିବ ବହିଯିବ
ଚଉଦିଗ ଭରି ହେ !"

---

## ମରଣ ପ୍ରତିଜ୍ଞା

ଗୋଟିଏ ମନୁଷ୍ୟ ସେଇ ସାରା ପୃଥିବୀର,
ପୃଥିବୀର ମୁକ୍ତି ପାଇଁ କାନ୍ଦେ ଯା' ଅନ୍ତର
ଦେଇଚି ସେ ହୃତ୍‌ପିଣ୍ଡର ପ୍ରତି ରକ୍ତବିନ୍ଦୁ
ନୋହି ଲବେ ନିମିଷକେ କୁଣ୍ଠିତ କାତର ।

# ଅଜଣାର ସାଥୀ

ସେ ଯେ ମୋର ସୀମାହୀନ ବେଦନାର ସାଥି ଗୋ !
ନୟନୁ ବହିଲେ ଲୁହ ଦେଇଯାଏ ସେ ଅଭୟ
ଲୁଚି ଲୁଚି ଛପି ଛପି ଥିର ଥିର ଆସି ଗୋ
ଭୁନ ଭୁନ ଘଷେ କେତେ ଭଷି ଗୋ
ଆସେ ସେହୁ ଆସେ ଆସେ
ମୋହର ଗରବ ବାସେ
ଯେତେ ଦୂର ହେଉ ତାର ଆପତ୍ତି ନାହିଁ ଗୋ
ସବୁ ସିଏ ସହି ପାରେ ଖାଲି ମୋହ ପାଇଁ ଗୋ ।

ଏ ଜୀବନେ କେତେ ବାର ହତାଶ ନୟନେ ଗୃହିଁ ରହିନି !
କେତେ ଲୁହ ଏ ମରମ ଚିର ମୋର, ବହିନି ?
କେତେ ଝଡ଼ ଝଞ୍ଜାର ଭିତରେ ଭିତରେ ମୋର—
ନିଃସ୍ୱ ଏ ବୁକୁ ତଳ କୋର ହୋଇ ଯାଇନି !
ଏ ସାରା ଧରଣୀ ମୋରେ
କେତେ ବଦ୍ରୂପ କଥା କହିନି !
ଦୁଃସହ ବ୍ୟଥା ଘରେ ମୁଁ ଗୃହିଁ ରହିଲେ
ଦୂର ବଳୟେ !
ସେ ଗୋ ଆସେ କେଉଁ ମହା ଶୂନ୍ୟରୁ
ନିଃସ୍ୱ ମୋ ଆଳୟେ !

"ବ୍ୟଥିତ କାହିଁକି କବ ! କହ ମତେ କହ ହେ
ପାଖେ ପାଖେ ଅଛି ମୁହିଁ ତୁମ ଆଶ୍ରୟ ହେ !"
ନୂତନ ଜୀବନ ମତେ ଆଣିଦେଲା ପର ଗୋ
ସେ କଥା ପଦକ ଦାଏ, କି ଅଜଣା ବଇଭବ ଭରି ଗୋ !
କେତେ ଆଶା ପଲ୍ଲବ ଯାଏ ବୁକୁ ତଳରେ
ଭଗ୍ନଜାନୁ ମୁଁ କବ
ଠିଆ ହୁଏ ପୁଣି ନବ ବଳରେ !

କିଏ ମୋର ଅଜଣାର ସାଥି ସେ ?
ଅଜଣାରୁ ଆସି ମୋରେ—
କହିଯାଏ କାନେ କାନେ ଅଜଣାର ବାରତା,

ନୂତନ ସପନ ଦେଖେ ନବ ଅରୁଣିମା ପର
ଫିଙ୍ଗି ସୁଦୂରେ ସବୁ ଜଡ଼ତା !
ଫୁଲ ପରି ମନ୍ତେ ଯିଏ ଫୁଟାଏ, ମନ୍ଦ ମଳୟ ପରି ଛୁଟାଏ
ସବୁଜିମା ତଳ ତଳ ଗିରି ବନ ପ୍ରାନ୍ତର—
ପରି ମନ୍ତେ ଧରି ରଖେ,
ବେଦନା କାଳିମା ଦାଗ ରଖେନି ମୋ ଦେହେ ମନେ ସୂତାଏ !
ଚିରଦିନ ଅଜଣା ଅଶୁଣା ମୋର ସାଥି ଯେ
ଚିରଦିନ ମୋହପାଇଁ ରଖିଚି ତା' ବୁକୁତଳ ପାତି ଯେ !
ମୋରେ ସେ ପାଇଚି ଭଲ, ତାଳି ତାର ଅନ୍ତର
ପ୍ରତିଦାନ କିଛି ଆଶା କରିନି ।
ଯେତେ ଯାହା ଭୁଲ୍ ମୋର
କିଛି ସେ ତ ଅଭିମାନେ ଧରିନି !
ମୁଁ ତାକୁ ଦେଇନି କିଛି ଦାନ ଯେ,
ତଥାପି ସେ ଭରିଦିଏ ତାହାର
ଗୋଟିକିଯାକ ପ୍ରାଣ ଯେ !
ମିରବେ ମୁଁ କହେ ତା'ରେ ଲୁହଭରା ନୟନେ,
"ମୋରେ ତୁମେ ନେଇ ଯାଅ
ତୁମ ସେହି ଚିର ଅନ୍ତରଭରା ଅୟନେ ।
ଆବଦ୍ଧ ଜଳ ପରି ରହିବିନି ଘଡ଼ିଏ
ତଟିନୀର ସୁଅପରି ବହିଯିବ ବହିଯିବ
ଚଉଦିଗ ଭରି ହେ !"

---

## ମରଣ ପ୍ରତିଜ୍ଞା

ଗୋଟିଏ ମନୁଷ୍ୟ ସେଇ ସାରା ପୃଥିବୀର,
ପୃଥିବୀର ମୁକ୍ତି ପାଇଁ କାନ୍ଦେ ଯା' ଅନ୍ତର
ଦେଇଚି ସେ ହୃତ୍‌ପିଣ୍ଡର ପ୍ରତି ରକ୍ତବିନ୍ଦୁ
ନୋହି ଲବେ ନିମିଷକେ କୁଣ୍ଠିତ କାତର ।

ଫକୀର ସନ୍ୟାସୀ ହୋଇ ସର୍ବସ୍ୱ ଦେଇଚି
ବିଶ୍ୱେ ମୁକ୍ତ, ମୈତ୍ରୀ ବାଣୀ ଆଜ ବିତରଇ
କି ବିଶାଳ ଅଗ୍ନିଶିଖା ଜଳେ ତା' ଅନ୍ତରେ
ସତ୍ୟ ସଂଯମର କିବା ମୂର୍ତ୍ତି ଧରିଅଛି ।
ପୃଥିବୀ ବୁଝିନି ତା'ରେ ବୁଝିନି ଅଦ୍ୟାପି
ଖୋଲିନି ଖୋଲିନି ଆଜ ପୃଥିବୀର ଆଖି
ପୃଥିବୀ ପାରିନି ମାପି କି ବିରାଟ ସେହି
ମଣିଷ ହେବାକୁ ଅଛି ପୃଥିବୀର ବାକି !

କଠୋର ତପସ୍ୟା ପରେ ଦେଲ ସେ ଜାତିରେ
ମାନବର ଚିରକାମ୍ୟ ହୃତ ସ୍ୱାଧୀନତା,
ହିମାଦ୍ରିରୁ କୁମାରିକା ଯାଏ ସେ ଆଣିଲ
ପ୍ରତିପ୍ରାଣେ ନବଦୀପ୍ତି, ଚେତନାର କଥା,
ଥିଲ ଯାହା ଜଡ଼, ପଙ୍ଗୁ, ନିର୍ଜୀବ ଓ ମୂକ
ଠିଆ କଲ ତା'ରେ ଦେଇ ପୂର୍ଣ୍ଣ ଜୀବନ୍ୟାସ
ଥିଲ ଯା ଦୁର୍ବଳ, ଭୀରୁ, ନିବିଡ଼ ଅନ୍ଧାରେ
ଖେଳାଇଲ ବୁକେ ତା'ର ଆଲୋକ ଉଚ୍ଛ୍ୱାସ ।
ବିଶ୍ୱ ଆଗେ ଠିଆ କଲ ଏ ଜୀର୍ଣ୍ଣ ଜାତିରେ
ପୂର୍ତ୍ତି ଅମିତାଭ କରି ସତ୍ୟ ଅହିଂସାରେ
ସତ୍ୟର ତର୍ଜମା ଟୋଳି ଦୃପ୍ତ ଗଉରବେ
ମୁକ୍ତ କଲ ଏ ଜାତିକୁ ବିଶ୍ୱ-ଦରବାରେ ।

ଦେଖୁଥାନ୍ତା, ହିନ୍ଦୁ—ଆଉ ପଠାଣ, କେସନେ
ଏ' ମାଟିର ରସଧାର ଅଙ୍ଗେ ଅଙ୍ଗେ ବହି,
ଭୁଲି ଭେଦ ଆତ୍ମପର ମଣିଷ ପରିଏ—
ପରସ୍ପରେ ଭଲ ପାଇ ପାରିଚନ୍ତି ରହି,
ଦେଖଥାନ୍ତା, ଏ ମାଟିର ପ୍ରତି ମଣିଷରେ
କେମନ୍ତେ ହୋଇଚି ଉଭା ନର-ନାରାୟଣ,
ଦେଖୁଥାନ୍ତା, ପ୍ରତିଚିହ୍ନ ଗଢ଼ିଛୁ କପରି
ସୂର୍ଯ୍ୟ ପରି କରି କିବା ଶୁଭ୍ର ତେଜୀୟାନ୍
ଦେଖୁଥାନ୍ତା, ଭାରତର ପ୍ରତି ଅନ୍ଧ କନ୍ଦ
ନ୍ୟାୟ ଓ ସତ୍ୟର ଖେଳେ ବିପୁଳ କଲ୍ଲୋଳ
କିବା ଜଳ କିବା ସ୍ଥଳ ଆକାଶ ବତାସ
ସବୁଠାଇଁ ଆନନ୍ଦର ପୂର୍ଣ୍ଣ କଳରୋଳ ।

ବର୍ଷ ସାଧନା ତା'ର କଠୋର ତପସ୍ୟ
କେମନ୍ତେ ପାରିବ ସହି ଏହି ବର୍ବରତା ?
ମଣିଷ ମୂର୍ଚ୍ଛାର ପରେ ଯେବେ ରେ ମଣିଷ
ତୋଳିବାକୁ ଚାହେଁ ତା'ର ସୌଧ-ସ୍ୱାଧୀନତା ?
ନାରୀର ଇଜ୍ଜତ ଯହିଁ ଲୁପ୍ତ ଅତ୍ୟାଚାରେ
ଦିନୁ ଦିନ ବଳାତ୍କାରର ଧଆସା ଏ ମାଟି,
ଜନନୀ ଭଗିନୀ ଜାୟା ଆର୍ତ୍ତ ହାହାକାରେ
ପୃଥିବୀର ବକ୍ଷ ଯହିଁ ହୁଅଇ ବିଦାରି;
ମଣିଷ ଭିତରେ ଯେଉଁ ମଣିଷ ଠିକକ
ସେ ଯେବେ ବୁଝିଲା ନାହିଁ ମଣିଷର ବାଣୀ
ବଞ୍ଚିବାରେ ଏ ମାଟିରେ କିବା ଗଉରବ
କିବା ଲଭ ଏ ମାଟିର ସ୍ୱାଧୀନତା ଆଣି ?

ସେଥିଲାଗି ପୃଥିବୀର ଅମର ସନ୍ନ୍ୟାସୀ
କଠୋର ପ୍ରତିଜ୍ଞା ଆଜ କରନ୍ତି ଜୀବନେ,
ମରଣର ଯବନିକା ଆଡ଼ୁଆଳେ କାହିଁ
ଲୁଚିଯିବ ଚିରଦିନ ଏଇ ଅନଶନେ ।
ନୟନ ଦେଖିବ ନାହିଁ ଏଇ ବର୍ବରତା
ଶ୍ରବଣ ଶୁଣିବ ନାହିଁ ଏ ମାଟି ଚିତ୍କାର
ଅନ୍ତର ବୁଝିବ ନାହିଁ ମଣିଷର ମାଟି
ମଣିଷ ହାତରେ କେମନ୍ତେ ହୁଏ ନାରଖାର ।
ହତଭାଗ୍ୟ ଦେଶ ମୋର ! କେମନ୍ତେ ଚେତନା
ଆସିବ ମରମେ ତୋ'ର କେତେ ଦିନ ପରେ ?
ପୃଥିବୀର ମେରୁଦଣ୍ଡ ଗୋଟିଏ ମଣିଷ
ପୃଥିବୀକୁ ରଖିଛି ସେ ଧରି ନିଜ ବଳେ ।



ମରଣ ସେ ମରିବାର ଉପାଦାନେ ନୁହେଁ ତା' ସର୍ଜନ
ସବୁରି ଭିତରେ ସେ ଯେ ଅଗ୍ନିଧର୍ମ ଜୀବନ୍ତ ଚେତନ;
ଆଶାର ମୋହନ ରେଖା ନୈରାଶ୍ୟର ଭିତରେ ଯେ ସିଏ,
ଝଡ଼ ଝଞ୍ଜା ଭିତରେ ଯେ ହିମାଚଳ ପରି ଦିଶେଟି ହେ !
ଅଗ୍ନି-ପାରାବାର—
ପରିଏ ଉଠଇ ଗର୍ଜି, ଦେଖିଲେ ସେ କାହିଁ ଅତ୍ୟାଚାର !

ଯେ ପଥ ଗଢ଼ିଛୁ ସେହୁ ସେଇ ପଥେ ଚାଲ ଚାଲ ଚାଲ !
ସେ ପଥ କର ନା ରୁଦ୍ଧ ଭରି ସ୍ୱାର୍ଥ ଗର୍ବ ଅହଂକାର
ଯେ ପଥେ ଚାଲିଲେ ଫୁଟେ ଏ ଅନ୍ତରେ ସତ୍ୟର ଉଲ୍ଲାସ
ପରପାଇଁ ମରିବାକୁ ବକ୍ଷେ ଆସେ ଅତୁଳ୍ଣ ପ୍ରୟାସ;
ବନ୍ଦିଅ ସେଇ ପଥ ତା'ର
ତହିଁରେ ପାରିବ ତମେ କରି ତା'ର ପୂଜା ଉପଚାର ।

---

# ଅମୃତ ଧାରା

ମୁଁ ଯେବେ ବୁଲିପାଏ, ଏ ରାଜପଥ ପରେ
ଏ ବଣ ଏ ପାହାଡ଼ ଚଲିକା ତଡ଼େ ତଡ଼େ
ମୋହର ମନେ ହୁଏ,
କିଏ ସେ ମତେ ଛୁଏଁ,
ଅସୀମ ସେନେହର ପରଶ ବୋଳି ଦେଇ,
ସାହସ ହୁଏ ନାହିଁ କହିବାପାଇଁ ଲବେ
ମୋହର ନାହିଁ କେହି, ମୋହର ନାହିଁ କେହି !

ମୁକ୍ତ ହୋଇଯାଏ କି ମହା-ଜୀବନରେ !
ମତେ କି ଭଲ ଲାଗେ ଏ ମହା ଭୁବନରେ
ବାହାରେ ମୋ ଭିତରୁ କାଢ଼ି ମୁଁ ଅମୃତ
ଏ ପଥେ ପଥେ ଖାଲି ଯିବି ମୁଁ ଦେଇ ଦେଇ
ଉଚ୍ଛୁଳି ଉଠିବି ମୁଁ, ସବୁରି ଜୀବନକୁ
ବକ୍ଷେ ଭିଡ଼ି ନେଇ ! ବକ୍ଷେ ଭିଡ଼ି ନେଇ !

ଜନ୍ମ ଲଭି ଏଇ ଭୁବନ-ପଥ ପରେ
କି ମଧୁ ସମ୍ପଦ ମୁଁ ଅନୁଭବ କରେ !
ଏ ସବୁ ସମ୍ପଦ ଛାଡ଼ି ମୁଁ ଆର ପାରେ—
ଯିବାକୁ ଇଚ୍ଛା ତ ହୁଏନା ମୋର ବାରେ
ଅସୀମ ସୃଷ୍ଟି ଏ ମୋହର ଆପଣାର
କହି ମୁଁ ଉଠେ ମୋର ଅଶ୍ରୁ ଧାରେ ଧାରେ !

ଜୀବନ ଯେତେ ତହିଁ ଯେଉଁଠି ଥାଅ ରହି,
ଆସ ! ମୋ ବୁକୁତଳେ ଆଜ ମୁଁ ନେବ ବହି,
ଅନ୍ନହୀନ କେଉଁ କୁଟୀରେ ଥାଅ ତମେ
ବରଣ କରନେବ ଅସୀମ ବନ୍ଧନେ:
ବିରାଟ ବିଶ୍ୱର ସକଳ ଧୂଳି କଣା
ମୋହର ପ୍ରିୟତମ ମୋ କାନେ ଯାଅ ଗାଇ
ପ୍ରାଣର କଥା କହି !
ଆସ ମୋ ବୁକୁତଳେ ଆଜ ମୁଁ ନେବ ବହି !

ନିଜକୁ ନିଜେ ମୁହିଁ ପ୍ରଶ୍ନ ପଚାରଇଁ
ମୁଁ କିଏ ? କିଏ ମୁହିଁ ?
ଆସଇ ଆପେ ଆପେ ଗୋଟିଏ ଉତ୍ତର
ଗୋଟିଏ ଅମୃତଧାର ମୁଁ ବିଶ୍ୱରେ
ସବୁର ଭିତର ! ସବୁର ଭିତର !!

ଦାରୁଣ ଅପମାନେ ମଉଳି ଯିବନାଇଁ,
ଅସୀମ ଅନାଗ୍ରରେ ଚଢ଼ିବ ନାଇଁ ଲଇଁ,
ମୁଁ ନିତ ଜାଗ୍ରତ, ମୁଁ ନିତ ଉତ୍‌ଥିତ
ତୁମରିପାଇଁ ଗାଇ ବିଶାଳ ସୃଷ୍ଟିରେ;
ଯେତେ ଯା' ଦେଖୁଅଛି
ମୋହର ତୁମେ ସବୁ
ତୁମଠି ହୋଇଯିବ ମୁଁ ଖାଲି ଦୃଷ୍ଟିରେ !

ମରଣ ମୋର ନାଇଁ, ଜୀବନ ଜୀବନ ମୁଁ
ତୁମଠି ଯେବେ ମୁହିଁ ଉଠିବ ପ୍ରତିଫଳି,
ପୁଲକ ଯିବ ମୋର ସକଳ ଦେହ ମନ
ସେ ଲାଗି ଆସିଛି ମୁଁ ଜୀବନ ରୂପ ଧରି !

ଡାକ ବା ନାଇଁ ଡାକ ଯିବ ମୁଁ ତୁମ ପାଶ
ଦେଖ ମୁଁ ଦେବି ଖାଲି ହୃଦୟଭରା ହାସ;
ତୁମରି ଲୁହ ଧାରେ ଡାଳି ମୋ ଲୁହଧାର
କରିବି ମଧୁମୟ ମୋହର ସଂସାର ।
ମୋହର ହୋଇ ଯେବେ କଷ୍ଟ ହେ କଷ୍ଟ ଯାଏ
ତୁମେ ହେ ରହିଅଛ ଏ ଚଉଦଗ ଭରି ,
ତୁମରି ପାଇଁ ମୁହିଁ ଆସିଚ
ଏଇ ମୋର ଜୀବନରୂପ ଧରି !!

---

## ପ୍ରତୀକ୍ଷା

ସବୁ ତାହା ଲାଗି ଦେଇଛି ପଛକୁ ପକାଇ,
ରହିଚ ମୁଁ ତା'ରେ ଦିନ ରାତି ଖାଲି ଚାହାଇ;
ଭୁଲିଚ କେତେ ମୁଁ ଦୁଃଖ ଦହନ
ସବୁ କଥା କହି ପାରୁନି ପାରୁନି
ଚୁକିଗଲା ସିଏ ସେ ଦିନ କି ମଧୁ ଚଖାଇ
ସବୁ ତାହା ଲାଗି ଦେଇଛି ପଛକୁ ପକାଇ ।

ଏ ଜୀବନ ପଥେ କେତେ ଯେ ବକ୍ର ପଡ଼ୁନି
ଅଭିମାନ ହୋଇ କେତେ ରୂପେ ମୁହିଁ ସହୁନି !
ମନ କଥା ମୋର ରହୁଚି ମନରେ
ନାଚୁଚି ସେ ଖାଲି ସକଳ କ୍ଷଣରେ
ତା'ରି ଲାଗି କେତେ ଅଛାଳି ମୁହିଁ ଗଢ଼ୁନି ?
ଏ ଜୀବନ ପଥେ କେତେ ବକ୍ର ପଡ଼ୁନି ?

କେବେ ସେ ଆସିବ ବୁଝିବ ପ୍ରାଣର ଦହନ
କେବେ ସେ ଆସିବ, ମୁହିଁ ଖୋଲି ମୋହର କହିନି !
ମୋର ଅନ୍ତର ପ୍ରତି ରେଣୁ ତଳେ
ପୁଷ୍ପ ଫୁଟାଇ ଯିବ କୁତୂହଳେ
ନୀରବେ ଗୋପନେ ସେ ଲାଗି କେତେ ମୁଁ ଗୁହିଁନି ।
କେବେ ସେ ଆସିବ ? ବୁଝିବ ପ୍ରାଣର ଦହନ !

କିଏ କେତେ ରୂପେ ଧରା ତଳେ ଦିନ କାଟଇ
କାହା ଓଠେ କେତେ ଅମୃତ ହାସ ଫୁଟଇ !
ଦୂରେ ଦୂରେ ତାରି ନୟନ ଯୁଗଳ
ମୁଁ ଖାଲି ରହିଛି ଚାହିଁ ଅବିରଳ,
ବେଳେ ବେଳେ ବ୍ୟଥା ଘନୀଭୂତ ହେଲେ,
ବୁକୁତଳ ମୋର ଫାଟଇ,
କିଏ କେତେରୂପେ ଧରାତଳେ ଦିନ କାଟଇ !

ସବୁ ଯାତନାର ଭିତରେ ଆସୁଛି ତା' ମୋହନ ଛଳ ଡାକ କି ?
ମୁଁ ଯେବେ କରିଛି ଏତେ ଆପଣାର ଯିବ ସିଏ ପର କରି କି ?
ମୋ ଲୁହର ପ୍ରତି ବିନ୍ଦୁ ଭିତରେ
ମୁଁ ତା'ରେ ଲୋଡ଼ଇ କି ଆକୁଳଭରେ !
ମୋ ଲୁହ ତାହାରେ ନିକଟୁ ନିକଟ —
କରି ନିତି ନାଇଁ ଧରି କି ?
ସବୁ ଯାତନାର ଭିତରେ ଆସୁଛି
ତା' ମୋହନ-ଛଳ ଡାକ କି ?

ଫୁଟିବାକୁ ଯିଏ ଚାହିଁ ରହିଅଛି ନିଶ୍ଚୟ ସେ ଗୋ ଫୁଟିବ,
ଗନ୍ଧ ତାହାର ଉନ୍ମନ ହୋଇ ଦିଗ୍‌ବିଦିଗେ ଯେ ଛୁଟିବ;
ସୀମାହୀନ ଶତ ବ୍ୟର୍ଥତା ପରେ,
ସାର୍ଥକତାର ତୁଙ୍ଗ ଶିଖରେ,
ଲୁଚି ଯାଇଛି ଯା', ପୁଣି ପଲ୍ଲବ ଉଠିବ,
ଫୁଟିବାକୁ ଯିଏ ଚାହିଁ ରହିଅଛି
ନିଶ୍ଚୟ ସେ ଗୋ ଫୁଟିବ !

---

# ମୋର ମନର ମଣିଷ କାହିଁ

ମୋର ମନର ମଣିଷ କାହିଁ ?
ମୋର ବ୍ୟଥା ବୁଝିବାର ପାଇଁ;
ମୁଁ ତ ଝୁରି ଝୁରି ଖାଲି ମରେ
ତାକୁ ଖୋଜି ଖୋଜି ଅବିରଳେ ।
ତାରେ ପାଏନା ପାଏନା କାହିଁ,
ସେ କି ସାରା ଧରଣୀରେ ନାହିଁ !

ସେ କି ବୁଝିବନି ମୋର ବ୍ୟଥା ?
ସେ କି କହିବନି ମୋରେ କଥା ?
ସେ କି ସେନେହ ଆଦର କରି
ବୁକେ ରଖିବନି ତୋଳି ଧରି ?
ସେ କି ଯାଇଅଛି ଦୂରେ କାହିଁ ?
ଆଉ ନିମିଷେ ଫେରିବ ନାହିଁ ?

ତା'ର ଅନ୍ତର ବୀଣା ତା'ର
ଆଉ ବାଜିବନି ବାର ବାର ?
ସେ କି ଯାଇଛି ଯାଇଛି ମରି
କରି ଶଠ, ଜାଲି ଜୁଆଚୋର ?
ମୋର ମନର ମଣିଷ କାହିଁ ?
ମୁଁ ତ ଝୁରି ମରେ ତାହାପାଇଁ;

ମୋର ବୁକୁରେ ବେଦନା ଜାଗେ
ମୁଁ ତ ତାରି ଓଠହାସ ମାଗେ
ମୁଁ ଗୋ ତାହାରି ବୁକୁରେ ଢଳି
ବାନ୍ଧି ନେବ ମୋ ଜୀବନତରୀ ।
ମୁଁ ଗୋ ତାହାରେ ହିଁ ପାଏ ଭଲ
ଢାଳି ସକଳ ସେନେହ ମୋର !

ଉଠେ ବାନ୍ଧ ମୋ ବୁକୁତଳ
ବହେ ଲୁହ ଝର ଝର ଝର !
ଗୁହେଁ ଗୃହଆଡ଼ ବାର ବାର
ଫୁଟେ ବୁକୁତଳୁ ହାହାକାର !
ଯାହାର ନିଜର ମୁଁ ଏତେ କଲି
ସେ ଗୋ ଯାଇଛି ସୁଦୂରେ ଚଳି !

ଖାଲି ଖାଲି ଲାଗେ ମତେ ଧରା
ସେ କି ହେଲା ହଳାହଳଭରା ?
ତାର ଗମ୍ଭୀର ମୁଖ ତଳେ
ଶତ କୂଟ ମାୟାଜାଲ ଚଳେ !
ତା’ର ସୁନ୍ଦର ଦେବହ୍ୱଯ୍ୟା
ହେଲା ସର୍ବଗ୍ରାସୀ ନିଆଁ ।

ମୁଁ ଗୋ ଗୁହୁଁଲେ ପାରୁନି ଗୁହିଁ
ମୋର ମନର ମଣିଷ ନାଇଁ !
ମୁଁ ଗୋ ଖୋଜେ ତାକୁ ଅବରଳେ
ଏଇ ବିରାଟ ଆକାଶ ତଳେ;
ମୁଁ ଗୋ କାହାକୁ କହିବି କହ,
ମୋର ବେଦନା ଯେ ଦୁର୍ବହ !

ମୋର ମଣିଷ ଯେ ଖରସାଥି
ତାଠୁ ଛିନ୍ନ ମୁଁ ହେଲି ଆଜି !
ମତେ ଫିଙ୍ଗି ନିଠୁର କରେ
ସେ ଗୋ ଆପଣାର ବାଟେ ଚଳେ
ତାରେ ଯେତେ ଆପଣାର କରି
ମୁହିଁ ଡାକିଲି ସେନେହ ଭରି—

ସେ ତ ଆଉ ନୟନରେ ବାରେ
ମୋରେ ଗୁହିଁଲାନି ସଂସାରରେ !
ସେ’ତ ଗଲା ଗଲା ଦୂରେ ଗଲା
ମୋରେ କରି ଦେଇ ଦରମଲା;
ସେ’ତ ବୁଝିଲାନି ସତେ ମତେ
ତାରେ ଖୁଦ୍ଦେଁ ମୁଁ କି ଭଳି ସତେ !

ତା'ର ଅନ୍ତର ପ୍ରୀତରେଣୁ—
ଛଳେ ବାଜେ ମୋ ସେନେହ ବେଣୁ ;
ମତେ କରିଗଲ ପଦାଘାତ
ଦେଖି— ଲଜ୍ଜା ମୋ ଲୋତକପାତ !
ମୁଁ ଗୋ ହୋଇ କାଳିଜତର
ତାରେ ପଶୁରେ ବହୁତ ଥର—

"ମୁଁ ତ କରିନି ତୋହର କ୍ଷତ ।
କିଆଁ ମୋଠାରେ କଠୁର ମତ ?
ଦେଖ ଚିରି ମୋର ବୁକୁତଳ,
ମୁଁ ଯେ ଚିରଦିନ ମଣିଷର !"
ଯେବେ ମୋ ଓଠୁ ଏ କଥା ଫୁଟେ
ସେ ଗୋ ହସି ଉଠେ ହସି ଉଠେ !!

କହେ ବାଣୀ ବଦ୍ରୂପ ବୋଲା
ତାଳ ଘୃଣାରେ ନୟନ ଡୋଳା !
ମତେ ସାତ ପର କରି ପିଏ
ଦୂରେ ଦୂରେ ଯେ ଆଡ଼େଇ ଦିଏ ;
ମୁଁ ତ ତାହାର ନୁହଇ କିଛି
ମୋରେ କଥା କହେ କରି ଛି ଛି ?

ମୁଁ ଗୋ ଭୁଲି ହୋଇ ଯାଏ ଚଳ
ମୋର ଯାଏ ଲୁହଧାର ଗଡ଼ି !
ମୁଁ ଗୋ ଖୋଜୁଥିବ କାଳ କାଳ
ତାଳ ନୟନୁ ଲୋତକଧାର,
ମୋର ମନର ମଣିଷ କାହିଁ ?
ସେ କ ଲେଉଟି ଆସିବ ନାହିଁ ?

---

# ରୁହିଁ ରହ

ତୁମେ ଆସୁଥିବ, ପ୍ରତି ନିତି ଏଇ ଥାନେ,
ତୁମରେ ମୁଁ ଆଉ ଦେଖି ତ ପାରିବି ନାହିଁ ।
ତୁମେ ଖେଳୁଥିବ ହସି ଖେଳ ସବୁଦିନେ
ରହିଥିବ ମୁଁ ଗୋ ସୁଦୂର ରାଇଜେ କାହିଁ ।

ଏ ମୋ ଜୀବନର ଗଭୀର ମରମ ତଳେ
କଇଁଫୁଲ ପରି ତୁମେ ରହିଥିବ ଫୁଟି,
ଯେ ଶିଖା ଟିକକ ଅନୁଭବ ବୁକୁତଳେ
କେତେ ଦୂରେ କାହିଁ ଦିନ ନଉଥିବ କାଟି ।

ଜୀବନେ ବୋହିବ କେତେ ଯେ ଝଞ୍ଜା ଝଡ଼,
କେବେ ବା ବୋହିବ ମଧୁ ମଉସୁମୀ ବାଆ,
ସକଳ ଭିତରେ ତୁମେ ଲିଭିଯିବ ନାହିଁ
ରହିଥିବ ହୋଇ ଅମୃତମୟ ଗାହା !

ସୀମାହୀନ କେତେ ଅମୃତମୟ ସ୍ମୃତି
(ମତେ) ଧରି ରଖିଅଛୁ ବରାଠୁ ବରାଠ କରି
ପଡ଼ିଗଲେ କେଉଁ ଅତଳ ବିତଳେ ମୁହିଁ
ଆଣିବ ଉଠାଇ ସୋହାଗେ ମୋ ହାତ ଧରି !

ତୁମେ ଆସୁଥିବ, ପ୍ରତି ନୀତି ଏଇ ଥାନେ
ତୁମରେ ଆଉ ମୁଁ ଦେଖି ତ ପାରିବି ନାହିଁ
ତୁମେ ଚାଲିଥିବ ହସି ଖେଳି ସବୁଦିନେ ;
ଭଲ କରି ମୋରେ ରହ ଆଜି ଟିକେ ଚାହିଁ ।

ଯା ଦେବାର ମୋରେ ସବୁ ଆଜି ଦେଇ ଦିଅ
ଅବଶେଷ କିଛି ନ ରଖି ତୁମରି ପାଶେ,
ଚାଲି ଯିବାବେଳେ ଏତିକି ମୋହର ଅଳି
ମୋରେ ଚାହିଁ ରହ ଓଠରେ ମୋହନ ହାସେ !

---

## ଜୀବନ ସାରା ରହିଚି ଚାହିଁ

ଦେଖିଚି ତା'ରେ ବୁଝିଛି ତା'ରେ ଡାକିଚି କେତେ ଆକୁଳ ମନେ
କେତେ ଯେ ଦିବା ଯାମିନୀ ମୋର ବିତିଚି ତା'ର ଅନ୍ୱେଷଣେ ।
ଅଶ୍ରୁ କେତେ ଝରିଚି ମୋର ତାହାରି ପାଇଁ ନ ପାରେ କଳି
ଡାକିଛି ତାରେ ପାଗଳପରି ବକ୍ଷଭରା ସେନେହ ଭରି ।
ନିଶୀଥ ନଭେ ଚାହିଁଚି କେତେ ଚାହିଁଚି ଶ୍ୟାମ କେଦାରମାଳେ
ଜ୍ୟୋତ୍ସ୍ନାରାତେ ବୁଲିଚି କେତେ ନୟନଭରା ଅଶ୍ରୁଧାରେ ।

ମୋ ବୁକୁତଳେ ଜାଗିଛ ସେହୁ ମଳୟସମ ମୁଗ୍‌ଧ କର
ଯୁଆଡ଼େ ଯାଏ, ଯୁଆଡ଼େ ଗୃହେଁ, ଆକୁଳେ ଡାକେ ମୁଁ କେତେ ଭଳ ।
ଜାଣେନା ମୁହିଁ ମୋ ବାଣୀ ସେହୁ ନୀରବ ଧ୍ୟାନେ ଶୁଣେ କି ନାହିଁ ?
ଜାଣେନା ସେହୁ ଆକୁଳ କେବେ ହୁଏ କି ନାହିଁ ମୋହର ପାଇଁ ;
ଜାଣେନା ମୁହିଁ ବୁଝେ କି ନାହିଁ ମୋହର ଏ ଯେ ବକ୍ଷ-ବ୍ୟଥା
ଜାଣେନା ମୁହିଁ ; ମୋରେ ସେ କେବେ ଦେଖାଏ ଅବା ନିର୍ମମତା ।

ତା' ଓଠୁ କିବା ମାଧୁରୀ ଫୁଟେ, ନୟନୁ ଛୁଟେ ମୁଗ୍‌ଧ ଜ୍ୟୋତି
ସୃଷ୍ଟି ପରେ ସକଳ ଶୋଭା ଉତ୍ସ ତା'ର ଜୀବନ ଗୋଟି ।
ହସିଲେ ସେହୁ ହସଇ ଅବା ଆକାଶ ଗ୍ରହ ଚନ୍ଦ୍ର ତାରା
ତା' ବୁକୁତଳ ବୁଝଇ ଅବା ନିଃସ୍ୱ ପ୍ରାଣ ବକ୍ଷଭରା ।
ଦେଖିଛି ତାରେ, ବୁଝିଛି ତାରେ ଡାକିଛି କେତେ ଆକୁଳ-ମନେ
କେତେ ଯେ ହବା ଯାମିନୀ ମୋର ବିତିଛି ତା'ର ଅନ୍ୱେଷଣେ ।

ଜୀବନସାରା ରହିଛି ଗୃହିଁ ତାହାର ମଧୁ ସ୍ପର୍ଶପାଇଁ
କେତେ ଯେ ବର୍ଷ କେତେ ଯେ ମାସ ନୀରବେ ମୋର ବିତଇ ନାହିଁ ?
ଲକ୍ଷ ବାଧା ଆସିବ ମୋର ଜୀବନ ହେବ ଦୁଃଖମୟ
ଦୁନିଆଁରେ ପାଇବି ମୁହିଁ କିନ୍ତୁ କେତେ ଯେ ପରାଜୟ ।
ନିଠୁର କରି ଧରଣୀ ମତେ ଚରଣତଳେ ଆଡ଼େଇ ଦବ
ତହିଁରେ ମୋର ନାହିଁରେ ନାହିଁ ଟିକିଏ ହେଲେ ଅଗୌରବ ।

ଯେ' ଦିନ ସେହୁ ଅଧର ଫେଇ କହିବ ମତେ ମଧୁର ବାଣୀ
ଯେ ଦିନ ସେହୁ ବକ୍ଷ ଚିରି ମୋ ପାଇଁ ଦେବ ସେନେହ ଆଣି ।
ଯେ ଦିନ ସେହୁ ଗୃହିଁବ ମତେ ଅମୃତର ଗୃହାଣୀ ତାଳ
ଯେ'ଦିନ ସେହୁ ବୁଝିବ ମୋର ବକ୍ଷବ୍ୟଥା ନିଜର ଭଳ ।
ସେ ଦିନ ମୋର ବକ୍ଷତଳେ ବହିବ କିବା ଫଲ୍‌ଗୁ ଧାରା
ସେ ଦିନପାଇଁ ରହିଛି ଗୃହିଁ ନୀରବେ ମୋର ଚକ୍ଷୁତାରା ।

ଅମୃତର ଜୀବନେ ତା'ର ପଡ଼ିବ ମୁହିଁ ସରାଗ ତଳ
ଅନନ୍ତର ବିପୁଳ ଶୋଭା ବକ୍ଷେ ମୋର ଉଠିବ ଭରି ।
ତାହାରି ଆଶେ ଗୃଲିଛି ମୁହିଁ ସୁଦୂର ପଥେ ଲକ୍ଷ୍ୟ ରଖି
ସେ ଚିର ଯଉବନା ଯେ ମୋର କାମ୍ୟ—ମୋର ଜୀବନ ସଖୀ ।
ଜୀବନସାରା ରହିଛି ଗୃହିଁ, ତାହାର ମଧୁ ସ୍ପର୍ଶ ପାଇଁ
କେତେ ଯେ ବର୍ଷ କେତେ ଯେ ମାସ ତାହାର ଲଗି ବିତଇ ନାହିଁ ।

---

# ବିରାଟ ଧ୍ୟାନେ

ମଉଳି ପଡ଼ିଚି ଝାଉଁଳି ପଡ଼ିଚି ମୁହିଁ
ସିଞ୍ଚି ଦିଅ ହେ ମରମୁ ନିଗାଡ଼ି ତବ,
ଟିକିଏ ମମତା, ଟିକିଏ ସେନେହ ଖାଲି
ସେ ମୋ ଜୀବନର ଶ୍ରେଷ୍ଠ ଯେ ଗଉରବ ।

ତୁମେ ନ ଚାହିଁଲେ ତୁମେ ନାଇଁ ପଚାରିଲେ
ତୁମେ ନ ଆସିଲେ ନିଃସ୍ୱ ଏ ଜନ ପାଶେ,
କେଉଁଆଡ଼େ ଯିବ ? ତୁମରି ଭରସା କରି
ଏ ପଥପ୍ରାନ୍ତେ ଚିରଦିନ ଥିବ ପଡ଼ି ।

ମହା-ଅନ୍ଧାରେ ଟିକିଏ ଆଲୋକ ଦିଅ !
ପ୍ରାଣମୟ ମତେ କରିବାକୁ ଧରଣୀରେ;
ତୁମେ ତ ପାରିବ ପାରି,
ତୁମରି ଟିକିକ କାନ୍ତ ପରଶ ଦେଲେ,
ସିନ୍ଧୁବେଳାରେ ହସି ମୁଁ ପାରିବ ଚାଲି !

ସବୁ କଣ୍ଟକ ଗୋଟି ଗୋଟି କରି ତମେ
ଆହତ ଜନର ଏ ଦେହ ମନରୁ
ପାରିବ ବାହାର କରି,
ଉଚ୍ଛ୍ୱାସ ମୋରେ ଲାଗିବ ଟିକିଏ ପରା !
ଚାଲିବ ପୁଣି ଯେ ଊର୍ମି ଉପରେ ନାଚି
ଏ ମୋର ଭଙ୍ଗା ତରୀ !

ଫେରିଯିବ ?
ନା, ତୁମ ପାଖୁ ମୁହିଁ ଫେରି ତ ପାରିବ ନାହିଁ !
ଫେରିଲେ ଫେରିବ, ମୁଁ ତୁମରି ପାଶେ
ଏତେ ଆଶା ଏତେ ଅଧିକାର ମୋର
ରହିଚି ତୁମରି ପରେ ।
ବଞ୍ଚିତ କେବେ ହୋଇ ମୁଁ ପାରିବି ନାଇଁ !
ଯେତେ ବଞ୍ଚିତ କଲେ ।

ମୁକ୍ତ କର ଗୋ ଉତ୍ସ ମୋ ଲାଗି ତମେ
ଯେଉଁ ଉତ୍ସର ସୀମାହୀନ ରସ ପାଇ,
ଆକାଶ ଅବନୀ ବିଚିତ୍ର ରୂପ ଧରେ
ସେଇ ଉତ୍ସର ମୁଁ କି ନୁହେଁ ଅଧିକାରୀ ?
ଭିନ୍ନ ମୁହିଁ କି ? ସୃଷ୍ଟିରୁ ଏକ ବାରେ ?

କୋଟିଏ ଭିତରେ ଏ ଗୋଟିକୁ ତୁମେ
ଫୁଟାଇ ଫୁଟାଇ ନିଅ !
ଏ ଭିତରୁ ଯେଉଁ ସଉରଭଟିକ—
ମରିବେ ଉଠିବ ଫୁଟି,
ଚାରିଆଡ଼େ ଭରି ଦିଅ !

ଏଇ ଆନନ୍ଦ, ଏଇ ଅମୃତ —
ଟିକିକ ପାଇଁ ମୋ ଅଳି,
ଚାହିଁ ମୁଁ ରହିଚି ବିରାଟ ଧିଆନେ,
ଫେରି ମୁଁ ପାରିବି ନାହିଁ,
ଯେତେ ଦେଲେ ପାଦେ ଦଳି ।

---

## କବି

ଗାଉ ଥାଅ ଗୀତ କବି ! ଗାଉଥାଅ ତମେ
ସରଳ ସୋହାଗେ ଶୋହି, ଏ ଧରଣୀ ପରେ,
ଯିଏ ଯାହା କହିବାର କହୁଥାନ୍ତୁ ପଛେ
କି ଲାଭ ସେ ସବୁ ଶୁଣି ଶ୍ରବଣ ଯୁଗଳେ !

ତୁମ ହସେ ହସି ଉଠୁ ନିଖିଳ ଧରଣୀ,
ତୁମ ଦୁଃଖେ ଲୁହସିକ୍ତ ହେଉ କୋଟି ଆଖି,
ଗାଉଥାଅ ଗୀତ କବି ଗାଉଥାଅ ତମେ
ନୟନେ ନୟନେ କବା ସ୍ୱପ୍ନାଞ୍ଜନ ମାଖି ।

ଜୀବନର ଯାତ୍ରାପଥେ ବୁଣିଯାଅ କବ !
ଅଗଣିତ କୁସୁମର ମଧୁ ଗନ୍ଧ ତମେ
ହସି ଉଠୁ ନାଚି ଉଠୁ ମହାବସୁନ୍ଧରା,
ସେଇ ତବ ଉପହାର ନିଖିଳ ଭୁବନେ ।

ତୁମରେ ନ ଲୋଡ଼ୁ କେହି ତୁମେ କିନ୍ତୁ କବ !
ସକଳରେ ଲୋଡ଼ୁଥାଅ ଆପଣାର କରି,
ତୁମରେ ନ ଦେଉ କେହି ମଧୁ ଗଉରବ
ତୁମେ କିନ୍ତୁ ଦେଇଯାଅ ଦିନ ଦିନ ଧରି !

ଗାଉଥାଅ ଗୀତ କବ ! ଗାଉଥାଅ ତମେ,
ଜୀବନର ଶେଷ ଯାମେ ଗୀତ ଗାଇ ଗାଇ
ଶୋଇପଡ଼ ଧରଣୀରେ ଅନନ୍ତ ଶୟନେ,
ଶେଷଥରପାଇଁ ଟିକେ ଚତୁର୍ଦ୍ଦିଗେ ଚାହିଁ !

ଆକାଶ ପ୍ରାନ୍ତର ବନ ସରିତ ସାଗର—
ଅଗଣନ ଜୀବନର ବିମୋହନ ଛବି,
ତୁମରି ଭିତରେ, ତୁମେ ସେମାନଙ୍କ ମେଳେ
ଦିନୁଦିନ ଯାଉଥିବ, ସୋହାଗେ ପଲ୍ଲବି ।

---

## କାହିଁ ?

ତୁମେ ନିଜ୍ୱ ଖିବ୍ ଆରାମରେ ରଖିଚ
ଏ ଆରାମ କେତେଦିନ ପାଇ ?
ଯେଉଁ ଆରାମ ପାଇଲେ,
ତୁମ ଗୃହ ପାଖର ପୃଥିବୀ
ଆରାମ ପାଇବ
ସେ ଆରାମ ତମର କାହିଁ ?

ଯେଉଁ ହସ ଟିକକ ହସିଲେ
ତୁମ ଗୃହପାଖର ଶତସହସ୍ର ଓଠ
ହସି ଉଠିବ,
ତୁମର ସେ ହସଟିକକ କାହିଁ ?

ଯେଉଁ ଲୁହ ଟିକକ
ତୁମ ଆଖିରୁ ବୋହିଲେ
ଶତ ସହସ୍ର ଆଖି
ସୀମାହୀନ ଲୁହରେ ଆର୍ଦ୍ର ହୋଇଯିବ
ସେ ଲୁହ ଟିକକ ତୁମର କାହିଁ ?

ଯେଉଁ ବକ୍ଷ ଫୁଲି ଉଠିଲେ
ଗୌରବର ଗରିମାରେ
ପୃଥିବୀର ଅନନ୍ତ ବକ୍ଷ ଫୁଲି ଉଠିବ,
ନାଚି ଉଠିବ,
ମୋହନ ଉନ୍ମାଦନାରେ,
ସେ ଗୌରବ ତୁମର କାହିଁ ?

---

## ଗରିବ କବିର ଜନ୍ମଦିନ

ଗରିବ କବିର ଜନ୍ମଦିନ ! ଆସିଛ ତୁମେ ହେ ଆସିଛ ତୁମେ
ବକ୍ଷବେଦନା ବୁଝିବ କି ହେ ? ଆପଣାର କରି ଲୋଡ଼ିବ କ୍ଷଣେ ?
କେତେ ଯେ ଝଞ୍ଜା ଜୀବନ ପରେ ଗୋଟି ଗୋଟି ହୋଇ ଯାଇଛି ବହି
ସ୍ମୃତି ତା'ର ଆଜ ଚଡ଼ୁଛି ମନେ ଧ୍ୟ ହୋଇ ମୁଁ ଯେ ପାରୁନି ରହି ।

ଜୀବନର କେତେ ଲକ୍ଷ୍ୟ ମୋର ବୁଦ୍‌ବୁଦ ପରି ମିଳାଇ ଗଲା
କେତେ ଯେ ଆଶାର କନକ ତରୀ ଚୂରମାର ହେଲା ନ ପାଇ ବେଳା;
କେତେ ଉଚ୍ଛ୍ୱାସ ଯାଇଛି ମରି ପାଇନି ପାଇନି ପ୍ରକାଶ ପଥ
କେତେ ସୌରଭ ପାରିନି ଫୁଟି କେଉଁ ଅନ୍ଧାରେ ହୋଇଛି ହତ ।

କେତେ ଆଲୋକର ରଶ୍ମିରେଖା କେଉଁ ଗହ୍ୱର ଅନ୍ଧକାରେ
ଲୁପ୍ତି ଭଜୁଛି ଫୁଟିବ ନାହିଁ ଏ ଧରଣୀ ପରେ ନିମେଷେ ବାରେ !
କେତେ ଅବଶୋଷ ବକ୍ଷତଟେ ଚିରଦିନ ପାଇଁ କାଟିଛି ଦାଗ
ଅପୂର୍ଣ୍ଣ ହୋଇ ରହିଲା ପରା ଜୀବନର କେତେ ଯଜ୍ଞଯାଗ ।

ଭୁଲିଛି ଆଜ ଏ ଭଗ୍ନତରୀ କି ଲାଗି ଭୁଲିଛି କି ଆଶା ବହି ?
ଅନ୍ତରତଳ ବେଦନାଗାଥା କୂଳେ କୂଳେ ପ୍ରତି ଶ୍ରବଣେ କହି;
ଉପରେ ଆକାଶ ଦେଖ କି ତୁମେ ଚନ୍ଦ୍ର ତାରାରେ ନୟନ ଟେକି
ଜନ୍ମ ଧରଣୀ ବୁଝ କି ତୁମେ ? ସାନ୍ତ୍ୱନା ବାଣୀ ଦିଅ କି ଲେଖି ।

ବନପ୍ରାନ୍ତର କହ କି କଥା ଦେଖାଇ କବରେ ସନ୍ଧାନୁଭୂତି
ବଜ୍ର ବଜ୍ରକି ଦେଇ କି ଡାକେ ? ମହା ଅନ୍ଧାରେ ଆଶାର ଦ୍ୟୁତି ?
କଲତାନ ତୋଳି ତଟିନୀ ରାଣୀ ଚଳି ସଦା ବନେ ଯାଉଚ ବହି
ପ୍ରତି କଲତାନ ଭିତରେ ତବ ମୋପାଇଁ ବାର୍ତ୍ତା ଅଛି କି କହ ?

ସ୍ନିଗ୍ଧନୀଳ ହେ ! କହ ତ କହ ନାଚିଗଲାବେଳେ ପୁଚ୍ଛ ମେଲି
ପ୍ରତି ଚନ୍ଦ୍ରିକା ଭିତରୁ ତବ ମୋପାଇଁ ଦୀପ୍ତି ଆନନ୍ଦ କି ଖେଳି ?
ଦୂର ପର୍ବତ ବାହୁ ଡାକେ ସଦା ଧରଣୀର ଗର୍ବଭର
ମୋ କାନେ ଭୁଲେ କି ମନ୍ତ୍ର ଦିଅ ଧୈର୍ଯ୍ୟ ଧରାରେ ପାରିବ ଧରି ।

ଉଠିବ ଉଠିବ ପଲ୍ଲବ ମୁଁ ପିବିନି ପିବିନି ପିବିନି ମରି,
କାନେ କାନେ ମୋର କହୁଛି କିଏ ବନ୍ଧୁ କି ଅବା ପୀୟୂଷ ଭରି !
ମୋ ଭିତରେ କିଏ ଜୀବନ ଆଣେ ଘନ ଅନ୍ଧାର ମାରିବ କାଟି
ମୋରେ ଆଜି କିଏ ଦେଖାଏ ବାଟ, ନିର୍ମଳ କରେ କଣ୍ଟା ଝାଟି ।

ଶତ ଆଲୋକର ସ୍ୱର୍ଣ୍ଣରେଣୁ ଉଡ଼ିଦିଏ ମୋର ଦୋଳଛି ବୀଣା
ମୋରେ ଆଜି କିଏ ନିଜର କରି ଡାକ ଦିଅଇ ତ' ଯେତେକ ଚିହ୍ନା ;
ସୁନ୍ଦର କରି ଧରଣୀ ପରେ ମୋହର ଆଜି କିଏ ଦେଉଛି ଗଢ଼ି
ଅଧରେ ମୋହର ଫୁଟାଏ କିଏ ପାରିଜାତକର ସ୍ୱର୍ଣ୍ଣ କଳି !

ରୁଦ୍ଧ ହୋଇ ମୁଁ ପାରୁନି ରହି ଦୂରରେ ବହୁଦୂରରେ ଯାଉଚି ଚଳି
ପ୍ରାଣର ବେଦନା ଭିତରୁ ମୋର ଅମୃତଧାରା ଝରୁଛି ଗାଳି ;
ଉଠିବ ଉଠିବି ପଲ୍ଲବ ମୁଁ ପିବିନି ପିବିନି ପିବିନି ମରି,
ମୋ ଭିତରେ କିଏ ଶକ୍ତି ଆଣେ ରକ୍ତେ ରକ୍ତେ ଚେତନା ଭରି ।

ଏଇ ଯେ ଦୁନୀର ପାନ୍ଥଶାଳା ରୁଦ୍ଧ ନୁହେ ମୁଁ ଏହାରି ତଟେ
ଅସୀମ ଭିତରୁ ଜନ୍ମ ମୋର ମିଶିବି ଅସୀମ ବକ୍ଷପଟେ ;
କେଉଁ ବିରାଟର ସ୍ପର୍ଶ ଲାଗି ଉତ୍କୁଳ ମୋର ପରାଣ ମନ
ସକଳ ଦୁଃଖ ଅଶ୍ରୁତଳେ ଶୁଣେ ମୁଁ କାହାର ବଂଶୀସ୍ୱନ ;

ବିରାଟ ସୃଷ୍ଟି ରହିଚ ଆଗେ, କେତେ ଉତ୍ଥାନ ପତନ ସହି—
ଶୁଣିବ କାହାର ଓଠର ବାଣୀ ; ଉତ୍କଣ୍ଠା କି ପରାଣେ ବହି ।
ଆସିଚ ମୋହର ଜନ୍ମଦିନ ଅଞ୍ଜନ କିବା ଦେଉଚ ବୋଳି
ଯାଉଚ ମୁଁ କିବା ଆବେଗଭରେ କା ଭୁଲେ ରଚିବି ଯେତେକ ଡୋରି ;

ସକଳ ମିଥ୍ୟା ସକଳ ଭ୍ରମ ସକଳ ଦୁଃଖ ଭିତରେ ମୁହିଁ
ସେ ଯେ ଗୋ ମୋହର ପରଶ ମଣି ଯାଉଛ ମୁଁ ତାରେ ଦେବାକୁ ଛୁଇଁ,
ଜୀବନ ମୋହର ପୂର୍ଣ୍ଣ ହେବ ଅସୀମ ଛନ୍ଦେ ଗାଇବି ଗାନ
ବିଶ୍ୱ ସକଳରନ୍ଧ୍ରେ ଆଜ ଜାଗିବି ହୋଇ ମୁଁ ସବୁରି ପ୍ରାଣ ।

---

## ପ୍ରାଣର ଅଧିକାର

ତଥାପି ଆସଇ ମାୟା,
ତଥାପି ବାସନା ଜାଗେ ଅନ୍ତରେ ଅନ୍ତରେ,
ନ ଯିବାକୁ ଛାଡ଼ି ଏଇ କୁଟୀର ଏ ଦୂର ପ୍ରବାସର ;
ଛାଡ଼ିବାର ବେଳେ,
ଲୋଚନଯୁଗଳୁ ମୋର ଦୁଇ ଟୋପା ଲୁହ ଝରି ପଡ଼େ !
ଏଥି ମୁହିଁ ଦେଖୁଥିଲି ସୂର୍ଯ୍ୟାସ୍ତର ସୁନେଲି କିରଣ,
ଏଥି ମୁହିଁ ଗବାକ୍ଷ-ଅୟନେ ଦେଖୁଥିଲି ସୀମାହୀନ ଯାତ୍ରୀଦଳ—
ହସି ଖେଳି ଚାଲିବାର ମଧୁ ଆଳାପନେ ।
ବରଷାରାତ୍ରରେ ଏଥି ଏକାକୀ ମୁଁ ପଡ଼ୁଥିଲି ଶୋଇ ।
କେତେ ସ୍ୱପ୍ନ ମନର ଗହ୍ୱରେ ମୋର ଖେଳାଇ ଖେଳାଇ !
ଏଥି ମୁହିଁ ଲେଖୁଥିଲି ମୋହନ କବିତା
କେତେ ସୁଖ ଦୁଃଖ କେତେ ଆଶା ଆକାଂକ୍ଷାର ଢେଉ
ମେଲିଇ ମେଲିଇ ! !

ଏଥି ମୁହିଁ ଫୁଟି ଫୁଟି ଆସୁଥିଲି
କୁସୁମକଳିକା ପରି ବର୍ଣ୍ଣ ଗନ୍ଧ କରି ବିକୀରଣ ;
କେତେ ବନ୍ଧୁ ପ୍ରିୟଜନ ପରଜନ ଭୁଲେ
ରଚଥିଲି ସୀମାହୀନ ମୋହନ ବନ୍ଧନ ! !
ଏଥି ମୁହିଁ ହସି ଥିଲି କାନ୍ଦି ଥିଲି,
କର୍ତ୍ତବ୍ୟର କଠୋରତାମେଳେ,
କାଟିଥିଲି କେତେ ଦିନ କେତେ ରାତି,
ଏଥି ଦିନେ କାହାକୁ ମୁଁ କରିଥିଲି ଜୀବନର ପ୍ରିୟତମ ସାଥି ! !

ଏଇ କ୍ଷୁଦ୍ର କୁଟୀରର କାନ୍ଥ ବାଡ଼ ମାଟି ଦୁବଘାସ—
ଯାହାର ଅଙ୍ଗନ,
ସକଳର ସହ ରହିଛ ମୋ ଜୀବନର ମୋହନ ବନ୍ଧନ ;
ଏ ବନ୍ଧନ କାଟି,
କେମନ୍ତେ ବୁଆଡ଼େ ଯିବ ?
କୋହ ଆସେ ବୁକୁତଳେ,
ନେତ୍ର ପ୍ରାନ୍ତେ ଅଶ୍ରୁ ଉଠେ ଘୋଟ !
ତଥାପି ଯିବାକୁ ହେବ, ତଥାପି ତ ଛାଡ଼ିବାକୁ ହେବ ଏଇଥର,
ମୋ ଅନ୍ତର ଅଧିକାର ଯା' ଉପରେ ଯେତେ ଥିଲେ ମଧ୍ୟ,
ଏ କନ୍ଥ ମୋହର ନୁହେ ଆଉ ଜଣକର !
ହେଲେ ମଧ ଏ ମୋହର ଆପଣାରୁ ବଳ, ଅତି ଆପଣାର !
ଛାଡ଼ିଲେ ଏହାକୁ ଲବେ ମୋହନ କମ୍ପନ ଜାଗେ
ମୋ ଶୋଣିତେ କମ୍ପା ବାର ବାର ?

ହେ ମୋର କୁଟୀର ! ସୁଦୂର ପ୍ରବାସବାସେ,
ତୁମେ ମୋର ପ୍ରାଣର ବନ୍ଧୁରୁ ବଳ—
ଆହୁରି ନିଜର !
ଯାଉଛି ମୁଁ, ଥାଅ ତମେ !
ମୁଁ ତୁମଠୁ ଆଜ ସିନା ରହିବ ବିଚ୍ଛିନ୍ନ ହୋଇ,
ମୋ ଅନ୍ତରେ ବନ୍ଧା ତୁମେ ଯୁଗ ଯୁଗାନ୍ତର !
ଅସୀମ ଏ ବିଶ୍ୱ ମୋର ଚତୁର୍ଦ୍ଦିଗେ ରହିଅଛି ଘେରି,
କେତେଠି ବୁଲିବ ମୁହିଁ
କେତେଠି ଗୃହିବ ସୁଖେ ଦୁଃଖେ ହସି ଖେଳି,
କେତେ କାହାଠାରୁ ପାଇବ ମୁଁ
ଆଦର ସୋହାଗ ମଧୁ ସମ୍ବର୍ଦ୍ଧନା ;
ଥିଲେ ଏ ଜୀବନଟିକ
କେତେ ଶିରୀ ବଇଭବ ଆସିବାର ଅଛି ସମ୍ଭାବନା !

ଏ ସମସ୍ତ ଭିତରେ
ସବୁ ଆତ୍ମୀୟଠୁ ବଳି ପରମ ଆତ୍ମୀୟ ଭଳି
ବନ୍ଧିଥିବ ତୁମେ ମୋର ଏଇ ବୁକୁତଳେ,
ପ୍ରାଣର ଅଧିକାର, ମମତାର ଅଧିକାର,
କି ବିରାଟ ! କି ସୁନ୍ଦର ! !
ଆଜି ତା' ପାଖେ,
କ୍ଷମତାର ଅଧିକାର
କି ତୁଚ୍ଛ ! କି ନଗଣ୍ୟ ! କି ପ୍ରାଣହୀନ ! !

---

## ନାବିକ

ଜୀବନପଥପରେ ଚାଲିଛି ଯେତେ ଦୂର ଏକାକୀ ନଉକାଟି ବାହି
ଚାଲିହେ ଚାଲି ; ତୁମେ ଆହୁରି ଚାଲିଯାଅ ଜୀବନ ଚାଲିବାର ପାଇଁ
ଜୀବନେ ଦିନେ ତମେ ଲାଗିବ ସେଇଭଳି ଯା'ଲାଗି ଏଇ ଅଭିଯାନ
ଭାଙ୍ଗି ପଡ଼ ନାହିଁ ଆଗରେ ଦେଖି କୋଟି ଭୀଷଣ ସଙ୍କଟ ଥାନ ;

ଆହୁଲା ଗୋଟିମାତ୍ର ଟିକିଏ ଗଲେ ଚାଲି, କେତେ ଯେ ଖୁସିନାହିଁ ଲାଗେ !
ସେଇତ ଜୀବନର ପରମ ସମ୍ପଦ, ତା'ଘେନି ଚାଲ ଆଗେ ଆଗେ ;
ଯେତିକି ଆଗେ ଆଗେ ଚାଲିବ ଅନୁରାଗେ ସେତିକି ପଥଯିବ ଦିଶି,
ପଛକୁ ଚାହିଁ ନାହିଁ ପଛରେ କିଛିନାହିଁ ଅଗକୁ ଚାଲ ଦିବାନିଶି,

ବାଧୁଛି ବେଶି ବେଶି ବାଧିବ ବାଧିବନ୍ତ ପରୁଆ କିଆଁ ସେଥିଲାଗି ?
ଆସିବ ବହୁବାଟ, ଚାଲିବ ବହୁବାଟ ଜୀବନ ଅମୃତ ମାଗି ।
ଅର୍ଦ୍ଧପଥେ ତମେ, ରହିକି ଯିବ ମନେ ଭାଳୁଛ ବସି ବାରବାର
ସାଥିରେ କେହିନାହିଁ ସାହାସ ଦେବାପାଇଁ ଆଗରେ ମହାପାରାବାର ।

ଗରଜି ଆସେ ଢେଉ ପ୍ରଳୟ ବାତ୍ୟାରେ ପାହାଡ଼ ପରି ରୂପ ଧରି,
ଯାଉଛ ଯାଉଛ କି ଭୟ ଓ ଅବସାଦେ ଏକାକୀ ଜୀବନରେ ଥରି ?
ନାହିଁତ ସାହାସାଥୀ ଦମକ ଯାଏ ଗୁଡ଼ି, ବିପଦ ମାଡ଼ିଆସେ ଘେରେ
ସେ କେଉଁ ଦୂର ଭୂଇଁ କିଛି ତ ଦିଶେନାହିଁ ଅଥୟ ପ୍ରାଣ ମହା ଡରେ ।

ପଛକୁ ଫେରିଯିବ ଅଥୟ ଚଞ୍ଚଳ ହୁଏ କି ତୁମ ଦେହ ମନ ?
ଅଥବା ବୁଡ଼ିଯିବ ଏ ମଝି ଗଣ୍ଡରେ ଜାଣିବେ ନାଇଁ କେହି ଜନ,
ଘୋଟିଲେଣି ଅନ୍ଧକାର, କି ଅଛି ଦରକାର ? ଚାଲହେ ନଉକାଟି ବାହି,
ବୁଡ଼ିଲେ ବୁଡ଼ିଯିବ, ଦୁଃଖ କିବା ଅଛି ? ପଛ ଆଉ ଫେରନାଇଁ ।

କାହାକୁ ଖୋଜୁଅଛ ? ଯାତ୍ରୀଚାଲ ଦୂରେ ତୁମେ ହିଁ ତୁମର ତ ସାଥି,
ତୁମେ ହିଁ ତୁମରତ ଦହୁଡ଼ ଜାଳିଯିବ, କାଟି ଏ ମହା ଅମାରାତି ।
କି କଥା ଭାଳୁଅଛ ? ଚାଲହେ ଚାଲ ଚାଲ, ସୁଦୂରେ ନଉକାଟି ବାହି
ତୁମେହିଁ ଚାଲିବ ତ ଅସୀମ ଏଇପଥେ ପଛକୁ ଆଉ ଫେରନାହିଁ ।

ସାହସ ଧରି ମନେ ଚାଲିଚ ଚାଲୁଚ ତ ଅଟକି ଯାଅ ପୁଣି କାହିଁ ?
ଖଣ୍ଡେଦୂର ଯାଇ ଚମକି ଚାହିଁ କାହିଁ ? ଯାଉଚ ଦବ ତୁମ ହାଆ ।
ଆଉ ମୁଁ ପାରିବନି, ଆଉ ମୁଁ ପାରିବନି, ଏ ଦେହ ମନର ଯେ ବଳ
କଅଣ ଦେଖି ତମେ ଏଭଳି କ୍ଷଣୁ କ୍ଷଣ ହେଉଚ ଦୁର୍ବଳତର ?

ଚାଲ ହେ ! ଚାଲ ! ଚାଲ ! ଆହୁରି ସମ୍ଭାଳ ଯେତେ ଯା ପଥେ ଆସିପଡ଼େ
ଆହୁରି ଆସିବ ତ ଜୀବନ ବିକ୍ଷତ କରିବାପାଇଁ ମହୀ ତଳେ
ସେ ଲାଗି କାନ୍ଦିବ ? ମୁଣ୍ଡ କୋଡ଼ି ହେବ ? ସେଥିରେ ଲାଭ କିଛି ନାହିଁ
ଚାଲ ହେ ! ଚାଲ ! ଚାଲ ! ଅସୀମ ଜଳଧିରେ ଏକାକୀ ନଉକାଟି ବାହି;

ତୁମେ କି ବିଚାରିଚ, ଆହୁରି ବିଚାରୁଚ ଗଣ୍ଠି ରଖି ତମ କର
କେତେ ଯେ ଆଶା ମୋର ସ୍ୱପ୍ନ ସୁନ୍ଦର ବ୍ୟର୍ଥ ଓ ବିକଳତର !
ହସେ ମୁଁ ହସେ ଖାଲି, ତୁମର କଥା ଭାଳି ଚାଲ ହେ ! ଚାଲ ଚାଲ ଚାଲ
ଆସିଚ ଯେତେ ବାଟ ସଙ୍ଗେ ଧରି ଆଟ, ପାଇଚ ଯାହା ପାଇବାର ।

ଚୁଡରେ ହାତ ଦେଇ ପାରିବ କେବେ କହି ପାଇନ ତୁମେ କିଛି ହେଲେ
ଆହୁରି ଟାଣିବ ତ, ଆହୁରି ଚାଲିବ ତ, ଲକ୍ଷ କୋଟି ଢେଉ ମେଲେ !!!
ପୁଣି ତ ଚାହିଁ ଅଛ ଠିକିଏ ହସି ଦେଇ, ସୁଦୂର ସେଇ ବେଳା ଭୂଇଁ
ତ୍ରିବେଣୀଯୁଗେ ତବ କାହାର ଡାକ ସତେ ଯାଉଛି ବାର ବାର ଛୁଇଁ !

ତୁମର ପାଇଁ ସେ ତ ହୋଇଚି ଉତ୍‌ଥିତ ନିଦ୍ରା ନାହିଁ ତାର ଆଖେ,
ଦେଖିବ ଓଠେ ହାସ, ଚରଣେ ଉଲ୍ଲାସ, ନିମିଷେ ମିଶିଗଲେ ଚାଖେ ।
ଯାହାରେ ଖୋଜି ଅଛ, ଯାହାରେ ଖୋଜୁଅଛ ଚାଲିଚ ତୁମେ ଯାହା ଲାଗି
ଚକ୍ରବାଳତଳେ ସ୍ୱର୍ଣ୍ଣରବି ଚରି, ସେ ଉଠୁନି କି ବାରେ ଜାଗି !

ତୁମର ଜାଗରଣେ ତାହାର ଜାଗରଣ ତୁମର ହାସେ ତାର ହାସ
ତୁମର ଯାହାର ଅସୀମ ବେଦନାରେ ତାହାର ଫୁଟେ ଉଚ୍ଛ୍ୱାସ !
ଖୋଜୁଚ ତୁମେ ଯା'ରେ ଅସୀମ ଶରଧାରେ
ତୁମରେ ସେ କି ଖୋଜୁନାଇଁ ।
ତୁମେ ଯେ ତାହାପାଇଁ ସିଏ ଯେ ତମପାଇଁ, ଗୃହ୍ଲ ହେ ନଉକାଟି ବାହ୍ଲ ।

# ଛୋଟ ନଈ

କେତେ ଦୂରୁ କେତେ ଦୂରେ ଯାଉଚୁ ଲୋ ବହି !
କି ଅବୋଧ ବାଣୀ କହ ମହାଶୂନ୍ୟ କାନେ,
ସେ କେଉଁ ଅନାଦ୍ୟକାଳୁ ମୋର ଛୋଟ ନଈ
ଏ ଭଳି ଯାଉଛୁ ଗୃହ୍ଲ ମୁଁ ତ ନାହିଁ ଜାଣେ ।

ଦେଖିଥିବୁ ଛୋଟ ନଈ ଦେଖିଥିବୁ ମୋର !
ଅସହାୟା ବାଳକାଟି କା' କୋଳ ସଙ୍ଗାଳ
ତୋ କୂଳେ ବାସନ ମାଜ ନେଉ ଥିଲ୍ ହ୍ଲଧାର—
ତାଳବାର ବୃଦ୍ଧବ୍ୟଥା ନ ପାର ସମ୍ଭାଳ ।

କେ କହିବ ଦୁଇକଂସା ଖାଉଥିବୁ ଖାଲି
ପୋଲ୍‌ଧନ ପାଉଛୁ କି ? କରବୁନା କାମ ?
ମହାଶୂନ୍ୟେ ଗୃହ୍ଲି ସେଡୁ ଯାଉଥିବ ଭାଳି,
ସବୁଠୁ ନିଠୁର ବଡ଼ ଏ ଅନାସ୍ଥ ପ୍ରାଣ ।

ଦେଖିଥିବୁ ଛୋଟ ନଈ ଦେଖିଥିବୁ ଜାକି ?
ଔଷଦ ନ ପାଇ ଟୋପେ ଭେଣ୍ଡା ବୟସର—
ସେ କେଉଁ କୃଷକ ପିଲ୍ ବୁଜଅଛୁ ଆଖି,
ବୁଢ଼ାବୁଢ଼ୀ ରହଛନ୍ତ ଗୃହ୍ଲି ଜଳ ଜଳ !

ତୋ ଘାଟରେ ଜଳୁଛି ଚିତା ଶିଖା ମେଲ ନଭେ,
ଶୁଭୁଛୁ କୁଟୀର ଭର ଗୋଲ କ୍ରନ୍ଦନର,
ଏଇଭଳ କେତେ ପ୍ରାଣ ନିଭଇ ମାରବେ
କେ ବୁଝୁଛୁ ଦରଦ୍ରର ବ୍ୟଥିତ ଅନ୍ତର !

ଦେଖିଥିବୁ ଗ୍ଲେଷ୍ଠ ନଈ ଘାଟରେ ତୋର ଗୃହ୍ନା—
ଆସୁଥିବ ବଲମାଲ୍ଲ ମୁଲଆ ବାପୁଡ଼ା
ପଙ୍କମାଟି ସଲବଲ ଦେହ ସାରା ଖାଲି,
ହଂସା ଉଡ଼ୁଥିବ, ଦଶୁଥିବ ଡରମରା ।

ଘାଲୁଥିବ ଘରର ଗଲେ ମୂଲ-ଗଣ୍ଡି କରେ,
ଆଣିବ ସୋରଷ ଲୁଣ, ଚାଉଳ ବା କାଠ,
ଘରେ ଆଠଜଣ କାହିଁ ଚଳେହେବ ଭଲେ
ଅଣ୍ଟୁନି ତ ଯେତେ ଅରଜିଲେ ଏଇ ହାତ ।

ଦେଖିଥିବୁ ଗ୍ଲେଷ୍ଠ ନଈ ଦେଖିଥିବୁ ନିଜ ?
ବେଦନାର ମସୀରେଖା ତା' ଦରଦ୍ରଭାଲେ
ସୁଖ ସରାଗର ସ୍ୱର୍ଣ୍ଣମାୟା ଝିକମିକ
ତା' ମୁଖ ମଣ୍ଡଳ ଆଉ ହେଲା ନାହିଁ ବାରେ !

ସେ ପାହାଡ଼ କାନ୍ଥି ଡେଇଁ ଆସିବାର ବେଳେ
ଦେଖିଥିବୁ ବାର ବାର କରି, ଗ୍ଲେଷ୍ଠ ନଈ !
ପିଲାଠାରୁ ବୁଢ଼ାଯାଏ କାଠଗେଣ୍ଡ ଶିରେ
ଆସୁଛନ୍ତି, ସ୍ୱେଦବିନ୍ଦୁ ଅଙ୍ଗୁଯାଏ ବହି ।

କେ' କହୁଚି ଚପରାଶୀ ଆଜି ଧରିଥିଲେ
ନେଇଥାନ୍ତା ସବୁରିଠୁ ନିଷ୍ଟେ ଅଣେ ଅଣେ,
ଆନ କହେ ରଖିଚି ସେ ମୋର କଣ୍ଟୁଣିରେ
ପଇସା ନ ଦେଲା ବୋଲି ଦିନେ ବଡ଼ ବକେ ।

ନିଃସ୍ୱର ଉପରେ କେତେ ହୁଏ ଅନାଚାର
ଦେଖି ଦେଖି ଆସୁଥିବୁ ମୋର ଗ୍ଲେଷ୍ଠ ନଈ !
ଏ ମାଟି ଉପରେ କେତେ ତପ୍ତ ଲୁହଧାର—
ଝରିପଡ଼େ କେହି କେବେ ତିଳେ ନ ବୁଝଇ ।

ଦେଖିଥିବୁ ଗ୍ଲେଷ୍ଠ ନଈ ତୋର ଘାଟରେ ଘାଟରେ
ଆସୁଥିବେ କନ୍ଦବାଲା ଫଳମୂଳ ବିକ
ସତ୍ୟ ସାରଳ୍ୟର କବା ମୂର୍ତ୍ତି ଧରଣୀରେ ।
ଜାଣନ୍ତିନି କରିବାର ଛଅ ନଅ ଠିକ ।

ପ୍ରତିପଦେ ତାଙ୍କୁ ଆହା ଭୁଲାଇ ଭୁଲାଇ
କିଏ କେତେ ପଥେ ଘାଟେ ଦେଉଥିବେ ଠକ,
ଶଠତା ଭିତରେ ହାୟ ଜୀବନ ଖେଳାଇ
ଅମୃତ ଧାରାରେ କିଏ ଭେଟି ପାରିବ କି ?

ଫେରିବାର ବେଳେ ଆହା କି କରୁଣବାଣୀ
କହୁଥିବେ "ଠକ ଦେଲ ! ଆଉ ଆସିବାନି ।"
ସଭ୍ୟସମାଜର ହାୟ ଏ କି ସମ୍ମାନ ?
ମଣିଷ ବୁଝୁର ବ୍ୟଥା ନାହିଁ ପାରେ ଜାଣି ?

ଆଜି ଏ ସନ୍ଧ୍ୟାରେ ତୋର କୂଳେ କୂଳେ ବୁଲି
ପୃଥିବୀ ଅନନ୍ତ ବ୍ୟଥା ବୁଝୁଛି ହୃଦୟେ,
ସିକ୍ତ ହୋଇ ଆସେ ମୋର ନେତ୍ର, ଲୁହେ ପୂରି,
ତୋର ପ୍ରତି ଉର୍ମିରେ ମୁଁ ଖାଲି ଚାହିଁ ରହେ !

ଏ ଦୁଃଖର ହେବ କେବେ କହ ସମାଧାନ ?
କହ ଶ୍ରେଷ୍ଠ ନଈ ମତେ କହ ମୋର କାନେ ।
ଜାଗିବ ସବୁରି କଣ୍ଠେ କେବେ ମଧୁଗାନ ?
ଶୁଣିଥିଏ କୂଳେ ତୋ'ର ତାହାରି ସନ୍ଧାନେ ।

---

# ମଣିଷ ବନ୍ଧ ଲୋଡ଼ା

ବୁଲିଚ ଏଇ ପାହାଡ଼ ତଳେ, ଚୁଲିଚ କୁନ୍ଦ ଏମାଟି ଗୋଡ଼,
ବାଲ୍ୟବେଳେ ନଗ୍ନଦେହେ ଖେଳିଚ ଏଇ ଗଛରେ ଦୋଳି ।
ଏ ନଈ ବାଲି ଉପରେ କେତେ ଶୋଇଚ ତମେ ସନ୍ଧ୍ୟା ଯାମେ
ଶୁଣିଚ ଗୋପ ବାଳକ ବେଣୁ , ଗୋଧନ ଝିପାଶବଦ କାନେ ।
ଏଇଯେ ତୁମ ପଲ୍ଲି ଗାଆଁ
ପାଳିଚ କିବା ତୁମରି ମାଆ,
ଏହାରି କୋଳେ ଆସିଚ ବଢ଼ି ବକ୍ଷଭରା ସେନେହଦାନେ
ଏସବୁ କ'ଣ ବିସୋରି ଦେଲ ? ସ୍ମୃତିକି ମନେ ପଡ଼ୁନି ଧାନେ ?

କିଏ ସେ ଧନୀ, ଗରିବ କିଏ, କିଏ ସେ ଅବା ଭିକାରିଟିଏ,
କାହାର ଅଛି, କାହାର ନାହିଁ, କେ ମୂଲ ଲାଗି ଜୀବିକା ନିଏ
କାହାକୁ ତୁମେ କରିଚ ଭାଇ ଡାକିଚ ମାମୁଁ ମଉସା କା'ରେ
କିଏ ସେ କେତେ ସେନେହ ମାୟା
ନାହାନ୍ତି ରଖି ତୁମ ଠାରେ ।
ଏମାନଙ୍କୁ ନିମିଷେ ଚାହିଁ,
ଘୃଣାରେ ନାକ ଟେକୁଚ କାହିଁ ?
ଏଇମାନଙ୍କ ହାତରେ ତୁମେ ଆସିଚ ବଢ଼ି ମନେ କି ପଡ଼େ ?
କି ବଡ଼ପଣ ଦେଖାଇ ହୁଅ ଏଇମାନଙ୍କ ସମକ୍ଷରେ ?

ସାମାନ୍ୟ ଏ ଲୁଗାଟି ପିନ୍ଧ ଏ ମାଟିପରେ ଚାଲିବା ପାଇଁ—
ଟିକିଏ ବାଟ, ତୁମେ ଭାବୁଚ, ଖ୍ୟାତିରେ ବାଧା ଆସିବ ନାହିଁ ?
ଅଣ୍ଟାଭିଡ଼ି କି କାମ ତୁମେ କରିବ କହ ଏ ମାଟି ଲାଗି,
ଏ'ମାଟି ଦୁଃଖେ ଯା' ବୁକୁତଳେ ଟିକିଏ ବ୍ୟଥା ଉଠିନି ଜାଗି !
ତୁମେ ତ ନୁହ ଅଜଣା କା'ର,
ତୁମେ ଏ'ମାଟି ଶୋଣିତ ଧାର,
ଭିନ୍ନ କରି ନିଜକୁ ତୁମେ ଦେଖୁଚ କିମ୍ବା ଏ ମାଟିପରେ,
କି ସମ୍ମାନ କିଏ ସେ ଦେବ ତୁମରି ବେଶ ଆଡ଼ମ୍ବରେ ?

ଖାଲି ମଣିଷ ବସ୍ତ୍ର ଲୋଡ଼ା ଦରିଦ୍ର ଏ ପଲ୍ଲି ପାଇଁ,
ଶତ ଅଭାବ ନିଷ୍ପେଷଣେ ଯାହାର ଶିର ନିଉଁଚି କାହିଁ ।
ହଜାର ହଜାର କଙ୍କାଳର ଶୁଭୁଚି ଖାଲି ଆର୍ତ୍ତନାଦ,
ଚତୁର୍ଦ୍ଦିଗେ ଦୁଃଖ ଦୈନ୍ୟ; ଚତୁର୍ଦ୍ଦିଗେ କି ଅବସାଦ ।
ଆଡ଼ମ୍ବର ପୋଷାକ ବେଶ
ଖୋଜେନା ଗାଁ, ଖୋଜେନା ଦେଶ,
ସେ ଖୋଜେ ଶତ ସ'ସ୍ର ବସ୍ତ୍ର, ସେନେହ ଦୟା ଶୌର୍ଯ୍ୟ ବୋଲା,
ଦେଖାଇ ହେବ ଆଡ଼ମ୍ବର, ଦେଖିବ କିଏ ଅଛି କା' ତୋଲା

# କେତେ ଦୁର୍ବିସହ

ସେ ତ ମୋରେ ଖୋଜୁଥିବ
ନିଦ ଯେବେ ଯାଇଥିବ ଭାଜି !
ସେତ ମୋରେ ଡାକୁଥିବ
ନେତ୍ରୁ କେତେ ଲୁହ ତେଜି ତେଜି !
ସେତ ମୋରେ ଉତ୍ପକ୍ଷ୍ମ ନୟନେ
ଚାହୁଁଥିବ ବାର ବାର କରି,
ମୋରେ ନାହିଁ ଦେଖି ସେ'ତ
ବୁଲୁଥିବ ପ୍ରତିଜନେ ପଚାରି ପଚାରି ।

କିଏ କେତେ ଆସୁଥିବେ ଯାଉଥିବେ,
ସକଳରେ ଚାହିଁ ଚାହିଁ ଚାହିଁ,
ଭାଳୁଥିବ ଏମାନଙ୍କ ମେଳେ
ସେ ନାହାନ୍ତି ଗଲେ ତେବେ କାହିଁ ?
ତା' ଶିଶୁ ଅନ୍ତରତଳେ କଳ୍ପନାର ମୋହନ ତରଙ୍ଗ
ଉଠୁଥିବ କେତେ ବାର ଫୁଟି !
ବୁଝାଇଲେ ବୁଝୁ ସେ ନ ଥିବ,
ଡାକୁଥିବ ମୋରେ କରି ପାଟି !!

ତାରେ ଚାହିଁ ଶିରେ ତା'ର—
ସେନେହ ଚରଣ ବୋଳି ଆସିଥାନ୍ତି ହେଲେ !
ତା' ଅଜ୍ଞାତେ ଆସିଲି କିମ୍ପାଇ ?
ଦୂରଦେଶେ ବସି କେତେ ଭାଳେ !!
କିମ୍ପାଇଁ କଠୁର ହେଲି ?
ତା' ଅନ୍ତରେ ଦେଲି କିମ୍ପା କଠୋର ଆଘାତ ?
ମୋରେ ନାହିଁ ଦେଖି ଯେତ
ବ୍ୟସ୍ତ ହୋଇ, ଖାଉଥିବ ନାହିଁ ମୋଟେ ଭାତ ।

କାନ୍ଦୁଥିବ, ରୁଷୁଥିବ, ଗଡ଼ ଯାଉଥିବ—
ଭୂଇଁ ପରେ ବାର ବାର କରି
ତା' ଅନ୍ତର ଅମୃତ ବାରିଧି ହେଉଥିବ—
ଉଦ୍‌ବେଳିତ, ମୋତେ ପାଖେ ରଖିବାକୁ ଧରି,
ମୁଁ କିନ୍ତୁ ପାରିଲି ନାହିଁ ରହି
ଅଦେଖାରେ ଅଜଣାରେ ତା'ର
କିମ୍ପାଇଁ ଆସିଲି ଚାଲି,
ତା ମମତା ପ୍ରତି ଏକି ମୋର ଅବଜ୍ଞାର !
ମମତା ମମତା ଖାଲି ବିରାଟ ମମତା
ଆଦି ଅନ୍ତହୀନ ସେ ଯେ ମହା ପାରାବାର
କିମ୍ପାଇଁ ଆସିଲି ଛାଡ଼ି ?
ତହିଁରେ ସିନାନ କରିବାର ପୂର୍ଣ୍ଣ ଅଧିକାର;

କେତେ ସିଏ ଡାକିଥିବ, କେତେ ସିଏ ଖୋଜିଥିବ,
କେତେ ସିଏ ଗୁହାଁଥିବ ମତେ,
ଦାଣ୍ଡପଟେ ବାଡ଼ପଟେ କେତେ ଠିଆ ହୋଇ ଦେଖୁଥିବ !
ତାର ସ୍ନିଗ୍ଧ ମନ ପଟେ
ଆଶା ନିଆଶାର କେତେ ଲୁଚକାଳି ଖେଳ
ଯାଉଥିବ ଘଟି,

ମୁଁ କିମ୍ପା ଆସିଲି ଲୁଚି
କେତେ ନିଷ୍ଠୁର ପାଲଟି !
ମୋର କିମ୍ପା ତାହା ପ୍ରତି
ଏ ଶଠତା, ହୃଦହୀନ କାରବାର ନିଦାରୁଣ ତମ ?
ମୁଁ କିମ୍ପା ତା ନିର୍ମଳ ଆଶା ଆକାଂକ୍ଷାରେ
ଦେଲି ନାହିଁ ସମ୍ମାନ ପରମ ?
ଅନ୍ଧରେ ଜୀବନ ମୋର କେମନ୍ତେ ପାରିବ ତୋଳି
ସରଗର ସ୍ୱର୍ଣ୍ଣ ପାରିଜାତ ?
ତାପଦଗ୍ଧା, ଏ ଅନ୍ତର କେଉଁ ମନ୍ଦାକିନୀଜଳେ
ଆପଣାରେ ପାରିବବା କରି ପରିସ୍ନାତ ?

ତା' ଆଖିରୁ ଅଶ୍ରୁ ଦୁଇ ଧାର ଦେଇଥାନ୍ତି ପୋଛି,
ତା ସ୍ୱର୍ଣ୍ଣ ଅଧର ତଳୁ ଅମୃତର କଥା ପଦେ
ପାଉଥାନ୍ତି ଶୁଣି,
ସିଏ ମୋତେ ଚାହୁଁଥାନ୍ତା, ମୁହିଁ ତାରେ ଚାହୁଁଥାନ୍ତି,
ତହେଁ ଆମେ ଦୁଇଆଡ଼େ ଯାଉଥାନ୍ତୁ ଚାଲି,
ଜଣେ ଆନ ଜଣକରେ ପ୍ରାଣର ଅନନ୍ତ ଅର୍ଘ୍ୟଟିକ ବାଢ଼ି !
ପ୍ରାଣର ଏ ଆଦାନ ପ୍ରଦାନ,
ପ୍ରାଣର ଏ ଦେଖା ଓ ସାକ୍ଷାତ,
ପ୍ରାଣର ଏ ଆଶା ଅଭିଳାଷ,
ପ୍ରାଣର ଏ ମୋହନ ଉଚ୍ଛ୍ୱାସ,
—ସକଳରେ ନିର୍ମମେ ଆଡ଼େଇ ଦେଇ—
ଚାଲି ଆସିବାରେ, ଏ ଜୀବନେ କାହିଁ ମିଠା କହ ?
ଏ ଜୀବନ ଲାଗେ ଆଜ କେଡ଼େ ଦୁର୍ବିଷହ !!

---

## ଜ୍ୟୋତିରଙ୍ଗଣ

ନିବିଡ଼ ଭୀଷଣ ଅନ୍ଧକାର ମୁହିଁକୁ ଯେଣେ ମୁହିଁ
ଘୋର ଦୁର୍ଦ୍ଦିନ-ବରଷା ଆସେ
ବହଇ ବାତ୍ୟା ସୁଅ !
ବଜ୍ରର ସେ'ସେ ଗୁରୁ ଗରଜନ
ଚମକାଇ ଦିଏ ପ୍ରତି ଜନମନ ।

ଆକାଶ ଅବନୀ ଘନ ଅନ୍ଧାର ପୂରି,
ନାହିଁ ତ ଆକାଶେ ରବି ଶଶୀ ତାରାଗ୍ରହ,
ପାନ୍ଥ ମୁଁ ଆଜ ଚାଲିଅଛି ଏକା ଏକା
ବେଦନା ମୋହର ବିରାଟ ଦୁର୍ବିଷହ !

ପଥ କାହିଁ ? ପଥ କାହିଁ ?
ବିରାଟ ଭୁବନେ କିଭଳି ଚାଲିବି ।
କାହାର ଆଶ୍ରା ପାଇ !!

ନିବିଡ଼ କୃଷ୍ଣ ବାରିଦେ ଆକାଶ ତଳ
ଗୃହିଁ ହୁଏନାଇଁ ଖ୍ରିଷଣୁ ଖ୍ରିଷଣତର !
ଚଉଦିଗ ଖାଲି ଆଶ୍ରୟହୀନ ଲାଗେ,
ପଥ ଅଣ୍ଡାଳ ଗୃହପାରେ ନାଇଁ ଆଗେ ।
ଏତିକ ବେଳେ କେ' କ୍ଷୁଦ୍ର ଆଲୋକକଣା
ଜଳି ଜଳି ଆସେ କହି କହି ମତେ
"ବାଟ କି ହେଉଚି ବଣା ?"

କ୍ଷୁଦ୍ର ମୁଁ ଅତି ନାଇଁ ମୋ ସମାଜେ ଥାନ
ଦିଏନି ମୋରେ କେ' ଗଉରବ ସମ୍ମାନ !
ମୋର ପ୍ରଶସ୍ତି ଯାଏନି ବନ୍ଦୀ ଗାଇ,
ଆଦର ସେନେହ ମୁଁ କାହିଁ ପାରେନି ପାଇ !

ଧରଣୀ ନିତ୍ୟ ଉପହାସ କରେ ମୋରେ
ବିରାଟ ଶକ୍ତି ନାଇଁ ମୋର ଧରା ତଳେ;
ଘୋର ଦୁର୍ଦ୍ଦିନେ ଘୋର ସଙ୍କଟବେଳେ
ସାହା ସାଥୀ ଯେବେ ମିଳେନାଇଁ ଜଣେ ହେଲେ,
କ୍ଷୁଦ୍ର ମୁଁ ମୋର କ୍ଷୁଦ୍ର ବିଭବ ସହ
ଠିଆହୁଏ ଆସି ନାଇଁ ଥାଉ ପରିଚୟ !

ମୋରେ କିଏ ଜାଣୁ ଅଥବା ନ ଜାଣୁ ମତେ,
ଠିଆହୁଏ ଆସି ସଭିଙ୍କ ବିପଦ ପଥେ;
କ୍ଷୁଦ୍ର ମୋହର ପାପଟିକ ଜାଳି ଦେଇ
ପନ୍ଥା ଦେଖାଏ ଯାଅ ଏଇ ବାଟ ଏଇ;

ନ ହୁଏ ନ ହୁଏ ମୁହିଁ ରବି ଶଶୀ ତାରା
ପଡ଼ି ରହିଥାଏ ମାଡ଼ି ଏ ବିପୁଳ ଧରା
ମହାଦୁର୍ଦ୍ଦିନେ ସଭିଙ୍କ ବନ୍ଧୁ ହୋଇ
ଧନ ବାହାନିଏ ଅବସନ୍ନ ମୁଁ ନୋହି;

ନ ଦିଅ ନ ଦିଅ ଗଉରବ ସମ୍ମାନ
ଆନନ୍ଦେ ମୁହିଁ କର ନିଏ ମୋର କାମ ।
ଚାଲହେ ପାନ୍ଥ ! ଚାଲ ଚାଲ ଚାଲ ଚାଲ !
ଭୟ ନାହିଁ ମୁହିଁ ଅଛି ତବ ଆପଣାର ।"

---

## ନିରଞ୍ଜନ

ହେ ଦୀନ ଅରକ୍ଷ ଶିଶୁ ! ନିରଞ୍ଜନ ! ଶୂନ୍ୟ କରି ଦରିଦ୍ର କୁଟୀର
ଅସମୟେ ଚାଲିଗଲ ! ସଭିଁର ନୟନୁ ବୋହେ ଅସରନ୍ତ ନୀର !
ନନା ଯାଇଥିଲେ ଚାଲି,
ବିଧବା ଜନନୀ କୋଳେ ବଢ଼ିଥିଲ ଦୁଃଖେ ଦୁଃଖେ ମହାଦୁଃଖେ ତମେ
ଦରିଦ୍ର ଖୁଡ଼ୁଟା ତବ ପାଳୁଥିଲେ, ପୋଷୁଥିଲେ,
କେତେ କାଳ କେତେ ଦୁଃଖେ ନିଃସ୍ୱ ଅରଜନେ !
ତୁମକୁ ନିୟତ ଚାହିଁ, ସବୁ ଦୁଃଖ ଯାଉଥିଲେ ଭୁଲି
ତୁମେ ଥିଲ ତାଙ୍କ ଆଶା ଭରସାର ଥଳି;
ତୁମର ଦରୋଟି ବାଣୀ,
ତୁମର ବିନମ୍ର ପ୍ରାଣ,
ତୁମର ସେ ଟିକି ହୃଦୟର ଅସରନ୍ତ ସେନେହ ମମତା —
ଏ ସକଳ ଚାହିଁ,
ତୁମ ସାଇ ପଡ଼ିଶାର ସକଳେ ତୁମକୁ କେତେ ପାଉଥିଲେ ଭଲ !!
କେଉଁ ପଲ୍ଲିର ସଜ କଇଁ-ଫୁଲଟିଏ ପରି,
ହସୁଥିଲ, ନାଚୁଥିଲ, ଖେଳୁଥିଲ ମନ ବିନୋଦନେ
ଗୋଟିଏ ମୁହୂର୍ତ୍ତେ ହାୟ ଚାଲିଗଲ ସେ ପାର ଭୁବନେ ।

ଲୁଗାପଟା ରହିଚ ସେପରି, ବହି ସ୍ଲେଟ, ସବୁ ଥୋଇ ଅଛ,
ସତେ ଅବା ଯିବ କାଲି ପଢ଼ିବାର ପାଇଁ !
ତୁମ ଟିକି ହାତ ଲେଖା ଚିଠିଖଣ୍ଡ ପିଯୁସଙ୍କ ଲାଗି—
ରହିଅଛି ଡାକଘରେ ପଢ଼ିବାକୁ ତୁମକୁହିଁ ଚାହିଁ;

ଘାତ ହୋଇଥାନ୍ତା ବଡ଼ା, ଦରିଦ୍ର ଜନନୀ ଖୋଜୁଛନ୍ତି ଆତୁରେ ତୁମରେ,
ତୁମର ପାଦଚିହ୍ନ, କି ସୁନ୍ଦର ଟିକି ଟିକି ପାଦ !!
ପଡ଼ିଅଛି କୁଟୀର ଚଉତରେ ।
ତୁମର ମୋହନ ମୂର୍ତ୍ତି ସବୁଙ୍କ ନୟନେ ରହିଅଛି ହୋଇ ଜଳ ଜଳ
ଟିକି ଟିକି ପିଲେ ତୁମର ସେ ସାଙ୍ଗସାଥୀ
ସଭିଏ ଅଛନ୍ତି ରହି, ତୁମ କଥା ଭାଳି ନିରନ୍ତର,
ତୁମେ ହାୟ ଗୁଲିଗଲ କାହିଁ !

ତୁମ ଲାଗି, ଘର ଲାଗି, ସାଇ ପଡ଼ିଶାର ଲାଗି,
ଅସୀମ ଏ ଦୁନିଆର ଲାଗି,
ତୁମେ ଆଉ ଫେରିଲ ତ ନାହିଁ ।
ତୁମେ ଆଉ ନେଇ ଫେଇ ଟିକେ ହେଲେ ଗ୍ଲାହିଁଲ ତ ନାହିଁ !!
ଦରିଦ୍ର ଯେ ଖୁଡ଼ୁତା ତୁମର
ସ୍କନ୍ଧେ ବହି ତୁମରେ ଯେ କେତେଥର ନେଇଥିବେ
ନାଟ ଜାତ ପୂଜାଅ ପର୍ବ ଦେଖାଇବା ଲାଗି,
ସେଇ ସ୍କନ୍ଧେ ବହି ତୁମରେ ସେ ନେଇଗଲେ
ସମୁଦ୍ର କନାରେ ସେଇ ବିଜନ ବାଲିରେ ଦେଲେକ ଶୁଆଇ;
ଥରେ ଗ୍ଲାହିଁ, ଦୁଇଥର ଗ୍ଲାହିଁ, ତିନିଥର ଗ୍ଲାହିଁ
ଲକ୍ଷ ଥର ଗ୍ଲାହିଁ,
ଆଉ ଗ୍ଲାହିଁ ପାରିଲେ ତ ନାହିଁ !
ଫେରିଲେ; ଫେରିଲେ କୋଟି ବିନ୍ଦୁ ଲୁହ
ନେଇପାନ୍ତୁ ସାରିବେ ଗଡ଼ାଇ !!

କୁଟୀରେ ଫେରିଲେ,
କୁଟୀରଟି ଲାଗେ ଶୂନ୍ୟ;
ବାହାରକୁ ଆସିଲେ,
ବାହାରଟା ଭଲନାହିଁ ଲାଗେ;
ବସିଲେ ଘଡ଼ିପାଏଁ, କେଉଁଠି ବସିବେ ?
ତାଙ୍କ ପାଇଁ ଶୂନ୍ୟ ସ୍ବରଆଡ଼ !
ମନେ ପଡ଼େ ଖାଲି ସେଇ ସମୁଦ୍ର କନାର !

ନିରଞ୍ଜନ ! ନିର ! ନିର ! କାହାପାଇଁ ଆସିଥିଲୁ ?
କାହାପାଇଁ ଗ୍ଲଲଗଲୁ ?
ଚିରଦିନପାଇଁ ବୁକୁତଳେ ରଖିଗଲୁ ଘର୍ଘ ହାହାକାର !
ତୋ ଜୀବନ, ମୋ ଜୀବନ ଏ ଯେ ଲକ୍ଷ କୋଟି ଜୀବନ
କାହାର ? କାହାର !!!

---

## ନିସର୍ଗର ଦେଶେ

ବସି ଏଇ ବିଜନ ନିମିଷେ ସୁଦୂର ଏ ପରବାସ ବାସେ
ଭ୍ରମ ଭୁଲେ ଦେଖୁଛି ମୁଁ ସଖା ନିସର୍ଗର କେତେ ମଧୁଛବି
ହୃଦୟର ବିପୁଳ ଉଚ୍ଛ୍ୱାସେ ।
ଦେଖୁଚି ମୁଁ ନଭସ୍ପର୍ଶୀ ଦୁର୍ଗା ଶିଖରର
ନୀଳତର ଅନନ୍ତମାଧୁରୀ,
ଦେଖୁଚି ମୁଁ ଶ୍ୟାମ ବନମାଳ, ମୁହାଣେ ମୁହାଣେ
ଜଳଧାରା ଝରିପଡ଼େ କଳବେଣୁ ତୋଳି !
ଦେଖୁଚି ମୁଁ ନୀଳାପୁର ପାହାଡ଼ର ନାଶି,
ମେଘ ଯହିଁ ଚିରଉଠେ ସ୍ୱପ୍ନାସ୍ମିତ ଜୀବନର ମୁଗ୍‌ଧରୂପ ଧରି;
ଦେଖୁଚି ମୁଁ ଆଷାଢ଼ର ପହିଲ ବେଳାରେ
ଗ୍ରଣ୍ଡି ଗାଆଁର ଏଇ ଆମ୍ବ ତୋଟା ଉପକଣ୍ଠେ,
ଜଳର ଅମୃତ ଲୀଳା ଲହରେ ଲହରେ ନାଚେ,
ଗୋଟିଏ କ୍ଷୁଦ୍ର ଚିଲକାର ଛବି ସୃଷ୍ଟିକରି ।

ଦେଖୁଚି ମୁଁ କେତେ ଜନପ୍ରାଣୀ ପରିଚିତ ଅର୍ଦ୍ଧ ପରିଚିତ
ମୋ ଭୁଲେ ହେବାର କଥା, କରିବାର ମୋରେ କେତେକ
ନିଜରୁ ନିଜର;
କେତେ କା'ର ସୁଖ ଦୁଃଖ ଜୟ ପରାଜୟ କଥା
ଶୁଣୁଚି ମୁଁ ଏଥି ବସି କେତେ କେତେ ଥର !

ଦେଖୁଚି ଗୋଧନପଲ, ଶୁଣୁଚି ମହ୍ୱଷଟିପା
ମେଷ ଗୁଗ ଚରିବାର, ବୁଲିବାର ଗିରି ପଦନ୍ତଳେ;
ଦେଖୁଚି ସୂର୍ଯ୍ୟାସ୍ତ, ଦେଖୁଚି ଜୋଛନା ରାତି
ଥିରି ଥିରି ନମି ନମି ଆସିବାର ଧରଣୀ ଉପରେ
କେଉଁ ସ୍ୱପ୍ନପୁରୀ ରାଜବାଳା ପରି,
ଚତୁର୍ଦ୍ଦିଗେ ଶାନ୍ତ, ସ୍ନେହ, ଆନନ୍ଦର ଅପରୂପ ଶିରୀ
ମୂକ ମନେ ମୂକ କରେ ଅଜାଡ଼ି ଅଜାଡ଼ି !!

ଶୁଣୁଚି ମୁଁ ଦଳୁଆଣୀ କନେଗାଈ କଣ୍ଠର
ହୃଦନ୍ତର ମୋହନ ସଙ୍ଗୀତ,
ପ୍ରତି ବଲମାଙ୍କୁ ଭାସି ଭାସି ଆସେ
ବର୍ଷଣ ଏ ବାଦଲ ବେଳାରେ
ଧାନ ରୋଇବାର ବେଳେ;
କି ଅମୃତ ରସଧାରା ଝରି ନାହିଁ ପଡ଼େ ଏଇ ମାଟିର ବକ୍ଷରେ ?
ପ୍ରାଣ ଯେବେ ସୀମାହୀନ ଆନନ୍ଦରେ
ନିସୃତ ଉଦ୍‌ବେଳେ !!

ଦେଖୁଚି ମୁଁ ଆସିବାର ସୁଦୂର ଏଇ ମାହାନ୍ତି କୁଟୀରୁ
ଶିରେ ବହି କାଠଗୋଛ,
ସଉରୁଣୀ ସୀମନ୍ତିନୀ ପରିପୁଷ୍ଟ ଉଦ୍‌ଗତଯୌବନା
ଡାଳିଆ ଜୂଡ଼ାରେ ଖୋସି ଫୁଲ
ଅଧରେ ଖେଳାଇ ହାସ ସୁନ୍ଦର ଉତ୍‌ଫୁଲ୍ଲ
ଯାଉଛନ୍ତି କେଉଁ ଗାଆଁ
ମନଭଲେ ବେପରୁଆ ଭାବରେ କି ଗୁମ୍ଫା !

ଦାରିଦ୍ର୍ୟ ଅଭାବ ଦୁଃଖ ପାରିନାହିଁ କରି ତାଙ୍କୁ ପଙ୍ଗୁ ପଦାନତ,
ଜୀବନ ସରଳସ୍ୱଚ୍ଛ ଶ୍ରମ ପରାୟଣ ହେଲେ
କାଟି ଗଲେ ଆପଣାର ସ୍ୱର୍ଣ୍ଣ ରାଜପଥ !
ଚାହିଁ ରହେ ଏମାନଙ୍କୁ ମୁହିଁ
ନିସର୍ଗ ସୁନ୍ଦର ପ୍ରାଣ, ଏମାନଙ୍କ ପରି ଆମେ ସବୁ କେଉଁ—
ଅତଳ ଜଳଧିଗର୍ଭେ ଦେଇଚୁ ହଜାଇ !

ଲାଞ୍ଛ ମିଛ ଅନ୍ୟାୟ ଅଧର୍ମ ଅଜି ସ୍ତ୍ରୀ ଅମୀତ ଭିତରେ ବଞ୍ଚି
ବଡ଼ ହେବାଠାରୁ—
ଦାରିଦ୍ର୍ୟ କୋଳରେ ବଢ଼ି,
ସାଧୁ ସନ୍ଥ ସତ୍ୟସନ୍ଧ ହେବାରେ ଯେ ଗୌରବ,
ତାହା ସୂର୍ଯ୍ୟପରି, ସବୁବେଳେ ସଜୀବ ସୁନ୍ଦର ଦୀପ୍ତିମାନ୍ ।
ଆମେ ସବୁ କେଉଁ ଅନ୍ଧାର ଭିତରେ ରହି ଚିରଦିନ,
ଆଣୁଚୁ ଆମର ଅବସାନ !

ପ୍ରକୃତିର ଏଇ ଅନନ୍ତ ସାମ୍ରାଜ୍ୟ ଭିତରେ
ମୁକ୍ତକଣ୍ଠ ବିହଗର କଳକଣ୍ଠ ପରି
ମୋ ଅନ୍ତର-ଅଭ୍ୟନ୍ତରୁ ଆନନ୍ଦ ଅମୃତଭରା—
ସଙ୍ଗୀତର ମୋହନ ମୂର୍ଚ୍ଛନା
ଆପେ ଆପେ ପଡ଼ୁଅଛି ଝରି !

ବନ୍ଧୁ ମୋର ! ସଖା ମୋର ! ପ୍ରିୟ ମୋର !
ମୁଁ ତୁମଠୁ ବିଯୁକ୍ତ ହୋଇ
ବିଯୁକ୍ତ ହୋଇ ପ୍ରକୃତିର
ଏଇ ଲୀଳାମୟ ଅମୃତ ପୁରୀରୁ,
ଯିବି କେଉଁ ଦେଶ ”
—ଯହିଁ ପ୍ରାଣର ଉନ୍ମେଷ
ଫୁଟିବା ବଡ଼ କଷ୍ଟକର;

ଅନନ୍ତ ବିଶ୍ୱର ଏଇ ଶ୍ୟାମାୟମାନ ପ୍ରକୃତି—
ଜଳ, ବଣ, ଗଛ, ଲତା, ପାହାଡ଼, ପ୍ରାନ୍ତର,
ନଦ ନଦୀ, ଆକାଶ, ଭୂଧର,
ପଶୁ ପକ୍ଷୀ, ପୁରପଲ୍ଲୀ ସରଳ ଉଦାର ଶତ ଜନପ୍ରାଣୀ
ସକଳର ଅନନ୍ତ ଅମୃତ କୋଳେ
ମତେ ନିମଜ୍ଜନ କର !
ଅନନ୍ତ ପ୍ରସାରେ ମୁହିଁ ହୁଏ ବଳୀୟାନ,
ନରକ ଭିତରେ ବଢ଼ି ରାଜଭୋଗ କରିବାରେ
କାହିଁ ଛି ସମ୍ମାନ !!

———

# ପ୍ରଣାମ

—୧—

କା କୋଳ ସଙ୍ଗୀତ ଗୋଟିକ ଗୋଟି ତମେ
ବଢ଼ିଚ କେଉଁ ଥାନେ କଏ ସେ କେଉଁ ଭଳ !
କା' ବୁକୁତଳୁ କେତେ ସୁନେଲ କଳ୍ପନା
ଏ ମାଟି ପରେ ଦିନେ ପଡ଼ିବନ କ ଝରି ?
ଅଭାବ ବେଦନାର କଠୋର କଷାଘାତେ
ସାଧନା କରି କଏ ଗୁଲଚ ଦିବାରାତେ
କଏ ସେ କାନ୍ଦଚ ଗଭୀର ସ୍ୱନମାନେ
ହୃଦୟୁ ବ୍ୟଥାଟିକ ହୃଦୟେ ଗୁପି ଧରି
କା' କୋଳ ସଙ୍ଗୀତ ଗୋଟିକ ଗୋଟି ତମେ·
ବଢ଼ିଚ କେଉଁ ଥାନେ କଏ ସେ କେଉଁଭଳ ।

—୨—

ତୁମରି ଭିତରୁ କେ ଉପାସ ରହିଥିବ
ନ ଥିବ ମିଳ ମୁଠେ ସେ କେଉଁ ଦିନ କାହିଁ
ଭାଗ୍ୟ ଆଦରି କେ ବେଦନା ସହିଥିବ
ସେ କେଉଁ ପଲ୍ଲୀର ମୋ ଗୋଟି ଗୋଟି ଭାଇ !
ଏକାଠି ଆଜ ତୁମେ ହୋଇଛ ଏଥି ଠୁଳ
ସେ କେଉଁ ସରଗର ପାରିଜାତକ ଫୁଲ !
ତୁମରି ଅନ୍ତରୁ ବଳ କେ ବଡ଼ ବୋଲ
ମୋ ବେଳ ନୟନେ କେ ଟିକଏ ଦିଶୁନାଇଁ,
ତୁମରି ଭିତରୁ କେ ଉପାସ ରହିଥିବ
ନ ଥିବ ମିଳ ମୁଠେ ସେ କେଉଁଦିନ କାହିଁ !

—୩—

ବଡ଼ିନ କେହ୍ନ ତୁମେ ଧନ ଓ ଦଉଲତେ
କନକ ହର୍ମ୍ୟରେ ରହ୍ନନ ତୁମେ କେହ୍ନ;
ଭଂଗା କୁଡ଼ିଆର ନିଧନ ସଙ୍ଗାଳ !
ଆସିଚ ଅଶ୍ରୁରେ ଜୀବନ ଗଢ଼ି ନେଇ !
ପିନ୍ଧ ନାହିଁ କଏ କୁରୁତାଟିଏ ଭଲ
ସାତଠା ସିଆଁ ଲୁଗା କା' ପ୍ରିୟ ସମ୍ବଳ,
ଧରଣୀ ଦୃଷ୍ଟିର ଅନ୍ତରାଳେ ତୁମେ
ରହିଚ ନିଜ ନିଜ ଦୁଃଖଟିମାନ ନେଇ !
ବଡ଼ିନ କେହ୍ନ ତୁମେ ଧନ ଓ ଦଉଲତେ
କନକ ହର୍ମ୍ୟରେ ରହ୍ନନ ତୁମେ କେହ୍ନ;

—୪—

ତୁମର ବୁକୁତଳେ ରହିଚ ଏ ମାଟିର
ଅମର ସମ୍ପଦ ଅଯୁତ ବଇଭବ;
ତୁମର ଶୋଣିତର ସକଳ ବିନ୍ଦୁରେ
କରିବ ଏ ମାଟିକୁ ଗଭୀର ଅନୁଭବ !
ବର୍ଷ ଭରି ତୁମେ ସେନେହ ଦେବ ତାକୁ
ଦୁଃଖ କାର ନାହିଁ ପାରିବ ସମ୍ଭାଳି,
ଅସୀମ ଦୁଃଖରୁ ଜନମି ଅଛୁ ଯିଏ
ପାରିବା ସବୁ ଦେଇ ତା'ପାଖେ ସମ୍ଭବ
ତୁମର ବୁକୁତଳେ ରହିଚ ଏ ମାଟିର
ଅମର ସମ୍ପଦ ଅଯୁତ ବଇଭବ,

—୫—

ବିରାଟ ପାରାବାର ତୁମର ଅନ୍ତର
ଉର୍ମି ନାଚ ଯିବ ନିଯୁତ କେତେ ଭଳି !
ବିରାଟ ବସୁଧାର ଅସୀମ କ୍ଷୁଧା ତମେ
ପାରିବ ଘୁଞ୍ଚାଇ ଜୀବନ ଦେଇ ବଳି !

ଦିଶୁଚ ତୁମେ କେଡ଼େ ସରଳ ସୁମହତ
ଜୀବନେ ମହକରେ ପୂରିବ ତୁମ ପଥ;
ଫୁଟିବ ଓଠେ ତୁମ ମୁଗଧ ମଧୁ ହାସ
ଖେଳାଇ ଦିଶି ଦିଶି ଅସୀମ ତାର ଝଳ,
ବିରାଟ ପାରାବାର ତୁମର ଅନ୍ତର
ଊର୍ମି ନାଚ ଯିବ କେତେ ଭଲ !

ଭୀଷଣ ଗରଜନେ ତୋଫାନ ବୋହିଗଲେ
ଆଡ଼େଇ ଦବ ତମେ ସିଂହ ପରି ରହି,
ତୁମର ଭିତରେ ଯେ ମଣିଷ ଲୀଳା କରେ
ଏ ମହାଧରଣୀର ମଧୁ ରସେ ଅଛି ବହି ।
ପ୍ରଣାମ କରେ ମୁହିଁ ତୁମରେ ଗୁହିଁ ଗୁହିଁ
ଜାଗିବ ତୁମେ ଆଜ ଏ ମହା ଜାତିପାଇଁ,
ତ୍ୟାଗର ବୀଣା ତାନ ବାଜିବ ତୁମଠାରୁ
ସବୁଶି କାନେ କିବା ଅମର ବାଣୀ କହି !
ଭୀଷଣ ଗରଜନେ ତୋଫାନ ବହିଗଲେ
ଆଡ଼େଇ ଦେବ ତୁମେ ସିଂହପରି ରହି ।

———

# ଚାହିଥାଉ

କେତୋଟି ଦିନରେ କିଏ କାହିଁ କେତେ
ହୋଇଗଲ ମୋର ପ୍ରିୟଜନ ପରିଜନ,
କେତୋଟି ଦିନରେ ସେନେହ ମମତା
ଦନାଇ ଆସିଲ ବନ୍ଧୁଦନ ଅନୁପମ !

କେତୋଟି ଦିନରେ ଗୁରୁଆଡ଼େ ଯେବେ
ସନ୍ଧ୍ୟା ସକାଳେ ଆସିଲି ମୁଁ ବୁଲିବୁଲି
ଦେଖିଲି ମୁଁ କେତେ ବନ ପ୍ରାନ୍ତର
ନଈ ଝରଣାର କଲତାନ ଶୋହାଶିଖି ।

ଶୁଣିଲି ମୁଁ କେତେ ମୋହନ କାକଳି
ଏ ବନ ବିପିନେ ନିତି ଲୀଳା କରିବାର,
କେତୋଟି ଦିନରେ ସକଳଙ୍କୁ ମୁହିଁ
ଆପଣାର କରି ପିଇଲି କି ସୁଧାଧାରେ !

କାଲି ଯିଏ ଥିଲା ଅଜଣା ଅଶୁଣା
ଚାହିଁ ମୁଁ ନ ଥିଲି ଯାହାରେ ନୟନ ଟେକି
ଆଜି ସିଏ ମୋର ବୁକୁ ତଳେ ତଳେ
କି ମୋହନ ଗୀତ ଯାଉଛି ସରାଗେ ଲେଖି !

କାଲି ମୁଁ ଯାହାଠୁ ଛିନ୍ନ ହେଲେ ବି
କିଛି ମୋ ପରାଣେ ପରଶୁ ନ ଥିଲା ତିଳେ,
ମୁହୂର୍ତ୍ତେ ଆଜି ନ ଦେଖିଲେ ତାରେ
କିଛି ମୋରେ ସୁଖ ଲାଗେ ନାହିଁ ଅବନୀରେ ।

କାଲି ମୁଁ ଯାହାରେ ଖୋଜୁ ବି ନ ଥିଲି,
ଆଜି ମୁଁ ତାହାରେ ଖୋଜୁଛି ପରାଣ ଭରି
ଜୀବନର ମଧୁ ସମ୍ପଦଟିକି
ଅରପିବା ଲାଗି ଯାଉଛି ପାଗଳ ପରି !

ପାଦ ଯହିଁ କାଲି ନ ଥିଲି ପକାଇ,
ସେଇ ଭୂଇଁ ଆଜି ଲାଗେ କେତେ ପ୍ରିୟତମ,
ଲବେ ଆଡ଼ୁଆଳ ହେଲେ ସେ ଭୂଇଁରୁ
ମନେହୁଏ କିବା ହରାଇଛି କି ରତନ !

ଅଜଣା ଅଶୁଣା ଅପରିଚିତରେ
ପରିଚିତ ହୋଇ ଶତ ମଧୁ ସନମାନେ,
କି ଶିକ୍ଷା-ବିଭବ ତୋଳି ମୁଁ ନେଉଛି
ନିତି ଦିନ ଏଥି ଅନୁଭବି ପ୍ରାଣେ ପ୍ରାଣେ ।

ଅଦେଖାରେ ମୋର କିଏ କାହିଁ ଅଛି
ଯୁବା ମଝିବୟସୀ ବାଳକ ବାଳିକାଦଳ,
ଅଛି କିଏ କାହିଁ ଅବର-ପ୍ରଉଢ଼—
କେତେ ଅନୁଭୂତି ପରଶେ ମୋହନତର !

କେତେ ଗିରି ବନ ସାଗର ସିକତା
ବିଜନ ବିପିନ ନଈ ହ୍ରଦ ସରୋବର,
କେଉଁଠି ବିସାରି ବିମୋହନ ଶିରୀ
ଲୀଳା ଚଞ୍ଚଳ କରୁଛ ଧରଣୀତଳ !

କି ମଧୁ ଧିଆନେ ସଜଳରେ ମୁହିଁ
ବିଜନ କୁଟୀରେ ଗୃହିଁଛ ସୋହାଗଭରେ
ଫୁଟି ଫୁଟି ଆସ ପୀୟୂଷେ ପଖାଳି
ମତେ, ମୋ ଭିତରୁ କାଳିମା ଲୁଟାଇ ଖରେ ।

ଓଠେ ମୋର ଦିଅ ବିମୋହନ ହାସ
ନୟନେ ଦିଅ ମୋ ସପନ ଗୃହାଣୀ ଭରି,
ତୁମରି ଅସୀମ ବାସନା ବିଳାସେ
ମୋ ଜୀବନ ଦୀପ ଦପ ଦପ ଉଠୁ ଜଳି !

ହୋଇଯାଉ ଶେଷେ, ମୋ ଶେଷ ସମାଧି
ତୁମରି ବିଶାଳ ମୋହନ ପରଶ ଲଭି,
ତୁମରି ଭିତରେ ମୋର ଅବଶେଷ
ରହିଥାଉ ହୋଇ ଗୋଟିଏ ଗରିବ କବି !

---

## ପଲ୍ଲୀ-ବରଷା

୧ କଜଳ କଳ'ମେଘ ଆକାଶେ ବୁଲିଯାଏ,
ବରଷା ପଡ଼େ ନଭୁ ଝରି ଗୋ !
ବିଜୁଳି ମାରିଦିଏ ଶଇଳ ଚୂଳେ ଚୂଳେ
ଅବନୀ ଉଜ୍ଜଳ କରି ଗୋ !

ଶ୍ୟାମଳ ଧାନ କ୍ଷେତ
ଉଡ଼ାଏ ନୀଳ କେତ;
ନାଉରୀ ଗୀତ ଗାଇ ନଈରେ ବାହୁଛନ୍ତି
ଉଦାସ ମନେ ନିଜ ତରୀ ଗୋ !
କଜଳ-କଳାମେଘ ଆକାଶେ ବୁଲୁଥାଏ
ବରଷା ପଡ଼େ ନଭୁ ଝରି ଗୋ !

ଶ୍ୟାମଳ ବନଭୂଇଁ ଦୂରରୁ ଦିଶେ ନାଇଁ
ପଡ଼ଇ ଝୋପା ପିଇଁ ପିଇଁ ଗୋ
ଫେରଇ ଚଷାପିଲା ଗୀତଟି ଗାଇ, ଗାଇ,
ମଥାରେ ଟେକାଟିଏ ନିହୁ ଗୋ !
ଗୋଧନପଲ ଧରି
ଗଉଡ଼ ଆସେ ଚଳି,
ଭୋକ ଯେ ଲଗିବଣି ସଞ୍ଜ ହେଲା ଆସି,
କଛୁତ ନାଇଁ ଖାଇ ପିଇ ଗୋ !
ଶ୍ୟାମଳ ବନଭୂଇଁ ଦୂରରୁ ଦିଶେ ନାଇଁ
ପଡ଼ଇ ଝୋପା ପିଇଁ ପିଇଁ ଗୋ !

ଅସରା ଅସରା ଯେ ବରଷା ଝରିପଡ଼େ
ମୁହଁକୁ ନ ଦିଶଇ ମୁହଁ ଗୋ !
ନିବଡ଼ ଅନ୍ଧାର ନିଖିଳ ଚରାଚର
ପଥରେ ଗୃଳେ ପାଣି ସୁଅ ଗୋ !
ଶୁଭଇ ଭେକ ଡାକ
ପଥରେ ଲୋକବାକ—
ଗୋଟିଏ ଦେଖା ନାଇଁ, ଗୃହେ କେ ବସି କାହିଁ
ମେଲଡ ଚଉପାଧୀ ସୁଅ ଗୋ !
ଅସରା ଅସରା ଯେ ବରଷା ଝରିପଡ଼େ
ମୁହଁକୁ ନ ଦିଶଇ ମୁହଁ ଗୋ !

ଗାଆଁରେ ଯେତେ ଯନ୍ହିଁ ପୋଖରୀ ନାଳ ନଈ
ବରଷାଜଳେ ଭରପୂର ଗୋ !
ପାଦପ ଲତା ଶିରେ ବରଷା ଟୋପା ଛୁଟେ
ଶୁଭଇ ଟପ ଟପ ସୁର ଗୋ !
ଟୀରେ କଏ କାହିଁ
ଦେଲେଣି ଭାତ ଖାଇ,
ବୋଉ କା' ଉଠାଏ ତା' ଅଝଟ ପୁଅଟିରେ
ଶୋଇବ ହେଉ ବେଳବୁଡ଼ ଗୋ !
ଗାଆଁର ଯେତେ ଯନ୍ହିଁ ପୋଖରୀ ନାଳ ନଈ
ବରଷା ଜଳେ ଭରପୂର ଗୋ ।

ପହିଲି ପାଳି ହୋଇ, ବୋହୂ କେ ଆସିଚଇଁ,
ଶାଶୁର ପାଦ ଦଏ ଘଷି ଗୋ,
ପରାଣ-ପ୍ରିୟ ତା'ର ଅନାଦେ ବନ୍ଧୁବାର
ଶେଯରେ ଅଛି ଗୃହିଁ ବସି ଗୋ !
ଶୁଭିଲେ ପାଦବଳା,
ଦୁଆର ଆଉଟେଳ,
ବୁକୁରେ ବଦ୍ୟୁତ ହୁଅଇ ସଂଜାତ;
ଆସିବେ ପ୍ରିୟ ହସି ହସି ଗୋ !
ପହିଲି ପାଳି ହୋଇ ବୋହୂ କେ ଆସିଚଇଁ
ଶାଶୁର ପାଦ ଦଏ ଘଷି ଗୋ ।

ଗରବ ବଧବାର ଉଡ଼ୁଛି ଘର ଚୂଳ
ଟୋପାକୁ ଟୋପା ପାଣି ଗଳେ ଗୋ ।
ସାତଠା ବସି ଉଠି, ନ ଯାଏ ଜାଳା ଲୁଟି,
ସେ କେଉଁ କୋଣ ଯାକ ପଡ଼େ ଗୋ ।
କାନରୁ ଅଧେ ଓଦା,
ଶୀତରେ ପାଏ ବାଧା,
ଆଖିରୁ ବୋହେ ଲୁହ, ଯେବେ ତା ପତି ପୁଅ
ଥରକୁ ଥର ମନେ ପଡ଼େ ଗୋ ।
ଗରବ ବଧବାର ଉଡ଼ୁଛି ଘର ଚୂଳ
ଟୋପାକୁ ଟୋପା ପାଣି ଗଳେ ଗୋ ।

ଭିକାରି ପିଲା ଜଣେ, ଯାଇଛି ଦୂର ଗ୍ରାମେ,
ଆଣିବାପାଇଁ ଭିକ ମାଗି ଗୋ ।
ଏ ଝଡ଼ କରଡାରେ ଆସିନି ପାରି ଘରେ,
ବୋଉ ତା' ଘରେ ଅଛି ଜାଗି ଗୋ ।
ବ୍ୟଥେଇ ହୁଏ ମନ,
କଭିଲ ମୋର ଧନ
କେଉଁଠି ଥିବ ରହି ବରଷା ମାଡ଼ ଖାଇ
ଆକୁଳ ହୁଏ ତାହା ଲାଗି ଗୋ !
ଭିକାରି ପିଲା ଜଣେ, ଯାଇଛି ଦୂର ଗ୍ରାମେ
ଆଣିବାପାଇଁ ଭିକ ମାଗି ଗୋ !

---

## ଅପେକ୍ଷା ଓ ଉପେକ୍ଷା

ଆସି କିମ୍ପା ଯାଉଅଛ ଫେରି ?
ଦେଇ କିମ୍ପା ଦେଉ ନାହିଁ ?
ଏ ଦରିଦ୍ର ଜୀବନର ଯେତିକି ଇପ୍‌ସିତ
ବୁଝି କିମ୍ପା ବୁଝୁ ନାହିଁ ?
ମରମର ଯେତେ ଯାହା ଜାଳା ଓ ଯନ୍ତ୍ରଣା
ଶୁଣି କିମ୍ପା ଶୁଣୁ ନାହିଁ ?
ଦେଉଛ ଆଡ଼େଇ ଯେହ୍ନେ ମୁଁ ଅପରିଚିତ,

ଜୀବନର ବହୁଦିନୁ ଆଜଯାଏଁ
ସୀମାହୀନ ଜଞ୍ଜାଳ ଓ ଯାତନାର—
ଅବରୁଦ୍ଧ ବେଷ୍ଟନୀ ଭିତରେ
ତୁମରେ ଦେଇଛି ମୋର
ଅନ୍ତରର ସବୁ ଅର୍ଘ୍ୟ ଢାଳି,
ଆପଣା ଶୋଣିତ୍ର ବଳି
କେତେ ଭଲ ପାଇ ଅବିରଳେ !

ଯେତେ ଯାହା ବାଧା ବିଘ୍ନ,
ଯେତେ ଯାହା ଦୁଃଖ ଗ୍ଲାନି,
ଅଭାବର ନଗ୍ନ ବିଭୀଷିକା,
ଯେତେ ଯାହା ଲାଞ୍ଛନା, ତାଡ଼ନା
ସମସ୍ତ ଭିତରେ ମୁହିଁ
ନିୟତ ସନ୍ତୁଳ ହୋଇ,
କରୁଛି ମୁଁ ଉପାସନା ତବ
ତୁମେ କପାଁ ମୋହ ପାଇଁ
ରହିଛ ନୀରବ ?

ଲହରେ ଦେଖିଛି ମୁହିଁ
ତୁମର ସପନ
ବିପନ୍ନ ମୁହୂର୍ତ୍ତେ ମୁହିଁ
ଅନୁଭବ ଅଛି
ତୁମଂରେ ନିବିଡ଼ କରି
ଦିନ ଦିନ ଧରି,
ସୁଖ ସମ୍ପଦର କୋଳେ,
ତଳବାର ବେଳେ;
ତୁମରି ବନ୍ଧନେ ମତେ
ଭଲଲାଗେ ନାହିଁ କିଛି ହେଲେ
ସବୁ ମୁହୂର୍ତ୍ତରେ ମୋର
ତୁମେ ମୋର ସାଥୀ ସହଚରୀ
ତୁମେ ଯେ, ମୋରେ ଦେଇଛ ଆଡ଼େଇ
କହ କେଉଁଭଳି ?

ବକ୍ଷ କାଟି ସମସ୍ତ ମମତା ଦେଲି
ଦେଲି ମୋର
ଶୋଣିତର ପ୍ରତିବିନ୍ଦୁଟିକ
ତଥାପି ମୁଁ ଦଶିଲନି
ଟିକଏ ଅଧିକ !

ଜନ୍ମଜନ୍ମାନ୍ତର ଧରି
ଜାଗ୍ରତ ମୁଁ ଉତ୍କଣ୍ଠିତ ମୁଁ
ଦେବା ପାଇଁ ମୋ ସମସ୍ତଟିକ,
ତୁମ ସ୍ୱର୍ଣ୍ଣ ପଦ ପ୍ରାନ୍ତେ ଢାଳି,
ତଥାପି ତ ଦେଲ ନାହିଁ
ସୁଧା ଆଲିଙ୍ଗନ !
ତଥାପିତ କଲନାହିଁ
ହୃଦୟର ଏକାନ୍ତ ସଙ୍ଗୀନି !

ତୁମ ପାଇଁ ହେଲି ତ୍ୟାଗୀ
ହେଲି ମୁହିଁ ଉନ୍ମନ ପାଗଳ,
ତୁମପାଇଁ ଯେତେ ଯାହା ଉପଭୋଗ୍ୟ
ପୃଥିବୀ ନୟନେ ଯେତେ ଯାହା
ମଧୁର ସୁନ୍ଦର
ଗୋଟି ଗୋଟି କରି
ଛାଡ଼ିଦେଲି ନିରନ୍ତର ।
ସହିଲି ସମସ୍ତ ଧକ୍କା,
ସବୁଆଡ଼େ ଆଖିପାତି,
ତୁମରେ ମୁଁ କଲି ମୋର
ଏକାନ୍ତ ନିର୍ଭର,
ତୁମେ କମ୍ପା ରହିଁଲନି ?
ଫିଙ୍ଗିଦେଲ ପର କରି
ଦୂରଦୂରାନ୍ତର ।
ତୁମେ ମୋରେ ଫିଙ୍ଗିଦେଲେ
ମୁଁ ତୁମରେ ରହୁଁ ଅଛି ଫେରି,
ତୁମେ ମୋରେ ନ ଲୋଡ଼ିଲେ
ମୁଁ ଲୋଡ଼ୁଚି କଆଁ ଏତେଭଳି ?
ତୁମେ ମୋରେ ନାହିଁ ଦେଲେ
ବକ୍ଷଭରି ଅମୃତ ସମ୍ଭାର
ମୁଁ କମ୍ପା ମାଗୁଚି କହ
କରପୁଟ ପାତି ବାର ବାର ?

ତୁମେ ମୋରେ ନ ପାରିଲେ ଦେଖି
ମୁହିଁ କିମ୍ପା ଏତେ ଦେଖିପାରେ ?
ତୁମେ ମତେ
ମଠରୁ ନିରଖି କଲେ
ମୁଁ କିମ୍ପା ଆଶାୟୀ ହୋଇ,
ତୁମର କରୁଣା ମାଗେ ନିଖିଳ ସଂସାରେ !

ଏ ଜୀବନ ପଥ ପରେ,
ତୁମେ ତ ଫୁଟିବ ଯେବେ,
ଗୋଲାପର ରକ୍ତ କଳି ସମ,
ବୋଲି ଦେବ
ରୂପ ରସ ଗନ୍ଧ ଅନୁପମ
ବେଦନାର ତପ୍ତ ଅଶ୍ରୁ
ଯେତେ ଅଛି ତାକୁ,
ସମସ୍ତର ଯେବେ ହେବ ଅବସାନ,
ବସନ୍ତର ବନକୁଞ୍ଜ ସମ
ସୀମାହୀନ ଆନନ୍ଦର ଶୋଭା
ଦେବ ଗୋ ଅଜାଡ଼ି
ଏ ଅନ୍ତର ପ୍ରତି ରକ୍ତକୋଷେ
ତୁମେ ଯେବେ ଉଠିବ ସଞ୍ଚରି
ଦେବ, ଯାହା ମାଗି ଅଛି
ଅବା ମାଗିନାହିଁ,
ମୋର ମନଭରି ।
ମତେ ଯେତେ ତୁଚ୍ଛ କରି
ହେୟ କରି,
ପଶ୍ଚାତ୍ତ ରମେ,
ସୀମାହୀନ ଅନୁରାଗ ତାକୁ
ଛାଡ଼ି ପାରିବନି କ୍ଷଣେ ।
ମୁଁ ତୁମଠୁ ଦୂର ହେଲେ
ମୋରେ ଲୋଡ଼ିନବ ବାର ବାର
ମୁଁ ଯେବେ ତୁମର ହେବ,
ହୃଦୟର ଏକାନ୍ତ ସମ୍ଭାର !

ସବୁ ନିଷ୍ଠୁରତା, ସବୁ ଅବହେଳା ପରେ
ତଥାପି ଏ ଆଶା ଓ ବିଶ୍ୱାସ
ଜଳେ ମୋର ଅନ୍ତରେ ଅନ୍ତରେ;
ସମସ୍ତ ଝଡ଼
ଆଉ ପ୍ରଳୟର ବତାଶ ଭିତରେ
ଦୀପ ଜାଳି ରହିଁଚି ମୁଁ
ନିଭି କନୁ ଯାଇନାଇଁ ଥରେ !
ଜଳିବି ଜଳିବି ମୁହିଁ
ଆହୁରି ଜଳିବି,
ଶିଖା ଟେକି ଜଳିବି ମୁଁ
ମୋ ଆଲୋକ ତେଜ
ଫୁଟାଇ ଫୁଟାଇ,
ଏ ପୃଥିବୀ ପରେ ନିରନ୍ତର
ଆହୁରି ମୁଁ ହେବି ଅଗ୍ରସର ।
ଦେଖିବ କିଭଳି ତମେ
ଆସିବନି ପାଶେ ମମ,
ବୁଝିବନି ଅନ୍ତରର କଥା
ଦେଖିବ କିଭଳି ତୁମେ
ହାଣୁଥିବ ବକ୍ଷେ ମୋର
ଚିର ଦିନ ବ୍ୟଥା ।

ସରିନାଇଁ ମୋର ଯାତ୍ରାପଥ
ଅସୀମ ପଥର ମୁଁ ଯେ
ଯାତ୍ରୀ ଚିରନ୍ତନ,
ବହୁତ ଆସିଚି ସହି
ଆହୁରି ବି ସହିବାକୁ ଅଛି
ଜ୍ୱଳିଚି ମୁଁ ବକ୍ଷେ ବହ୍ନି
ବିରାଟ ବିକ୍ରମ ।
ଏ ଜୀବନ ଏତେ ବଡ଼ ନୁହେ
ବଞ୍ଚି ଖାଲି ରହିବାର ରହିଁ
ଅନନ୍ତ ସମୟ ପାଇଁ !

ତୁମେ ମୋତେ ଦେଖା —
ନାଇଁ ଦେବାଯାଏ
ଯାହା ମୋର ହେବନାଇଁ ଶେଷ
ତୁମେ ମୋତେ ନିକଟୁ ନିକଟ କରି
ବକ୍ଷେ ତୋଳ ନାଇଁ ନେବାଯାଏଁ,
ହେବ ନାଇଁ
ମୁଁ କେବେ ନିଃଶେଷ !
ରହିଥିବ ହୋଇ ମୁହିଁ
ଅରକ୍ଷ କାଙ୍ଗାଳ !
ତଥାପି ମୁଁ ଚାଲିଥିବ
ପାହାଡ଼ ପ୍ରାନ୍ତର କାଟି,
ଚାଲିବାରେ ରହିଚ ଏ ଜୀବନର
ଅନନ୍ତ ସମ୍ଭାର !

---

# ସୀମାନ୍ତ ବାସିନୀ

ସୀମାନ୍ତ ବାସିନୀ ତୁମେ ଆନ୍ଧ୍ର ଓଡ଼ିଶାର
ତୁମର କଣ୍ଠେ ଶୁଣି କଣ୍ଠେ ଓଡ଼ିଆ ଭାଷାର—

ଯେ ମୋହନ ବଇଭବ ଝରି ଝରି ପଡ଼େ
ମୁଗଧ ହୋଇ ଶୁଣୁଚ ମୁଁ ଅମୃତ କି ଏଡ଼େ—

ମିଠା ହେବ ଧରଣୀରେ ? କିଏ କହେ ତମେ
ମୋ ଭାଷାରେ ଅନଭିଜ୍ଞା ? ତୁମର ବଚନେ,

ଭାଷା ମୋର କବିତାର କଳ ତାନ ପରି
ରୋମାଞ୍ଚ ଜଗାଏ ପ୍ରାଣେ; ତୁମେ ବାଗୀଶ୍ୱରୀ

ଏ ବଣ ପାହାଡ଼ ଘେରା ପୁର ପଲ୍ଲୀମାନେ
ଜୀବନ୍ତ ଜୀବନ୍ତ କରି ମୋହର ଭାଷାରେ—

ରଖିଅଛ ଯୁଗ ଯୁଗ କାଳ କାଳ ଧରି;
ମୃତ ଓ ମୁମୂର୍ଷୁ ଅବା ବକଳାଙ୍ଗ କରି —

ରଖିବାକୁ ଦେଇ ନାହଁ, ଭାଷା ଆପଣାର
ବଞ୍ଚିଲେ ବଞ୍ଚିବ ଜାତି ଶୋଣିତର ଧାର !

---

# କେଉଁ ପଥେ

ଯା' ଲାଗି ଆଖିରେ ମୋ ପଲକ ନାହିଁ ପଡ଼େ
ଯା' ଲାଗି ଝୁରି ଝୁରି ଜୀବନ ନାହିଁ ସରେ !

ଯା' ଲାଗି ପାଗଳମା ପରି ମୁଁ ଘୂରି ବୁଲେ
ଯା' ଲାଗି ଶୋକ ଶେଷ ବାଧେନା ମୋରେ ତିଳେ,

ଯା' ଲାଗି ହୃଦବେଦୀ ଶୂନ୍ୟ ଅଛି ପଡ଼ି
ଯା' ଲାଗି ଫୁଲ ଫୁଟି ପଡ଼ନ୍ତି ତଳେ ଝରି,

ଯା' ଲାଗି ଏ ଜୀବନ ଲାଗିନା ଦୁର୍ବହ
ଯା' ଲାଗି ସହୁଛି ମୁଁ ବେଦନା ଦୁଃସହ !

ଯା' ଲାଗି ବଞ୍ଚିଛି ଅସୀମ କାଳ ଧରି,
ଟିକି-ଏ ହେବାଲାଗି ପରାଣ ସହଚରୀ,

ଯା' ଲାଗି ପ୍ରସ୍ତୁତ ମରିବା ଲାଗି ମୁହିଁ
ଯା' ଲାଗି ସୁନ୍ଦର ମନେ ଆକାଶ ଭୂଇଁ,

ଯା' ଲାଗି ତୃଷା ମୋର ପୂର୍ଣ୍ଣ ହୋଇ ଉଠେ,
ଯା' ଲାଗି ଯେତେ ଯାହା ଦୁଃଖ ସବୁ ତୁଟେ,

ଯା' ଲାଗି ଜୀବନଟା ଜୀବନ ପରି ଲାଗେ,
ଯା' ଲାଗି ଧରଣୀରେ ମୁଁ କିଛି ନାହିଁ ମାଗେ

ସେ ଯେବେ ନ ଆସିବ କ୍ଷଣିକ ପାଇଁ ହେଲେ
ହୃଦୟ ଖୋଲି କଥା କହିବ ନାଇଁ ମୋରେ

ଚିକଏ ଆପଣାର କରିବ ନାଇଁ ମତେ
ଚାଲିବ ଧରଣୀରେ ମୁଁ ଆଉ କେଉଁ ପଥେ ?

---

## ମାନବ ଦେବତା

ମର୍ତ୍ତ୍ୟେ ଥିଲ ଅବତରି ହେ ମହାମାନବ !
ମାନବରେ ଦେବା ପାଇଁ ମାନବର ବାଣୀ,
ଶତ ନିଷ୍ପେଷଣେ ଯେବେ ଏ ମାଟିର ପ୍ରାଣ
ହେଉଥିଲା ଛିନ୍ନ ଭିନ୍ନ ନିଜ ଭାଗ୍ୟ ମାନି;

ଜାଳି ଦେଲ ଅଗ୍ନି ଶିଖା ସବୁରି ଅନ୍ତରେ;
ଜାଗିଲା ଜୀବନ କିବା ନବ ଶକ୍ତି ଧରି
ଯୁଗୁଡାର ଅନ୍ଧକାରୁ ଆଣିଲ ଜାତିକି
ସତ୍ୟ ସାହସର ପଥେ ଅବତୀର୍ଣ୍ଣ କରି ।

ଅନ୍ନବନେ ବାସବନେ ଯେବେ ଏ ଦେଶର
ମେରୁଦଣ୍ଡ ନାରଖାରେ ଯାଉଥିଲା ଭାଜି,
ମୂକ ପଶୁ ପରି ଥିଲା ଏ ଜାତିର ପ୍ରାଣ
ସାମ୍ରାଜ୍ୟବାଦର ସହି ଅତ୍ୟାଚାର ରାଜି,

ହିମାଦ୍ରିରୁ କୁମାରିକା ଯାଏଁ ଏ ଜାତିର
ରସନା ନ ଥିଲା କହି, ବଳିଷ୍ଠର ବାଣୀ
ମୁମୂର୍ଷୁ ଜାତିରେ ତମେ ବଞ୍ଚାଇଲ ପରା
ସିଞ୍ଚି କିବା ସତ୍ୟ ଅହିଂସାର ଫୁଲ ପାଣି !

ନିରନ୍ନ ପାଇଛି ଅନ୍ନ ଲାଞ୍ଛିତ ସମ୍ମାନ,
ଶତ ଜୀର୍ଣ୍ଣ କଙ୍କାଳରେ ଜାଗିଛି ଜୀବନ,
ଶୃଙ୍ଖଳ ହୋଇଛି ଛିନ୍ନ, ମୁକ୍ତ ସିଂହଦ୍ୱାରେ
ପହଞ୍ଚିଛି ଏ ଦଳିତ ଜାତିର ସ୍ପନ୍ଦନ ।

ମଣିଷ ମଣିଷ ପର ବଞ୍ଚିବାକୁ ପଣ
ସମର୍ଥ ହୋଇଛି ଆଜ ତୁମରି ମାଟିରେ
ତୁମରି ବିରାଟ ସ୍ୱପ୍ନ ସତ୍ୟର ଆଲୋକେ
ଆଲୋକିତ, ଉଦ୍‌ଭାସିତ ହୋଇଛି ଅଚିରେ ।

ସାରାଟି ଜୀବନ ତୁମେ କରିଛ ସଂଗ୍ରାମ
ଅତ୍ୟାଚାର, ଅନାଚାର ପୀଡ଼ନ ପେଷଣ
ହିଂସା ହତ୍ୟା ଶଠତାର ଯେ ବୀଭତ୍ସଲୀଳା
ଭାଙ୍ଗିବାକୁ ଧରଣୀରେ ତାର ସିଂହାସନ;

ହେ ସ୍ୱର୍ଗର ଦେବଦୂତ ! ଆସିଥିଲ ତୁମେ
କରେ ଧରି ସରଗର ପ୍ରଦୀପ୍ତ ମଶାଲ;
ସେ ମଶାଲ ରଶ୍ମି ତେଜେ ଭାରତ ଆଲୋକ
ପୃଥିବୀ ଆଲୋକ, ଲୁପ୍ତ ସବୁ ଅନ୍ଧକାର !!

ସରିତ ନ ଥିଲା ତୁମ ଜୀବନ ସାଧନା
ତ  ସ୍ୟାର ଉଦ୍‌ଯାପନ ନ ଥିଲା ତ ହୋଇ,
ବାଜୁଥିଲା ବକ୍ଷୁ ତବ ଯେ ଅମୃତ ବୀଣା
ବାଜୁଥାନ୍ତା କଳ୍ପନାର ଯାଦୁସ୍ପର୍ଶ ବୋଳି !!

ମଣିଷ ଭିତରେ ଯେଉଁ ଘୋର ବର୍ବରତା
ତୁମ ବୀଣା ତାନେ ଆଉ ଯାଇ ଥାନ୍ତା ଦବି,
ବିରାଟ ଅନ୍ତର ତବ କାନ୍ଦୁଥିଲା ନାକି ?
ଭାରତର ବକ୍ଷେ ଦେଖି ନରକର ଛବି !

ସ୍ତବ୍ଧ ହୋଇ ରୁହେଁ ଆଜ ବନ କୁଞ୍ଜ ଲତା,
ସ୍ତବ୍ଧ ହୋଇ ରୁହେଁ ଆଜ ପାହାଡ଼ ପ୍ରାନ୍ତର,
ସ୍ତବ୍ଧ ହୋଇ ରୁହେଁ ଆଜ ଜଳଧି ତରଙ୍ଗ,
ସ୍ତବ୍ଧ ହୋଇ ରୁହେଁ ଆଜ ଶୁଦ୍ଧ ନୀଳାମ୍ବର ।

ସ୍ତବ୍ଧ ହୋଇ ରୁହେଁ ଆଜ ଦେଶ ଓ ବିଦେଶ,
ସ୍ତବ୍ଧ ହୋଇ ରୁହେଁ ଆଜ ସବୁରି ଅନ୍ତର
ସ୍ତବ୍ଧ ଆଜ ପୃଥିବୀର ପ୍ରତି ଧୂଳିକଣା ।
ଯାଇଛି ବାପୁଜୀ ଛୁଡ଼ି ଖିଳ ଚରାଚର !!

ସତ୍ୟ ଏ କି ? ସ୍ୱପ୍ନ ଏ କି ପ୍ରଳାପର ବାଣୀ ?
ବିଶ୍ୱାସ ଆସୁନି ଲବେ କାହାରି ଅନ୍ତରେ
ପୃଥିବୀର ମେରୁଦଣ୍ଡ ସତେ ଭାଙ୍ଗି ଗଲା
ବଞ୍ଚିବ କେମନ୍ତେ ପୃଥ୍ୱୀ ସଉର ମଣ୍ଡଳେ !

ଗମ୍ଭୀର ଆତଙ୍କ ଛାୟା ମାଡ଼ିଆସେ ଆଜି
ପୃଥିବୀର ଅଗ୍ନିଶିଖା ନିଭିଗଲା ସତେ ?
ଘରେ ଘରେ କ୍ରନ୍ଦନର କି ଗମ୍ଭୀର ରୋଳ
ପ୍ରତି ମଣିଷର ତୁମେ ଆପଣାର କେତେ !

ଭାରତର ପ୍ରତି ବକ୍ଷ ଲୋଡ଼ଇ ଆକୁଳେ
ହେ ସନ୍ନ୍ୟାସୀ ! ବ୍ରହ୍ମଗୃହୀ ! ରହିଥାନ୍ତ ତମେ !
ସବୁରି ନୟନ ନିତି ଦେଖନ୍ତା ତୁମରେ
ଶୁଣନ୍ତା ତୁମରି ବାଣୀ ବିମୁଗ୍ଧ ଶ୍ରବଣେ !

ଭାରତର ପ୍ରତିବକ୍ଷ ଲୋଡ଼େ ଆଜି ଲୋଡ଼େ
ରହିଥାନ୍ତ ତୁମେ ତାର ଗଣ୍ଠିଧନ ପରି,
ଯେତେ ଯାହା ଭାରତର ବିପୁଳ ସମ୍ପଦ
ଦୁରନ୍ତ ସେ ମହାକାଳ ନେଇ ଥାନ୍ତା ହରି ।

ରସାତଳେ ହେଲେ ପଛେ ଯାଇଥାନ୍ତା ମିଶି
ବିରାଟ ଏ ହିମାଦ୍ରିର ହିମ ଶୁଭ୍ର ମଥା,
ଜାହ୍ନବୀ ଯମୁନା ପଛେ ଯାଇଥାନ୍ତେ ଶୁଖି
ମହୋଦଧି ବହିଥାନ୍ତା ମରୁ କ୍ଷୀରବତା,

ଅଜନ୍ତାର ଶିଳ୍ପଶିଖା ଯାଇଥାନ୍ତା ମରି
ନିଭି ଥାନ୍ତା ଭାରତରୁ ତାଜ ସ୍ୱପ୍ନ କଳା,
ତୁମେ ଥିଲେ ଭାରତର ପ୍ରତି ଭୂମି ଖଣ୍ଡ
ଲାଗୁଥାନ୍ତା ସରଗର ଆଶୀର୍ବାଦେ ତଳା ।

ଯାଇଛ ତ ! ପୃଥିବୀର ହେ ଶହୀଦ ରାଜ !
ବକ୍ଷର ଶୋଣିତେ କରି ରଞ୍ଜିତ ଏ ମାଟି,
ପୃଥିବୀର ସ୍ତରେ ସ୍ତରେ ତୁମରି ହୃତ୍‌ପିଣ୍ଡ
ହେଉଥିବ ସ୍ପନ୍ଦିତ ହେ କାଳଦନ୍ତ କାଟି ।

ଦେଶେ ଦେଶେ ଗ୍ରାମେ ଗ୍ରାମେ ପୁରେ ପୁରେ ତମେ
ସବୁରି ଅନ୍ତରେ ଜଳୁଥିବ ନିରନ୍ତର
ମାନବ ଜାତିର ତୁମେ ମାନବ ଜାତିର
ଏକଇ ଅଖଣ୍ଡ ଦୀପ ସତ୍ୟ ଶୁଭଙ୍କର !!

ବଞ୍ଚିଚ ମାନବ ପାଇଁ ମରିଚ ମାନବ ପାଇଁ
ଗଢ଼ିଚ ମାନବପାଇଁ ସାଧନାର ସ୍ୱର୍ଣ୍ଣ ମୀନମିଡ଼ ।
ତୁମରି ଉପରେ ଆଜ କେହ୍ବ ନାହିଁ ହେବାପାଇଁ
ମାନବର ଅଦ୍ୱିତୀୟ ପ୍ରାଣ ଦାମୀ ବୀର !

ଯେ ବେଦ ପ୍ରସ୍ତୁରି ଅଛ ଗମ୍ଭୀର ନିର୍ଘୋଷେ
ଦେଶ କାଳ ଜିଣି ତାର ଅନନ୍ତ ମହିମା,
କରୁଥିବ ପୃଥିବୀକୁ ଜୀବନ୍ତ ଜୀବନ୍ତ
ପୃଥିବୀ କପାଳୁ ପୋଛି ସମସ୍ତ କାଳିମା !

ସତ୍ୟ ପ୍ରେମ ଅହିଂସାର ଶାଶ୍ୱତ ତ୍ରିବେଣୀ
ରହିଲ ଏ ମଣିଷର ବୁକୁ ତଳେ ତଳେ,
ତୁମରି ପ୍ରାଣର ସେ ଯେ ସୁନ୍ଦର ମଣିଷ
ଫୁଟାଇବା ପାଇଁ ଯୁଗେ ଯୁଗେ ଧରା ପରେ ।

ବର୍ଷ ପରେ ବର୍ଷ କେତେ ବହିଯିବ ସତ
ସଭ୍ୟତାର ପରେ କେତେ ଆସିବ ସଭ୍ୟତା
କାଳର ଅନନ୍ତ ଗର୍ଭେ ସଜୀବ ସୁନ୍ଦର
ଦିଶୁଥିବ ବକ୍ଷେ ବହି ତୁମରି ବାରତା !

---

# ମର୍ତ୍ତ୍ୟର ମୋହ

ସାନ୍ଦ୍ର ବାଦଲ ମନ୍ଦ୍ରେ ଗରଜ ଆସୁଥିଲା ଯେବେ ବରଷି,
ଶୋଇଥିଲି ମୋର କୁଟୀର ତଳପେ କିଏ ସେ ମୋ ଦେହ ପରଶି,
ମୃଦୁ କର ଖୋଲ ଖସି ମୃଦୁ ବାଣୀ,
ଗୋପନ ରାଇଜ କେଉଁ ରାଜରାଣୀ,
ଗୋପନେ ଗୋପନେ ଆସି ଠିଆ ହେଲା ସରାଗେ ମୋ ବୁକୁ ସରସି !
ଶୋଇଥିଲି ଯେବେ କୁଟୀର ତଳପେ କିଏ ସେ ମୋ ଦେହ ପରଶି···

ଯଉବନ ତନୁ ହସି ଉଠୁଥିଲା ସେ ତରୁଣୀ ବର ବଧୂର
ଓଠେ ଫୁଟୁଥିଲା କୋକନଦ କଣା ହାସ୍ୟ ମଞ୍ଜୁ ମଧୁର !
ମଙ୍ଗଳ ଦୀପ ପରି ଆଖି ଦୁଇ
ଯାଉଥିଲା ମୋରେ କି ଗୀତରେ ଛୁଇଁ !
ଅସ୍ଫୁଟ ବାଣୀ ରସନାରୁ ତାର, ଲାଗୁଥିଲା କିବା ପ୍ରତିଧ୍ୱନି କେଉଁ ସୁଦୂର
ଓଠେ ଫୁଟୁଥିଲା କୋକନଦ କଣା ହାସ୍ୟ ମଞ୍ଜୁ ମଧୁର !

ନୀଳକେଶ ପାଶ ଲମ୍ବି ପଡ଼ିଚି ପଦତଳ ଯାଏଁ ଚରମେ
କେଉଁ କନ୍ୟକା ସରଗ ପୁରୀର ଆସିଚି ମରତେ ଭରମେ !
ଥରେ ସେ ଉଠାଇ ଥରେ ସେ ଗୁହାଁଇଁ,
ଗୋପନ ପୁରୀର ସେ ରାଜ ମହଲା,
ଚମ୍ପକ ଭଳି ଅଙ୍ଗୁଳି ଖୋଲ କହିଲା ବାରତା ସରମେ;
କେଉଁ କନ୍ୟକା ସରଗ ପୁରୀର ଆସିଚି ମରତେ ଭରମେ !

ଗଣ୍ଡ ଯୁଗଳ ଢଳ ଢଳ ଢଳ ଗୋଲାପ ପାଖୁଡ଼ା ପରାଏ !
ନୀଳ ଭ୍ରୂରୁ ଲତା ବନ୍ଧ କି ମମତା ଥିରି ଥିରି କେତେ ଥରାଏ !
ଗୁନ୍ଥି ଆଣିଚି ପାରିଜାତ ମାଳା,
ଗଳେ ଲମ୍ବାଇ ଦେବ ବୋଲି ବାଳା
ଚମକି ଗୁହାଁଇ ଚକିତ ନୟନେ ତଳକୁ ସେ ଆଖି ଫେରାଏ
ନୀଳ ଭ୍ରୂରୁ ଲତା ବନ୍ଧ କି ମମତା ଥିରି ଥିରି କେତେ ଥରାଏ !

ସେ କଣୋଣ୍ମଣି ନବ ଯନ୍ତ୍ରବର୍ମା ତାଳ ତା’ ତରଳ ଗୃହାଣୀ
ଲଜେ ଲଜେ ମୋରେ କହିଲା କି ଅବା ଅମୃତ ବୋଳା କାହାଣୀ !
"ସରଗ ଭୁବନ ଅପ୍‌ସର ମୁହିଁ
ଆସିଛୁ ବରଜ ସେ ସରଗ ଭୂଇଁ,
ମୋ ସରଗ ପୁରେ ବାରେ ହେଲେ ପ୍ରିୟ ହେବ ନାଇଁ ତବ ଯାଆଣି ?
ଲଜେ ଲଜେ ମୋରେ କହିଲା କି ଅବା ଅମୃତ ବୋଳା କାହାଣୀ !

ଛାଡ଼ ଏ ଧରଣୀ ଆସ ପ୍ରିୟତମ ଆସ ମୋ ସରଗ ମୂଲକେ
ହଂସୁଲି ତୂଳି ତଳପେ ଥିବ ଗୋ ଶୋଇ କି ଅମର ପୁଲକେ !
ଗ୍ରନ୍ଥିତ ମାଳା ତୋଳି ପାରିଜାତ
ଲମ୍ବାଇ ଦେବ ଗଳେ ପ୍ରାଣନାଥ !
ବୁଲୁ ଥିବ ମୋର ପ୍ରଣୟ ଦେବ ମୁଁ ତୁମରେ ଗୋ ପ୍ରତି ପଲକେ;
ହଂସୁଲି ତୂଳି ତଳପେ ଥିବ ଗୋ ! ଶୋଇ କି ଅମର ପୁଲକେ !

ସରଗ ରାଇଜ ଅପ୍‌ସରୀ ମୁହିଁ ମରତେ ମୁଁ ଆସି ବୁଲଇ
ତୁମକୁ ବିଲୋକି ବୁକୁତଳ ମୋର କିବା ଉଚ୍ଛାଟେ ଫୁଲଇ !
ତୁମକୁ ଜୀବନେ ପ୍ରିୟତମ କରି
ବାନ୍ଧି ନେବି ମୋର ଜୀବନର ଡୋରି
ମନା କଲେ ମୁହିଁ ମାନିନୀ ଅବଳା, ଅପମାନ ନାଇଁ ଭୁଲଇ,
ତୁମରେ ବିଲୋକି ବୁକୁତଳ ମୋର, କିବା ଉଚ୍ଛାଟେ ଫୁଲଇ !"

ପ୍ରତି ଅଙ୍ଗେ ମୁଁ ଦେଖୁଥିଲି ତା’ର ମୋଲାଗି କି ଭାବ ବିକାଶ !
ପ୍ରତି ଗୁହାଣୀରୁ କି ବିପୁଳ ମାୟା ନିମିଷୁ ନିମିଷେ ପ୍ରକାଶ !
ପ୍ରତି ଲୋମ ମୂଳ ଉଠଇ ଶିହରି
ଧାରା ଶ୍ରାବଣର ନୀପ ଫୁଲ ପରି ।
କନକ ଊର୍ମି ବୁକୁ ତଳେ ତା’ର ଖେଳଇ ମୋହର ସକାଶ
ପ୍ରତି ଗୁହାଣୀରୁ କି ବିପୁଳ ମାୟା ନିମିଷୁ ନିମିଷେ ପ୍ରକାଶ !

"ତୁମର ଏ ଯେଉଁ ଅଯାଚିତ ଦାନ ଏ ଯେ ଅଯାଚିତ ପୀରତି
ଜନମେ ଜନମେ ବୁକୁ ତଳେ ମୋର ରହିଥିବ ସୁନା ପାଲଟି !
ତୁମର ଏ ଯେଉଁ ପ୍ରୀତି ଆହ୍ୱାନ
ନଇଁ ଆସେ ମଥା ବିଲୋକି ତା’ ପ୍ରାଣ,
ଜାଣେ ମୋହ ବନେ ସୁର ନାଗରୀ ଗୋ ହୁଆ ହୋଇଯିବ କରିତ,
ଜନମେ ଜନମେ ବୁକୁ ତଳେ ମୋର ରହିଥିବ ସୁନା ପାଲଟି ।

କିନ୍ତୁ କିଭଳି ଛାଡ଼ିବି ମୋର ଏ ଆଜନମ ପ୍ରିୟ ଧରଣୀ
ବାନ୍ଧା ମୋ ସାଥେ ତା'ର ବିଲ ବନ ନଈ ନାଳ ସେତୁ ସରଣୀ ।
ତୃଣ ତଣ୍ଡୁଳ ଗଛ ଗୁଳ୍ମ ଲତା
କୋଟି ଜନ ପଦ, ପଲ୍ଲୀ ନଗର—
ପ୍ରତି ରେଣୁ ସହ କି ବିଶାଳ ମୋହ ବୁଝି କି ଗୋ ପର ପରଣି !
ବାନ୍ଧା ମୋ ସାଥେ ତା'ର ବିଲ ବନ ନଈ ନାଳ ସେତୁ ସରଣୀ ।

ଗଭୀର ବିଷାଦ ନୟନ ଆସାର ବୋହିଲେ ଗଭୀର ବେଦନେ;
ପୋଛି ଦିଏ ମୁହିଁ ଭଲ କଥା କହି ଯାଇ ତାର ପ୍ରିୟ ସଦନେ ।
ସରଳ ପବନେ ପିଠାଟି ପକାଇ
କହେ ବସ ପୁଅ ଆଉ କିଛି ନାହିଁ
ଘରକାଠି ତା'ର କେତେ ସୁଖ ଦୁଃଖ କହେ ମୁହିଁ ମୋର ବଦନେ,
ପୋଛି ଦିଏ ମୁହିଁ ଭଲ କଥା କହି ଯାଇ ତା'ର ପ୍ରିୟ ସଦନେ ।

ଭିକ୍ଷୁକ ଯେବେ ଗୀତ ଗାଇ ଗାଇ ଦୁଆରେ ଭିକ୍ଷା ମାଗଇ,
ତା' ଲାଗି ମୋହର ବକ୍ଷେ କାହିଁକି ଗଭୀର ଆଘାତ ଲାଗଇ ।
ଚାଉଳ ମୁଠାଏ ଦେଇ ମୁହିଁ ତାରେ,
ଖରାରେ ବର୍ଷାରେ କେତେ କା' ଦୁଆରେ—
ବୁଲୁଥିବ କେତେ ହୀନମାନେ ଶମିବାକୁ ପେଟଜାଳା ଆଗହିଁ ।
ତା' ଲାଗି ମୋହର ବକ୍ଷେ କାହିଁକି ଗଭୀର ଆଘାତ ଲାଗଇ ।

ନ ଖାଇ ନ ପିଇ ହାଡ଼ ମାଳା ଜହ୍ନ ଚମ ବୁଜୁଳିଟି ପରାଏ
ଜନନୀର କାଖେ ଶିଶୁଟିଏ ଖେଳେ ହୋଇ କିବା ଦରମରା ହେ ।
ମୁହିଁ କହେ ମୋର ବିକଳ ବକ୍ଷ
କେହି ନାହିଁ ତାର ଏତେ ଅରକ୍ଷ ।
କିଭଳି ଭୁଲିବ କି ଶିଖି ବିଭବେ ଏ ମୋର ନିଖିଳ ଧରା ହେ ?
ଜନନୀର କାଖେ ଶିଶୁଟିଏ ଖେଳେ ହୋଇ କିବା ଦରମରା ହେ ।

କିଏ କାହିଁ ମୋରେ କେତେ ଭଲ ପାଏ କା' ଲାଗି ହସେ ମୋ ହୃଦୟ
କେମନେ ତିଆଗି ଏ ମୋର ବସୁଧା ହେବି ମୁଁ କା' ପରେ ନିଦୟ ?
ଥାଉ ଏଥି ରୋଗ ବ୍ୟାଧି ଯନ୍ତ୍ରଣା,
ଥାଉ ମରଣର କୂଟ ମନ୍ତ୍ରଣା
ଭଲ ଲାଗେ ମୋରେ ମୋ ଜନମ ମାଟି ସୁଖେ ଦୁଃଖେ ସାଥି ସଦୟ;
କେମନେ ବରଜି ଏ ମୋର ବସୁଧା ହେବି ମୁଁ କା' ପରେ ନିଦୟ ?

ଘୋର ଅଭାବର କଷାଘାତେ ହେଉ ଅସ୍ଥିର ମୋର ମରମ
କୋଟି ବେଦନାରେ ପାଇ ନ ପାରେ ମୁଁ ନିମିଷେ ଶାନ୍ତି ପରମ,
ତଥାପି ମୋ ପ୍ରିୟ ବସୁଧାର ରେଣୁ
ବଜାଏ ମୋ କାନେ ସୁମଧୁର ବେଣୁ !
ଇଚ୍ଛା ମୋ ସବୁ ସୁଖେ ଓ ଦୁଃଖେ କରେ ଏଥି ମୋର କରମ,
କୋଟି ବେଦନାରେ ପାଇ ନପାରେ ମୁଁ ନିମିଷେ ଶାନ୍ତି ପରମ ।

ମୋ ମାଟିର ପ୍ରତି ଦୁଃସ୍ଥ ନୟନକୁ ପୋଛୁ ଦିଏଁ ଲୁହ ଧାର ଗୋ !
ସକଳ ଅଭାବ ଜଞ୍ଜାଳ ଜାଳା କପାଳେ କରି ମୁଁ ଗାରି ଗୋ।
ଯେଉଁ ମଧୁ ଶିରୀ ପାଇବି ତହିଁରେ;
ଚଉଦ ଭୁବନେ ମିଳେ କି ସହିରେ !
ମୋ ମାଟିର ପ୍ରତି କୁଟୀର ମୋହରି ବୁକୁର ଶୋଣିତ ଧାର ଗୋ !
ସକଳ ଅଭାବ ଜଞ୍ଜାଳ ଜାଳା କପାଳେ କରି ମୁଁ ଗାରି ଗୋ !...

ନାଇଁ ନାଇଁ କାହିଁ ଯାଇ ଚାରିବଣ ପୃଥିବୀରେ ମୋର ବରଜ,
ଫୁଟାଇବି ଏଥି କୋଟି ପାରିଜାତ କନକ ପରାଗ ସରଜି ।
ଏଥି ମୁଁ ହସିବି ଏଥି ମୁଁ ଖେଳିବି,
ଏଥି ମୁଁ ସୁନାର ସରଗ ତୋଳିବି,
ଏଥି ମୁଁ ହିଂସା-ହତ୍ୟା ତଡ଼ିବି ସିଂହ ପରାଏ ଗରଜି !
ଫୁଟାଇବି ଏଥି କୋଟି ପାରିଜାତ କନକ ପରାଗ ସରଜି ।

ଏତେ ଯେବେ ମତେ ଭଲ ପାଅ ତମେ ଆଗୋ ରୂପବନ୍ତ କିଶୋର !
ଆସ ମୋର ଏଇ ଭଂଗା କୁଟୀରେ ସରଗ ଭୁବନ ପାଶୋର
ଏ ମାଟିରେ ସଖି ! କର ଗୋ ସେନେହ
ଏ ମାଟିର ପାଇଁ ଦିଅ ମନ ଦେହ
କହୁନା କାହିଁକି ଆଗୋ ରୂପବନ୍ତ ରୂପ ସାଗରର ଈଶ୍ୱର !
ଆସ ମୋର ଏଇ ଭଂଗା କୁଟୀରେ ସରଗ ଭୁବନ ପାଶୋର ।

ମୋତେ ତୁମେ ଯେବେ ଏତେ ଭଲ ପାଅ ମୁହିଁ ଭଲ ପାଏ ନାଇଁକି ?
କେମନେ ଯାଉଚ କେଉଁ ଦୂରେ ଛାଡ଼ି ଆସି ତୁମେ ମୋହ ପାଇଁକି
କି ବୁଝିଲ ମୋର ଅନ୍ତର ବ୍ୟଥା ?
କି ବୁଝିଲ ମୋର ପ୍ରାଣ ଆକୁଳତା ?
ମୋ ମାଟି ଦୁଃଖେ ଅନ୍ତର ତବ ଟିକିଏ ତରଳେ ନାଇଁ କି ?
କେମନେ ଯାଉଚ କେଉଁ ଦୂରେ ଛାଡ଼ି ଆସି ତୁମେ ମୋହ ପାଇଁକି ?

ଏ ମାଟି ଉପରେ ସୁଖେ ଦୁଃଖେ ସଖି ! ମୋହ ଭୁଲେ ରଚ ବାସ ଗୋ !
ଆସ ! ଆସ ତୁମେ ହେ ସରଗବାଳା ! ଏ ମାଟି ପୃଥୀରେ ଆସ ଗୋ
ମୋ ଲଗି ମୋର ଏ ମାଟି ଟିକ ଲଗି
ଲୁହ ଝୋପେ ଯେବେ ଉଠେ ନାହିଁ ଜାଗି,
କି ଶିରୀ ଥାଇ ବା ତୁମ ଏ ଗୃହାଣୀ ଓଠର ଗୋଲାପୀ ହାସ ଗୋ ?
ଏ ମାଟି ଉପରେ ସୁଖେ ଦୁଃଖେ ସଖି ମୋହ ଭୁଲେ ରଚ ବାସ ଗୋ ।

---

## ସ୍ମୃତି ତାର ଅକ୍ଷୟ !

ଏ ପାହାଡ଼ ତଳେ ଯୁଦ୍ଧ ସେ କରି କରି,
ଚିର ଦିନ ପାଇଁ ବୁଜିଚି ନୟନ ଡୋଳା;
ଏ ପାହାଡ଼ ଏଇ ପାଦପ ଲତିକା ଧରି
ଦେଖିଚି ତା' ଦେହ ଫାଟିବାର ସୋର ସୋର !

କେତେ ଶର କେତେ ଖଣ୍ଡାର ଘାତ ସହି
ଥମି ଯାଇନି ସେ ଡରି ଯାଇନି ସେ ଲଢେ,
ଶୋଣିତ ଯାଇଚି ଧାର ଧାର ଧାର ବହି
ଦେଶ ଜାତି ପାଇଁ ଯୁଦ୍ଧ କରିଚି ଭଢେ ।

ପଗଡ଼ି ତାହାର ମସ୍ତକେ ଅଛି ରହି,
କରୁ କରବାଳ ପଡ଼ିନି ନିମିଷେ ଖସି ।
ଶର ଶର-ମୁଣା ସ୍କନ୍ଧେ ସେ ଅଛି ବହି,
ଧରଣୀର ତଳେ ଶୋଇଚି ଯେହ୍ନେ ହସି !

ଆଖିରେ ଜଳୁଚି ସେଇ ସେ ଅଗ୍ନି ଶିଖା,
ବୁକୁ ତଳେ ଅଛି ସେଇ ସେ ଦମ୍ଭ ରହି !
କପାଳେ ଘଷ୍ଟ ସେଇ ସିନ୍ଦୂର ଟୀକା
ଓଠ ତଳେ ସେଇ ବୀର ପ୍ରତିଜ୍ଞା ଛଇ !

ବୃଦ୍ଧ ପିଅର ଆସିଲେ ସେ ପଥେ ଚଳି
ଦେଖିଲେ ପଡ଼ିଛ ଭୂତଳେ ପୁଅଟି ଢଳି ।
ସେଇ ତେଜ ସେଇ ଦୀପ୍ତି ଲକ୍ଷ୍ୟ କରି
କହିଲେ, "ସାବାସ ପୁଅ ମୋର ପୁଅ ପରି !"

ବୃଦ୍ଧା ଜନନୀ କୁମର ମଣିରେ ଚୁହିଁ
କହିଲେ, "ସ୍ତନ୍ୟ ବୃଥା ମୋ ଯାଇ ନାହିଁ,
ଏଇ ମୋର ପୁଅ ଏହାର ସମାନ କାହିଁ
ମର୍ତ୍ତ୍ୟେ ନ ଥିବେ" ଚୁମ୍ବନ ଦେଲେ ଯାଇ !

ସେ ପାଇକ ପ୍ରିୟା ଆସି ସେ ଯୁଦ୍ଧ ଭୂଇଁ,
କହିଲେ, ଏଇ ମୋ ସ୍ୱାମୀ ଠିକ୍ ସ୍ୱାମୀ ପରି,
ଗ୍ରୁଡିରେ ସେ ବୀର ସ୍ୱାମୀର ଚରଣ ଦୁଇ
ଯାକ ଧରି କହେ ଛାଡ଼ିବ ମୁଁ କେଉଁ ଭଳି ?"

ବାଇଜ ବାଜନ ଆସିଲେ ସେ ପଥେ ଚଳି
ଉଷ୍ଣତନେ ଯୁବା ବୀର ପରି ଅଛୁ ଢଳି ।
ନଖୁ ଶିଖ ଯାଏ ଦେଖିଲେ ନୟନ ଭରି,
କେତେ ଶର ମୂନ ଦେହେ ତା' ଯାଇଚ ଗଳି !

ଏ ପାଖ ସେ ପାଖ କେତେଠି ଫୁଟିଛୁ ଗୁଳି,
ହେଲେ ଅଛୁ ଦେହେ ସେ ବୀର ଦୀପ୍ତି ପୂରି,
ସେ ବୀର ଉଦ୍ଦେଶେ ମୀରବେ ପ୍ରଣତ କରି,
କହିଲେ, "ଏଭଳ ବୀର ନାଇଁ ଅବତରି ।"

ବିଶ୍ୱ ଜନତା ଗାଇଲା ସେ ବୀର ଜୟ
ଯୁଗ ଯୁଗ ଧରି ସ୍ମୃତି ତା'ର ଅକ୍ଷୟ ।

---

# ପାଥେୟ

ନିଦାଘ ଖରାରେ ବାଟ ନ ପାରଇ ଚାଲି
ମୁଣ୍ଡ ତାତିଯାଏ ତଳୁ ପାଦ ଆସେ ପୋଡ଼ି;
ବହୁଛି ତପତ ଝାଞ୍ଜି ହେଉନାହିଁ ସହି
ନିଆଁ କେ ଅଜାଡ଼ ଦିଏ କେଉଁଠି ବା ରହି !

ଝାଳ ଗମ ଗମ ଯାଏ ପ୍ରତି ଅଂଗୁ ଝରି
ପାଦକୁ ଚାଣ୍ଡୋଇ ମୁଣ୍ଡେ ଛତା ନାହିଁ ଧରି;
ବିକଳ ଅସ୍ଥିର ଲାଗେ ପ୍ରତି ପଦ ପାତେ
ଚାଲିଛି ଏକାକୀ ମୋର କେହି ନାହିଁ ସାଥେ;

ଗଲେ ଅଧକୋଶେ ବାଟ ଭୁଞ୍ଜିବହିଁ ଭାତ
ଚାଲିବାକୁ ହେବ ମତେ ଏତେଦୂର ପଥ ।
ସହି ଏ ତପତ ଝାଞ୍ଜି ସହି ଏଇ ଖରା
ଏକା ମୁହାଁ ହୋଇ ମୁହିଁ ଚାଲିଅଛି ପରା !

ସକାଳୁ ଖାଇନି ଭାତ ଗଡ଼ିଲାଣି ବେଳ
ଦେହ ମନ ଲାଗେ ସତେ କେଡ଼େ ଦୁରୁବଳ !
ଏ ଦୂର ପ୍ରବାସ ଗାଁଏ କେ ଅଛି ନିଜର ?
ହୃଦ ମଧୁ ଢାଳି ପ୍ରାଣ କରିବ ଶୀତଳ !

ଚାଲିଛି ଏକାକୀ ପଥେ ମନ ଗୋଟି ମାରି,
ପଛୁ କେ' ସେନେହ ଭାଷେ ଯାଉଛି ପଚାରି !
"ନିଅନ୍ତୁ ଛତାଟି ଏଇ ବାଧୁଥିବ ଖରା
କେଡ଼େ ନାରଖାରେ ତୁମେ ଚାଲି ଅଛ ପରା !

ବାର ବରଷର ସେ ତ ବାଳକ ଗୋଟିଏ
ବଦନେ ମୋହନ ଆଭା କେତେ ଖେଳିଯାଏ ।
କହିଲା—"କାହିଁକି ବାବୁ ମୋହ ପାଇଁ ତମେ
ଜଳି ପୋଡ଼ି ଚାଲିବ ଏ ଦୁଃସହ ଗ୍ରୀଷମେ ?

କାହା ଘର ପୁଅ ତମେ କା' କୋଳ ସଙ୍ଖାଳି
ଏ ମହା ଗ୍ରୀଷମେ ତୁମେ ପାରିବ କି ଚାଲି !
ସିଝି ସିଝି ଏ ଖରାରେ ପହଞ୍ଚିଲେ ଘରେ
ସହି କି ପାରିବେ ବୋଉ ମରିବ ଅନ୍ତରେ ?

ପାଇବ ଗମ୍ଭୀର ବ୍ୟଥା ପଚାରିବେ କାହିଁ
ଛତା ଟେକି ଆସିଲୁନି ଦେଲୁ କି ହଜାଇ ?
କେମନେ ନିଠୁର ମୁହିଁ ହେବି ତୁମପରେ
ଛଡ଼ାଇ ଧରିବି ତୁମ ଛତିଟିଏ କରେ;

ଛାଇରେ ସୋହାଗେ ବାଟେ ପାରିବ କି ଚାଲି ?
ତୁମେ ଏ ଖରାରେ ଚାଲି ପଡ଼ିବ ଝାଉଁଳି ।
ଗୋଲାପ କଳିକା ପରି ତୁମ ଦେହ ମନେ
କେମନ୍ତେ ଦେବଇଁ ବାଧା ଏ ମହା ଗ୍ରୀଷମେ ?

ହସି ଖେଳି ତୁମେ ଯେବେ ଚାଲୁଥିବ ବାଟେ
ଧରିଥିବ ଏ ଛତିଟି ତୁମ ଟିକି ହାତେ ।
ସାଂଗ ସାଥୀ ଜନେ କରି ମଧୁ ଆଲାପନ
ଚାଲିଥିବ ଫୁଟାଇ କି ଶିରୀ ବିମୋହନ !

ଏ ସଂପଦଟିକି ମୁହିଁ ଦେଖିଲେ ନୟନେ
କି ଅଧିକ ମୋରେ ନାଇଁ ଲଗିବ ଜୀବନେ ।
ବିଧାତା ବାଲୁତଟିଏ ଦେଇନାଇ ବୋଲି
ପାଲଟି ମୁଁ ଯାଇଚି କି ତପ୍ତ ମରୁବାଲି ?

ନାଇଁ କି ମୋ ବୁକୁତଳେ ସେନେହ ନିର୍ଝର ?
ତୁମେ କି ମୋ ବାଲୁତରୁ ବଳ ନୁହଁ ବଡ଼ ?
ଟେକି ଏ ଛତିଟି ବାବୁ ଯାଅହେ କୁଟୀରେ
ମୋ ପାଇଁ ଭାଳେଣି କିମ୍ପା କର ଧରଣୀରେ ?

କେତେ ଯେ ଦଇନ ଦାଗ ଚାଲିଚି ମୁଁ ବହି
ଏ ଟିକି ଆଜି କି ବାବୁ ପାରିବନି ସହି ?
କେତେ ଲୁହ ବନ୍ଧୁ ମୋର ନିଭିଛି ନୟନେ
ଏ ଟିକି ବି ଉଇଁ ନିଭିଯିବ ଏଇ କ୍ଷଣେ !"

କିବା ସେ ଭାଳିଲ୍ ଦେଇ ଛତିଟି ମୋ କରେ,
ଚାଲିଗଲ୍ ହସି ହସି ଆପଣା କୁଟୀରେ,
କି ବାଟ ଚାଲିବ ଧରି ସେ ଛତିଟି ତା'ର
ଚାହିଁ ମୁଁ ରହିଲି ତା'ର ପଥେ ବାର ବାର;

ଗଛପଛ ଚାରିଆଡ଼େ ଦେଖୁଛ ମୁଁ ଚାହିଁ
ହସି ହସି ଗୁଞ୍ଜନ ସେ ଦୂରେ ଦୂରେ କାହିଁ ।
ଚାଲିଲେ ଆଗକୁ ପାଦ ପଡ଼ୁନାହିଁ ତଳେ
କି ମଧୁ ସମ୍ପଦ ଦେଇ ଚାଲିଗଲା ଧୀରେ ।

ସେ ମଧୁ ହୃଦୟୁ ପାଶେ କି ଦୁଃଖ ମୋହର ?
ସେ ବିନୁ ଏମା ନେନେ ସିଏ ନାଡ ତଳ ତଳ ।

—୦—

# ମେଲା ଡିହ

ବରଜ ପ୍ରବାଶ ଭୂଇଁ ଗୃହେ ଆସେ ଫେର
ପଲ୍ଲୀର କୃଷକ ଯୁବା, ମାଥେ ତ୍ରଙ୍କ ପେଡ଼ ।

ଧୋବ ଲୁଗା ଅଙ୍ଗେ, ଦେହେ ପିଙ୍ଗଳ କାମିଜ,
ଛତା ଯୋଡା, ସପ ବାନ୍ଧ ମଥାରେ ଥାପିଛୁ ।

ମହକ ଉଠଇ ବାଟ, ଦେହେ ଅଛୁ ବୋଳ
ସୁଗନ୍ଧ ଅତର ଅଙ୍ଗୋ, ପନି ସୁନା ଖୋଳ—

ଦୁଇ କାନେ ଦାଉ ଦାଉ, ଦୁଇ ଫୁଲ ପର,
ଛଡ଼ଟିଏ ହାତେ କ୍ଷୁଦ୍ର ଲଣ୍ଠନ ସହ ଧର—

ପାନଖିଲ କଟେବ ନାକ ଚାଲିଅଛୁ ପଥେ,
ଚଡ଼େ ଭାଳ କେତେ ଲୋକ ଚାହିଁବେ ତ ମତେ ।

ପଚାରନ୍ତ କେତେ ଦର୍ମା ପାଉଥିଲୁ ଘନା ?
କହ ଉଠେ 'ମାସକୁ ମୋ ଷାଠିଏ ମଇନା ।'

ଗ୍ରାମ ଶେଷେ ଦେବାଳୟୁ, ପାଖେ ତା'ର ଘର
ଘର କାହିଁ ? ପାହାଚ ପା ରହିଛୁ କେବଳ !

ଝରଆଡ଼ ମେଲ୍ ଡହ ଚରୁଛନ୍ତି ଛେଳି,
କେତୋଟି ପଲ୍ଲୀର ପିଲା ଲୁଚକାଳି ଖେଳି —

ବୁଲୁଛନ୍ତି ଏଣେ ତେଣେ । ବାପା ଆଉ ବୋଉ
ହଇଜାରେ ମରିଗଲେ, କେତେ ଦିନ ଯାଉ—

ଘରଯାକ ଅନ୍ନାଭାବେ ବୁଜିଅଛି ଆଖି,
ମେଲ୍ ଡହ ଯାହା ମାତ୍ର ରହିଅଛି ବାକି !

କାନ୍ଦି ଉଠେ ପ୍ରାଣ ତା'ର ବୁହେ ନେତ୍ରୁ ଲୁହ
କେ ବୁଝିବ ? ଚାହିଁ ରହେ ଖାଲି ମେଲ୍ ଡହ !!

—୦—

## ଯିବା

ବରଷୁ ଅଧିକ  ରହିବାର ମୋର
ହେଲାଣି ଏ ମାଟି ପରେ,
ଆଉ କେତେ ଦିନ  ରହିବି ଏଥିଟି
କହି କି ପାରିବ ଅରେ ?

ସୁଖେ ଦୁଖେ ଯିନା  ଦିନ ବିତି ଯାଏ
ମନ କି ଲାଗଇ ଭଲ ?
କି ମଧୁ ବିଭବ  ଗୁଡ଼ ଆସିଚ ଲୋ
ଲାଗେ ବଡ଼ କଲବଲ ।

ଏ ଯେଉଁ ଗାଆଁଟି  ବଡ଼ ଗାଆଁଟି ଲୋ
ଝରଆଡ଼େ ବିଲ ବନ
କଳ ତାନ ରଚି  ପାଖକେ ତା'ର ଲୋ
ବହିଯାଏ ପ୍ରସ୍ରବଣ !

ଏ ପାଖେ ଦିଶଇ  ଶ୍ୟାମଳ ଶିଖର
ଆକାଶକୁ ମଥା ଟେକି
ମେଘ ଚଳୁଥାଏ  ନିତି ତୁଙ୍ଗ ଚୂଡ଼େଁ
କି ମୋହନ ଛବି ଲେଖି;

ଆଉ ପାଖେ ତା'ର        ଆଉରେକ ପାହାଡ଼
ଶ୍ୟାମଳୁ ଶ୍ୟାମଳତର
ଗୁହାଁ ଥିଲେ ଗୁହାଁ        ରହିଛି ଥିବ ଲୋ
ଜଣା ନ ପଡ଼ିବ ବେଳ ।

ସୁଦୂର ଅୟନେ        ଶତ ଗିରିମାଳା
ଜାଣେ କି ସେସବୁ ନାଆଁ ?
ବାରୁଣୀ କପୋଳେ        ଝଟକି ଉଠେ ଲୋ
ନାଲ ଶାଢ଼ୀ ପରି ଆହା !

ଘରଆଡ଼େ ଖାଲି        ସବୁଜ ଖେତ ଲୋ
ଦିଶୁଥାଏ ଛନ ଛନ
ମୁହାଣେ ମୁହାଣେ        ପାଣି ଝରି ପଡ଼େ
ରଚି କବା କଲତାନ ।

ଦଳ ଦଳ ହୋଇ        ଦଳୁଆଣୀ ବଧୂ
ମଧୁତାନେ ଗୀତ ଗାଇ
ଧାନ ରୋଉଥାନ୍ତି        ମନ ଉଷତେ ଲୋ
ବିଲରୁ ବିଲକୁ ଯାଇ;

ଶୁଣୁଥିବ ଯେବେ        ସେ ଗୀତ ତାନ ଲୋ
ହୋଇ ହୁଡ଼ ପରେ ଠିଆ
ଶୁଣୁଥିବ ବସି        କେତେ ବେଳ ଯାଏ
ଭୁଲି ସବୁ ଖିଆପିଆ ।

ବଣ ତଡ଼େ ତଡ଼େ        ମଇଁଷି ଗୋଠ ଲୋ
ବୁଲୁଛି ମଇଁଷିଆଳ
ଶିରେ ତାଳ ଛତା,        ପାଦେ କଠାଉ ଲୋ
ହାତକେ ବଇଁଶୀ ତା'ର ।

ଖୋଲରୁ ଖୋଲକୁ        ବୁଲି ସେ ଯାଏ ଲୋ
ଅଡ଼ାଇ ମଇଁଷି ପଲ
ବଇଁଶୀ ଟିକଏ        ବଜାଇ ଦେଇ ଲୋ
ବସେ ଗଛ ଛାଇ ତଳ ।

ସ୍ତରଆଡ଼ ମେଲି ଉଡ଼ ଚରୁଛନ୍ତ ଛେଳ,
କେତୋଟି ପଲ୍ଲୀର ପିଲା ଲୁଚକାଳି ଖେଳ —

ବୁଲୁଛନ୍ତ ଏଣେ ତେଣେ । ବାପା ଆଉ ବୋଉ
ହାଇଜାରେ ମରିଗଲେ, କେତେ ଦିନ ଯାଉ—

ଘରପାଟି ଅନ୍ନାଭାବେ ବୁଜିଅଛୁ ଆଖି,
ମେଲି ଉଡ଼ ଯାହା ମାତ୍ର ରହିଅଛୁ ବାକି !

କାନ୍ଦି ଉଠେ ପ୍ରାଣ ତା'ର ବୁହେ ନେତ୍ର ଲୁହ
କେ ବୁଝିବ ? ଗୃହିଁ ରହେ ଖାଲି ମେଲି ଉଡ଼ !!

—୦—

# ପିଣ୍ଡ

ବରଷୁ ଅଧିକ ରହିବାର ମୋର
ହେଲାଣି ଏ ମାଟି ପରେ,
ଆଉ କେତେ ଦିନ ରହିବି ଏଥିକି
କହି କି ପାରିବ ଥରେ ?

ସୁଖେ ଦୁଖେ ପିନା ଦିନ ବିତି ଯାଏ
ମନ କି ଲାଗଇ ଭଲ ?
କି ମଧୁ ବିଭବ ଗୁଡ଼ ଆସିଚ ଲୋ
ଲାଗେ ବଡ଼ କଲବଲ ।

ଏ ଯେଉଁ ଗାଆଁଟି ବଡ଼ ଗାଆଁଟି ଲୋ
ଗୃହଆଡ଼େ ବଲି ବନ
କଳ ତାନ ରଚି ପାଖକେ ତା'ର ଲୋ
ବହିଯାଏ ପ୍ରସ୍ରବଣ !

ଏ ପାଖେ ଦିଶଇ ଶ୍ୟାମଳ ଶିଖରୀ
ଆକାଶକୁ ମଥା ଟେକି
ମେଘ ଚରୁଥାଏ କାନ୍ତ ପ୍ରଚ୍ଛ ତହିଁ
କି ମୋହନ ଛବି ଲେଖି;

ଆଉ ପାଖେ ତା'ର ଆରେକ ପାହାଡ଼
ଶ୍ୟାମଳୁ ଶ୍ୟାମଳତର
ଗୃହେଁ ଥିଲେ ଗୃହେଁ ରହିଛି ଥିବ ଲୋ
ଜଣା ନ ପଡ଼ିବ ବେଳ ।

ସୁଦୂର ଅସ୍ପନେ ଶତ ଗିରିମାଳା
ଜାଣେ କି ସେସବୁ ନାଆଁ ?
ବାରୁଣୀ କପୋଳେ ଝିଟକି ଉଠେ ଲୋ
ନୀଳ ଶାଢ଼ୀ ପରି ଆହା !

ଗୃହଆଡ଼େ ଖାଲ ସବୁଜ ଖେତ ଲୋ
ହସୁଥାଏ ଛନ ଛନ
ମୁହାଣେ ମୁହାଣେ ପାଣି ଝରି ପଡ଼େ
ରଚି କବା କଲତାନ ।

ଦଳ ଦଳ ହୋଇ ଦଳୁଆଣୀ ବଧୂ
ମଧୂତାନେ ଗୀତ ଗାଇ
ଧାନ ରୋଉଥାନ୍ତି ମନ ଉଷତେ ଲୋ
ବିଲରୁ ବିଲକୁ ଯାଇ;

ଶୁଣୁଥିବ ଯେବେ ସେ ଗୀତ ତାନ ଲୋ
ହୋଇ ହିଡ଼ ପରେ ଠିଆ
ଶୁଣୁଥିବ ବସି କେତେ ବେଳ ଯାଏ
ଭୁଲ ସବୁ ଝିଆପିଆ ।

ବଣ ତଡ଼େ ତଡ଼େ ମଇଁଷି ଗୋଠ ଲୋ
ବୁଲୁଛି ମଇଁଷିଆଳ
ଶିରେ ତାଳ ଛତା, ପାଦେ କଠାଉ ଲୋ
ହାତକେ ବଇଁଶୀ ତା'ର ।

ଖୋଲରୁ ଖୋଲକୁ ବୁଲ ସେ ଯାଏ ଲୋ
ଅଡ଼ାଇ ମଇଁଷି ପଲ
ବଇଁଶୀ ଟିକଏ ବଜାଇ ଦେଇ ଲୋ
ବସେ ଗଛ ଛାଇ ତଳ ।

କି ମଧୁ ବିଭବ ଆହରି ପରାଣେ
ବୁଲୁଚି ନିଃଧୋକା ହୋଇ,
ମନ ସାଗରୁ ବଳି କି ଶିଖି ଲୋ
ମରତେ ଅଛଇ ରତ୍ନ !

ଦକୁଆଣୀ ବଧୂ ଦୂଲ କାମିନୀଲୋ
ନବ ଯଉବନା ଗୋଷ୍ଠି
ଡାଳ ଢୁଲୁଥାନ୍ତି; ଦେହେ ନାଲି ଶାଢ଼ୀ
କେଶେ କିଆ ଫୁଲ ମାଳ !

ପାଣି ନଉଥାନ୍ତି ଝରଣା ତଡ଼ୁ ଲୋ
ଦଳ ଦଳ ହୋଇ ଆସି
କେତେ ସୁଖ ଦୁଃଖ ହସ କଉତୁକେ
ପରାଣ ଠିକଣା ଝାସି !

ଏ ମୋହନ ଶୋଭା ମେଳେ ମୋର ଆଭା
ବରଷେ ଗଲାଣି ବିତି
କେତେ କାହା ଭୁଲେ ରହିନ ମୋର ଲୋ
ହୃଦୟ ମମତା ପ୍ରୀତି !

ବାଟେ ଭୁଲିଗଲେ କେତେ କେତେ ଜଣା
କେତେ ବା ଅଜଣା ଜନେ
ସୁଖ ଦୁଖ ମୋର ପଚ୍ଛର ଯାଆନ୍ତି
କି ଶରଧା ବହି ମନେ !

ପଣି ମମତା ତହୁଁ ବଳି କିବା
ଅଛଇ ଅମୂଲ୍ୟ ମଣି ?
ଯେଉଁ ଠିକି ଲାଗି ସରଗ ସତେ ଲୋ
ଟାଳଟି ଉଠେ ଅବନୀ !

ହୃଦେ ହୃଦ ତାଳି ଜଣେ ଜଣକୁ ଲୋ
ସେନେହେ ଦେଲେକ ଚୁହିଁ,
ତହୁଁ ଝରେ କିବା ଶତ କୋଟି ନିଧି
ମରତେ ଉପମା କାହିଁ ?

ହେଲେ ମନ କଥାଁ    ଖୁଜୁ ମୁଜୁ ହୁଏ
କ ଶିଖି ଆସିଚ ଛୁଡ଼ି ?
ଦିବାନିଶିଥି ।    କାହିଁକି କେଜାଣି
ଆତୁରରେ ହୁଅଇ ଭାଳ !

କାହା କଥାଟିକ    ଅଧିକ ଲାଗେ ଲୋ
କିଏ ପଡ଼ିଯାଏ ମନେ,
ଆଖିରେ ଆଖିରେ    ଦିଶି ଦିଶି ଯାଏ
ପ୍ରତି ଦିନ ପ୍ରତି କ୍ଷଣେ ।

ପରାଣ ବେଧାରେ    ମୋ କଥା ଟିକକ
ସାଇତି ରଖିଚ କିଏ
ଭୁରିତେ ଯାଇ ମୁଁ    ମିଳନ୍ତି ତହିଁ ଲୋ
ଧନଗାତ ଭାଳ ହୁଏ !

ଦୂରେ ବହୁଦୂରେ    କେତେ ବଲ ବନ
ନଦ ନଦୀ ଗ୍ରାମ ପାରେ,
ସେ ପରାଣେ ତାକ    ଏ ପରାଣ ଟିକ
କ ଶିଖି ପାଆନ୍ତି ବାରେ !

ଆସିଲି ବେଳେ ମୁଁ    ଆସି ସେ ଥିଲେ ଲୋ
ମେଲାଣି ଦେବାର ପାଇଁ
ଅଧବାଟୁ ଦେଇ    ମେଲାଣି ମୋରେ ସେ
ଚହିଁ ତ ପାରିଲେ ନାହିଁ !

ପ୍ରତି ଲୁହ ଧାର    ନୟନୁ ପୋଛି ଲୋ
ଚଳିଲେ ଆପଣା ପଥେ
ହେଲେ ପଛୁ ଫେରି    ବାରିଲୁ ବାରିଲେ
ଚହୁଁ ଥାଆନ୍ତି ମତେ !

ଦୂରୁ ଦୂରେ ସେତ    ମିଶି ଗଲେ କାହିଁ
ବଲ ବନ ଆଡ଼ୁଆଳେ,
ସେ ନାହାନ୍ତି ଚହିଁ,    ମୁଁ ଚହିଁ ରହିଛି
ସୁଦୂର ଅୟନ ପାରେ ।

ଯାଅ ବାବୁ ବନେ ଫେରିବ ତୁରିତେ
କାହିଁକି ବ୍ୟଥିତ ହୁଅ ?
ସେଇ କଥା ପଦ ମନେ ପଡ଼ୁ କେତେ
ବହିଲା ଅସୀମ ଲୁହ ।

ପିଲାଟି ଦିନରୁ କି ମଧୁ ସରାଗେ
ଆସି ମୁଁ ନ ଥିଲି ବଢ଼ି ?
ଜାଣି ତ ନ ଥିଲି କି ଦୁଃଖ ମରତେ
ରହିଛୁ ନିୟତି ବେଢ଼ି ।

ପ୍ରତି ନିୟତ ମୋ ଜୀବନ ଗୋଟି ଲୋ
ନବ କିଶଲୟ ପରି
ନାଚି ଉଠୁଥାଏ ମୋହନ ବିଭବେ
କେତେ ଦିନ ମାସ ଧରି ।

ତରୁଣ ଜୀବନେ ଗୃଲି ସେ ଗଲେ ଲୋ
ଏକା କରି ଦେଇ ମତେ
ସେଇ ଦିନୁ ମୋର ସବୁ ହସ ଖେଳ
ମରି ଯାଇଚାଟି ସତେ !

କି ଦୁଃଖୀ ଜୀବନ ଧରି ମୁଁ ବଞ୍ଚିଚି
ଜୀଇ ନ ଜୀଇଲା ପରି
ଗଭୀରୁ ଗଭୀର ହେଲେ ମୋ ବେଦନା
କେତେ ଲୁହ ପଡ଼େ ଝରି !

ବହୁଥିଲେ ଲୁହ ବହୁ ସେ ଥାଏଲୋ
ଶ୍ରାବଣର ଧାରା ପରି
ପୋଛି ଦେବ କିଏ, ପୋଛୁବାର ଯିଏ
ଯାଇଛନ୍ତି ଆର ପାରି !

କାହାକୁ ଲଗିବ ମୋ ପରାଣ ଘାରା
ଯାହାକୁ ଲାଗନ୍ତା ସେହି—
ଥିଲେ ଏ ମରତେ ଏତେ ହୀନମାନେ
ରହିକି ଥାଆନ୍ତି ମୁହିଁ ?

ହେଲେ ସେତ ଜଣେ ସୋଦରରୁ ବଳି
ସେନେହ କରନ୍ତ ମତେ
ଜୀବନର କେତେ ଦୁଖ ଦୁରୁଦିନେ
ସାହା ହୋଇଚନ୍ତ ସତେ !

କୁଟୀରେ ମୁଁ ତାଙ୍କ ଯାଇ ମିଳଲେ ଲୋ
ଗୋଡ଼ କି ପଡ଼ବ ତଳେ
ଅଧ ବାଟୁ ଆସି ପାଗ୍ରେଟି ନେବେ ଲୋ
ପରାଣ ସୋହାଗ ଭରେ ।

ଯେତେ ନିଯାତନା ବାଧିବ ପରାଣେ
ସହିବ ଯେ ବାଧା ପ୍ରାଣେ
ଗୋଟି ଗୋଟି କରି କହି ଯାଉଥିବ
ସଂକୋଚ ନ ବହି ଧାନେ ।

ଆଖିରୁ ଲୋତକ ପଡ଼ୁଥିବ ଝରି
ସୋଦର ମମତା ବହି
ପୋଛି ଦେଉଥିବେ ପ୍ରିତ ବନ୍ଧୁଟି ଲୋ
ପାଖେ ମୋର ବସି ରହି ।

ସଂସାର ସକଳ ଦୁଃଖ ଦଇନ୍ୟ ଲୋ
ଭୁଲିବ ଧରଣୀପରେ
କେତେ ଆଶା ମଧୁ କଳପନା
ଖେଳିଯିବ ବୁକୁ ତଳେ ।

ମୋର ହୋଇ ଜଣେ ଅଛନ୍ତ ମହୀରେ
କି ଅବା ଭାବିଲେଣି ମୋର
ପ୍ରିତ ପଦ ପାତେ ଅନୁଭବୁ ଥିବ
ଲାଗୁଥିବ ଅଲଅଲ !

ମାରୁଆ ଶ୍ୟାମଳ ମୋହନ ଶିଖରେ
ସରାଗେ ବୁଲିବ ଯାଇ
ନିର୍ମଳ ଝରର କଳ ବେଣୁ ତାନେ
ଉଠିବ କବିତା ଗାଇ ।

ନୀଳ ଚଳକାର    ନୀଳ ଉର୍ମିମାଳେ
ପଗ୍ରଣଛି ମୋର ଡାଳ
ଆଶାରେ ଆଶାରେ    ଅସୀମ ଆଶାରେ
ଦେବ ମୋ ଘାପଛି ଜାଳ ।

ପ୍ରିୟ ପରଜନ    ଯେତେ ଆପଣାର
ଯେ ଯହିଁ ଅଛନ୍ତି ରହି
ସବୁରଙ୍କ ନାଆଁ    ରଖିଛ ମନେ ମୁଁ
ଏ ହୃଦ ଫଳକେ ବହି

କିଏ ସେ କେଉଁଠି    ଥିବେଟି କିଭଳି
ସଭିଙ୍କି ରଖିଛୁ ମନେ,
କେତେ ଭଲ ପାଏ    ସଭିଙ୍କି ମୁହିଁଲେ
ଏ ଦୂର ବିଦେଶ ଭୂମେ !

ଏତେ ଏତେ ଯହିଁ    ପରାଣ ମମତା
ଏତେ ଧେନାଧେଳି ଯହିଁ
ସେ ଶିଖ ଛିଣ୍ଡାଇ    ଦୂର ପରବାସେ
କେବେ କି ପାରିବ ରହି ?

ଯିବ ଯିବ ଯିବ    ଛୁଟିତେ ଯିବ ଲୋ
ଏଇ ଆଜକାଲି ପରି,
ସେ ମାଟିର ପ୍ରତି    ରେଣୁରେ ରେଣୁରେ
ମୋ ବାଣୀ ଉଠୁଚି ଥରି ।



# ବନ୍ଦୀ ?

ତୁମେ ସବୁ ରହିଥିବ ସେ କ୍ଷୁଦ୍ର କୁଟୀରେ ସେଇ ନିକାଞ୍ଚନ ପଥଧାରେ
କେଉଁ ପର କେଉଁ ଗଛୁ ପଡ଼ୁଥିବ ଝଡ଼;
ଆଖୁକ୍ଷେତ ହଣୁଥିବ ଦୂରୁ ସୀମାହୀନ ମୋହନ ସଙ୍ଗରେ ।
ମାଶ୍ୱ ସିକତା ଶେଯେ ନୀଳ ଜଳ ବେଣୀ
କଳ ବେଣୁ ତାନ ତୋଳି ଯାଉଥିବ ଦୂରେ ଦୂରେ ବୋହି,
ତୁମେ ସବୁ ରହିଥିବ ସେ କ୍ଷୁଦ୍ର କୁଟୀରେ
ପରସ୍ପରେ ଆପଣାର ସୁଖ ଦୁଃଖ କହି କହି ହୋଇ ।

ମୁଁ ଥିଲି, ତୁମରି ତୁଲେ ମୁଁ ଆଜ ଆସିଛି ଛାଡ଼ି ତୁମମାନଙ୍କର-
ସେନେହ ମମତା ଆଉ ସହାନୁଭୂତିର ମଧୁସ୍ପର୍ଶଟିକ,
ମୋରେ ତୁମେ କରଥିଲ କେତେ ଆପଣାର,
ଦୁଃଖେ ମୋର ଦେଉଥିଲ ହୃଦବୋଳା ସାନ୍ତ୍ୱନାର ମୋହନ ସଂପଦ
ସେ ସବୁ କି ଭୁଲି ଯିବ ?
ତୁମେ ମୋରେ ଲାଗୁଥିବ ଚିରଦିନ କେତେ ଯେ ଅଧିକ !

ତୁମେମାନେ ରହିଥିବ ଗୋଟିଏ ବାୟା ଚଢ଼େଇର ମତେ—
ପାଞ୍ଚୋଟି ବାୟା ଚଢ଼େଇ ବସା କଲପରି;
ତୁମେମାନେ ହସୁଥିବ, କାନ୍ଦୁଥିବ, ଖେଳୁଥିବ,
ବେଳେ ବେଳେ ବ୍ୟସ୍ତ ହୋଇ ପଡ଼ୁଥିବ
କାହା ଘର, କାହା ହହ ପା ଦୁଃଖ କଥା
ଗୋଟିଏ କାର୍ଡରେ ଯେବେ ଲେଖା ହୋଇ ଆସିଥିବ
କେଉଁ ଡାକ ଘରେ ପଡ଼ି !

ତୁମେ ସବୁ କା' ଆଖିରୁ ତପ୍ତ ଲୁହଧାର ଝରଝର ଝରି ଗଲେ
ଦେଉଥିବ ପୋଛି ବାପ ମାଆ ଭାଇରୁ ଅଧିକ ସେନେହ ଢାଳି;
କଏବା ଗାଆଁକୁ ଗଲେ ଦିନେ ଦୁଇ ଦିନ ପାଇଁ
ଅଧବାଟ ଯାଏଁ କାଟେ ଆସୁଥିବ ଛାଡ଼ି;
ଅବା ଆସୁଥିବ ଆଉ ଖଣ୍ଡେ ଦୂର
ବିଜନ ସଂଗୀଟି ପରି ଠିଆ ହୋଇ ରହିଥିବା

ସେଇ ପାହାଡ଼ର ପାଦତଳ ଯାଏଁ
ଫେରିବ ଶୁଭରେ ବୋଲି କହୁଥିବ ବାରି ବାର
ହଲଇ ରୁମାଲ କାନ୍ଦ, ନୟନେ ନୟନ ତାଳ
କି ବିରାଟ ମଧୁ ଅଭିପ୍ରାୟେ !

ଗୋଧୂଳି ଲୁନ୍ତଲେ ଯେବେ, ପଶ୍ଚିମ ପାହାଡ଼ ଶିଖେ
ଯାଉଥିବ ସ୍ୱର୍ଣ୍ଣରବି ବୁଡ଼ି
ତୁମେ ସବୁ ଗୃହ ପାଞ୍ଚ ସାଥି ହୋଇ ଆସୁଥିବ ବୁଲି,
ହେଉଥିବ କଥା ଭାଷା, ବସି କେଉଁ ସଡ଼କର ଶଙ୍କ ପରେ
ଅବା କେଉଁ ହ୍ରଡ଼ ମୁଣ୍ଡେ, ଅବା କେଉଁ ପାହାଡ଼ର ଶିଖେ
ଅଭିଶପ୍ତ ଜୀବନର ସକରୁଣ ବ୍ୟଥା ବାଞ୍ଚି ହୋଇ ପଡୁଥିବ
ତୁମର ଅନ୍ତରୁ ଝରି ତୁମ ଗୃହ ବେଗେ !
ତାହା ପରେ ଠୋ ଠୋ ହସୁଥିବ
ଭୁଲିଯିବା ପାଇଁ ହେଲେ ନିମିଷକ ଲାଗି
—ପ୍ରାଣର ଦହନ, ଯାହା ଜଳି ଜଳି ଯାଏ ଖାଲି ମୁହୂର୍ତ୍ତ ମୁହୂର୍ତ୍ତ ଧରି
କେବେ ସେ ନିଭିବ ବୋଲି ଆଶା କାହିଁ ଉଠେ ନାଇଁ ଜାଗି !

ତୁମେ ସବୁ ରହିଥିବ ସେ ନଈସିକତା ଧାରେ ସେ କ୍ଷୁଦ୍ର କୁଟୀରେ
କେବେ ଯେ ଆସିବ ଫେରି ମୁକୁଳା ଜୀବନ ଶିଖି
ନଈ ଜଳ ବେଣୀ ପରି
ଖେଳି ଖେଳି ଯିବ ଦିନେ ଗଳି ହେଉଥିବ ଅହରହ ।
ସୀମାହୀନ ମହାମରୁ ବାଲିବନ୍ତ ଯୋଜନ ଯୋଜନ ଧରି,
ନିସ୍ତବ୍ଧ ଜୀବନ ଧରି ପଡ଼ି ରହିବାର ପରି,
ତୁମେ ପଡ଼ି ରହିଥିବ;
ଆକାଶ କହିବ ନାଇଁ କଥା
ପୃଥିବୀ ବୁଝିବ ନାଇଁ ବ୍ୟଥା
ସୀମାହୀନ ବାଲି ଝଡ଼େ ରହିଥିବ ପୋତି ଦେଇ ମଥା
ଦିନ ଦିନ ଧରି ଯେବେ ଜୀବନର ଭିତରେ ବାହାରେ
ଘୃଣିଆଡ଼େ ଭରି ରହିଥିବ ଅନନ୍ତ ରିକ୍ତତା
କି ସମ୍ପଦ ତହିଁ ଆଶା କରିବାର କଥା !

ତୁମେ ସବୁ ରହିଥିବ ସେ କ୍ଷୁଦ୍ର କୁଟୀରେ ସେଇ ଅପନ୍ତରା ଥାନେ
ଜୀବନର ଯେ ସକଳ ଜ୍ୱାଳା ଓ ଯନ୍ତ୍ରଣା

ତୁମେ ଏକା ଦେଖୁଥିବ, ତୁମେ ଏକା ବୁଝୁଥିବ
ମରଗଲେ ମରଯିବ, ପଡ଼ୁଥିଲେ ପଡ଼ୁଥିବ, ପାଟି ତୁଣ୍ଡ—
କଲେ ଏକା କରୁଥିବ ବସି ।
ତୁମକୁ କେ, ବୁଝିବନ, ତୁମକୁ କେ' ଧରିବନ ତୋଳ
ତୁମେ ଯେହ୍ନେ ପୃଥିବୀର ଗୋଟିଏ ଗୋଟିଏ ଜୀବ
ତୁମ ପାଇଁ ଦୟା ଦାନ ସ୍ନେହ ମମତା ମାୟା ଝରଣାର ଝର
ପୃଥିବୀ ପୃଷ୍ଠରୁ ଚିର ଦିନ ପାଇଁ ହୋଇଛି ଅନ୍ତର ।
ତୁମେ ସବୁ ଆସିଅଛ ନାରଖାର ଜୀବନ ଧରି
ତରଳ କୃଶାନୁ-କୁଣ୍ଡେ ପୋଡ଼ି ଜଳ ରହିବାର ପାଇଁ
ତୁମ ପାଇଁ ଆହା କରିବାକୁ ତୁମରି ହୋଇ କେହି ଜଣେ ନାହିଁ ।

କେତେ ଚେଷ୍ଟା କରୁଥିବ ଫେରି ଆସିବାକୁ
ସବୁ ଚେଷ୍ଟା ପାଣି ଫାଟି ଯାଉଥିବ ।
ଦୀର୍ଘ ଶ୍ୱାସଟିଏ ରୁଦ୍ଧ ରହିଥିବ, ଲେଟକୋଟ ହୋଇ
ସେଇ ଏକାକୀ କୁଟୀରେ
ସେ ବିଜନ ପଥ ଧାରେ, ଦୂରେ ଦୂରେ ବହୁଦୂରେ;
ମଣିଷ ଯିମିତି ହସେ ଖିଲ ଖିଲ ହସ,
ମଣିଷ ଯିମିତି କହେ ପ୍ରାଣ ବିମୋହନ କଥା,
ମଣିଷ ଯିମିତି ଗୁଲେ ପିଇଲେ ମୃତ୍ତିର ମିଠା
ସେ ସବୁ ତ ଦିନୁ ଦିନ ଯାଇଥିବ ମରି ଗୋଟି ଗୋଟି ହୋଇ
ଯେତେ ଚେଷ୍ଟା କଲେ ନାହିଁ ଆସୁଥିବ ଫେରି
କଲବଲ ହୋଇ ବଞ୍ଚି ରହିଲେ ବି,
ଗୋଟିଏ କ୍ଷୀଣ ଆଶାର ଟିକିଏ ଆଲୁଅ
ଜୁଳୁ ଜୁଳୁ ଜଳୁଥିବ, ମନର ଗହ୍ୱରେ କାହିଁ
ମୁମୂର୍ଷୁ ଦୀପର ଶିଖା ଜଳିବାର ପରି
ଅଧେ ଧଳା ଅଧେ ପଡ଼ି ନେଳ ।

———

# ବାଧୁଥିବ

କା’ କୁଟୀର କୋଠିମଧ୍ୟ ତୁମେ ଗୋ ବାଳକା !
ଜୀବନେ ହୋଇନି ତୁମ ତୁଲେ କେବେ ଦେଖା;
ଜାଣିନି କିଏ ସେ ତମେ କିବା ତବ ନାମ
ଜାଣିନି କାହିଁଛୁ ଘର, କର କିବା କାମ ?

ଏ ବଣ ପାହାଡ ଘେରା ପୁର ପଲ୍ଲୀ-ତଟେ,
ନୂଆଁ କରି ତୁମରେ ମୁଁ ଦେଖୁଚି ଗୋ ସତେ !
ଓଠରୁ ଅମୃତ ହାସ ପଡ଼ୁଅଛି ଝରି
କେଉଁ ନିଦ୍ଦବର ମହା ଆଶୀର୍ବାଦ ପରି !

'ନୟନର ଗୃହାଣିରେ ଅନନ୍ତ ସେନେହ
ବୋଲି ବା ଦେଉଚି ଭାପ ଦଗ୍ଧଧରା ଦେହ !
ସ୍ନାହାନ କରିବା ଲଗି କୂଅମୂଳେ ଯାଇ,
ପାଣି ଯେବେ କାଢ଼ୁଥିଲି ତର ତର ହୋଇ;

ଅଧେ ପାଣି ଆସୁଥିଲା, ଅଧେ ଚଢ଼ି କୂଏ,
ତୁମେ କାଢ଼ିଥିଲ ପାଣି ଭରି କଳସିଏ
ଅଧର ମୋହନ ହାସେ ପାଶେ ମୋର ଥୋଇ
କହିଲ ଏଥିରେ ତୁମେ ପକାଅ ଗାଧୋଇ,

ପାରିବ କି ଏତେ ପାଣି ଏତେ ଦୂରୁ ଭିଡ଼
ବୋହିବ ରକତ ହାତ ପାପୁଲି ଯେ ଛିଡ଼ି ।
ଗୃହିଁଲି ଅଦୂରେ ତମେ; ଚକିତେ ଚମକି
ପଚ୍ଛରିଲି କିଏ ତମେ ମତେ ଚହ୍ନିଚ କି ?

ସସ୍ମିତେ ହେଲ ଗୋ ଠିଆ ଅଜଣା ବାଳିକା !
କିବା ଦର ବିକଶିତ କମଳ କଳିକା !
ତୁମେ ନେଇଥିଲ ପାଣି କୁଟୀରେ ତୁମର
ମୋତେର କିମ୍ପା ଦେଉଅଛ ସମାଦର କରି ?

ଜାଣିଲି ମୋ ଲାଗି ତୁମ କବୋଷ୍ଣ ହୃଦୟୁ
କପର ପାରଚ ହୋଇ ସରଗେ ଷଦୟୁ;
ଆନରେ ଅରପିବାର ହୃଦୟୁର ଶିଖା
ଅଯାଚତେ ଆପଣାରୁ ଆପଣାର କର,

—ଏ ମଧୁ ସମ୍ପଦ କଏ ପାଶବ ଫୁଟାଇ
ବ୍ୟୋମ ବସୁନ୍ଧରା ଭରି ଯିଏ ନାଇଁ ଶୋହ୍ନ !
ନାସ୍ତି ଯେବେ କରଦେଲ, ଦୋ ଦୋ ପାଞ୍ଚ ହୋଇ
କଲମ୍ପିଟି ଧର-ଠିଆ ହେଲ ମୋରେ ଗୁହିଁ

କ ବାଣୀ ଅଧରୁ ଫୁଟି, ଫୁଟିଲ ତ ନାଇଁ
ଲଜେ ଦୁଃଖେ ଗୁଲ ଗଲ ମୋରେ ଗୁହିଁ ଗୁହିଁ ;
ତୁମ ସେ ଦାନର କଥା କଲ ପ୍ରତ୍ୟାଖ୍ୟାନ,
ତାଳେ ସେ ଧାଣିରୁ କର ଥାଆନ୍ତ ସ୍ନାହାନ ।

ପ୍ରତି ଅଙ୍ଗ ଅବଗାହ୍ନ ସେ ମୋହନ ଜଳେ
ତୁମ ହୃଦମଧୁ ଅନୁଭବ ଥାଆନ୍ତ ଅନ୍ତରେ !
ପଗୁର ଥାଆନ୍ତ ତୁମେ ବଶେ୍, ମୋହ ପାଇଁ
ରହୁଛ ତ କେଉଁଠାରେ ଆପଣାର ହୋଇ;

ବୁନ୍ ଶରି ଦେଇଥାନ୍ତ ବିପୁଳ ସମ୍ମାନ
କହୁଥାନ୍ତ ଯହିଁ ଥାଅ ତୁମେ ମୋ ଧିଆନ,
କେତେ କାହା ହୃଦୟୁର ମୋହନ ପରଶ
ରହୁଚ ଏ ପ୍ରାଣେ ହୋଇ, ସଜୀବ ସରସ ।

କେତେ କା' ଅମୃତ ଧନେ ହୋଇଚ ମୁଁ ଧନୀ
ହସିଚ ଏ ହୁଆ ଭରି ଆକାଶ ଅବନୀ,
ସେ ସକଳ ମେଳେ ତୁମେ ହୋଇଥାନ୍ତ ଜଣେ
ମୋ ହୃଦ ବେଦୀରେ ଶୋହ୍ନ କନକ ଭୂଷଣେ ।

ବାଧିଥିବ ତୁମରେ ଗୋ ବାଧିଥିବ ବହୁ
ଦେଲନାଇଁ ଲେଡ଼ିଥିଲ ଯେ ଅମୃତ ମହୁ ।

---

# ଆକାଙ୍‌କ୍ଷା

ତୁମର ଏ ପୃଥିବୀ ଉପରେ ବୁଲାଉଚ ମତେ ଦୟାମୟ !
କେତେବେଳେ ଦେଉଚ ବିଜୟ, କେତେବେଳେ ପୁଣି ପରାଜୟ !
କେତେବେଳେ କନ୍ଦାଉଚ ମତେ, କେତେବେଳେ ହସାଉଚ ତମେ,
କେତେବେଳେ କରୁଚ ଭିକାରୀ ଯେବେ ଯାହା ଲୋଡ଼ୁଅଛ ମନେ ।

କେବେ ମୋରେ ହତଭାଗା କରି ବେଦନାର ଅନନ୍ତ ଭୂମିରେ,
ବୁଲାଉଚ, ଯାଉଚ ମୁଁ ବୁଡ଼ି ଧରଣୀରେ ଶତ ଉର୍ମ୍ମିରେ ।
କେବେ ମୋର ଶିରେ ଜୟପାଟ ବାନ୍ଧି ମୋରେ କରୁଚ ସମ୍ରାଟ,
ସୌଭାଗ୍ୟର ମୃଦୁମନ୍ଦ ହାସେ ଉଜ୍ଜ୍ୱଳଇ ମୋ ଜୀବନ ବାଟ ।

ତୁମର ସେ ଅନନ୍ତ ଇଚ୍ଛାରେ ଚାଲିଚି ଏ ମହାବିଶ୍ୱ ସାରା,
ତା' ଭିତରେ ମୁହିଁ ବି ଚାଲିଛି ମାନି ତବ ଇଙ୍ଗିତ ଇସାରା ।
ଦିନେ ମୋରେ ବୁଲାଇଚ ଏଥିକରି ସୁଖ ଦୁଃଖ ସମାକୁଳ,
ଦିନେ ପୁଣି ନେଇଯିବ ମୋରେ ନ ଫେରିବ ଆଉ ଏଇ ପୁର ।

ଜାଣିବନି ମହାପୃଥିବୀର ସାମାନ୍ୟ ମୁଁ କ୍ଷୁଦ୍ର ରେଣୁଟିଏ,
ଅସୀମର ବିପୁଳ ବନ୍ଧନେ ହସି ଖେଳି ଚାଲିଥିଲି ଦିହେ ।
ଜାଣିବନି ଏଇ ବିଲ ବନ ଗଛ ପତ୍ର ହ୍ରଦ ନଈ ନାଳ,
ସକଳର ତୁଲେ ମୋ ବନ୍ଧନ ଥିଲା କିବା ଗଭୀର ବିଶାଳ !

ଜାଣିବନି ଲକ୍ଷ ନରନାରୀ ଶିଶୁ ବୃଦ୍ଧ ବାଳକର ସହ,
ଥିଲି ମୋର ପ୍ରାଣବନ୍ତ କେତେ ସୁମଧୁର ସ୍ୱର୍ଗ ପରିଚୟ ।
ଜାଣିବନି ଜାଣିବନି ତଳେ କେଉଁ ବନକୁଞ୍ଜ ମାଳେ,
ଦେଖୁଥିଲି ଶଇଳ ସୁଷମା ଶରତର ସାହାଯ୍ୟ ବିହାରେ ।

କେଉଁ ନଈ ସ୍ୱର୍ଣ୍ଣ ସଇକତେ ବସୁଥିଲି ବସନ୍ତ ପ୍ରଭାତେ,
ତଟିନୀର ନୀଳଜଳ ବେଣୀ ଦେଖୁଥିଲି କଲ-ବେଣୁ ସାଥେ ।
ଜାଣିବନି ଆଟଣୀର କରି କେଉଁ ତନ୍ୱୀ ସରଳ ସୁନ୍ଦରୀ,
ଯୌବନର ପ୍ରଥମ ସାକ୍ଷାତେ ନେଇଥିଲି ସ୍ୱୟଂବର କରି ।

କେତେ ମୋର ଫୁଟୁଥିଲା ହାସ ବକ୍ଷେ ମୋର ପୁଲକ ଚଞ୍ଚଳ
ରସନାରୁ ପ୍ରେମର ଗୀତ ଉଚ୍ଛ୍ୱସନ୍ତ କରିଛି ଉଜ୍ଜ୍ୱଳ ।

ଦୁଃଖେ ମୋର ପାଶେ ବସି କଏ କହୁଥିଲା ସାନ୍ତ୍ୱନାର ବାଣୀ,
ମୋ ପାଇଁ କା' ନୟନ ଯୁଗଳୁ ବହୁଥିଲା ଅସରନ୍ତ ପାଣି ।

ସୁଖ ଦୁଃଖ ଭିତରେ ଧରଣୀ ଲାଗୁଥିଲା ମଧୁମୟ ମତେ,
ଧରଣୀରୁ ବଳି ପ୍ରିୟଭୂମି ନାହିଁଥିଲା ମୋହର ଅଗ୍ରତେ ।
ସବୁମାୟା ସକଳ ମମତା ବରଜି ମୁଁ ଚାଲିଯିବ କାହିଁ,
ତୁମେ ମୋତେ ନେଇ ଯିବ ସଖା ! ଯେବେ ଇଚ୍ଛା ହେବ ପ୍ରାଣସାଇଁ ।

କାହିଁପାଇଁ ଆଣିଥିଲ ମତେ କାହିଁପାଇଁ ନେଇଯିବ ମତେ,
ତା'ର ବାୟୁ ରେଣୁଏ ସନ୍ଦେଶ କହିଲନି ମୋର କର୍ଣ୍ଣଗତେ ।
ସୁଖ ଆଉ ଦୁଃଖର ଭିତରେ ମୋହପାଇଁ ସ୍ୱର୍ଗ ହେଲା ଗଢ଼ି,
ଯାର ପ୍ରତି ରେଣୁକଣାଟିକୁ ଜୀବନର ଉତ୍ସ ପଡ଼େ ଝରି ।

ସେଇ ସ୍ୱର୍ଗ ସେଇ ସେ ଧରଣୀ ଛାଡ଼ିବାକୁ ହେବ ପୁଣି ସତେ,
ଏ କି ତବ ପ୍ରହେଳିକା ଖେଳ ମୁଁ ତ ବୁଝିପାରେ ନାହିଁ ସତେ !
ବହୁବାର ଆସେ କୌତୁହଳ ସେ ଯେ କେଉଁ ଅଜ୍ଞାତ ରାଇଜେ,
ନେଇ ମତେ ରଖିବ ମରିବେ ମୁହିଁ ଜାଣି ପାରିବି ନାହିଁ ଯେ ।

ବହୁବାର କରଇ କଳ୍ପନା ହୋଇଥିବ ସେ ପୁରୀ କି ଭଳି ?
ମଣିଷର ଅଧରର ଭାଷା ଥିବଟିକି ସେ ରାଇଜ ଭରି ?
ମୁଁ ଗୋ ଗୃହେ ଏଭଳି ରାଇଜ ଶୁଣୁଥିବ ଯହିଁ ନିତି କାନେ
ମଣିଷର ମୁଗ୍ଧ ଓଠବାଣୀ ସୁଖେ ଦୁଃଖେ ଅଥବା କଲ୍ୟାଣେ ।

ମତେ ବଡ଼ ଭଲ ଲାଗେ ପ୍ରଭୁ ଧରଣୀର ଯେଉଁ ପୁଣ୍ୟ ମାଟି,
ଆକୁଳ ଅଥୟ ହେଲି ମଣିଷର ସୁଖ ଦୁଃଖ ପ୍ରୀତି ।
ମତେ ରଖ ସେଇଭଳି ଥାନେ ମଣିଷର ଦୁଃଖ ଅଭାବରେ
ଅଶ୍ରୁ ଯହିଁ ପାରିବି ମୁଁ ତାଳି ଅନୁଭବ ପରାଣ ଭିତରେ ।

ଲୋଡ଼ା ହେଲେ ମଣିଷର ଲାଗି ପାରିବି ମୁଁ ଦେଇ ମୋ ରୁଧିର,
ମଣିଷର ମଙ୍ଗଳ ପାଇଁ ମୁଁ ନାହିଁ ହୁଏ କଷ୍ଟମୀ ବଧୀର ।
ମଣିଷର ଆନନ୍ଦ ଭିତରେ ଗଢ଼ ମୋର ଆନନ୍ଦ କୁଟୀର,
ମଣିଷର ବେଦନା ଭିତରେ ଫୁଟାଅ ମୋ ନେତ୍ରୁ ଅଶ୍ରୁ ନୀର ।

ମଣିଷ ଯେଉଁଠି ପାଏ ଅତ୍ୟାଗ୍ରର ପୀଡ଼ନ ପେଷଣ,
ସେଠି ହୁଅ ଜନ୍ମ ତାର ଦୁଃଖ ଖଣ୍ଡିବାକୁ ପ୍ରଭୁ ସନାତନ !
ସେଠି ମତେ ସିଂହ ହୁଅ କର, ଭର ମହା ସତ୍ୟର ଶକତି,
ମଣିଷର ହୃଦୟୁ ଭିତରେ ଗଢ଼ ମୋର ଜୀବନ ବସତି ।



# ରାଣୀ

ଜୀବନର ପ୍ରଥମ ଯୌବନେ
ଯେତେବେଳେ ଆଣିଥିଲ ବରି,
ମୋ ସକଳ ପଦମର୍ଯ୍ୟାଦାରେ
ଆଖି ବୁଜି ଅନ୍ଧ ସମ
ନିର୍ମମ କୁଠାରଘାତ ବାରବାର କରି,
ସେତେବେଳେ ମୁଁ ତୁମକୁ ପାଇଥିଲି ଭଲ
ହୋଇ ଆତ୍ମହରା
ତୁମେ ଅବା ତୁମ କୁଟୀରର
କେହି ହେଲେ,
ବୁଝି ତ ନଥିଲ ମତେ,
କାଚ ଅବା ହୀରା,

ବରଷ ଭରି, ତୁମର ଆତ୍ମୀୟ ସ୍ୱଜନ
କେହି ଜଣେ ମତେ
ଆଦର ଗୌରବ କରି
ମୋ ଦରିଦ୍ର ଜୀବନର ପଥେ
ବୁଣି ତ ନଥିଲେ ପୁଷ୍ପ
ମୁଠା ମୁଠା କରି,
ବସ୍ତ୍ରୟୁ ସନ୍ଦେହ
ଅବଜ୍ଞାର ନେଇ ବେଣି ଡାଳ,

ମୋରେ ରଖିଥିଲେ ଗୃହ;
ମୁଁ ତୁମରେ
ପ୍ରସାରି ମୋ ସରଳ ଅନ୍ତର
ନେଇଥିଲି, ସୋହାଗେ ବନ୍ଧାଇ ।

ଆଉ ତୁମେ ?
ସରଳ ନିଷ୍ପାପ ପ୍ରାଣ
ଧରଣୀର ସବୁ ଛନ୍ଦ କପଟର
ମହା ଦୂରେ ରଖି,
ମୋରେ ପାରି ତ ନଥିଲ ବୁଝି,
ବୁଝିବାକୁ
ବିରାଟ ପ୍ରତୀକ୍ଷା
ଉର୍ଦ୍ଧ୍ୱି ମାରୁଥିଲା ତବ—
ସ୍ୱର୍ଗ ବୁକୁ ତଳ ଶେଯେ
ଉର୍ମି ସମ ଶୋଇ,

କେତେ ଝଡ଼ କେତେ ଝଞ୍ଜା
କେତେ ଯେ କୁଳିଶ
ବୋହି ଗଲା ମୋର ଦେହେ ମନେ,
ଟିକଏ ଆଶ୍ୱସ୍ତିର
ପ୍ରାଣ ବିମୋହନ ବାଣୀ
ଦେଲ ନାଇଁ କେହି;
ଦେଲ ନାଇଁ
ମୋର ହୋଇ ମଧ୍ୟ ତମେ !!

ଭଲ ଥିଲ ତମେ ଯେବେ
ଗୋଟିଏ ନିମେଷ,
ବକ୍ଷ ଭରି
ମୋହ ପାଇଁ
ମୋ ମାନ ସମ୍ମାନ ପାଇଁ
ମୋ ନିଷ୍ପେଷିତ ଅନ୍ତରର
ଗୋଟିଏ ଲୋତକ ପାଇଁ

କହୁଥାନ୍ତ
ପଦେ ମାତ୍ର ବାଣୀ
କରି ପ୍ରତିବାଦ,
ପାଇଥାନ୍ତି ଅମୃତ ଆହ୍ଲାଦ !
ତୁମେ ମଧ୍ୟ
ମେଘାଚ୍ଛନ୍ନ ଆକାଶର,
ଚନ୍ଦ୍ରମାଟି ପରି
ମୋହ ପାଇଁ ଲୁଭିଗଲ
ବଞ୍ଚନ୍ତି ମୁଁ କାହା ଆଶ୍ରା ଧରି ?

ତା' ପରେ ଆସିଲ ତମେ,
କପର ଆସିଲ ?
ଜାଣି ମଧ୍ୟ
ଜାଣିପାରେ ନାଇଁ;
ତମେ ବୋଧେ
କେଉଁ ମହା ଅନ୍ତରକୁ
ଆସିବାକୁ ମୋହ ଲଗି
କେଉଁ ଅଜ୍ଞାତ ଜୀବନ ଠାରୁ
ନିମନ୍ତ୍ରଣ
ପାଇଥିବ ପାଇ !

ମୁଁ ତୁମରେ ପାଇବାକୁ,
କରିବାକୁ ହୃଦୟର ରାଣୀ,
କ ଉତ୍କଣ୍ଠା
ବହୁଥିଲି ଦିନ ଦିନ ଧରି,
ଦୁଃଖ ଅଶ୍ରୁ ଅପମାନ ଅବମାନ
ନେଇଥିଲି ବରି,
ଛାତକୁ ଇଚ୍ଛାତରୁ ବଳ
ଆହୁରି କଠିନ କରି,

ତୁମ ଛଡ଼ା
ତୁମର ଅନ୍ତର ଛଡ଼ା

ଆଜ କିଛି
ନ ଥିଲି ମୁଁ ଲୋଡ଼ି;
ତୁମେ ବୋଧେ
ସେଇ ଅମୃତ ଅନ୍ତର ଧରି
ମୋ କୁଟୀର
ମୋ ଅନ୍ତର
ଉଚ୍ଛ୍ୱସିତ ଆଲୋକିତ କରି,
ଆସିଲ ଆସିଲ ତମେ !
ସକଳ କଳୁଷ ଅନ୍ଧାର
ଦୂରେ ଦୂରେ ଗଲା;
ତୁମରି ଅନ୍ତର ମୋର
ଚିରନ୍ତନ ସମ୍ପତ୍ତି ଓ ବାଡ଼ି;

ନରକରୁ ସରଗର ପାରିଜାତ,
ଦେବତା ମୁଁ ଦେଖିଥିଲି,
ଖୋଜୁଥିଲି,
ପାଇଗଲି ହାତେ;
ତୁମେ ମଧ୍ୟ
ହେବା ପାଇଁ
ମୋହ ହାତେ ଟଳି ଟଳି
ହେଉଥିଲ ଉନ୍ମନ ଚଞ୍ଚଳ !
କିନ୍ତୁ କେଉଁ ନର୍କ ଗାତେ
ପେଡ଼ିପେଷି
ଚିପି ଚୁପି ହୋଇ
ରହିଥିଲି ସୀମାହୀନ—
କଠୋର ଆଘାତେ !

ଆଜ ତୁମେ ପାରିଜାତ ରାଣୀ !
ମୁଁ ତୁମରି ଦେବତା,
ମୁଁ ତୁମରି ରାଜା,
ଶିରେ ବନ୍ଧ ବକ୍ଷେ ବନ୍ଧ,
ଆଜ ମୁଁ ତୁମରେ,
ହସି ଉଠେ, ନାଚି ଉଠେ,

ଗାଇ ଉଠେ ଗାନ
ଅଥଯେ଼ୁ ଚଞ୍ଚଳେ ।

କିନ୍ତୁ,
ଯେଉଁ ଅଶ୍ରୁ ଅପମାନ
ମୋର ପ୍ରତି ଧମନୀର
ଶୋଣିତେ ଶୋଣିତେ
ଯାଇଛୁ ସଞ୍ଚରି
ପାରି ନାଇଁ ମରି;
ବେଳେ ବେଳେ
ବଜ୍ରଠୁ ବଳି
କଠୋର ଆଘାତ
ଦେଇଯାଏ ମତେ,
ଏ ଆଘାତ ମୋର
ତୁମକୁ ତ ବାଧୁଥିବ ସତେ !

ଆଗୋ ମୋର ପାରିଜାତ ରାଣୀ !
ମୁଁ ତୁମରେ
ଜନ୍ମ ଜନ୍ମ ଯୁଗ ଯୁଗାନ୍ତର ଧରି
ଢାଳିବ ନାଇଁ,
ପାରିବନି ଦେଇ,
ବ୍ୟଥା ଅପମାନ,
ତୁମ ସେବା
ମୋହର ସମ୍ମାନ ।
ତୁମ ସେବା
ବିଜୟ୍ର ବିପୁଳ ଶଙ୍ଖ
ବାଜେ ମୋର ପୁରେ;
ମୁଁ ତୁମଠୁ
ଗୋଟିଏ ନିମେଷ
ରହି ପାରିବନି ଦୂରେ ।

ମୋର ଦୁଃଖ

ମୋର କଷ୍ଟ ମୋର ଅପମାନ ଲାଗି
ମୁହିଁ ଦାୟୀ,
ମୋର ସରଳ ସୁନ୍ଦର ଅନ୍ତର
ଦାୟୀ; ନୁହ ତମେ !
ତୁମେ ପାରିଜାତ ପାରିଜାତ
ଖାଲି ପାରିଜାତ !
ଫୁଟ ମୋର
ହୃଦୟର ଏ ମରୁ କାନନେ !
ଗନ୍ଧ ଦିଅ
ବର୍ଣ୍ଣ ଦିଅ !
ମଳୟର ମୃଦୁଳ ହିଲ୍ଲୋଳେ
ନାଚି ଉଠ
ଅନନ୍ତ ସପନେ !

ମୋ ଆଖିରୁ ଅଶ୍ରୁ ଝରୁ,
ସେଇ ଅଶ୍ରୁ
ପାଖୁଡ଼ା ପଣତ ତଳେ
ପୋଛି ଦିଅ ତମେ !
ସେଇ ମୋର
ଆନନ୍ଦର ପଥ;
ଜନମ ଜନମ ଧରି
କାନ୍ଦୁଥାଏ ମୁହିଁ,
ମୋର ଦୁଃଖ ନାହିଁ,
ତୁମେ ଅଛ ମୋହ ପାଇଁ ।
ପ୍ରାଣ ଦେଇ
ପାଇଚି ହୃଦୟ
କେମନ୍ତେ ଗୋ
ହେବ ନିରଦୟ ?

ଶତ ଜନ୍ମ ବନ୍ଧ ଯାଉ,
ମୁଁ ତୁମର ତମେ ମୋର
ପ୍ରାଣର ନିର୍ଭର
ଅମୃତ ବିଜୟ !

---

## ଏଥର ନାହାନ୍ତି ଆଣି !

ସେ ଦିନ ମୁଁ ଗୃହେ ଯେବେ ଆସୁଥିଲି ଫେରି
ସୁଦୂର ପ୍ରବାସ ପଥୁଁ, ନ ଥିଲା ମୋ ମନେ,
ମୋ ଶିଶୁ କନ୍ୟାଟିପାଇଁ କିଛୁ ନେବି କିଣି
କୋବି ବା କଦଳୀ ତା'ର ମନ ଆହ୍ଲାଦନେ ।
କୁଟୀରେ ପଶିଣ ସାରି ମାନ୍ୟ ଯଥାବିଧି,
ଜଣାଇ ମୋ ଗୁରୁଜନେ, ଅଙ୍ଗରେଖା କାଢ଼ି
ରଖିଲିଇଁ କାନ୍ଥେ ଟାଣି; ମୁହଁ ହାତ ଧୋଇ
ବସିଲି, କୁଶଳ ପ୍ରଶ୍ନ ସୋହାଗେ ପଚାରି ।

ଏହିକ ସମୟେ କିଏ ସ୍ୱର୍ଣ୍ଣିକର ଦୁଇ
ସ୍କନ୍ଧେ ମୋର ଥାପି, ମୋରେ ମନ ପରସନେ
ପଚାରିଲା, "ନନା ତୁମେ ଆସିଲ ଇ'ଲଗେ,
ଆଣିଚ ମୋପାଇଁ କିସ ?"ଭାଳିଲିଇଁ ମନେ—
ଆସିଲି ମୁଁ ତୁଚ୍ଛା ହାତେ, ଦରିଦ୍ର କବିର
ନ ଥିଲା ପଇସା ଦୁଇ, କୋବି ବା କଦଳୀ
ଆଣିବାକୁ କାହୁଁ କିଣି ? କହିଲି ମୁଁ ତାରେ
"ତୋ ଲଗି ଆଣିବି କୋବି କାଲି କେତେଭଲି ।"

ମନ କି ମାନଇ ତା'ର ଶୁଷ୍କ ଏ ବାଣୀରେ ?
ତା' ଟିକି ଅନ୍ତର ତଳେ ଯେ ଟିକିକ ଆଶା
ତୃପ୍ତି କି ପାରଇ ଲଭି ? ପଚାରିଲା ପୁଣି

"ସତେ କି ଆଣିନ ନନା ?" କି କରୁଣ ଭାଷା !
ଯେତେ ଯାହା ପରିଚ୍ଛଦ କାନ୍ଥେ ଝୁଲୁଥିଲା ।
ମୁଣିସବୁ ଦେଖିଗଲା ସନ୍ତୁଷ୍ଟ ନୟନେ,
ତା' ଠିକ ଅଙ୍ଗୁଳ ଗୃଳ, କାଳେ ଥିବେ ଆଣି
ମୁହିଁ ଯେ କରୁଛି ଲକ୍ଷ୍ୟ ବସି ଅନ୍ୟମନେ !

କ୍ଷଣେ କହିଲା ତା'ର ଶିଶୁ ଓଠ ଫେଇ
"ଏ ଥର ନାହାନ୍ତି ଆଣି" ନିଜକୁ ଯେ ନିଜେ ।
ନୈରାଶ୍ୟ କାରୁଣ୍ୟ ବୋଳା ଦରେଟି ବଚନ
ମୋ ବକ୍ଷେ ରହିଲା ଲେଖା ଅଜାଣତେ ମୋର;
'ଏଥର ନାହାନ୍ତି ଆଣି' ସୁଦୂର ପ୍ରବାସେ
ଯେବେ ମୁଁ ଭାଳଇ କେବେ ମୀରବେ ନିଜନେ
ମୂର୍ତ୍ତି ତା'ର କଥା ତା'ର ଆଖି ଆଗେ ଦିଶେ
ଦିଶେ କେତେ ଅଳି କଲା ମନ ପରସନେ,

ଦିଶେ କେତେ ଗୋଟି ଗୋଟି ଖୋଜିଗଲା ମୋର
ଶୂନ୍ୟ ସେ ସକଳ ମୁଣି କୋଠ କାମିଜର,
କ୍ଷୀଣ ଅଧରୁ ତା'ର କେତେ ଫୁଟିବାର
'ଏଥର ନାହାନ୍ତି ଆଣି' ସକରୁଣ ଗୀର !
ସାମାନ୍ୟ ସେ କୋଚ୍ଚି ପ୍ରତି ରେଣୁକଣା ମେଳେ
ଦେଖିଥାନ୍ତା ପିତୃସ୍ନେହ ଉଦାର ବିମଳ,
କାଲି କଣା ହେବ କେତେ କୋଚ୍ଚି ତାହାପାଇଁ
ତହିଁରେ କି ଥିବ ଆଜ ଦିନର ଆଦର !!



ଶତ ଜନ୍ମ ବହି ଯାଉ,
ମୁଁ ତୁମର ତମେ ମୋର
ପ୍ରାଣର ନିର୍ଭର
ଅମୃତ ବିଜୟୁ !

---

# ଏଥର ନାହାନ୍ତି ଆଣି !

ସେ ଦିନ ମୁଁ ଗୃହେ ଯେବେ ଆସୁଥିଲି ଫେରି
ସୁଦୂର ପ୍ରବାସ ପଥୁଁ, ନ ଥିଲା ମୋ ମନେ,
ମୋ ଶିଶୁ କନ୍ୟାଟିପାଇଁ କିଛୁ ନେବି କିଣି
କୋରା ବା କଦଳୀ ତା'ର ମନ ଆହ୍ଲାଦନେ ।
କୁଟୀରେ ପହଞ୍ଚି ସାର ମାନ୍ୟ ଯଥାବିଧି,
ଜଣାଇ ମୋ ଗୁରୁଜନେ, ଅଙ୍ଗରେଖା କାଢ଼ି
ରଖିଲିଇଁ କାନ୍ଥେ ଟାଣି; ମୁହଁ ହାତ ଧୋଇ
ବସିଲି, କୁଶଳ ପ୍ରଶ୍ନ ସୋହାଗେ ପଚାରି ।

ଏସନ ସମୟେ କିଏ ସ୍ୱର୍ଣ୍ଣକର ଦୁଇ
ସ୍କନ୍ଧେ ମୋର ଥାପି, ମୋରେ ମନ ପରସନେ
ପଚାରିଲା, "ନନା ତୁମେ ଆସିଲ ଇ'ଲଗେ,
ଆଣିଛ ମୋପାଇଁ କସ ?"ଭାଳିଲିଇଁ ମନେ—
ଆସିଲି ମୁଁ ତୁଚ୍ଛା ହାତେ, ଦରିଦ୍ର କବିର
ନ ଥିଲା ପଇସା ଦୁଇ, କୋରା ବା କଦଳୀ
ଆଣିବାକୁ ବାଟୁ କିଣି ? କହିଲି ମୁଁ ତାରେ
"ତୋ ଲଗି ଆଣିବି କୋରା କାଲି କେତେଭଲି ।"

ମନ କି ମାନଇ ତା'ର ଶୁଷ୍କ ଏ ବାଣୀରେ ?
ତା' ଟିକି ଅନ୍ତର ତଳେ ଯେ ଟିକିକ ଆଶା
ତୃପ୍ତି କି ପାରଇ ଲଭି ? ପଚାରିଲା ପୁଣି

"ସତେ କି ଆଣିନ ନନା ?" କି କରୁଣ ଭାଷା !
ସେତେ ଯାହା ପରିଚ୍ଛଦ କାନ୍ଥେ ଝୁଲୁଥିଲି ।
ମୁଣିସବୁ ଦେଖିଗଲି ସନ୍ତୁଷ୍ଟ ନୟନେ,
ତା' ଠିକ ଅଙ୍ଗୁଳି ଗୃଳି, କାଳେ ଥିବେ ଆଣି
ମୁହଁ ଯେ କରୁଛି ଲକ୍ଷ୍ୟ ବସି ଅନ୍ୟମନେ !

ନିରାଶେ କହିଲି ତା'ର ଶିଶୁ ଓଠ ଫେଇ
"ଏ ଥର ନାହାନ୍ତି ଆଣି" ନିଜକୁ ଯେ ନିଜେ ।
ନୈରାଶ୍ୟ କାରୁଣ୍ୟ ବୋଳା ଦରେଟି ବଚନ
ମୋ ବକ୍ଷେ ରହିଲି ଲେଖା ଅଜାଣତେ ମୋର;
'ଏଥର ନାହାନ୍ତି ଆଣି' ସୁଦୂର ପ୍ରବାସେ
ଯେବେ ମୁଁ ଭାଳଇ କେବେ ଫେରିବେ ନିଜନେ
ମୂର୍ତ୍ତି ତା'ର କଥା ତା'ର ଆଖି ଆଗେ ଦଣେ
ଦଣେ କେଉଁଠି ଅଳି କଲି ମନ ପରସନେ,

ଦଣେ କେଉଁଠି ଗୋଟି ଗୋଟି ଖୋଜଗଲି ମୋର
ଶୂନ୍ୟ ସେ ସକଳ ମୁଣି କୋଠ କାମିଜର,
ନିରଶ ଅଧରୁ ତା'ର କେଉଁଠି ଫୁଟିବାର
'ଏଥର ନାହାନ୍ତି ଆଣି' ସକରୁଣ ଗୀର !
ସାମାନ୍ୟ ସେ କୋରା ପ୍ରତି ରେଣୁକଣା ମେଳେ
ଦେଖିଥାନ୍ତା ପିତୃସ୍ନେହ ଉଦାର ବମଳ,
କାଲି କଣା ହେବ କେତେ କୋରା ତାହାପାଇଁ
ତହିଁରେ କି ଥିବ ଆଜ ଦନର ଆଦର !!



# ମାଆର ମାୟା !

ଭଲଆ ସୁନାର ପଉଁର ମାଳଟି
ପିନ୍ଧିଥିଲେ ଯାହା ଜନମି ଗଲେ
ବନ୍ଧା ଦେଇ ଟଙ୍କା ଗୁଳଶ ଆଣିଲେ
ପୁଅ ଯିବ ବୋଲି କଟକ ପୁରେ ।
ପରୀକ୍ଷାର ଦିନ ନିକଟାଇ ଆସେ
ପୁଅ କହେ 'ବୋଉ ଟଙ୍କାତ ନାହିଁ
କଭଲ ମୁଁ ଯିବ କଟକ ମୂଲକେ
ଢ଼: ଇଢ଼: ପରୀକ୍ଷା ଦେବାର ପାଇଁ ।'

'ଯିବୁ ଧନମାଳ ! ଯିବୁରେ କଟକ
ପରୀକ୍ଷା ତୁ ଦେବୁ ଯିମିତି ହେଲେ,
ବାପ ଘର ତୋର ନାହାନ୍ତି ବୋଲିକ
ନାରଖାର କର ରଖିବ ତୋରେ !
ଜନମରୁ ତୋରେ ପାଳି ମୁଁ ଆଣିଚ
ଏଇ ହାତେ କର ଏତେରୁ ଏତେ !
କେତେ ଦାଉ ସହ୍ଣି ଆସିଚ ତୋ'ଲଗି
ଏ ଦୁଖଟିକ ବା ମୋ ପାଖେ କେତେ ?'

'ଯିବା ଦିନ ହୁଏ ନିକଟୁ ନିକଟ
ପାଠଚକ ଯାହା ଦେଲଣି ପଡ଼ି,
ମୋ ପାଖେ ତ ନାଇଁ କାଣି କଉଡ଼ିଏ
ଚଳୁଛେ କେତେଠୁ କରଜ କରି ।
ଏ ମାସେ ଦରମା ଡେରରେ ମିଳିବ
ଏବେ ମିଳିଥିଲେ ପାରନ୍ତି ଯାଇ,
ହାତ ପତାଇ ମୁଁ କାହାରେ ମାଗିବ ?
ଯାହାରେ ମାଗିଲେ କରନ୍ତ ନାଇଁ ।'

'ଯିବୁ ଧନମାଳ ! ଯିବୁରେ କଟକ
ବଦେଶ ଭୂଇଁ ଏ ସଭିଏ ପର,

କାହାକୁ ମାଗିଲେ କିଏ ସେ ଦେବ ବା
ପର ପାଇଁ କାନ୍ଦେ ହୃଦୟ କାର ?
ତୋ ପାଇଁ ସହିବ କେତେ ସେ ଯାତନା।
ରହିବ ତୋ ପାଇଁ ଜୀବନ ଧରି,
କେମନ୍ତେ ସହିବ ଏ ଭେଣ୍ଡା ବୟସେ
ନେସ୍ତୁ ତୋର ଲୁହ ପଡ଼ିଲେ ଝରି !'

'ଗଡ ନାହିଁ ପାଉ କାଲ ପାହାନ୍ତାରୁ
ଯିବାକୁ ଅଛୁ ମୁଁ ଯିବଇ ଚୂଲ,
ନ ଯାଇ ପାରିଲେ ପରୀକ୍ଷା ଦେବନି
ପୁଣି ଆଉ କେବେ; ବାଧିବ ଘର;
ଶହେ କୋଶ ଏଥ କଟକ ମୂଲକ
କେତେ ବନ ବଲ ପାହାଡ଼ ପାରେ
ପାଖ ହୋଇଥିଲେ ଚୂଲ ମୁଁ ଯାଆନ୍ତି
ଘରେଣି ଏତେ କ କରନ୍ତି ବାରେ ?'

'ଯିବୁ ଧନମାଳ ! ଯିବୁରେ କଟକ
ହେଉ ଶହେ ଅବା ଦୁଇଶ କୋଶ,
ଧନ ନାଇଁ ଥିଲେ ମନ ତ ରହିବ,
ଅଟକ ଯିବ କ ପରାଣ ଶୋଷ ?
ବାଡ଼ ଗୋବାରେ ତ ଗୋବାଏ ତୋ ବାପ
ରଖିନ ତୋ'ଲଗି ଯିବାକୁ ଚଲ,
ବାନ୍ଧୁଛୁ ତୋରେ ମୁଁ ନାରେଖ କରିନା
ଏବେ ନାରେଖ କି ପାରିବ କର ?'

'ଯିବ କାଲ ବୋଉ ! ଯିବ ମୁଁ କଟକ
ବାନ୍ଧ ରଖିଲଣି ଗଣ୍ଠିଲ ପେଡ଼ି,
କିଭଳି ଯିବ ମୁଁ ଘଳ ହୁଏ ଖାଳ
କି ଲଭ ଯିବାରେ ହେଲେକ ଡେରି ?
ଜୀବନର କେତେ ଆଶା ଅଭିଳାଷ
ଫୁଟି ଫୁଟି ଯିବ ମଉଳ କାହିଁ,
ଦୁଖୀ କୁଡ଼ିଆରେ ଜନମ ତ ହେଲି
ଏତେ ଆଶା ଜାଗେ କେଉଁଥି ପାଇଁ ?

'ଯିବୁ ଧନମାଳ ! ଯିବୁରେ କଣ୍ଟକ
କପାଇଁ ଘଲେଣି କରୁଚୁ ଏତେ,
ଯେତେ ବଡ଼ ଆଶା ଲେପିଚୁ ପରାଣେ
ଲେପି ରଖ ଥାଆ ପାରୁଛୁ ଯେତେ;
ଯେତେ ଦିନ ଥିବ ଜୀଇଁ ଏ ଜୀବନେ
ଜୀଇଥିବ ଏକା ତୋହର ପାଇଁ,
ଜୀଇଥିଲ୍ ଯାଏଁ ଗୋଟିଏ ଆଶା କ
ତୋ ପରାଣୁ ଯିବ ମଉଳ କାହିଁ ?'

'ଯିବ ମୁଁ କଣ୍ଟକ ଯିବ କାଲ ବୋଉ !
ପାଣ୍ଟି ଚପି ମାର ପେଟର ଭୋକ,
ରହନ୍ତ ସେଠି ମୁଁ ଦଅନ୍ତ ପରୀକ୍ଷା
ମିଳଗଲେ ବାଟ ଖରଚତକ !
କଏ କେତେ ଥିବେ ରଜସନମାନେ
କ ଲଭ ମୋର ବା ସେ ସବୁ ଭଳ ?
ଦୁଖୀ ଘରେ ଯେବେ ଜନମ ପାଇଚ
ନାଇଁ ପାଏ ସୁଖ ସଂପଦ ଶିରୀ !'

'ଯିବୁ ଧନମାଳ । ଯିବୁରେ କଣ୍ଟକ
ରଜାର କୁମର ବଳ ତୁ ବଡ଼,
ମାନହୀନ ହୋଇ ରହିବୁ କପର ?
ଜନମ କଲ୍ ମୁଁ ରହିବ ତୋର !
ମୁଁ ଆଖି ବୁଜିଲେ କପର ରହିବୁ
ମୁହିଁ ସିନା ଦେଖି ପାରବ ନାଇଁ
ଜୀଇଥିଲ୍ ଯାକ କଏ ଅଛୁ ତୋରେ
ହୀନମାନ କର ଦେଖିବା ପାଇଁ ?

'ଯିବ କାଲ ବୋଉ ଯିବ ମୁଁ କଣ୍ଟକ
ମୋ ପାଇଁ କ ଟଙ୍କା ଠିକଣା କଲୁ ?
କ ଭଳ ମୁଁ ସତେ ଭୁଛା ହାଭୁଟାରେ
ଗୋଡ଼ କାଢ଼ି ଯିବ କାଲ ଏ ଘରୁ;

କାଲି ରାତି ପାଇ ସକାଳ ତ ହେବ,
କାଲି ଏତେବେଳେ କଟକ ପୁରେ
ରହି ମୁଁ ଥିବ କି ? ଅଭାବ ପଡ଼ିଲେ
କେତେ ଛଟପଟ ପରାଣ ମରେ !'

'ଯିବୁ ଧନମାଳି ! ଯିବୁରେ କଟକ
କାଲି ଏତେବେଳେ କଟକେ ଥିବୁ
କାହିଁ ପାଇଁ ଏତେ ବଥେଇ ହେଉଚୁ
ଯେତେ ଟଙ୍କା ଲୋଡ଼ା ନବୁରେ ନବୁ !
କେତେ ଦୁଖେ ତୋରେ ପାଳି ଆଣିଚି ମୁଁ
ଯେତେ ଦୁଖ ପଡ଼ୁ ହେବ ମୁଁ ସାହା !
ତୋ' ଲାଗି ମୋ ଦେହୁ ଲହୁ ଝରି ପଡ଼ୁ
ତୁ ସୁଖ ସମ୍ପଦେ ଥାଆରେ ଥାଆ !'

'ଯିବି କାଲି ବୋଉ ! ଯିବି ମୁଁ କଟକ
କେତେ ହଇରାଣ କରୁଚି ତୋରେ
ତୋ ପାଇଁ ମୁଁ ଭଲେ ହଇରାଣ ହେଲେ
କି ଶିଘ୍ର ପାଆନ୍ତୁ ଧରଣୀ ତଳେ !
କେତେ ଅଗ୍ନକ ଆସିଚି ଜୀବନେ
କେତେ ଅଗ୍ନକ ଆସିବ କାହିଁ,
କି ଦମ୍ଭ ଗ୍ରଭ ତୁ ପତାଇ ରଖିଚୁ
ଚିର ଦିନ ଧରି ମୋହରି ପାଇଁ !

'ଯିବୁ ଧନମାଳି ! ଯିବୁରେ କଟକ
ଦେଉଚି ନେଏ ଏ ଟଙ୍କା ଦି' କୋଡ଼ି
ପେଟ ଊଣା କରି ଚଳିବୁନି କେବେ,
ଲେଖିବୁ ନାଅଁ ଗଲେରେ ପଡ଼ି;
ହାତ ପାତି କାରେ ମାଗିବୁ ନାହିଁଟି
ନାଇଁ ଯେବେ କିଏ ଦେବକି କରି
କାନ୍ଦ ଉଠିବ ତୋ ପରାଣ ଟିକକ,
କୋଣ୍ଡ ଲହୁ କେତେ ପଡ଼ିବ ଝରି !'

ଯିବ କାଲ ବୋଉ ! ଯିବ ମୁଁ କଟକ
କାହିଁ ତୋ ବେକର ପତ୍ରୁର ମାଳ ?
ମୋ ଲଗି ପ୍ରାଣକୁ ଛଡ଼ାଇଚୁ ପାଣି
ମୋ ଲଗି ସହୁଚୁ ବେଦନା ଭର ।
ପହିଲ ପାଳ ତୁ ଆସିବାର ବେଳେ
ପିନ୍ଧି ଆସିଥିବୁ ମାଳଟି ସେଇ
ସେଦିନୁ ଏ ଯାଏଁ ରଖିଚୁ ସାଇତି
ମୋହ ଲଗି ବନ୍ଧା ପାରଚୁ ଦେଇ !'

'ଯାଆ ଧନମାଳ ! ଯାଆରେ କଟକ
ତତେ କସ ଅବା ମିଳବ ତହୁଁ ?
ତୋ ସୁଖ ସରଗ ଲଗି ଏ ଜୀବନ
ତା' ତହୁଁ କି ସୁଖ ମଞ୍ଚେ ମୋ ଆଉ ?
ତୋ ଲଗ ଯେବେ ଏ କୁଟୀର ହସିବ
ମାନ ସନମାନ ବିଭବ ଧର
ଲକ୍ଷେ ଟଙ୍କା ଟେକ ସେଇ ମୋ ଜୀବନେ
ସେଇଟିକ ଗୁହିଁ ଯାଏ ମୁଁ ମର !'

—o—

# ଗୃହିଣୀ-ପ୍ରିୟା

ସେ' ଯେ ମୋହର ଗୃହିଣୀ ବଧୂ, ସେ' ଯେ ମୋହର ପ୍ରିୟା
ସାରଟି ଦିନ ଏ ଘର ପାଇଁ ଆକୁଳ ତାର ହିଆ !
ସକାଳୁ ଉଠି ବାସି ପାଇଟି,
କରଇ ପରା ନିଇତି ନିତ !
ପାଣି ସେ ଆଣେ, ଭାତ ବସାଏ ଚୁଲରେ ଦେଇ ନିଆଁ,
ସେ' ଯେ ମୋହର ଗୃହିଣୀ ବଧୂ ସେ ଯେ ମୋହର ପ୍ରିୟା ।

ଶଶୁର, ଶାଶୁ, ଜାଆ, ଦଅର, ଆପଣା ପ୍ରିୟ ପତି
ସବୁରଙ୍କି ବାଡ଼ଇ ଘୃତ ଆଦର କରି ଅତି;
ଅଇଁଠା କଂସା ଧୋଇ ମାଜି,
ସାଧକ ପରି ନୋହି ଅରାଜି !
ସକାଳୁ ରାତି ପହରେ ଯାଏଁ କାମରେ ତା'ର ମତି,
ଶଶୁର, ଶାଶୁ, ଜାଆ, ଦଅର ଆପଣା ପ୍ରିୟ ପତି ।

ସବୁରି ଶେଷେ ଦଇଠା କଣ ଭୁଞ୍ଜେ ଦିଏ ଥୋଇ
ଗୋରୁ ଆହାର ପାଇଁକି ଯାଏ ବାଡ଼ିକି ପାଣି ବୋହି,
ସନ୍ଧ୍ୟା ହେଲେ ସନ୍ଧ୍ୟା ଦିଏ,
ସବୁରି ହିତ ମନାସୁ ଥାଏ !
ନିଜର ସୁଖ ସୁବିଧା କଥା ମନରେ ଆଣେ ନାହିଁ
ସବୁରି ଶେଷେ ଦଇଠା କଣ ଭୁଞ୍ଜେ ଦିଏ ଥୋଇ !

ପୁଣିଅ ପବ ପଡ଼ିଲେ ଘରେ ହୃଦୟ ଉଠେ ହସି,
ଘରର କିଏ ବିଦେଶେ ଥିଲେ ମନଟି ଯାଏ ଲସି !
ସବୁରି ପାଇଁ ବକ୍ଷ ତା'ରି
ଭିଜଇ ପରା ବାରମ୍ବାର !
ସେ'ଯେ ଲକ୍ଷ୍ମୀ ଅନ୍ନପୂର୍ଣ୍ଣା କୁଟୀରଟିର ଶଶୀ !!
ପୁଣିଅ ପବ ପଡ଼ିଲେ ଘରେ ହୃଦୟ ଉଠେ ହସି !

ରୋଗରେ କିଏ ବ୍ୟସ୍ତ ହେଲେ କୁଟୀରି କଣେ ପଡ଼ି,
ପଥ୍ୟ ପାଚନ ସିଝାଇ ଦିଏ ହେଲା ଯେ ନାହିଁ କରି
ଆର୍ଦ୍ର କରି ନୟନ ପତା,
ଡାକଇ କେତେ ଦିଅଁ ଦେବତା !
"ପ୍ରଭୁ ହେ କିଆଁ ଶୁଣୁନ ହୋଇ କରୁଣାମୟ ହରି !"
ରୋଗରେ କିଏ ବ୍ୟସ୍ତ ହେଲେ କୁଟୀରି କଣେ ପଡ଼ି !

ଯେ ଯାହା ଦିଏ ଗଞ୍ଜଣା ସେ ପାଷାଣ ପରି ସହେ,
ଆଖିର ଲୁହ ଆଖିରେ ମରି ତଳିଟି ହୋଇ ରହେ,
ଲେଉଟ ବାଣୀ କହେନି କାରେ
ସକଳ ଦୁଃଖ ଯାତନା ଭରେ;

ଧନକୁ ଧନ ଯାହା ତା' କାମ ନଣ୍ଠି ପର ବନ୍ଧେ;
ଯେ ଯାହା ଧଏ ଗଞ୍ଜଣା ସେ ପାଷାଣ ପରୁ ସନ୍ଧେ !

ବନ୍ଧୁ ଯେବେ ଦୂର ଓ ପାଖୁ କୁଟୀରେ ଆସେ କେହି,
ଚରଣ ତା'ର ପଡ଼େନି ତଳେ ଚରଗ୍ଣ କରେ ସେହି;
କଭଲ କଏ ରହିବ ଘରେ,
ଖବର ନିଏ ଆକୁଳ ଭରେ,
ଚଉ ତା'ର ଆତ୍ମର ସବୁର ଦୁଖ ଓ ଦୁଖ ନେଇ !
ବନ୍ଧୁ ଯେବେ ଦୂର ଓ ପାଖୁ କୁଟୀରେ ଆସେ କେହି !

ଭିକାରୀ ପିଲା ଦୁଆରେ ଯେବେ ଗୃଉଳ ମାଗି ଆସେ,
ହୃଦୟୁ ତା'ର କାନ୍ଦ ଉଠେ କରୁଣ ତା'ର ଭାଷେ;
ଆଦର କରି ଭିକ୍ଷା ଦିଏ,
ପଗ୍ଲରେ ତା'ର ବାପ ମା' କିଏ ?
କଭଲ ତଳେ ଦଇନ ଭରେ ଦରିଦ୍ର ତା' ବାସେ,
ଭିକାରୀ ପିଲା ଦୁଆରେ ଯେବେ ଗୃଉଳ ମାଗି ଆସେ !

ସାଇ ଭିତରେ କାହାର ପିଲା ନ ଖାଇ ଥିଲେ ଭାତ,
କାହାର ପିଲା ରୋଗରେ ଯେବେ ଥାଏ କତରି ଗତ,
ଖୁଆଏ ଭାତ କାହାକୁ ଡାକ,
କାହାକୁ ରଖେ ବକ୍ଷେ ଯାକ !
ଜନମି ତା'ର ବକ୍ଷ ତଳେ ନିତି ଯେ ଜାଗ୍ରତ !!
ସାଇ ଭିତରେ କାହାର ପିଲା ନ ଖାଇ ଥିଲେ ଭାତ,

ନିଜର ଯେବେ ହୁଅଇ ଜର ଥରଇ ଦେହ ତାପେ,
ସେଥିକି ସେତ ଡରଇ ନାହିଁ କାମଟି କରେ ଆପେ ।
ନିଜର ଦେହ ପାଞ୍ଚାକୁ ଲବେ,
ଭାଲେଣି ମଗ୍ନ ନ ଥାଏ ଭବେ,
ନିଜେ ସେ ଚଳ ଚଳାଏ ଘର ଗୋଟିକୁ ଜର କୋପେ
ନିଜର ଯେବେ ହୁଅଇ ଜର ଥରଇ ଦେହ ତାପେ;

ସିଏ ଯେ ମୋର ଗୃହିଣୀ ବଧୂ ସିଏ ଯେ ମୋର ପ୍ରିୟା,
ସାଧନା ବଳେ ସ୍ୱର୍ଗ କରି ଗଢ଼ିଛି ତାର ହିଆ;
ସିନ୍ଦୂର ତା' କପାଳେ ଥିଲେ
ପଡ଼ୁଆ ତା'ର ନାହିଁଛି ତଳେ;
ଧରଣୀ ଖରେ ଆହ୍ଲାଦରେ ଥାଏ ସେ ହୋଇ ଠିଆ ।
ସିଏ ଯେ ମୋର ଗୃହିଣୀ ବଧୂ ସିଏ ଯେ ମୋର ପ୍ରିୟା !

ସିଏତ କେବେ ଲୋଡ଼ଇ ନାହିଁ ହେବାକୁ ରାଜରାଣୀ,
ସିଏ ତ କେବେ ଲୋଡ଼ଇ ନାହିଁ ହେବାକୁ ମହାଜ୍ଞାନୀ;
ହାତର କାଚ ହାତରେ ଥାଉ
ପିଲାଙ୍କୁ ଗୃହିଁ ଜୀବନ ଯାଉ,
ଜୀବନସାରା ଥାଉ ସେ ହୋଇ ସବୁରି ହିତକାମୀ
ସିଏ ତ କେବେ ଲୋଡ଼ଇ ନାହିଁ ହେବାକୁ ରାଜରାଣୀ ।

ସିଏ ତ କେବେ ଲୋଡ଼ଇ ନାହିଁ ତ୍ରିତଳ ସୌଧ ବାସ,
ପୋଇଲି ଧରି ବାଇଙ୍କ ମେଳେ ରହିବା ଅଭିଳାଷ !
ଠଙ୍କା ସୁନା ଅଳଙ୍କାର
ସେ ଯେ ହୃଦୟ ଅହଂକାର
ଗୃହିଁନି କେବେ ମରମେ, କେତେ ବିତିଛି ଦିନ ମାସ,
ସିଏ ତ କେବେ ଲୋଡ଼ଇ ନାହିଁ ତ୍ରିତଳ ସୌଧ ବାସ ।

ହୃଦୟ ଗୋଟି ସ୍ୱଚ୍ଛ ତା'ର ଦୟା ଓ ଧର୍ମ ଦାନେ
ଦେବୀ ପରି କି ଦୀପ୍ତି ଆହା ଖେଳଇ ତା'ର ପ୍ରାଣେ !
ସେ ଯେବେ ଥାଏ କୁଟୀର ପୁରେ
ରଜା ଉଆସ ଲିବା ତା' ଭୁଲେ !!
ସରଗ ଆଭା ଫୁଟଇ ମୋର କୁଟୀର ପ୍ରତି ଥାନେ,
ହୃଦୟ ଗୋଟି ସ୍ୱଚ୍ଛ ତା'ର ଦୟା ଓ ଧର୍ମ ଦାନେ ।

ଏତିକି ଆଶା ଏତିକି ଲକ୍ଷ୍ୟ ଜୀବନେ ତା'ର ଖାଲି
ପୁଅ ପତିଙ୍କ ଆଗରେ ତା'ର ଜୀବନ ଯିବ ଗୃଲି ।
ହାତର କାଚ ହାତରେ ଥିବ,
ତା' ସିନ୍ଦୂର ନାହିଁ ଲିଭିବ,
ଅଧ୍ୟ ରାଣୀ ବେଶେ ସେ ଯିବ ସରଗ ପୁରେ ଗୃଲି
ଏତିକି ଆଶା ଏତିକି ଲକ୍ଷ୍ୟ ଜୀବନେ ତା'ର ଖାଲି ।

—o—

# କଲମ-ମୁନ

ନର ମହାପାତ୍ର  ହେଡ଼ମାଷ୍ଟର ହୋଇ ଲୋ
ଆସିଅଛୁ ଖଲକୋଟ
ପିଲାଙ୍କୁ ଦେଖିଲେ  ଦାନ୍ତ ରଗଡ଼ ଲୋ
ଆଖି କରେ ରଟ ମଟ ।

ଖଲକୋଟ ବୋଲି  ଗାଇଜଟିଏ ଲୋ
ଆଠ ଦଶ କୋଶ ଧରି,
ଚଉପାଶୁ ପିଲେ  ପୋଥି ଘେନି ହାତେ
ଆସନ୍ତି ଇସ୍କୁଲେ ପଢ଼ି ।

କଏ କେତେ ଦୂରୁ  ଆସନ୍ତି ପରା ଲୋ
କେଉଁ ପଲ୍ଲୀ ପ୍ରାଣ ଧନ !
ଝାଳ ଗମ ଗମ  ବଦନୁ ଝରେ ଲୋ
ବାଧି ଉଠେ ପାଦ ଶ୍ରମ ।

ଟିକିଏ ବିଳମ୍ବ  କରି କେ ଆସିଲେ
ଖରାରେ କରାଇ ଠିଆ
ଗୋଟାଗୋଟା ବାଡ଼ିଆ  କରେ ନଚାଟି ଲୋ
ଅଷ୍ଟାବକ୍ର ନିଠୁର ହିଆ ।

ମୂକ ପଶୁ ପରି  ଜଳା ପୋଡ଼ି ହୋଇ
ସହନ୍ତି ଦଇନି ଯେତେ;
ଫାଟି ପଡୁଥାଏ  ନୋଳା ପିଠିରୁ ଲୋ
ରକତ ଝରଇ କେତେ !

ହେଲେ ଭୁଣ୍ଡି ଫେଇ  କହନ୍ତି ନାହିଁ ଲୋ
ପଦଏ ବଚନ ଟାଣେ,
ବଡ଼ ସୁଧାର ସେ'  ପିଲା ଗୁଡ଼ିକ ଲୋ
ନ ଥିବେ କେଉଁଠି ଜାଣେ !

ଯେତେ ଯିଏ ପାଠ ପଢ଼ି ଆସିଲେ ଲୋ
ମନକୁ ପାଏନା ତାର,
ଚନ୍ଦ୍ରମର୍କଟି ସେ କହଇ କଥା ଲୋ
ନୁହେ ଯାହା ସହ୍ୟବାର ।

ଜାଣି ଶୁଣି କରି ସବୁ ପିଲାଙ୍କୁ ଲୋ
ଫେଏଲ୍ କରଇ ସେହୁ,
'କ ପାଠ ପଢ଼ିଛ' ବୋଲି ହୁଙ୍କାରେ ଲୋ
ପଢ଼ାଇଚ ଯିଏ କେହୁ !

'ଇଂରିଜି ପାଠ ବଡ଼ ବଳଆର
ମତେ କ ଜାଣିଚ ତମେ ?
ମୋହ ପାଖେ ନାଇଁ ଟିଉସନ କଲେ
ଫେଲ୍ ହେବ ଜଣୁ ଜଣେ ।'

'ଏତେ ବେଳୁ ବନ୍ଧ ନାଇଁ ବାନ୍ଧିଥିଲେ,
ପଛକେ ପସ୍ତାଇ ହବ,
ବେଶୀ ନୁହେ ମୋରେ ମାସକୁ ଖାଲି ଲୋ
ପନ୍ଦର ଟଙ୍କାଟି ଦବ !'

'କେତେ କେତେ ପିଲା ଟିଉସନ କରି
ତାଲିମ କରିଚ ମୁହିଁ,
କେହି ଜଣେ ହଟି ରହି ଯାଇଅଛୁ—
ସ୍ମରଣ ତ ହେଉ ନାହିଁ ।'

'ଏଠି କଏ ଅଛୁ ଭଲ ଶିକ୍ଷକ ଲୋ
କାହାକୁ କ ପାଠ ଆସେ ?
ପକେଟ ପୂରାଇ ବେତନ ନବାଟି
ଜାଣନ୍ତି ସେ ପ୍ରତି ମାସେ !'

'ଏଇ ଯେ ଦେଖୁଚ ଶଙ୍କର ପଣ୍ଡିତ
ଖବର କାଗଜ ପଢ଼ି
ଧନମାନ ତାର ବଢାଇ ନିଏ ଲୋ
ବାହାରକୁ କାଢ଼େ ଛଡ଼ ।'

'ମଉଳକ ତ୍ରେନିଂ ପାଇ ସେ ଆସିଚ
ଏ ଯେଉଁ ଖଦଡ଼ ଧାସ୍ତା,
ବସ୍ତା କାଢ଼ି କାଢ଼ି ଯାଉଚ ଦିନ ଲୋ
କି ବନ୍ଧ୍ୟା ଆସିଚ ପଡ଼ି ?'

'ଏ ଯେ ପାଶବାବୁ ଭଲ ଶିକ୍ଷକ ଲୋ
ଉପର ହଉଛ କ୍ରମେ
ସେ ଆସିବା ଦିନୁ କେତେ ଅନୁଷ୍ଠାନ
ଗଢ଼ିଛନ୍ତି ପ୍ରତି କ୍ଷଣେ ।'

'ପୁଅ ତହୁଁ ବଳି ପିଲାଗୁଡ଼ଙ୍କୁ ଲୋ
ସେନେହ କରଇ କିକ ?
ଖେଳ ବୁଲ ପଢ଼ା ପିଲଙ୍କ ସଙ୍ଗେ ଲୋ
ନିଯୁତ କରଇଟିକ ।'

'ବାଡ଼ ବୈଷ୍ଣବ ତାହା ତହୁଁ ପର
ହୋଇବ ଟିକିଏ ଭଲ
ବାହାରକୁ ନାଆଁ କରିବାଟି ଏକା
ଜଣା ତାକୁ କଉଶଳ ।'

'କିଏ କେତେ ରୂପେ ଅଛନ୍ତି ଏଠି ଲୋ
ଜାଣି କି ପାରିବ ଟିକେ ?
ଗୋଟିଏ ଗୋଟିକ ବଳି ଅଧମ ଲୋ
ନାଡ଼ ମୁଁ ଚପିଚ ଠିକେ ।'

'ମୋ କଲମ ମୁନ ବଡ଼ ଦାଡ଼ୁଆ ଲୋ
ଖଣ୍ଡା ତହୁଁ ବଳି ବଡ଼,
ପଦେ ଲେଖି ଦେଲେ କିଏ କାହିଁ ଯିବେ
ପତା ମିଳିବ କି କାର ?'

ଏତେ ଏତେ କଥା ପିଲଙ୍କ ଆଗେ ଲୋ
ବଖାଣି ଯାଏ ସେ କିତ,
କିଏ ଜଣେ ତା'ର ଜବାବ ଦେଲେ ଲୋ
ସାଗ୍ କରି ଦିଏ ପିଟି !

ନିଜ ବଡ଼ ପଣ            କହି ଯାଉଥାଏ
    ବାଟୁଳି ବାଜେନି ହେଲେ
ତା'ର ପଢ଼ାଇବା          କିବା ବଖାଣିବ
    ଜ୍ଞାନୀ ପଣ୍ଡିତଙ୍କ ମେଳେ !

ଇସ୍କୁଲ ପିଲେ ସେ        କଅଁଳ ମନ ଲୋ
    ଫୁଲକଳିଗୁ ବଳି
ଯିମିତ ଗଢ଼ିବ          ବାଳୁତ କାଳୁ ଲୋ
    ସିମିତ ସେ ହେବ ଗଢ଼ି !

କାହା ପ୍ରାଣ କେତେ       ଶିଶୁ ହୃଦୟ ଲୋ
    ରତ୍ନନାଇଁ ଲୁଚି କରି,
ସେ ଶିଶୁ ସମ୍ପଦ         ଫୁଟି ନ ପାରିଲେ
    କି ଲାଭ ଜୀବନ ଧରି !

ପ୍ରତି ଶିଶୁ ସେ ଯେ      ଏ ଦେଶ ଜାତିର
    ଗୋଟି ଗୋଟି ଅଳଙ୍କାର,
ତାଙ୍କରି ହାତରେ        ଦେଶ ଜାତିର ଲୋ
    ରହିବ ସମ୍ପଦ ଭାର ।

କାହାକୁ କି ଭଳି         ଗଢ଼ିବାକୁ ହେବ
    ଦେଇ ସ୍ନେହ ସନମାନ,
ସେଇତକ କରି           ପାରିଲେ ପ୍ରକୃତ
    ହେଲା ସିନା ଶିକ୍ଷା ଦାନ !

ନରି ଖାଲି ପାଠ         ଘୋଷାଇ ପଢ଼ାଏ
    ନମ୍ବର ରଖିବା ପାଇଁ,
ଦପଦ ନିଜେ କେ        ଲେଖି ନ ପାରୁ ଲୋ
    କିବା ଆସେ ଯାଏ ତହିଁ ?

କେତେ କେତେ ପିଲା      କିଛି ନ ବୁଝି ଲୋ
    ଘୋଷନ୍ତି ବିକଳ ମନେ,
ଘୋଷି ନ ପାରିଲେ       ଚଡ଼ାଙ୍ଗ ଚଡ଼ାଙ୍ଗ
    ବେତ ପିଠେ ବାଜେ କ୍ଷଣେ ।

ଘୋଷି ଘୋଷି ଯିଏ   ଲେଖି ପାରିଲା ଲୋ
ସେଇ ପିଲା ଏକା ଭଲ;
ନିଜ ମନୁ କାଢ଼ି   ଲେଖିଲା ଯିଏ ଲୋ
ସିଏ ପଡ଼ିଗଲା ତଳ ।

ତା' ଉପରେ ହେଲା   ଗାଳି ପରିଭବ
କିଆଁ ସେ ଘୋଷିଲା ନାହିଁ,
ମଣିଷ ପିଲା ଯେ   ପଶୁ ହେବାକୁ ଲୋ
ଇଚ୍ଛା କି କରିବ କାହିଁ ?

ନିଜେ ଫୁଟି ନିଜେ   ଉଠି ପାରିଲେ ଲୋ
ଯେ ଶିଖି ଜୀବନେ ଜାଗେ
ପରର ଅଇଁଠା   ଖାଇ ବଢ଼ିବାରେ
ସମାନ କି ତାହା ଆଗେ ?

ପିଅନଠୁ ଧରି   ଶିକ୍ଷକ ଯାଏଁ ଲୋ
ଦେଖାଏ ଧଡ଼ିକ ଭାରି !
ତା' କଥାରୁ କେହି   ଆନ ନୋହିଛି ଲୋ
ଯିବେ ଅଙ୍କୁଶିତେ ପାଳି !

ସାର ବା ଅସାର   ନ୍ୟାୟ ବା ଅନ୍ୟାୟ
କହୁ ଯେ ଯେବଣ କଥା
ମାନିବାକୁ ହେବ   ଶିର ନୁଆଁଇ ଲୋ
ନୋହିଲେ କାଟିବ ମଥା !

ଶିକ୍ଷକ ଶିକ୍ଷକ   ଭିତରେ ଖାଲି ଲୋ
ଲଗାଇ ଦେବାକୁ କଳି
ସଜ ଉଣ୍ଡୁ ଥାଏ   ପାରି ପାରେନି ଲୋ
କେତେ କଉଶଳ ଗଢ଼ି !

କିଏ କଣ ଠିକେ   ପ୍ରତିବାଦ କଲେ
କହିଲେ ନରର ଆଗେ
ବୋଲେ ନର ମୁହଁ   ତୁମର ନାଆଁ ରେ
ଲେଖିବ ଏମନ୍ତ ବାଗେ—

ଗୁଡି ପିଟି ହୋଇ    ଗୃହୁ ଯିବ ଏଠୁ
ପିଠେ ପଢ଼ିବେନି କେହୁ,
କଏ କେତେ ଉର    ଯାଆନ୍ତି ଏଥେ ଲୋ
ଫେରନ୍ତି ଭୁଲିଟି ହୋଇ ।

ଉଇ ହୁଙ୍କା ଚଢ଼ି    ସ୍ୱର୍ଗ ଗଲା ଭଳି
ଟିକଏ କ୍ଷମତା ପାଇ,
ଇମିତି ହଉଚ;    ଆଉ ଅବା ଥିଲେ
କଅଣ ନଥାନ୍ତ ହୋଇ !!

ଝଗୃର ଥାଆନ୍ତ    ବସୁଧାଟା ଅବା
କରିଦେବ ଟଳମଳ
ହାଇରେ ମଣିଷ    କେଡ଼େ ଟିକେ ହୋଇ
କି ମହା ଗରବ ତୋର !

ଢନେ ନର କଲା    ନୋଟିସ ଜାରି ଲୋ
ଯେତେ ପିଲା ଛନ୍ତି ଯହିଁ,
ଓଳିଏ ଆସି ସେ    ଓଳିଏ ପରା ଲୋ
ଇସ୍କୁଲେ ଆସନ୍ତି ନାଇଁ—

ଦୁଇ ଓଳି ତାଙ୍କ    ଅନୁପସ୍ଥିତି ଲୋ
ହାଜରରେ ଦେବ ଲେଖି
ଯେଉଁ ଶିକ୍ଷକ ସେ    ନ ଲେଖିବେ ଏହା
ମୁହିଁ ତାଙ୍କୁ ଦେବି ଦେଖି ।

ଯେତେ ଯହିଁ ଥିଲେ    ଶିକ୍ଷକ ମାନେ ଲୋ
ଅକ୍ଷବ ଡରୁଆ ଜନ
ହିଁଅ ଭର ଦେଲେ    ନର କଥାରେ ଲୋ
ନୋହିଲେ ରଗିବ ଜାଣ !

'ବାବୁ ବୃନ୍ଦାବନ    ବଡ଼ ଠାଣୁଆ ଲୋ
କହିଲା ଗରଜି କରି—
'ଏତେ ମିଛ ଆମେ    ପାରିବୁନି ଲେଖି
ମଣିଷ ଜନମ ଧରି ।'

ବାବୁ ବୃନ୍ଦାବନ ପର- ଟୋକା ଖଣ୍ଡେ
ମିଳିବ କି ମହୀ ତଳେ ?
ବୟସେ ଅଳପ ହେଲେ କିସ ହେଲା
ଜ୍ଞାନୀ ପୁରୁଷଟି ଭଲେ !

ସେ ଆସିଲା ଦିନୁ ସାରା ବିଦ୍ୟାପୀଠେ
ଜୀବନ ଯାଇଚି ବହି,
କେତେ କବି ବକ୍ତା ବାହାରିଛନ୍ତି ଲୋ
ନବୀନ ଉତ୍ସାହେ ଶୋହି !

ପିଲାମାନେ ତାଙ୍କୁ ଦିଅନ୍ତି ସେନେହ
ହୃଦୟୁ ମମତା ଭରି,
ତାଙ୍କର ଏ ଯେଉଁ ବିଭବ ପଣ ଲୋ
ସହିତ ପାରେନି ନରି ।

ଭଲ ଲୋକ ସିନା ଭଲ ଲୋକେ ଗୃହେ
ସେନେହ ଆଦର କରେ,
ଖଳ ଦୁର୍ଜନ ଯେ, ତାଙ୍କୁ ଭଲ ଲୋକ
ଗଞ୍ଜାଇବ ସବୁବେଳେ ।

ବାଘ ପରି ମିଶି ଆସିଲା ନରି ଲୋ
ବାବୁ ବୃନ୍ଦାବନେ ଗୃହେଁ,
ହେଲେ ବୃନ୍ଦାବନ ନଇଁଲା ନାହିଁ ଲୋ
ସାକ୍ଷାତେ ମେରୁଟି ସେହି ।

କେତେ ଗାଳିମନ୍ଦ କଲାଟି ତାରେ ଲୋ
ଆଖି କରି ମଟ ମଟ,
"ମୋ ଆଦେଶ ତୁମେ ପାଳିବ କି ନାହିଁ
କହ ବୃନ୍ଦାବନ ସତ ?"

କହେ ବୃନ୍ଦାବନ ନରି ଆଗେଟି ଲୋ
ଦେଖାଇ କେଶରୀ ଠାଣି,
"ପିଶାଚ ପାଲଟି ଯାଇଚ ତମେ ହେ
କି ବାଉଳି ତବ ବାଣୀ !

ଧମକ ଚମକ ଦେଖାଇଲେ ମୁଁ କ
ଭବ ଅଛ ଯିବ ଲଇଁ ?
ଯାହା ଠିକ୍ ବୋଲ ବୁଝିଛି ମୁହିଁ
ଅନ୍ୟଥା କରିବ ନାଇଁ ।

ମଣିଷ ହୋଇଣ ପଶୁର ପାହାରେ
ଓହ୍ଲାଇ ଆସିଛ ତମେ,
କେତେ ପରାଭବ ଜଣ ଜଣକୁ ଲୋ
ଦେଉଅଛ ପ୍ରତିକ୍ଷଣେ;

ରକତ ନିଗାଡ଼ ଶିକ୍ଷକମାନେ ଲୋ
କାମ କରୁଛନ୍ତି ଏଥି
ଖାଇବାକୁ ବାରେ ତର ମିଳେନି ଲୋ
ପଡ଼ାରେ ବଅନ୍ତି ମଥି ।

ପିଲାଙ୍କ ଆଗରେ ଗାଆଁ ଲୋକ ଆଗେ
କହୁଚ ଗରଜ ତମେ,
ଶିକ୍ଷକ ଗୁଡ଼ାକ କିଛି ନୁହନ୍ତି ଲୋ
କାମ କୁଡ଼ି ଜଣୁ ଜଣେ ।

ପଶୁ ହେଲେ ଯାଇ ତୁମ ପ୍ରଶେ ସିନା
ରହି ସେ କରିବ କାମ,
ମଣିଷ ହୋଇ କେ ସହିବ ତୁମର
ଏତେ ଅନାଦର ମାନ ?”

ସିଂହ ପଶୁ ପରି ବାବୁ ବୃନ୍ଦାବନ
ଏତେ କଥା ଗଲ କହି,
ଝାଳ ଗମଗମ ବୋହି ପଡୁଥିଲେ
ଲୁହ ଆସୁଥାଏ ବହି !

ମନ ଭିତରଟା ଗୋଳେଇ ଘାଣ୍ଟେଇ
କାହିଁ ଉଠୁଥାଏ ଖାଲ,
ଆଗୁ ମୁଁ ଶିକ୍ଷକ ହୋଇ ଆସିଲି ଲୋ
କି ଶିଖି ପାଇବ ବୋଲ ?

ଏତେ କାମ କରି ତା'ର ପୁରସ୍କାର
ଏଇ ତ ପାଇଲି ପରା !
ଅନ୍ଧ ଦେଶେ ଗଲେ ଦର୍ପଣ ବିକି ଲୋ
ତା' ମୂଲ ବୁଝିବ କି ଧରା ?

ମାସକ ଭିତରେ ବାବୁ ବୃନ୍ଦାବନ
ବଦଳି ହୋଇଲେ ତହୁଁ,
ନରି ବୁଲୁ ଥିଲେ ଖେଳ ଯାଉଥି ଲୋ
ମହା ଆନନ୍ଦର ଢେଉ !

ଜଣକୁ ଲଡ୍ଡୁ ମୁଁ ଖିଆଇ ଦେଇଛି
ଅଛନ୍ତି କେତେଟା ଖାଲି,
ତାଙ୍କୁ ଛଡ଼ି ଦେଲେ କଣ୍ଢାଇ ପିଂବ ଲୋ
ହୋନ୍ତି ମନ ମଧ୍ୟେ ଭାଳି !

ବୃନ୍ଦାବନ ଆଜ ଯାଉଛନ୍ତି ଛାଡ଼ି
ପ୍ରିୟ ଖଲ୍ଲିକୋଟ ଭୂଇଁ,
ନେତ୍ରୁ ଲୁହ ଝରି ଶିଶୁ ପରିଟି ଲୋ
କାନ୍ଦୁଛନ୍ତି କଇଁ କଇଁ !!

କେତେ ଗୁଣୀ ଜନ ଗୋଟିକି ଗୋଟି ଲୋ
ପଡ଼ୁଛି ତାଙ୍କର ମନେ,
କାହା ଭୁଲେ କେତେ ମଧୁ ବଚନ ଲୋ
ଭୁଲି ନ ପାରନ୍ତି କ୍ଷଣେ !

କା ଦୁଃଖ ଦେଇନେ ରୋଗ ବଇରାଗେ
ହୋଇଚନ୍ତି କାର ସାହା,
କାହା ପରେ କେତେ ରଖି ନାହାନ୍ତି ଲୋ
ସେନେହ ମମତା ମାୟା !

କାହା ବୁକୁ ତଳେ କେତେ ଉତ୍ସାହର
ଦୁଅ ଦେଇଚନ୍ତି ଭରି,
ଆପଣା ଭିତରୁ ବଳ କାହାକୁ ଲୋ
ଆଦର ଅଛନ୍ତି କରି !

କା ଦୁଃଖ ଅଭାବେ ନେତ୍ରୁ ଲୁହ ଡାଳ
କରନ୍ତ ବୋଧ କାରେ
ସବୁରଙ୍କ ସ୍ମୃତି ଚକ୍ଷ ପରିଚି ଲୋ
ନାଚ ଯାଏ ଧାଡିକାରେ ।

କେତେ ବାଲ ବନ ନଈ ପାହାଡ଼ ଲୋ
ଚାଲକା ନିର୍ମଳ ଝର,
ବୁଲ ଆସିଚନ୍ତ କେତେ କାହା ଭୁଲେ
ମନେ ପଡ଼େ ଥରୁ ଥର

ପଛେ ଚାଲଚନ୍ତ ଗୁଜ ଦାଳ ଦାଳ
ଚାଲାଚନ୍ତ ସିଏ ଆଗେ,
କେତେ ସହକର୍ମୀ ସଙ୍ଗତେ ଛନ୍ତଲୋ
ବାଆଁ ଓ ଡାଆଁଣ ଭାଗେ !

ପ୍ରତି ନେତ୍ର ପ୍ରାନ୍ତୁ ଲୁହ ଝରୁଚ ଲୋ
ଶ୍ରାବଣର ଧାରା ପର,
ବାବୁ ବୃନ୍ଦାବନ ଚାଲ ଯାଉଚନ୍ତ
ଆଉ କ ଆସିବେ ଫେର ?

ଯେତେ ସେ ଚାଲନ୍ତ ଆଗକୁ ଆଗକୁ
ପାଦ ତ ଚଳଇ ନାହିଁ,
କେ'ହ ଆସି ଚାଟି ଖନ୍ନ ମାରଯାଏ
କଥା କ ପାରନ୍ତ କହ !

ବାଅସରେ ବସି ସବୁରଙ୍କି ବାରେ
ଅଳପ ମଉନେ ଚାହିଁ,
ଲୁହ ଦୁଇ ଟୋପା ଗଡ଼ାଇ ଦେଇ ଲୋ
ଦୂରସ୍ଥେ ଚାଲଲେ କାହିଁ !!

ଏ ସବୁ ନରେଖି ନର ହୃଦୟୁ ଲୋ
ଗମ୍ଭୀର ବଦାର ହୁଏ
"ଏ ଲୋକକୁ ଏତେ ସେହ ସନମାନ
ଦେଖାନ୍ତ କାହିଁକ କଏ ?

ଆଜ୍ଞା ତାଲୁ ପୁଣି   ଦେଖି ମୁଁ ଦେବ ଲୋ
ଆଜ ସିନା ଗଲା ଶୃଙ୍ଖଳ
ଚରଣ ପାଞ୍ଜି ତା'   ଅଛୁ ମୋ ହାତେ ଲୋ
ଜୀବନ ନାଟିକା ପର ।

ଏକଇ କଲମ   ଗାରେ ତା ପ୍ରାଣ ଲୋ
କରି ମୁଁ ଦେବଇଁ ମାଟି,
କେତେ ବଳୟୁର   ବୁଝିବ ମତେ ସେ
ବୁଝିବେ ତା ସାଙ୍ଗ ସାଥୀ !"

ଏତେ ବୋଲି ନର   ମନେ ମନେଟି ଲୋ
ଖାଲି ହେଉଥାଏ ତୋଷୀ
କେତେ ପେଞ୍ଚ ସେହୁ   ଖେଳାଏ ସତେ ଲୋ
କେ ତହିଁ ପାରିବ ପଶି ?

ଗଲା ଦିନୁ ସିଏ   ଖଳକୋଠ ମାଟି
ଝୁରୁଚ ତାହାଙ୍କୁ ଖାଲି,
ଯୁଆଡେ ଚାହିଁବ   ଶ୍ମଶାନର ସ୍ତୁପା
ସବୁଠି ରହିଛି ପଡ଼ି ।

ସାହସ ଉତ୍ସାହ   ନବ ଉନ୍ମାଦନା
ଉଠୁନି କା ବୁକେ ଖେଳି,
ଜୀବନ, ଜୀବନ   ଘର ଲଗୁନି ଲୋ
ସବୁ ଯାଇଅଛି ମରି !!

ଆନ ଯେ ଅଛନ୍ତି,   ମଲା ଅହିରାଜ
ପରିଟି ଅଛନ୍ତି ରହି;
ତୁଣ୍ଡ ଫେଇ ପଦେ   କହି ଦେବାକୁ ଲୋ
ସାହସ ପଡାଉ ନାହିଁ ।

ନର ଖାଲି ତା'ର   କଲମ ମୁନେ ଲୋ
ଦବାଇ ରଖିଚ ଆନେ,
ନିରଙ୍କୁଶ ରଜ-   ଭୋଗ କରୁଚ ଲୋ
ବସି ଖଳକୋଠ ଥାନେ ।

ଆଠଟା ନ ବାଜୁ ଚଟି ଚରଣେ ଲୋ
ଆସଇ ଅଫିସ ଘରେ,
କରନ୍ତି ପିଅନ ଡର ମରଛି ଲୋ
ଘୃହି ବସିଥାନ୍ତି ଦ୍ୱାରେ ।

ନୋହିଲେ କାହାକୁ ଶଳା ବଦ୍‌ମାସ
ବରଷା ହୋଇବ ଗାଳି,
ନୋହିଲେ କାହାକୁ ଲେଖି କଲମେ ଲୋ
ଏକବାରେ ଦେବ କାଢ଼ି ।

ଦୟାମାୟା କଛୁ ନାହିଁଟି ତାର ଲୋ
ଅଟଇ ନାସ୍ତିକ ଜନ,
ଆଚ୍ଛା କଲମ ସେ ପାଇଚ ଏକା ଲୋ
ଧନ୍ୟ ସେ କଲମ ମୁନ !

ଯେ କଲମ ମୁନେ ଫୁଟି ନ ଉଠେ ଲୋ
ପ୍ରାଣର ଅନନ୍ତ ମାୟା,
ଯେ କଲମ ମୁନ ବୁଣି ନ ପାରେ ଲୋ
ସପନ ସୋହାଗ ଛାୟା—

ସେ କଲମ ଧର ବଡ଼ ବୋଲାଏ ଯେ
ତା ତହୁଁ ନିଲଜ କାହିଁ ?
ସେ କଲମ ମୁନ— ଶିଖ ବଇଭବ
ଅବା କେତେ ଦିନ ପାଇଁ ?

—୦—

# ପଲ୍ଲୀ-ବାଳା

ନିତି ନିତି ତା'ରେ ଚାହିଁବାକୁ ଭଲ ଲାଗେ,
ବୁକୁ ତଳେ କିବା ଗଭୀର ପୁଲକ ଜାଗେ !
ପଲ୍ଲୀ-ବାଳା ସେ ପଲ୍ଲୀରେ ଅଛି ବଢ଼ି
ଫୁଟାଇ ବୁକୁରେ ନବ ଯଉବନ କଳି;

ମଞ୍ଜୁଳ ହାସ-ପ୍ରଭାତ ତାରକା ପରି,
ମାଣିକ୍ୟ ଓଠେ ଉଠଇ ସୋହାଗେ ଭରି;
ଲଜ୍ଜାରେ ତା'ର ଭ୍ରୂଲତା ପଡ଼େ ନଇଁ
ଆଖି ଦୁଇ ତା'ର କିବା ସଜ ମାଳକଇଁ ?

କୃଷ୍ଣ-ଚୂଡ଼ାରେ ଖୋସଇ କେତକୀ କଅ।
ଗନ୍ଧେ ଉଠଇ ମହକ କବର ହୁଆ ।
ସୁନା ପାଣି ଢଆ ଅଙ୍ଗ-ଲତାରେ ତା'ର
ଲବଣ୍ୟ କିବା ରଚଛି ସ୍ଫଟିକ ଗାର !

କଥା ପଦକ ତା' କାନ୍ତ କବିତା ପରି,
ହସିଲେ ମୁକୁତା ଧରଣୀରେ ପଡ଼େ ଝରି !
ଚାଲିଲେ ଫୁଟଇ ରକ୍ତ କମଳ କଳି,
ଚାହିଁଲେ ବିଶ୍ୱ ଭୁବନେ ଫୁଟଇ ଝଳି;

କେତେ ମୁଁ ଦେଖିଛି ଏ ପଥେ ଆସିବା ଯିବା
ଧରଣୀ ରାଣୀର ରତ୍ନ ଗୋଟିଏ କିବା ?
ପ୍ରତି ଅଙ୍ଗରୁ ଜୀବନ ଆସଇ ବହି
ଗରିବ କୁଟୀରେ ଆଜନମୁ ଅଛି ରହି ।

ଗାଁ ତୋଟାମାଳ ସବୁଜ ପାହାଡ଼ ବଳ,
ପଥ ଘାଟ ଶ୍ୟାମ ପ୍ରାନ୍ତର ସୁରୁଚିର,
ସକଳ ଯେହ୍ନେ ତାହାର ପରଶ ଲଭି
ଧରଇ କି ଅବା କାନ୍ତ ମୋହନ ଛବି;

କେବେ ସେ ବସଇ ପାହାଡ଼ୀ ଝରଣା କୂଳେ,
କେବେ ସେ ବୁଲଇ ପାହାଡ଼ ସବୁଜ ଚୂଳେ ।
କେବେ ସେ ଦେଖଇ ବଉଦ ଭାସିବା ଦୂରେ,
ଶୁଣଇ ଗୋପାଳ ବଂଶୀ କୁଟୀର ପୁରେ;

କେବେ ସେ ଆଣଇ ବାଳ ତୃଣ କାଟି କାଟି,
ବସ୍ତ୍ର ତଳେ ଖଆଏ ମେଲଇ ପାଟି;
ପାହାଡ଼ ଶିଳାରେ ପାଞ୍ଚଣ ଧରି କରେ
ଗୋଧନ ଜଗଇ ଶତ କୌତୁକ ଭରେ !

ସନ୍ଧ୍ୟାରେ ଯେବେ ଫେରଇ ପାହାଡ଼ ତଳେ
ଗାଉଥାଏ ଗୀତ ମନ ବିନୋଦନ ଭରେ;
ମୁଗ୍‌ଧ ଧିଆନେ ପାହାଡ଼ ପାଦପ ଲତା
ଶ [illegible] ତା'ର କଣ୍ଠ ମଧୁର କଥା

ସକାଳେ କନକ-କାଠର ଚୁଙ୍ଗୁଡ଼ି ଧରି,
ଶାଗ ତୋଳୁଥାଏ ଗୋଟି ଗୋଟି ଖୋଜ କରି।
ସାନ ଭାଇଟିରେ ଶାଗ ଚୁଙ୍ଗୁଡ଼ି ଦେଇ
କହେ 'ନେଇ ଯାଅ ଯାଉଅଛୁ ମୁଁ ଗାଧୋଇ'

ଗାଆଁର ସବୁଜ ପାହାଡ଼ର ଖୋଲେ ଖୋଲେ
ଭାଇ ପାଇଁ କେତେ ଭନେ ଭନେ କୋଳି ତୋଳେ;
କୁଟୀରେ ଭାଇରେ ବଳେଇ, ସୋହାଗ ମନେ
କୋଳି ଦେଇଯାଏ ଆଦର ଓ ଯତନେ;

କୁଟୀର ଦୁଆରେ ମଲ୍ଲି-ମାଳତୀ-ଲତା
ବଢ଼ାଇଛି ବାଡ଼ି କି ସେନେହ ସରସତା !
କଳସୀ କଳସୀ ଜଳ ଢାଳୁଥିଲା ବେଳେ
ମୁଗ୍‌ଧ ହାସ ତା' ଅଧରେ ସୋହାଗେ ଖେଳେ;

ବହୁବାର ତା'ରେ ଜୀବନେ ଦେଖିଛୁ ମୁହିଁ,
ମୋ ଘର ସେଇଠି ଯହିଁ ତାର ଲୀଳା ଭୂଇଁ,
ଜୀବନେ କେମେଷେ ହୋଇ ନାହିଁ କଥାଭାଷା,
ଅନ୍ତରେ ମମ ଜାଗିଛି ଗଭୀର ଆଶା

ଦୂରରୁ ଦେଖିଛି; ଦେଖିଛି ନିକଟେ ତା'ରେ
ଦେଖିଛି ସ୍ୱର୍ଣ୍ଣ ତଟିନୀ ସିକତା ଧାରେ,
ପାହାଡ଼ର ଖୋଲେ ତୋଳିବାର କୋଳି ଶାଗ
ଦେଖିଛି, ତା ପାଇଁ ବହୁ ଶତ ଅନୁରାଗ;

ଦେଖିଛି ତାହାରେ ଫେରିବାର ଗୀତ ଗାଇ,
ପାହାଡ଼ର ତଳୁ ବରଷାରେ ଓଦା ହୋଇ;
ଦେଖିଛି ତାହାରେ ଶିଳା ଗୁଅଡ଼ା ପରେ
ଗୋଧନ ଜଗିବା ସୁନାଖି ଛଇର ତଳେ,

ପଉଷ ସ୍ୱର୍ଣ୍ଣ ଧାନକ୍ଷେତମାନେ ଥରେ
ଧାନ ଗୋଟାଇବା ଦେଖିଛି ସୋହାଗ ଭରେ;
କେତେ ମୁଁ ଗୁହିଁଛି ଗଭୀର ବଜନେ ଏକା
ବୁଡ଼ିଯିବା ଯାଏ ଧାନ ବଲେ ରୂପ ରେଖା

ଗାଆଁ ପୋଖରୀରୁ ଗାଧୋଇ ଫେରିବା ବେଳେ,
ଗୋଲାପ ଗଣ୍ଡ ଯୁଗଳେ ଯେ ଝଲ ଖେଳେ,
କେତେ ମୁଁ ଦେଖିଛି ଯାଇନି ପାଶୋର ମମ,
ସ୍ମୃତିରେ ରହିଛି ସୁନାର ଚନ୍ଦ୍ର ସମ !!

ପୃଥିବୀରେ ତା'ରେ ନିଜରୁ ନିଜର କରି,
ବୁକୁ ତଳେ ତାରେ ସଞ୍ଚିତ ନିଧିପରି,
ସାଇତି ରଖିଛି ବରଷ ବରଷ ଧରି,
ସୁବପୁଳ ମାୟା ତାହାର ଉପରେ ଭରି;

ବୁଲିଛି ସେ ଯେଉଁ ପାହାଡ଼ କାନନ ନଈ,
ତା'ରେ ଦେଖିବାକୁ ଗଭୀର ମମତା ବହି,
ବୁଲିଚି ମୁଁ କେତେ; ମନେ ମୋର ସବୁ ପଡ଼େ
ଭୁଲି ମୁଁ ପାରିନି ନୟନେ ନିରେଖି ଥରେ;

ଜାଣେନା କାହିଁକି ସେ କଶୋରୀ ବାଳାପାଇଁ,
ମରମେ ପଡ଼ିଛି କୋଟି ସେନେହର ଛଇ !
ନିତି ନିତି, ତାରେ ଇଚ୍ଛା ଦେଖିବା ଲାଗି,
ଇଚ୍ଛା ଯାଆନ୍ତି ତା ବୁକୁ ପୀରତି ମାଗି !

ଇଚ୍ଛା ମୋହର ଗଭୀରୁ ଗଭୀରତର
ତା' ଭୁଲେ ବୁଲନ୍ତି ପାହାଡ଼ ତଟିନୀ ସର;
ସେ କେଉଁ ପୁନିଅ ଜୋଛନା ରାତିରେ ଥରେ
ତା' ଭୁଲେ ବସନ୍ତ ଅଗଣା ବଉଳ ତଳେ;

କହନ୍ତ ତା'ରେ ସଜନେ ଦେଖିଲେ ଥରେ
"କେତେ ସୁଖ ପାଏ ତୁମରେ ଧରଣୀ ତଳେ ।
ଗୃତକ ପରି ମୁଁ କେତେ ଯେ ଲୋଡ଼ଇ ଜାଣ ।
ତୁମେହିଁ ମୋହର ପ୍ରାଣର ମଧୁର ଗାନ ।"

ନ ଦେଖେ ତା'ରେ ମୁଁ ନ ହେଉ ମିଳନ ଥରେ
ଫୁଲଟିଏ ପରି ଫୁଟିଥାଉ ଧରା ପରେ;
ମନ ମନ୍ଦରେ ତାହାରେ ସାଇତି ରଖି
ଡାକୁଥାଏ ମୁହିଁ ତୁମେ ମୋର ପ୍ରାଣ ସଖୀ !



## ଦେଖିଚ କି ତମେ ?

ସେ ଯେ ଗଲେ ଚାଲି ହସିଲେ ସୁଦୂରେ କାହିଁ ?
ସନ୍ଦେଶ ତା'ର କିଛି ତ ମିଳିଲା ନାହିଁ !
କହି କି ପାରିବ କହି କି ପାରିବ ସତେ ?
ଦେଖିଚ କି ତମେ ରହିଲେ ସେ କେଉଁ ପଥେ ?

କେତେ ଦିନ ଏବେ ସେ ଦିନୁ ଗଲାଣି ଚାଲି
ତାଙ୍କର କଥା ଆମେ ଭୁଲି ହେଉ ଖାଲି;
ରହିଲେ ସେ କାହିଁ ? କି ଭଳି ଥିବେଟି ସତେ ।
ଦେଖିଚ କି ତମେ ରହିଲେ ସେ କେଉଁ ପଥେ ?

ତୁମେ କି ଦେଖିଚ ସ୍ୱରୂପ ହେ ତାଙ୍କର ?
କେଉଁ ମୁଲକରେ ରହିଲେ ସେ' ଦେହ ଧରି,
ସ୍ମୃତି ତାଙ୍କର ସବୁ ଦିଶିପାଏ ମତେ
ଦେଖିଚ କି ତମେ ରହିଲେ ସେ କେଉଁ ପଥେ ?

ବାସନା ଯେ ମୋର ଗଭୀରୁ ଗଭୀରତର,
ଜାଣିବାକୁ ତାଙ୍କ ଖବର ଓ ଅନ୍ତର;
କହ ମୋତେ କହ ପାଖେ ବସି ଅବିରତେ,
ଦେଖିତ କି ତମେ ରହିଲେ ସେ କେଉଁପଥେ !!

କାଉଳ ରହିଲେ କେବଣ ସୁଦୂର ଭୂଇଁ ?
କେଉଁଠି ଭେଟିଲ, ଉତ୍ସୁକ ହୁଏ ମୁହିଁ,
ସାକ୍ଷାତ ବେଳେ ଚିହ୍ନି ପାରିଲ ସତେ ?
ଦେଖିତ କି ତମେ ରହିଲେ ସେ କେଉଁ ପଥେ ?

ଦେଖିତ ଦେଖିତ ଜାଣିତ ଜାଣିତ ମୁହିଁ,
କହୁତ କାଉଳ ଗଲ ସେ ସୁଦୂର ଭୂଇଁ,
ଗୋଟି ଗୋଟି କରି ମୋର ସବୁ ମନେ ପଡ଼େ
ଛନ୍ତି ସେ କାହିଁ, କେଉଁ ବାଟ ଦେଇଗଲେ;

କେତେ ଯେ ପାହାଡ଼ କେତେ ଯେ ଅରଣ୍ୟାନୀ
ଭେଦ ମୁହିଁ ଗଲ ସଂଖ୍ୟା ତା ନାହିଁ ଜାଣି
କେତେ ଯେ ନଗର ସଉଧ ଓ ଅଟ୍ଟାଳି
ଦେଖିଲି, ଜୀବନେ ଦେଖି ଯା' ନ ଥିଲି ପାରି;

ପ୍ରପାତ ମୁଖର ମାରନ୍ଧ୍ର ବନଭୂମି
ଦାବାନଳପୂର ମୁଖ ଯାହା ଯାଏ ଚୁମି,
ଦେଖିଲି ମୁଁ ପଥେ, ତେଜିଁ ସେ ସକଳ କ୍ଷଣେ
ବହୁଦୂର ପଥ ଗ୍ଭଲିଲି ମୁଁ ଏକା ଜଣେ ।

ତା'ପରେ ଦେଖିଲି ସମ୍ମୁଖେ ପାରାବାର
ବେଳାଭୂମି ଯାହା ଚୁମିଯାଏ ବାରବାର;
କେତେ ତରୀ ତା'ର କୂଳରେ ହୋଇଛି ଭିଡ଼ା,
କେଉଁ ତରୀ ଯାଇ ମଝି ସମୁଦ୍ରେ ଛିଡ଼ା ।

କଏ ସେ ଡାକିଲା ନିଜରୁ ନିଜର କରି
'ମିତପଣ ତମେ ?' ବସ ଆସି ଏଇ ତଣି
ସେ କେଉଁ ତଣିରେ କଏ ବସାଇଲା ମତେ—
ଜାଣିନି, ଗୁଲିଲି ତଣି ସମ୍ମୁଖ ପଥେ;

ପବନ ସମାନେ ତଣି ଯେ ଗୁଲିଲା ଆଗେ
ବୁକୁତଳେ ମୋର କୋଟି ଉଲ୍ଲାସ ଜାଗେ;
ଆରକୂଳେ କାହିଁ ତରଣୀ ଲଗିଲା ଯାଇ
ଗୁଲି ଗୁଲି ଗଲି କେତେ ବାଟ ମୁଁ ଯେ କାହିଁ !

ସେ ପାରେ ଦେଖିଲି ଦେଖିଲି ତାଙ୍କୁ ମୁହିଁ
ଦାଉ ଦାଉ ବହ କି ମହା ଆଲୋକ ଛୁଇଁ !
ପଗୁରିଲି 'ତୁମେ ଏ ଥାନେ କଅଣ କର ?
ଖାଲି ସେ ହସିଲେ ଗୁହିଁ ମୋତେ ପ୍ରତିଥର !

ତା'ପରେ ଦେଖିଲି ବିଶାଳ ଜନତା ସହ
ତାଙ୍କ ସେନେହ ଆଳାପ ଓ ପରିଚୟ;
ସବୁରି ବଦନେ ମୁକ୍ତ ମଧୁର ହାସ
ଶୁଣନ୍ତି ତାଙ୍କ ଓଠ ମଧୁ ସଂଭାଷ ।

ସେଠି ମୁଁ ଦେଖିଲି ତାଙ୍କ ପରଶ ଲାଗି
ମଣିଷ ଭିତରେ ଜୀବନ ଉଠନ୍ତି ଜାଗି;
କୁଟୀରୁ କୁଟୀରେ କେତେ ମୁଁ ବୁଲିଲି ଯାଇ
କଳହ ଦ୍ୱନ୍ଦ୍ୱ କେଉଁଠି ଦେଖିଲି ନାହିଁ !

ସେଠି ମୁଁ ଦେଖିଲି, ଜଣକୁ ଦେଖିଲେ ଜଣେ
ହସି କଥା କହେ ମଧୁର ଆଲିଙ୍ଗନେ,
ସେଠି ମୁଁ ଦେଖିଲି ପ୍ରତି ମଣିଷର ମୁହଁ
ଉଜ୍ଜ୍ୱଳ ଦିଶେ ବହ୍ନି କବା ଶିଖି ସୁଅ !

ମଣିଷର କଥା କ ଭଲ କଅଁଳ ତହୁଁ
କଣି ହୋଇଯିବ ଟିକଏ ଶୁଣିଲେ ରହୁ,
ମଣିଷ ଯେଉଁଠି ମଣିଷକୁ ଯାଏ ଭଲ
ସେ ଭୂଇଁରୁ ବଳ କାହିଁ ଭୂଇଁ ସୁନ୍ଦର ?

ମଣିଷକୁ ଯହୁଁ ମଣିଷ ବୁକୁରେ ଧର
ଅନ୍ତର ସବୁ ସେନେହ ଦଅଇ ଭର,
ସେ ଭୂଇଁରେ ମୁହଁ ଦେଖିବ ତାଙ୍କୁ ଥରେ
କୃତାର୍ଥ ମୋର ନୟନ ଏ ମହୀତଳେ ।"

---

## କୃଷକ ସମାଧି ?

ସତୁର ବରଷ ବୃଦ୍ଧ କୃଷକ ଏ ମାଟି ଉପରେ ହୋଇଚ ପୋଡ଼ା
ତାହା ପାଇଁ କଏ ଗ୍ରାଜନ ନିମେଷେ, ସମାଧି-ଦେଉଳ ହୋଇନି ତୋଳା ।
ଧାନ ସେ କାଟିଚ, ଶଗଡ଼ ବୋହିଚ୍ଛି ବଳମାନେ ଖରା ବରଷା ସହି,
ହଳ ସେ କରିଚ ଜୀବନ ତମାମ ପର ପାଇଁ କୋଟି ମମତା ବହି !
ଚିରା ଲେଙ୍ଗୋଡ଼ା-ବସନ ଭୂଷଣ, ସାମାନ୍ୟ ଶାଗ ପଖାଳ ଖାଇ,
ଧରଣୀ ପାଇଁକ ରକ୍ତ ଦେଇଚ, ତାହା କଥା କେହି ଗ୍ରାଳଇ ନାଇଁ !
ମୃତ୍ୟୁ ଯେ'ଦିନ ଦୁଆରେ ତାହାର ଡାକିଲା ମାରବେ ପ୍ରଥମ କରି,
ସତୁର ବରଷ ବୃଦ୍ଧ କୃଷକ ମରଣ ବୁକୁରେ ପଡ଼ିଲା ଢଳି;
ସତୁର ବରଷ ବୃଦ୍ଧ କୃଷକ ଏଇ ମାଟି ପରେ ହୋଇଚ ପୋଡ଼ା,
ତାହା ପାଇଁ କଏ ଗ୍ରାଜନ ନିମିଷେ ସମାଧି ଦେଉଳ ହୋଇନି ତୋଳା ।

ଏଇ ଦେଖ ଏଇ ମଶାଣି ଭୂଇଁରେ ଧଳା ମାର୍ବଲ ପଥର ପରେ,
ଖୋଳା ହୋଇଅଛି କାହାର ନାଆଁଟି,ଦାଉ ଦାଉ ରବ କରଣେ ଜଳେ;
କେତେ ଘର ସେଥି ବୁଡ଼ାଇ ଦେଇଚ ପଥର ଭିକାରୀ କାହାରେ କରି,
ଘର ଢ଼ିହ କାର ନେଇ ତା'ଉପରେ ସଉଧ ତୋଳିଚ ପାହାଡ଼ ପରି;
ଏଇ ଯେ ଦେଖୁଚ ନଈ ଏ ପାଖରେ ଦେଉଳ ପରାଏ ସମାଧି କାର,

ଥିଲ ସେ ଆମର ସାତ ମାଈଣାରେ ନାମଯାଦା ଜଣେ ଯେ ସାଉକାର
କେତେ ରୂପବନ୍ତି ତରୁଣୀ ବାଳାରେ ଅଭ୍ରଗିମା କର ଗ୍ଧଡ଼ନ୍ତି ପଥେ,
ଗାଆଁରେ ଗାଆଁରେ ଭାଇ ବନ୍ଧଣାରେ ଭଆଳନ୍ତି କଲ ସେ ଅବିରତେ;
ସତୁର ବରଷ ବୃଦ୍ଧ କୃଷକ ଏଇ ମାଟି ମଟରେ ଟାଣାଇଛ ଘୋଡ଼ା,
ତାହା ପାଇଁ କଏ ଭଳନ୍ତି ନିମିଷେ, ସମାଧି ଦେଉଳ ହୋଇନି ତୋଳା ।

ସତୁର ବରଷ ବୃଦ୍ଧ କୃଷକ କାମ କରି କରି ପାଚଛି ବାଳ,
ସୁଖେ ଓ ଦୁଃଖେ ବର୍ଷ ଆସିଛ ତୁଣ୍ଡରେ ମାରି ମୁଣ୍ଡ ଝାଳ;
ଗୋଟିଏ ଓଳ ସେ ବସି ରହି ନାଇଁ, ମାଗି ଖାଇ ନାଇଁ, ଖାଇଛ ଲାଗି,
ଗରିବ କୁଟୀରେ ଜନମ ତାହାର ଗରିବ କୁଟୀର ଯାଇଛ ତ୍ୟାଗି;
ଶ୍ମଶାନେ ତାର ଶବ ଗଲାବେଳେ, ଶବ ପଛେ ପଛେ ଯାଇନି କେହି,
ଏଇ ଯେ ଦେଖୁଛ ଧଳା ଧଳା କୋଠା ମୋଟା ମୋଟା ଲୋକ
ରହିଚ ନେଇ—
ଏଇ ଘର ପାଇଁ କାଆମ କରିଚ, ବିପଦ ବେଳେ ସେ ହୋଇଛ ସାହା,
ଏ ଜାତି ସହିତ ଜଡ଼ିତ ନୁହେଁ ସେ ? ପକାଏନି କେହି ତାଆରି ନାଆଁ !
ସତୁର ବରଷ ବୃଦ୍ଧ କୃଷକ, କାମ କରି କରି ପାଚଛି ବାଳ
ସୁଖେ ଓ ଦୁଃଖେ ବର୍ଷ ଆସିଛ ତୁଣ୍ଡରେ ମାରି ମୁଣ୍ଡ ଝାଳ !

ସତୁର ବରଷ ବୃଦ୍ଧ କୃଷକ ଗରିବ ଗରିବ ଗରିବ ଅତି,
ଗ୍ଧଲିଯାଇ ନାଇ ଫେର ଲମ୍ବାଇ, ଶିରେ ତୋଳି ଧନେ କନକ ଛତି !
ଛନ୍ଦ କପଟ ବହି ବୁଲୁ ତଳେ କହି ନାଇଁ କେବେ କାହାରେ କଥା
ଦେଇ ନାଇଁ କେବେ କାହାର ଜୀବନେ ନିମିଷକ ପାଇଁ ତିଳେକ ବ୍ୟଥା !
କାନ୍ଦ ଉଠିଚି ବୁକୁ ତଳ ତା'ର ବିପଦ ଆପଦ ପଡ଼ିଲେ ଗାଏଁ;
ଯେତେ ଦୁଃଖରେ, ରହିଥିଲେ ସେ'ତ ପର ପାଇଁ ପ୍ରତି ପଲକେ ଧାଏଁ,
ଓଠରୁ ଫୁଟଇ ସରସ ବଚନ, ଅନ୍ତରେ ତା'ର ସତ୍ୟ ଟେଲେ
ଆପଣାରୁ ବଳି ଆପଣାର କରି ଧରଣୀକୁ ଦେଖେ ନୟନ ତୋଳେ ।
ସତୁର ବରଷ ବୃଦ୍ଧ କୃଷକ ଗରିବ ଗରିବ ଗରିବ ଅତି,
ଗ୍ଧଲି'ଯାଇ ନାଇଁ ଫେର ଲମ୍ବାଇ ଶିରେ ତୋଳି ଧନେ କନକ ଛତି !

ଗରିବ କୁଟୀରେ ଜନମ ହୋଇଚ ଗରିବ କୁଟୀରେ ଖେଳିଚ ଖେଳ,
ଗରିବ କୁଟୀର ତିଆଗି ଯାଇଚ, ଆସିଲା ଯେ'ଦିନ ମରଣ ବେଳ,
ରାଜାର ହର୍ମ୍ୟ ନୁହେ ତାହା ସରି ମଠ ଦେବାଳୟ ନୁହେ ତା'ସମ

ସବୁ ଭିତରେ ତା ଜୀର୍ଣ୍ଣ କୁଟୀର ଏ ଜାତିର ପ୍ରିୟ ପୂଜ୍ୟତମ;
ବନ୍ଧୁ ଜନତା ! ଏଇ ଯେ ଦେଖୁଚ ମୁକ୍ତ ମଶାଣି ପଦାରେ ତମେ
ମୁଠିଏ ପାଉଁଶ ହାଡ଼ ଗୋଟି ଗୋଟି, ମହାତ୍ମା ଏଥି ଶୋଇଛନ୍ତି ଜଣେ ?
ସମ୍ମାନ ଦିଅ ! ଗଉରବ ଦିଅ ! ସ୍ମୃତି ମନ୍ଦିର ନ ଥାଉ ତା'ର
ଏ ଜାତି ବୀଣାରେ ତା' ଜୀବନ ଗୀତି ଫୁଟୁଥିବ କୋଟି ବରଷ କାଳ
ଗରିବ କୁଟୀରେ ଜନମ ତାହାର ଗରିବ କୁଟୀରେ ଖେଳିଚି ଖେଳ
ଗରିବ କୁଟୀର ଦୁଆରେ ଯାଇଚି ଆସିଲା ଯେ'ଦିନ ମରଣ ବେଳ ।

---

# ଜୀବନ

କାଶ୍ମୀର ନବାବ ପାଶେ କହିଲା ଜନତା
"ବରଷା ହୁଏନି ଦେଶେ ଦୁର୍ଭିକ୍ଷ ମରୁଡ଼ି
ଘରଖାଇ କରେ ଦେଶ, ନବାବ ସତ୍ତମ
ତୁମେ ଯେବେ ସିଂହାସନ ଛାଡ଼ି, ଏଇ ଧୂଳି—

ମାଟିର ମଣିଷ ପରି, ନିଜେ ହଳ ଧରି
କରନ୍ତ ଏ ଭୂଇଁ ଚଷ, ବେଗମ ତୁମ୍ଭରି—
କୃଷକ ଗୃହିଣୀ ସମ ଓଠେ ହର୍ଷ ଭରି
ଖାଦ୍ୟ ହାତେ ଆସନ୍ତେ ହେ ତୁମ୍ଭ ପାଖେ ଚାଲି—

ପରଶି ଦିଅନ୍ତେ ଅନ୍ନ, ହିଡ଼ ମୁଣ୍ଡେ ବସି,
ନବାବ ସୋହାଗେ କ୍ଷୁଧା ନୋହି ଅବସନ୍ନ,
କରନ୍ତ ବଳରେ କାମ; ଆସନ୍ତା ବରଷି
ଚଉଦିଗ ଧରି ମେଘ ।" ନବାବ ବେଗମ—

ଆନନ୍ଦେ କହିଲେ "ହଁ; ଦରିଦ୍ର କୃଷକ—
ପରିଏ ନବାବ କଲେ ନିଜେ ଯାଇ ଚଷ
ବେଗମ ଆସିଲେ ଧରି ଅନ୍ନ ତରକାରୀ
ଦରିଦ୍ର ଗୃହିଣୀ ପରି ଓଠେ ବାଡ଼ି ହାସ ।

ଭୀଷଣ ବରଷା ହେଲା; ଶୁଷ୍କ ବସୁନ୍ଧରା—
ହସିଲା, କି ଜୀବନ୍ୟାସ ଯେହ୍ନେ ଧାଇ ପରା !
ଯେଉଁଠି ଜୀବନ ବୀଣା ବାଜେ ସମ ତାନେ
ଆନନ୍ଦର ଲକ୍ଷ୍ମୀ ଆସେ ଫୁଟି ସବୁ ପ୍ରାଣେ !!

— — —

# ସିଏ ତ ଆସିଥିଲା !

ସିଏ ତ ଆସିଥିଲା ପାରିଲା ନାହିଁ କହି, ମୋ ଆଗେ ତା'ର ମନ କଥା,
ସିଏ ତ ଆସିଥିଲା ତା' ବୁକୁତଳେ ବହି କି ଗୁରୁ ଆଘାତର ବ୍ୟଥା;
ସିଏ ତ ଚାଲିଗଲା, ଟିକିଏ ଚାହିଁ ଦେଇ, ଟିକିଏ ମାଗି ଦେଇ ମନ
ସିଏ ତ ଚାଲିଗଲା ଆଉ ତ ଆସି ନାହିଁ ଦେଖିତ ତାରେ କେତେକ୍ଷଣ !

ଦରକଟିକ ତା'ର ମନରେ ରହିଗଲା, ପାରିଲା ନାହିଁ ଆଉ ଫୁଟି,
ସିଏ ତ ଚାଲିଗଲା ଦୂରରୁ ବହୁଦୂରେ କି ନାରଖାରେ ପଡ଼ି ଉଠି;
କି ମହା ସଙ୍କୋଚ ତାହାରେ ବାଧା ଦେଲା ମୋ ଭଳି ପରିଚିତ ଜନେ,
ମୁଁ ତାରେ ଖୋଜି ହୁଏ, ମୁଁ ତାରେ ଲୋଡ଼ି ହୁଏ,
ସୁଦୂର ମୋ କୁଟୀର କଣେ !

ଚାହିଁଲି ତା'ରେ ମୁହିଁ ନଜର ହୀନ କରି, ମୋ ହରି ଯେତେ ହୁଏ ମନେ,
କାହିଁକି ଆସିଥିଲା କାହିଁକି ଚାଲିଗଲା ମଉନେ ଚାହିଁ ଦେଇ କ୍ଷଣେ !
ସେ ମୋରେ ଡାକି ନାହିଁ, ସେ ମୋରେ ପଠାଇନି
ଖବରଟିଏ କାହା ହାତେ,
ଖାଲି ସେ ଚାହିଁଥିଲା, ମଉଳା ମନ ତା'ର ମନେ ପଡ଼ୁଚି ଏ ରାତେ;

ଖାଲି ସେ ଚାହିଁଥିଲା, ମଉଳା ମନ ତା'ର ବାଉଳା କରି ଦିଏ ମତେ,
ମଉଳା ମନ ଧରି, ଥିବ ସେ କେଉଁ ଭଳି ଅଜଣା ଅଶୁଣା ତା' ପଥେ
ଶୁଖିଲା ଓଠେ ତା'ର ଟିକିଏ ମିଠା ହସ କ୍ଷଣିକ ପାଇଁ ବୋଳି ଦେଇ,
କି ନିଧି ପାଆନ୍ତା ନିଃସ୍ୱ ଏ ଜୀବନେ ନଜର ବାରେ କରି ନେଇ;

ସିଏ ତ ଆସିଥିଲା ସିଏ ତ ରହିଁଥିଲା, ସିଏ ତ ଚାଲିଗଲା ଦୂରେ,
ସିଏ ତ ଖୋଜଥିଲା, ସିଏ ତ ବୁଲୁଥିଲା, ସିଏ ତ ବୁଝିଥିଲା ମୋରେ,
ସିଏ ତ ଚାଲିଗଲା ସିଏ ତ ଚାଲିଗଲା, ଆସିଲା ନାହିଁ ଆଉ ଫେର,
ସିଏ ତ ହସି ନାହିଁ, ପାରିବ ନାହିଁ ହସି ?
କି ବ୍ୟଥା ଥିବ ତାରେ ଘେର !!

—୦—

## ମୁଠିଏ ଦାଏ

ଧନ ମାନ ଶିଶୁ ସବୁ ଚାଲିଗଲା
ତା' ସାଥେ ଗଲା ତା'ଜୀବନ ଚାଲି,
ରହିବ ଖାଲି ତା' କୁଡ଼ିଆ ଗୋଟିକ
ମାଟି ବାଲି ଶେଷେ ପଡ଼ିବ ଢଳି;

ନାହିଁ ତା'ର କେହି ପୁଅ ଅବା ଝିଅ
ନାହାନ୍ତି ଗିଆଁତି ସୋଦର ସାଥି
ମନେ ପକାଇ କେ ଖୋଜିବେ ଘଡ଼ିଏ
ଅଥବା ପାଳିବେ ଶ୍ରାଦ୍ଧତିଥି;

ସବୁ ସିନା ଗଲା କାଳର କପାଳେ;
ମଶାଣି ଚିତାରେ ଗଲା ସେ ଜଳି,
ପାରିଲାନି ଯାଇ ଗୋଟିଏ କଥାସେ
ରହିବ ଏବେ ବ ଧରଣୀ ଭରି;

ନବେ ବରଷର ବୁଢ଼ୀଟିଏ ସେତ
ଅଧା ବୟସରୁ ଭୋଗିଛି ଜ୍ୱର
ଦିନେ ଦିନେ ରହେ ଖାଡ଼ା ଉପବାସେ
ନୟନୁ ବରଜ ଲୋତକ ଧାର ।

ହେଲେ ଜଣେକେହୁ-ଭିକାରୀ ଅତିଥି
ନିରାଶେ ତା'ଘରୁ ଯାଇନି ଫେରି
ଭୁଣ୍ଡ ଚପି ସେ ରଖିଥେ ମୁଠିଏ
କିଏ ଆସି ମାଗି ଦେବଟି ବୋଲି ।

ତଳବ କୁଟୀର ମାଟି ଶେଯପରେ
ଦୁବୂଘ ଉଠିବ ଦିନେ ତା' ଦେହେ,
କହୁଥିବେ ଜନେ ଏତେ ଦୁଃଖେ ବୁଢ଼ୀ
ପରପେଟ ଜାଣି ମୁଠିଏ ଦିଏ ।

ସବୁସିନା ଗଲ୍ ପାଶଲ୍ କି ଯାଇ
ଯେଉଁ ମଧୁତାନ ଦେଇଛ ଢାଳି,
ଉଠା ଉଠିଯିବ କେତେ କାଳ ଯାଉଁ
ସବୁ ପଡ଼ିଯିବ କଜଳକାଳି,

କହନ୍ତୁ ଜନେ ବହୁଥିବେ ନିକ ?
ଅସୀମ କାଳର ମରମ ଦେହେ,
ଏତେ ଦୁଃଖେ ବୁଢ଼ୀ ରହୁଥାଏ ସିନା
ପର ପେଟ ଜାଣି ମୁଠିଏ ଦିଏ ।

———

## ଗୋଟିଏ ଘଟଣା

ହୃଦୟ ଦେଇ ଯିଏ ଗଢ଼ିଛ ଧରଣୀରେ
ମୁଁ ତାର ପାଦ ପୂଜା କରିବି,
ଜୀବନ ଥିବାଯାଏ ମୁଁ ତାରେ ବହୁବାର
ସକଳ ନିଯୁତ ଯେ ସ୍ମରିବି;

ନିଜକୁ ବଳି ଦେଇ ନିଜକୁ ଦେଖିଛ ଯେ
ପରର ଅନ୍ତର ଭିତରେ,

ମୁଁ ତାରେ ମନେ କରେ ଠିକ ମଣିଷ ସେ
ଧରଣୀ ବୁକୁ ପରେ ସତରେ ।

ମୁଁ ତାରେ ଦେବ ମୋର ସକଳ ସେନେହ ଓ
ସକଳ ସମ୍ମାନ ବୁକୁରୁ
ତାହାର କୀର୍ତ୍ତନ ଫୁଟିବ ସବୁଦିନ
ଅସୀମ ପୁଲକେ ମୋ ମୁଖରୁ

ଉପର ପାହାଚେ ଯେ ଚରଣ ଥୋଇ ଦେଇ
ନିମ୍ନ ପାହାଚରୁ ଧରିଚି,
ସଭିଙ୍କୁ ତଳୁ ନେଇ ଉପରେ ଥୋଇଦେଇ
ଯେ ନିତି ମିଠା ପାଇପାରିଚି,

ସେ ମୋର ଏ ମାଟିର ବିରାଟ ସମ୍ପଦ,
ଜୀବନ ପରି ତା'ର ଜୀବନ,
ମୁଁ ଚାହେଁ ଚିରଦିନ ରଚିବା ପାଇଁ ତାର
ବକ୍ଷ ତଳେ ମୋର ଭବନ ।

ଏଇ ଯେ ପିଲାଟିଏ ସୁଦୂର ବିଦେଶର
ଅନାଥୁ ଅନାଥ ସେ ଅଟଇ
ଆସିଲା ପାଖେ ତବ, ଯା ମୁଖୁ ଦୈନ୍ୟ ଓ
ଅଭାବ କଥା ଖାଲି ଫୁଟଇ

କହିଲା—'ବନ୍ଧୁ ହେ ! ପଢ଼ିବା ପାଇଁ ମୁଁ ହେ !
ଆସିଚି ଏତେ ବାଟ ଏଠିକି
ମତେ କେ ନ ଚାହିଁଲେ ନିରାଶେ ଫେରିଯିବ,
ଯିବ ଏ ବୁକୁତଳ ଫାଟିକି ?'

ଏତିକି କହିଚି ସେ ଅଶ୍ରୁ ଛଳେ ଛଳେ,
କି ଅବା ବିଦ୍ୟୁତ ଜାଗିଲା,
ତୁମର ସଭିଙ୍କୁ ଯେ ତା' ବୁକୁ ତଳ ବ୍ୟଥା,
କେସନେ ନିଜପରି ଲାଗିଲା !

କେହି ତ ନାହିଁ କରି ଆଡ଼େଇ ଦେଲନାହିଁ,
ତାହାରେ ଠିକେ ଖାଲି ଚାହିଁ ହେ,
ସଭିଏ ଗାଆଁ ଗାଆଁ ବୁଲିଲ ଉତ୍ସାହେ
ଷା କରିବାର ପାଇଁ ହେ !

ପଲ୍ଲୀ ପଙ୍କିଳ, ପାହାଡ଼ ବନ ତଳ
ଚାଲିଲ ତୁମେ ଶିଶୁ ଦଳ ହେ
ତୁମେ କି ସୁନ୍ଦର, ତୁମେ କି ସୁକୋମଳ
କଭଳି ତୁମେ ସତେ ବଡ଼ ହେ !

କେତେ ଯେ ବିଲମାଳ ଶଇଳ ପ୍ରାନ୍ତର
ଡେଇଁଣ କେତେ ଦୂରେ ଯାଇନ ?
ତୁମର ମାଟିର ଏ ନିଃସ୍ୱ ଭାଇ ପାଇଁ
କାହାରେ ଡାକି କେତେ କହିନ ?

ଏ ଶୀତ କାକରରେ ଭୋକ ଓ ଉପାସରେ
କେତେଠି କେତେଦିନ ବିତାଇ,
ତା' ପାଠ ପଢ଼ାପାଇଁ ପାରିଚ ଗଉରବେ
କେତେ ଯେ ସମ୍ପଦ ପଠାଇ !

ତା ପାଇଁ ହୋଇଅଛ ପାଗଳ ଉନ୍ମନ
ନିଜକୁ ଏକବାରେ ଭୁଲି ହେ,
ତାହାର ସପନରେ ତୁମର ବୁକୁତଳ
ଅଛି କି ଉଲ୍ଲାସେ ପୂରି ହେ !

ଜୀବନ ଯେତେବେଳେ ଯାଏରେ ସୀମା ଟପି
ତାକୁ କେ ଅଟକାଇ ପାରିବ ?
ଯେତେ ଯା ବନ୍ଧନ ଚରଣ ତଳେ ଦଳି,
ଚାଲିବ ଚାଲିବ ସେ ଚାଲିବ;

ସିନ୍ଧୁ ପାରି ହେବା, ଶୂନ୍ୟେ ଉଡ଼ିଯିବା
ତା ଆଗେ ପିଲା ଖେଳ ଅଟଇ,
ଯୁଆଡ଼େ ଯାଏ ସେହି ଯୁଆଡ଼େ ଚାହେଁ ସେହି
ଜୟର ଦୁନ୍ଦୁଭି ଫୁଟଇ !

ଅନାଥ ପିଲଟି ସେ ଅସୀମ ଅଭାବର
ବିଷମ କଷାଘାତ ଭିତରେ—
ଆତ୍ମା ମଉଳେ ଯେ, ସବୁର ଆଢୁଆଳେ
ସେ କେଉଁ ଅନ୍ଧାରେ ସତରେ !

ତୁମେ ଯେ ତାରେ ଆଜ ଫୁଟାଇ ପାରିଅଛ,
ଛୁଟାଇ ପାରିଅଛ ସୁଦୂରେ,
ବୁକୁରୁ ଲହୁ ତାଳ, ଅସୀମ ଆକାଶର
ସୂର୍ଯ୍ୟ ତାରକା ଓ ବିଧୁରେ,

ତୁମରେ କେସନେ ମୁଁ ଦେବନି ଗଉରବ ?
କହିବ ନାଇଁ ଆଜ ସତରେ
ସୁନାର ସଂସାର ଗଢ଼ିବା ପାଇଁ ବଳ
ରହିଚ ଖାଲି ତୁମ ଭିତରେ !

ତୁମେ ଯେ ତୁମେ ଖାଲି ପ୍ରାଣର ଉତ୍ସ ହେ !
ସ୍ୱଚ୍ଛ ସୁନ୍ଦର ନିଯୁତ,
ତୁମଠି ଲଗିନାହିଁ, ନିମେଷ ପାଇଁ କାହିଁ
କାଳିମା ଦାଗ ହେଲେ କଯୁତ;

ଯାଅ ହେ ଯାଅ ବହି, ଆତୁର ଯାଅ ବହି
ଫୁଟାଇ କଳ ବେଣୁ ତାନ ହେ
ତୁମର ଗାନେ ଗାନେ ତୁମର ପ୍ରାଣେ ପ୍ରାଣେ
ଧରଣୀ ଧନ୍ୟ ଅଭିରାମ ହେ !

ଜୀବନ ଏକ ଖେଳ ପାରିଲେ ତାକୁ ଖେଳ
ଅସୀମ ଓଠେ ହସ ଫୁଟାଇ,
ଯେତେକ ଯା ବନ୍ଧନ ଦୂରରୁ ଦୂରେ ନିତ
ବିରାଟ ବିଶ୍ୱମେ ହଟାଇ,

ପାରିବ ଜଣେ କରି ଜୀବନ ଅମୃତ !
କାମ୍ୟ ସେହି ଏକା ଆମରି,
ସେ ଖେଳ ଖେଳିବାକୁ କଏତ ଲୋଡ଼ୁ ନାଇଁ
ହଉନି ଲବେ ହେଲେ ସୁମରି;

ବାଳକ ଦଳ ଦଳ ଖେଳଚ ସେଇ ଖେଳ
ଉନ୍ମାଦନା କିବା ତାଳ ହେ !
ବାଳକ ଦଳ ଦଳ ଖେଳଚ ସେଇ ଖେଳ
ହୃଦୟ୍ଭ ମିଠା ସବୁ ବାଢ଼ି ହେ !

ବାଳକ ଦଳ ଦଳ ଖେଳଚ ସେଇ ଖେଳ
ନ ହୋଇ କୁଣ୍ଠିତ କାତର,
ବାଳକ ଦଳ ଦଳ ଖେଳଚ ସେଇ ଖେଳ
କାହାକୁ ନାହିଁ କର ଖାତର ।

ବାଳକ ଦଳ ଦଳ ଖେଳଚ ସେଇ ଖେଳ
ପାରିବ ତୁମେ ଏକା ଖେଳ ହେ !
ପାରିବ ନାହିଁ ଖେଳ ଯାହାରେ ଅଛି ଖାଲ
ବିଷମ ବିଷ ସବୁ ବେଢ଼ି ହେ !!

—୦—

# କବି ଓ ରାଜଜେମା

ରାଜଜେମା ! ରାଜଜେମା !
ଜୀବନେ ତୁମକୁ ଭଲ ପାଏ ମୁହିଁ ସେଇ ମୋର ଦାନ ଜମା !
ଅଲକା ପୁରୀର ଅପ୍‌ସରୀ ତୁମେ କାହିଁ ମୋ କୁଟୀରେ ଥାନ ?
ବିତଳ ସୌଧ, ପ୍ରମୋଦୋଦ୍ୟାନ କେଳି ସରୋବର ମାନ—
କାହିଁ ମୁଁ ପାଇବି ଦରିଦ୍ର ଜନ, ମୋରେ ତୁମେ ଲୋଡ଼ କିଆଁ ?
ତୃପ୍ତି କେସନ ପାରିବ ଗୋ ପାଇଁ ତୁମ ରାଜଜେମା ହିୟା !
ଦରିଦ୍ର ପୁରେ ଆସିବ କାହିଁକି ? ଧରି ଏ କବିର କର
ତୁମ ମନଲାଗି ମୁଁ ନୁହେ, ତୁମେ ମୋ ଏକାନ୍ତ ହୃଦୟର ।

ରାଜଜେମା ! ରାଜଜେମା !
କିବା ଉପଚାରେ କରିବି ତୁମକୁ ପୁରେ ମୋର ଅର୍ଚ୍ଚନା ?

ମୋ ପରି କି ସହି ପାରିବ କଷଣ ଅଙ୍ଗେ ଭୂଷଣ କରି ?
କୋଟି ଅଭାବର ମେଳେ କି ପାରିବ ଧୈର୍ଯ୍ୟ ସୋହାଗେ ଧରି ?
ସୃଷ୍ଟିର ମହା ବେଦନାରେ ତୋଳି ବେଦନାର ମୂର୍ଚ୍ଛନା
ବଜାଇ ପାରିବ ବୀଣାଟି ମୋହରି ? ଢ଼ାଳି କୋଟି ସାନ୍ତ୍ୱନା ?
ଜୀବନର ବ୍ୟଥା ଗାଇ ଗାଇ ତୁମେ ଦୁଆରୁ ଦୁଆରେ ଚଳି
ମାନବ ପାଇଁ କି ମଧୁ ସଞ୍ଚୟି ପାରିବ କି ତୁମେ କରି ?
ଦରିଦ୍ର ପୁରେ ଆସିବ କାହିଁକି ଧରି ଏ କବର କରି ?
ତୁମ ମନଲାଖି ମୁଁ ନୁହେଁ, ତୁମେ ମୋ ଏକାନ୍ତ ହୃଦୟପୁର !

ରାଜଜେମା ! ରାଜଜେମା !
ଶତ ମୂଲକର ସପନ ଦେଖେ ମୁଁ କାହିଁ ତା ସଂଖ୍ୟା ସୀମା ?
ନୀଳ ଶଇଳର ଚୂଳେ ଚୂଳେ ବୁଲେ ଆଷାଢ଼ ବାଦଲ ପରି,
ନଈ ନୀର ବେଣୀ ବେଣୁ ବୀଣାତାନେ ଥାଏ ବା ହୃଦୟ ଭରି !
ସୀମାହୀନ କେଉଁ ଅଜଣା ଭୂଇଁରେ ବୁଲଇ ସୋହାଗେ ଏକା
ମୁଗ୍‌ଧ ହୁଏ ମୁଁ ଅଦେଖାରେ କାର ପାଇ ପାଇ ସବୁ ଦେଖା
ବଣବୁଦା ତଳେ ଶଷ୍ପ ଶୟନେ,ଶୋଇ କେବେ ଗୀତ ଗାଏ
ପଲ୍ଲବ କୋଳେ ଫୁଲଟିଏ ଦୋଳେ, ତାରେ ଗୃହିଁ ଭଲ ପାଏ !
ପଲ୍ଲୀ ବଧୂର ବିରହ ବିଧୁର ନୟନର କଣେ କଣେ
ଯେ ଲୁହ ଫୁଟଇ ତାରେ ଭାଷା ଦେଇ ଦେଖାଏ ବିଶ୍ୱଜନେ,
ଦରିଦ୍ର ପୁରେ ଆସିବ କାହିଁକି ଧରି ଏ କବର କରି
ତୁମ ମନ ଲାଖି, ମୁଁ ନୁହେଁ, ତୁମେ ମୋ ଏକାନ୍ତ ହୃଦୟପୁର !

ରାଜଜେମା ! ରାଜଜେମା !
ରାଜପୁର-ଠାଉଁ କବର କୁଟୀରେ ଅଛି କି ପ୍ରଲୋଭନ ?
କେବଣ ନଗରର କେଉଁ ରାଜପୁରେ ତରୁଣ ରାଜାରେ ବରି,
ରାଣୀ ହେବ ତମେ କେତେ ଦାସଦାସୀ ଥିବେ ନାଇଁ ଅନୁସରି !
ଥା ନାଇଁ ଫୁଟୁ ଓଠରୁ ତୁମରି, ପୂରିବ ବାସନା ସବୁ,
ତୁମେ ଯେ ରାଜାର ହୃଦୟ ହାରିଣୀ ରାଜା ଯେ ରାଇଜ ପ୍ରଭୁ ।
ପାଦ ନ ଲଗିବ ତଳେ ଗୋ ତୁମରି ରାଣୀ ସନମାନ ଥିଲେ,
ଲୀଳାୟିତ ତୁମ ନବ ଯଉବନ ମୁକୁଳାଇ ରାଜପୁରେ,
ଅପ୍‌ସରୀ ସମ ଶୋହୁଥିବ ଆଗୋ ରୂପଗୁଣବତୀ ବାଳା
ଶିରେ ଶୋହୁଥିବ, ସୁନାର ଅଳକା, ଚରଣେ ନୂପୁର ମାଳା;

କିଶୋର ରଜାର ପ୍ରଣୟ ସୋହାଗେ ନୂର ଉଠିଥିବ ମନ,
ରାଣୀ ସନମାନ ବରଜ ହୋଇବ ତନ୍ୱୀ କେବଳ ମମ ?
ଦରିଦ୍ର ପୁରେ ଆସିବ କାହିଁକି ? ଧର ଏ କିଙ୍କର କର,
ତୁମ ମନଲାଗି ମୁଁ ନୁହେଁ, ତୁମେ ମୋ ଏକାନ୍ତ ହୃଦୟର !

କବି ମୋର ପ୍ରିୟ କବି !
ଶତରାଜପୁର ବଳି ସୁନ୍ଦର ତୁମର ହୃଦୟ ଛବି;
ହେ କବି ! ହେ ମୋର ଜୀବନ ଦେବତା ! ହେ ମୋର ପରାଣ ପ୍ରିୟ !
ମହାବିଶ୍ୱର ବେଦନା ପୁଲକ ନିଜ ବୁକେ ତୋଳି ନିଅ;
ତୁମରେ ସେବି ମୁଁ ବିଶ୍ୱର ସେବା କରିବି ସୋହାଗ ମନେ;
ବିଶ୍ୱ ଆମର ବିଶାଳ ରାଜ୍ୟ ଆମେ ଧନୀ ମହାଧନେ,
ତୁମେ ହେବ ପ୍ରିୟ ବିଶ୍ୱର ରଜା ମୁଁ ହେବି ବିଶ୍ୱରାଣୀ
ଏ କୁଟୀର ଆମ ନିଖିଳ ବିଶ୍ୱ ପ୍ରୀୟତମ ରାଜଧାନୀ !

---

# ପେଟର ଦୁଃଖ !

ତୁମେ ଦୁଃଖିନୀ ତୁମେ ଅଭାଗିନୀ ସେ ଦିନ ଟିକିଏ ଗୁହିଁଲି ମତେ,
କଅଣ ଥିଲା ବା କହିବାର ପାଇଁ ଦୁଃଖ ବେଦନା ମରମ ଗତେ;
କହି ପାରିଲନି କିବା ସଙ୍କୋଚ ଜାଗିଲା ତୁମରି ମରମ ତଟେ
ବଦନ ଫେରାଇ ତୁଉନି ରହିଲ ଫେରିଲି ମୁଁ ମୋର ଆପଣା ବାଟେ;

ଆଉ ଦିନେ ମୁହିଁ ଫେରିଲି ସେବାଟେ, ଟିକିଏ ରହିଲି ଗଲିଲି ପର
ଟିକିଏ ଦୁଃଖ ଶୁଣାଇ ପାରିଲେ ନିଭନ୍ତା ମୋର ପରାଣ ଜ୍ୱର !'
କହିବାର ପାଇଁ ମନ ଯାଉଥିଲା ଭିତରୁ କେ' ଅବା ଆଘାତ ଦେଲା
ମନ ପାରି ଦେଇ ତୁଉନି ରହିଲ କେଜାଣି ଅବା ସେ କଅଣ ହେଲା ।

ଆଉ ଦିନ ମୁହିଁ ସେ ବାଟେ ଯାଉଁ ପକାଇଲି ପାଦ ସାହାସ ଛଳେ,
ଯାହା ବା କହିବ, କହିବାର ଲାଗି ଠିଆହେଲ କେଡ଼େ ସାହସ ଭରେ !

ଅଧା ବାହାରିଚ ଅଧରୁ ବଚନ ଅମି ଗଲ ମନ ଗହ୍ୱରେ କାହିଁ
ମୋରେ ଗୃହିଁ କେତେ ଚେଷ୍ଟା କରିଚ କହିବାକୁ କହି ପାରିଲ ନାହିଁ !!

ତହି ଆର ଦିନ ଫେରୁଚ ମୁଁ ପରା ତୁମରି ଜୀର୍ଣ୍ଣ କୁଟୀର ବାଟେ
ଦେଖିଲି ବସିଚ ମୁଣ୍ଡଟି ପୋତି, ନେତ୍ରୁ ଲୋତକ ଝରୁଚ କେତେ !
ନଅ ବରଷର ବାଳୁତ ପିଲଟି ପାଖରେ ତୁମରି ହୋଇଚ ଠିଆ
'ଆଜ୍ଞା' ବୋଲି ସେ ପଦଏ କହିଚ କରୁଣ କଣ୍ଠେ, ଢୁଲୁକେ ହିଆ !

ଆଡ଼ୁଖାରେ ରହି ବାଳୁତ ତୁଣ୍ଡେ କହିଗଲ ମୋରେ କେତୋଟି କଥା
"ଚୂଲି ନାଇଁ ଜଳେ, ଦରମା ଦେବାକୁ ଲଗାଇଚ ଦେଖ ଘରେ, ଏ ହତା;
କାହାକୁ କହିବ ?" "ଆଚ୍ଛା ମୁଁ ଦେବ ଦୁଃଖ କରନି ଜନନୀ ତମେ"—
ଏତକ କହି ମୁଁ ଧୀରେ ପାଦ ଗୃକ, ଆସିଲି ଫେରି ମୋ କୁଟୀର କଣେ;

ଭଗୃରିଲି ମନେ ହେ ମୋର ଜନନୀ ! ତୁମରି ଏ କୋଟି ନିଧିଟି ପାଇଁ
ମାସକ ଦରମା ମୁଁ ଦେଇ ପାରିବି,ଆର ମାସେ କାରେ ରହିବ ଗୃହିଁ ?
କେତେ ହୀନମାନେ କାହାରେ ମାଗିବ, ନାହିଁ ଯେବେ କିଏ ଦେବଟି କରି-
ପରୁଷ ବଚନେ, କେତେ ବାଧିବ, ଲଗିବ ମୁଣ୍ଡ କଟିଲା ପରି !

କେତେ ନାରଖାର ହେଉଚ ଜନନୀ ! ପେଟରୁ ଉଠୁଚ କେତେ ଯେ କୋହ
ନିତି ଦିନ ତୁମ ନୟନୁ ବହୁଚ ଉଷ୍ମ ସେ କେତେ ଅସର ଲୁହ !
ହେ ମୋର ଜନନି ! ଯେତେ ବାର ଯିବି ତୁମ ସେ କୁଡ଼ିଆ ଦୁଆର ବାଟେ
ପାଦ ଦୁଇ ମୋର ଅଟକ ତ ପଡ଼ିବ, ଗୃହିଁବ ନୀରବ ଅଶ୍ରୁପାତେ;

କେତେ ଦୁଃଖରେ ସେ କିଏ ସେ ଚଳୁଚ ସହି କେତେ ଭୋକ ଉପାସ ଜ୍ୱାଳା,
ପେଟର ଦୁଃଖ କହିବା ପାଇଁକି, ପାଟିରୁ ବଚନ ଫୁଟୁନି ପରା !

—✻—

# ଭୁଜବଳ-ବୁଢ଼ୀ

ଘର ନାଇଁ ଏଥି, ଘର ନାଇଁ ଖାଲି ପଡ଼ିଅଛି ମେଲି ଡିହ,
ଠାଏ ଠାଏ ଦିଶେ ମୃତ୍ତିକା ଚଳୁ ପାଖ ବରଗଛ ସିଏ !
ସେ କେଉଁ କାଳର ମାଟିର କାନ୍ଥ ହୋଇଅଛି ଠିଆ କାହିଁ,
ଅଜ୍ଞାତର କେଉଁ ଇତିହାସ କାହା କାନରେ କହିବା ପାଇଁ ।

ପଥର ପାହାଚ ଉପରେ ଗଲାଣି କେତେ ଲଟା ବୁଦା ମାଡ଼ି
ଅଗଣାରେ ଅଛି ଜାମୁ ଗଛଟିଏ ଆକାଶକୁ ଶିର ଗୁଡ଼ି;
ଜାମୁ ପାଚେ ଝଡ଼େ ଗୋଟାନ୍ତି କେତେ ପଲ୍ଲି-ବାଳକ ଦଳ,
ସେ କଅଁ ବୁଝିବେ କେବଣ ଅଜ୍ଞାତେ ଥିଲି ଏଥି କାହା ଘର ?

ସେ ମାଟି କାନ୍ଥ ସେଇ ଜାମୁ ଗଛ, ସେ ଶିଳା ସୋପାନ ମାଳା,
କାଳର କପାଳେ ମିଶିଯାଇ ନାଇଁ, ଦେଖେ ରବି ଶଶୀ ତାରା !
ଯେତେ ବାର ଯାଏ ସେଇ ବାଟ ଦେଇ, ଯାଉଥାଏ ଚୁହିଁ ଚୁହିଁ,
ବୁଝୁ ତଳେ ମୋର ଭଗ୍ନ ସେ ଶିଖା ନାଚ ଉଠେ କାହିଁ ପାଇଁ ?

ଅଶୀଏ ବରଷ ବୃଦ୍ଧ ସେ ମୋର ନମସ୍ୟ ବାପ ଭଳି,
ପଚାରିଲି ଦିନେ ଏ ଡିହର କଥା ତୁମେ ଜାଣ କହୋ ବୋଲି ?
କାନେ ହାତ ଦେଇ ଉତ୍ତରିଲେ ସେ ପାରିବ ପାରିବ କହି
"ଏ ଗାଆଁର ସବୁ ଇତିହାସ ମୋର ଅଗ ଜଭେ ଅଛି ରହି ।

ସେଇ ସେ ଗାଆଁର ଭୁଜବଳ ଘର ଡିହ ସେ ଅଟଇ ଜାଣ
ବୁଢ଼ା ଭୁଜବଳ ନାଆଁ ଥିବା ଲୋକ ଥିଲି ତାର ଖୁବ୍ ଟାଣ !
ହାଣ୍ଡି ପରି ସିଏ ବଡ଼ ମଜଭୁତ, ବଜ୍ର ପରି ତା' କଥା
ବୁଢ଼ା ହେଲି ପଛେ ଲୋଇଁ ନାଇଁ କାହା ପାଦତଳେ ତାର ମଥା ।

ଯୁଦ୍ଧ ପାଇଁ କ ଡାକରା ଆସିଲେ ହାଜର ହୁଏ ସେ ଆଗ,
ଯୁଦ୍ଧ କରି ତା' ଦିହରେ ବସିଚ ଖଣ୍ଡାର ବହୁ ଦାଗ !
ମୁକୁନ୍ଦ ଦେବ ଫିରିଂ ତୁଟଲି ଯେବେଳେ ଲଢ଼ାଇ କଲେ,
ସେଇ ଲଢ଼େଇକୁ ଯାଇଚ ଯାଇଚ ଫେରିନ ଆଉ ତା'ପରେ ।

ଷୋଳ ବରଷର ଗଜା ବୟସ୍ପିଆ ଭେଣ୍ଡା ଯେ ପୁଅ ତା'ର
ଏ ମାଟି ଉପରେ ବଢ଼ିଥିଲା ହୋଇ ଦିନୁ ଦିନ ବଳଆର
ପ୍ରତିଦିନ ସେହୁ ପ୍ରସ୍ତର ଟେକେ, ବୁଲାଏ ବା ମୁଦ୍‌ଗର,
ଶିଖୁଥାଏ ନିତି ସଂଗ୍ରାମ ଲାଗି ଯେତେ ଯେତେ କଉଶଳ ।

ଗାର ମାରେ ଯାଇ ବଣ ପର୍ବତ ଖୋଲେ ନିଭୃତ ଥାନେ,
ଖଣ୍ଡାର ଖେଳ କେତେ ସେ ଶିଖିଚ ସେ ଏକା ସକଳ ଜାଣେ
ଗୋରା ପଲଟଣ ଆସିଲେ ଯେ ଦିନ ଦେଶ କରି ଅଧିକାର
କେତେ ଗାଆଁ କେତେ ଦୁର୍ଗ ପୋଡ଼ିଲେ କାହିଁ ବା ସଂଖ୍ୟା ତାର ?

ଏଇ ଯେ ଦେଖୁଚ ଉଚ ପାଚେରି, ଏହାରି ଉପରେ ଚଢ଼ି,
ଭୁଜବଳ ବୁଢ଼ୀ ଚାହିଁଲେ ଆସିବା ଗୋରା ପଲଟଣ ଧାଡ଼ି ।
ପ୍ରତିହାତେ ଶୋହେ ଗୁଳି ବନ୍ଧୁକ ପ୍ରତି ହାତେ ନିଆଁ ହୁଳା
ଅଗ୍ନିର ପାରାବାର କି ଆସୁଚି ରଚିବ ପ୍ରଳୟ ଲୀଳା !

ପୁଅ ପରିବାରଇ ଜନନୀରେ ଚାହିଁ ବୁଦ୍ଧିତ ଦିଶୁନାଇଁ
ଏତେ ଯେ ସୈନ୍ୟ ଜିଣିବାକୁ ଆମ ହାତରେ ଶକ୍ତି କାହିଁ ?
ଭୁଜବଳ ବୁଢ଼ୀ ପୁଅରେ ପଚାରେ କଷରେ କମରି କଷି
ଏତେବେଳେ ତତେ ବୁଦ୍ଧି ଦିଶୁନି ? ଅର୍ଜିବୁ ଅପଯଶ ?

ଗୋଟେ ଗାଈ ଖିର ଖାଇ ଖାଇ ତୋର ଶକ୍ତି ଦିହରେ ନାଇଁ ?
ଚାହିଁଚୁ କଅଣ ଶତ୍ରୁ ନିକଟେ ଠିଆ ହୁଅ ଆଗ ଯାଇ ।
ଭୁଜବଳ ବୁଢ଼ୀ ଆପଣା କଟୀରେ ଗୁଡ଼ାଇ ପିନ୍ଧା ବାସ
ପାଚେରି ଉପରୁ ଚାହିଁଲା ଜୀବନ ରଖିବାକୁ ନାଇଁ ଆଶ ।

ନିଜ ସ୍ୱାମୀ ହାତ ପାଟ ଖଣ୍ଡାଟି ହାତେ ଧରି ଗଲା ଚାଲି,
ଆସୁଥାଆ ପୁଅ ଆସୁଥା ଯାଉଚି ମୁଁ ଆଗ ଯୁଦ୍ଧ କରି ।
ଗୋଟି ଗୋଟି କରି ଛେଇ ଦେଇଗଲା କେତେ ଯେ ଶତ୍ରୁ ଶିର,
ସ୍ତନରୁ ତା ବହେ ରୁଧିରର ସୁଅ ବାଜ ବଇରୀର ଗାର !

ରୁଧିରପ୍ଲୁତ ସ୍ତନ ହାତେ ଧରି ଆରହାତେ ତରୁଆର
ଗର୍ଜିଲ ସେ ଗର୍ଜିଲା ଭୁଜବଳ ବୁଢ଼ୀ ବେଳୁବେଳ ବଳିଆର;
ଶେଷରେ ଯେବେ ସେ ଅସ୍ଥିର ହୋଇ ମାଗିଲା ମନ୍ଦେ ଜଳ
ତଳେ ପଡ଼ିଗଲା କଥା କହିବାର ପାଇଁ ନାଇଁ ଥିଲା ବଳ !

ଖାଲି ଦେଖୁଥିଲା ନୟନ ଦୁଇଟା ପୁଅ ବନ୍ଧୁକ କରେ
କେତେ ଯେ ଶତ୍ରୁ ଗୋଟା ଗୋଟା କରି ପକାଇ ଦେଉଛି ତଳେ !
ଆଖି ଦୁଇ ତା'ର ଦିଶି ଆସୁଥିଲା କଭଳ ଧାପ୍ତରର
ମୁଖମଣ୍ଡଳେ ନିଶାନ୍ତ ତାରା ଜ୍ୟୋତି ଅବା ଟଳ ଟଳ !!

ମାଆ ପାଖେ ପୁଅ, ପୁଅ ପାଖେ ମାଆ ମରିବେ ପଡ଼ିଲେ ତଳ,
ସେ ଦିନୁ ଏ ଧରା ମେଲି ଉର୍ଦ୍ଧ ହୋଇ ଏ ଯାଏଁ ରହିଛି ପଡ଼ି ।”
ଯେତେବେଳେ ଯାଏ ସେଇ ବାଟ ଦେଇ ମନେ ମୋର ଯାଏ ପଡ଼ି
ଭୁଜବଳ ବୁଢ଼ୀ ଏ ମାଟି କାନ୍ଥି ପରେ ଥିବ ଦିନେ ଚଢ଼ି ;

ଶୁଣୁଁଥିବ ଦୂର ପ୍ରାନ୍ତର ତଟୁ ଆସିବା ସୈନ୍ୟ ଦଳ,
କଟୀରେ ଗୁଡ଼ାଇ ପିନ୍ଧା ବସନ ହୋଇଥିବ ତର ତର;
ଯୁଦ୍ଧ କରିବା ପାଇଁ କି କେସନେ କେସନେ ଦୁଆର ଫେଇ
ଯାଇଥିବ ଦିନେ ଦପ ଦପ ଏଇ ପଥର ପାହାଚ ଡେଇଁ;

କଳ୍ପନା କରେ ମନେ ମନେ ଆଜ ଭୁଜବଳ ପୁଅ ମଣି,
ଜନମିଲ ପଛେ ଦିଗୁଣ ସାହସେ ଯୁଝିଥିବ ସେଇକ୍ଷଣି;
ଭୁଜବଳ ବୁଢ଼ୀ ସମର ଭୂଇଁରେ ଜୀବନ ଦେଇଛ ତମେ !
ରକ୍ତ ବହିଛି ଝର ଝର ସ୍ତନୁ ଥମି ଯାଇ ନାହିଁ କ୍ଷଣେ ।

ଭୁଜବଳ ବୁଢ଼ି ! ଭୁଜବଳ ବୁଢ଼ି ! ଦୁଆର ଫିଟାଇ ଏକା
କଭଳ ଭେଟିଲ, ଭୟ ହେଲ ନାଇଁ, ସୈନ୍ୟ ସାଗର ରେଖା !
ଭୁଜବଳ ବୁଢ଼ି ! ଭୁଜବଳ ବୁଢ଼ି ! ସ୍ତନରୁ ବହିଲ ଲହୁ
ତଥାପି କଭଳ ଖଣ୍ଡା ଗର୍ଜିଲ ଶତ୍ରୁ ମାଇଲ ବହୁ !

ଭୁଜବଳ ବୁଢ଼ି । ଭୁଜବଳ ବୁଢ଼ି ! ଯେବେଠି ପଡ଼ିଲ ତଳ,
ନୟନ କଅଳ ଉଜଳ ଦଶିଲ ସ୍ୱର୍ଗ ତାରକା ଭଳ;
ଭୁଜବଳ ବୁଢ଼ି ! ଭୁଜବଳ ବୁଢ଼ି ! ପୁଅର ଲଢ଼େଇ ଦେଖି
ଅନ୍ତିମ ବେଳେ ଆନନ୍ଦ ଆଭା ବଦନେ ଉଠିଲ ଲେଖି ।

ଭୁଜବଳ ବୁଢ଼ି ! ଭୁଜବଳ ବୁଢ଼ି ! ତୁମର ମରଣ ଶେଯେ
ସନ୍ତାନ ତବ ଶୋଇଲା କଅଳ ? କଅଳ ଦୃଶ୍ୟ ସେ'ଯେ !
ଭୁଜବଳ ବୁଢ଼ି ! ଭୁଜବଳ ବୁଢ଼ି ! ବୀର ସନ୍ତାନ କୋଳେ
ସମର ଭୂଇଁରେ ତଳ ଯେ ପଡ଼ିଲ ସ୍ୱର୍ଗର ଜ୍ୟୋତି ଡୋଳେ;

ଯେତେବେଳେ ଯାଏ, ସେଇ ବାଟ ଦେଇ ମନେ ମୋର ଯାଏ ପଡ଼ି
ଭୁଜବଳ ବୁଢ଼ୀ, ଏ ମାଟି କାନ୍ଥି ପରେ ଯାଇଥିବ ଚଢ଼ି ।



## କାହିଁ ସେ କହ କେଉ ପଥେ ?

ଯାହାରେ ଲୋଡ଼ୁଥିଲି, ଦିବସ ରାତି ମୁହିଁ
କାହିଁ ସେ କାହିଁ କହ ମତେ ?
ଯା ପାଇଁ ଦେଖୁଥିଲି ସପନ ଶତ ଶତ
କାହିଁ ସେ କହ କେଉଁ ପଥେ ?

ତା' ବୁକୁ ବୀଣାତାନ ଶୁଣିବା ପାଇଁ ମନ,
ଆକୁଳ ହୋଇ ଅଛି ନିତି,
ତାହାର ସନ୍ଧାନ କିଏ ସେ ଦେବ କହ
ରହିଛ କାହିଁ ତା'ର ଥିତି ?

ଯେଉଁଠି ସେ ନଈଟି ସୋହାଗେ ବହିଯାଏ,
ଫୁଟାଇ କଳ କଳ ତାନ,
ଯେଉଁଠି ବିହଗର କୂଜନେ ଜାଗି ଉଠେ
ନିଯୁତ ମଧୁଭରା ଗାନ,

ଯେଉଁଠି ସୀମାହୀନ କୁସୁମ ଫୁଟି ଉଠେ
ଛୁଟାଇ ମଧୁ ସଉରଭ,
ଯେଉଁଠି ପ୍ରାନ୍ତର ରହିତ ବସ୍ତୃତ
ବସାଇ ଶ୍ୟାମ ଗଉରବ ।

ଯେଉଁଠି ପାହାଡ଼ର ଅସୀମ ନୀଳମାରେ
ହୃଦୟ ଖୋଲ ଫୁଟି ଉଠେ,
ଯେଉଁଠି ନୀରବତା ଭିତରେ ପୁଲକର
ମୋହନ ମଧୁରିମା ଛୁଟେ;

ସେଇଠି ଅଛି ସେ କି ? ବୁଲୁଚି ନାଚି ନାଚି,
ଉଦାସେ କେତେ ଗୀତ ଗାଇ,
କୁସୁମ ତୋଳ ତୋଳ ଖୋସାରେ ଖୋସୁଚି କି ?
ପରମ ଆହ୍ଲାଦ ପାଇ !

ସେ ନଈ କୂଳେ କୂଳେ ବୁଲୁଚି ଅବିରଳେ
ସନ୍ଧ୍ୟା ସକାଳେ କି ସତେ ?
ତାହାର ଓଠ ହସେ; ଧରଣୀ ଗଉରବ
ପାଉଚି କି ନା ଅବିରତେ !

ତା' ଭଳି ସୁନ୍ଦର କିଏ ତ ଆଉ ନାହିଁ
ନିଖିଳ ଏ ଧରଣୀ ପରେ
ଧବଳ କୁଟୀଲତା ପରଶି ନାହିଁ ତହିଁ
କ୍ଷଣିକ ପାଇଁ ହେଲେ ଥରେ !

ସେ ଖାଲ ନିର୍ମଳ ସେ ଖାଲ ସୁନ୍ଦର
ସରସ ଅନ୍ତରମୟୀ
ତା' ବୁକୁତଳ ମଧୁ ପିଇବା ପାଇଁ ମୋର
ହୃଦୟ ଅଛି ଗୃହିଁ ରହି !

ମୁଁ ଯିବି ସେଇ ଥାନେ, ମୁଁ ଯିବି ସେଇ ଥାନେ
ମନ ମୋ ହୁଏ ଛନ ଛନ,
ତାହାର ବକ୍ଷେ ମୁଁ ବକ୍ଷ ମିଶାଇବି
ସେନେହ ତାଳ ଅନୁପମ !

ବସିବ ତାହା ତୁଳେ ପାହାଡ଼ ନଈ କୂଳେ,
  ଜୋଛନା ଜାଣିଥେ ମୁଁ ଜନ୍ତ,
    ତା' ବୁକୁ ସଙ୍ଗୀତେ ମିଶି ମୁଁ ଯିବ ସତେ
      ପାଇ କ ସୀମାହୀନ ପ୍ରୀତି !!

ମୋହର ଲୋଡ଼ା ତା'ର ଅଧର ହସ ଟିକ
  ତାହାର ବୁକୁଭରା ବାଣୀ,
    ମୋହର ଲୋଡ଼ା ତା'ର ସକଳ ଦେହେ ମନେ !
      ମିଶି ମୁଁ ଥିବ ଦବାଯାମୀ !!

ମୁଁ ଯିବ ସେଇ ଥାନେ, ମୁଁ ଯିବ ସେଇ ଥାନେ,
  ଯେଉଁଠି ଫୁଟେ ତା'ର ପ୍ରାଣ
    ତାହାର ପାଇଁ ମୁହିଁ ଜସ୍ରୁତ ଗୀତ ଗାଏ,
      ମୁଁ ଝୁର ହୁଏ ତା'ର ନାମ ।

—o—

## ରୂପ ସମ୍ମାନ

ଟିକଏ ଗୃହିଁ ଖାଲ ଜମେଷ ପାଇଁ ମୁଗ୍‌ଧ କେତେ ହୋଇ ଯାଉନ ?
କ ଶିଖ ସମ୍ପଦ ତାହାଠି ନାଇଁ ? କଥାରେ ସବୁ କହ ହଜନ ।
ଓଠରେ ହସ ପୁଣି ବୁକୁରେ ରସ, ଆଖିରେ ଫୁଲ ଫୁଟି ଉଠଇ,
ଜୀବନ ତଳେ ତାର କେ ନୁହେ ବଶ, କାହାର ବଥା ନାଇଁ ତୁଟଇ ?

କେବଣ ପାରଜାତ ପୀୟୂଷ କୋଳୁ ଜନ୍ମ ଲଭିତ ଏ ଛଇଲା
କେବଣ କନ୍ଦର୍ପ ବୟସୀ ମେଳୁ ଆଜ ଏ ଧରଣୀକୁ ଅଇଲା ।
ଆଖି ତା କଥା କହେ, କହେ ତା ଓଠ, କହେ ତା ଖାଲ ଭୂରୁ ଲତିକା,
ସକଳ ଅଙ୍ଗ ତା ବାଣୀର ମଠ, ସବୁରୁ ଫୁଟେ ମଧୁ ଗୀତିକା ।

କବ ମୁଁ ଗୃହିଁ ରହେ ଧ୍ୟାନେ ତ ର; କାବ୍ୟ କାହିଁ ମୋର ତା ପାଶେ ?
ସକଳ କାବ୍ୟର ସେ ଏକା ସାର; ତା ବିନା କବ ରହେ ଉପାସେ !

ଧରଣୀ ତଳେ କାହିଁ ଚନ୍ଦ କଳା ତା ପାଶେ ଯିବ କଳା ପଡ଼ି ତ !
ନିଖିଳ ପ୍ରକୃତି ଖୋଲଇ ପଗ ଅଛି ସେ ନିଜ ହାତେ ଗଢ଼ି ତ ।

କବ ମୁଁ କହିବନି ତା କଥା ବେଣି, ସେ ନୁହେ କହିବାର କଣୋଗ
ଚମ୍ପାବରଣା ସେ କଜଳକେଶୀ ଧରଣୀ ତଳେ ରୂପ-ଈଶ୍ୱରୀ !
କହିଲେ ତା ରୂପ ଓଜନ ଯେତେ, ଭାଷାରେ ପାରିବନି କହି ହେ
ତା ଗଉରବେ ସେହି ଶୋହି ହେ ଏଥେ, ଉଜଳ ଏ ନିଖିଳ ମହୀ ହେ ।

ସେ ରୂପେ ନିଭୃତେ ପ୍ରଣତି କରି ଆଜ ମୁଁ ପରିତୋଷ ଲଭଇ
ସେ ରୂପ ଅନ୍ତରୁ ଅବନୀ ଭରି କି ମହା ସଙ୍ଗୀତ ଶୁଭଇ !
ପାନ୍ଥ ଧରଣୀର ! ସେ ବାଳା ପାଶେ ମଥା କି ନଇଁ ହୋଇ ଯାଉନି ?
କହିବ ନାଇଁ ଆଉ ସେତିକ ଆସେ, କଥାରେ ସବୁ କହି ହଉନି !

———

# ନବ ଯୌବନା

ସୁନାପାଣି ଦିଆ ଯଉବନ ତବ ଅଙ୍ଗେ ଖେଳଇ ଗୋ !
କହିବ କି ନାଇଁ କଥା ?
ଓଠରେ ଭ୍ରମରି ଅସ୍ଥିବରବଧୂ ମାଣିକ ଜଳଇ ଗୋ !
ପୋଡିଚ କାହିଁକି ମଥା !
ମୀଳ ଆଖି ତଳୁ ଚିତ୍ରିବ ଚାହାଣୀଟି ଭାଷା ଧଇଲଣି ଗୋ !
ଚାହୁଁନ କାହିଁକି ମତେ ?
ମୀଳ ଭୂରୁଲତା ଥିରି ଥିରି ଥିରି ନାଚ ଶିଖିଲଣି ଗୋ !
ଲୁଚିଯାଅ କିଆଁ ପଥେ ?

ଗଣ୍ଡ ଗୋଲାପେ ଲଜ ପାଟଳମା ମାଡ଼ି ମାଡ଼ି ଆସେ ଗୋ !
ଚାହିଁବ ଟିକଏ ଖାଲି,

କନକ କମ୍ପାଲେ କନକର ଆମ୍ର ମଞ୍ଜୁଳେ ଝୁରେ ସେ ଗୋ !
ଦେଖିବ ନୟନ ତାଳ !
ମରମ ଘାଷାରେ ସରମ ସୋହାଗ ବସି ଆସିଲାଣି ଗୋ !
ମଉନ ରହୁଚ କାହିଁ ?
ଚଞ୍ଚଳ ତବ ଚରଣ ଗତରେ ଫୁଟିଲାଣି ଠାଣି ଗୋ !
ଅଧୀର ମମ ହିଆ ।

ମୁକୁଳିତ ଚୂତ ପଲ୍ଲବ ପରି ପ୍ରଣୟ ସପନ ଗୋ !
ପରାଣେ ଦେଲାଣି ଦେଖା,
ପ୍ରଣୟ-କଥାରେ ଉଜଳ ଉଠଇ ଜନକ ଲପନ ଗୋ !
ଆଙ୍କି ମୋହନ ଲେଖା !
ସମବୟସିମା ସାଥେ ପରିହାସ ମିଠା ଲାଗିଲାଣି ଗୋ !
ଲୋଡ଼ଇ ଭ୍ରମରେ କବ,
ପରିମଳ ପରି ଅନ୍ତର ତବ ମହକ ଗଲାଣି ଗୋ !
ଯିବ ବାରେ ଅନୁଭବ ।

ସପନପୁରର ରାଜଜେମା ତମେ ! ସପନ ଫୁଟାଇ ଗୋ !
ଧରାରେ ଆସିଚ ପରା !
ସ୍ୱପ୍ନବଭୋର ସକଳ ଅଙ୍ଗ ପ୍ରଣୟେ ଲୋଟଇ ଗୋ !
ଚକିତ କରୁଚ ଧରା !
ସ୍ୱପ୍ନବଭୋର ଦେହେ ମନେ ତବ ମିଶି ମୁଁ ଯିବଇ ଗୋ !
ଏତିକ ମାଗୁଣି କରେ,
ସ୍ୱପ୍ନବଭୋର ହୋଇ କାଳ କାଳ ଜୀବନ ନେବଇଁ ଗୋ !
ଭ୍ରମର ଯୌବନ ତଳେ !

—୦—

# କିନ୍ତୁ ମନେରଖ

ତୁମେ ଗୋ ରହିପାର ଅତୁଳ ବଇଭବେ,
କୁବେର ପୁଷ୍ପ ସହିଁ କରିଇ ଲୀଳା ଖେଳା,
ତୁମେ ଗୋ ରହିପାର ଯେଉଁଠି କାଳ କାଳ
ପୋଇଲ ପରିବାଗ୍ର ନିଯୁକ୍ତ ଭେଲା ଭେଲା ।
ତୁମେ ଗୋ ନାଇପାର ଜୀବନେ ପ୍ରିୟତମ
ଯେ ଖାନ୍‌ଦାନ୍ ଘରେ ନିଯୁକ୍ତ ଅଛୁ ବଢ଼ି,
କିନ୍ତୁ ମନେ ରଖ ପାଇତ ପାରିବନି
ତୁମରି ଆରାଧନା କରେ ଯେ ବୁକୁ ଭରି ।

ଦୁଃଖୀ କୁଟୀରେ ମୋ ତୁମରି ପଦପାତ,
ଲଗିବ କୋଟିନିଧି ପାଇଲି ପରି ମତେ;
ଆଖିର ଲୁହ ଦେଇ, ଓଠର ହସ ଦେଇ,
ତୁମକୁ କରୁଥିବ ନିଜର ସନ୍ତତେ !
ତୁମରି ମୃତ୍ୟୁରେ ଅଶ୍ରୁ କବିତାରେ
ତୁମରି ସମାଧି ମୁଁ ରଚିବ ମନୋରମ,
ଅସୀମ କାଳ ଧରି ତୁମେ ଗୋ ମୋର ପ୍ରିୟା
ମୁଁ ଥିବ ହୋଇ ତୁମ ପରାଣ ପ୍ରିୟତମ !!

—o—

# ପାରିବ ?

ଜନମେ ଜନମେ ତୁମେ ଜୀବନର ସାଥି
ଯେବେ ହେବନାହିଁ ମୋର, ଅନ୍ଧକାର ରାତି,
ଚିରଦିନ ରହିଥିବ ପ୍ରାଣ ଦିଗ୍‌ବଳୟ
ଚତୁର୍ଦ୍ଦିଗ ବେଢ଼ି, ଆଉ ବସନ୍ତ ମଳୟ
ଚମ୍ପକର ମଧୁଗନ୍ଧ ଧରି ବୋହିବନି,

ସାରା ଜୀବନଟା ମୋର ନିସ୍ତବ୍ଧ ରଜନୀ-
ପରି ଖାଲି ବିଶୁଥିବ । କାକ କୋକିଳର
ମଧୁ ତାନେ ହେବନାହିଁ ଜୀବନ ମୁଖର;
ମୃତ୍ୟୁଠାରୁ ବଳି ମୋର ସମସ୍ତ ଜୀବନ
ଲାଗୁଥିବ ଭୟାବହ, ନିଦାରୁଣତମ;
ମୋରେ ତୁମେ ଏଇଭଳି କଲବଲ କରି
ପାରିବ କି ରଖି ସଖି ! ଯୁଗ ଯୁଗ ଧରି ?
ପାଲଟି ପାରିବ ତୁମେ କଠୋର ପାଷାଣ
ହୋଇ ଏତେ ସୌନ୍ଦର୍ଯ୍ୟର ଅମୃତ ନିଧାନ ?

—*—

## ଯେବେ ଦିଅନ୍ତ ଚାହିଁ

ଓଠ ମଧୁହାସେ କହିଲନି ପଦେ !
ଚାହିଁଲନି ଲବେ ସେନେହ ଭରେ !
ଫୁଟି ଆସୁଥିଲ ମୋହର ପାଇଁକି
ଲୁଚି ଗଲ କେଉଁ ପତର ତଳେ;
ଲୁଚି ଲୁଚି ଯେବେ ଚାହୁଁଥିଲ ମୋରେ
ସେ ଚାହାଣୀ କିବା ପୀୟୂଷଭରା !
ସବୁ ଲୁଚିଗଲା କେଉଁ ଆଡ଼ୁ ଆଳେ
ଆଉ ଫୁଟିନାହିଁ ଆସିଲା ପରା !

ତୁମେ ଝୁଲିଗଲ ତୁମରି ଅପୂନେ
ମୁହିଁ ଦୂରେ ନାହିଁ ପାରିଲି ଝୁଲି,
ଚାହିଁ ରହିଲି ଯା' ଏ ଗଛ ପତରେ
ତୁମକୁ ନିଯୂତେ ସୋହାଗେ ଭୁଲି !
ଓଠ ତଳୁ ମୋର ନିଭିଗଲା ହସ,
ମନୁ ମରିଗଲା ମୋହନ ଶିଖା,
ଚାରିଆଡ଼ ମତେ ଲାଗିଲା କି ଅବା
ସୀମାହୀନ ମରୁ ସାହାରା ଢାଳି ।

ରହିଲ ମୁଁ ସିନା, ରହି କ ପାରିଲ
ହସି ଖେଳ ସୁଖ ସୋହାଗ ଭରେ ?
ଫୁଟିଲି ମୁଁ ସିନା, ଫୁଟି କ ପାରିଲ ?
ସବୁ ଶିଖି ତାଳ ଧରଣୀ ତଳେ;
ରହିଗଲା କେତେ ମନର ପିପାସା
ରହିଗଲା ସେ ତ ଫେରିବ ନାଇଁ,
ରହି ପାରନ୍ତା ତୁମେ ଯେବେ ଥରେ
ପଡର ଗହଳୁ ଦଅନ୍ତ ଗୃହିଁ !

— — —

# ମାନସୀ ରାଣୀ

ମୁଁ ତ ମୋହର କୁଟୀରେ ଗୁଣୁ ଗୁଣୁ ଗୀତ ଗାଏ ଗୋ !
ସେ' ତ ଜାଣିଶୁଣି ମୋରେ କଥା ପଦେ ଆସି କହେନା,
ତାକୁ ମରମେ ମରମେ କେତେ ମୁହିଁ ଭଲ ପାଏ ଗୋ !
ତା'ର ଟିକକ ନିନ୍ଦା ନମିଷେ ମୁଁ ବାରେ ସହେନା !

ମୋର ହୃଦୟ ବେଦନା ସେ କାହିଁ ସରଳା କଳିବ ?
ମୋର ଆଖିର ଲୋତକ ଆଖିରେ ତ ଯାଏ ମରି ଗୋ !
ମୁଁ ତ ଜାଣେ ନା ସେ କା'ରେ ବକ୍ଷ ପତାଇ ବରିବ
ମୋର ଯଉବନ ଗୃହେ ଯିବ ତା' ଅଙ୍ଗେ ଜରି ଗୋ !

ମୁଁ ତ ଫାଧାର ସୁନା ମେଘରେ ଦେଖେ ତା' ଛଇ ଗୋ !
ସେ' ବା ନାଚ ନାଚ ଆସେ ବରଣର ଡାଳି ଧରି କି ?
ମୁଁ ତ ଫୁଲେ ଫୁଲେ ଦେଖେ ହସୁଚ ସେ କଥା କହି ଗୋ !
ମୋର ଅନ୍ତର ନାଚେ ଶରତ୍ ଜୋସ୍ନା ପରି କି ?

ଯେବେ ନଈ ସଇକତେ ବୁଲେ ମୁଁ ସାନ୍ଧ୍ୟ ବିହାରେ,
ଶୁଣେ କଳ କଳ କଳ ବେଣୁ ବୀଣା ତାନ ନଈର;
ଲୋଡ଼େ, ପାଖେ ଥିଲେ ମୋର ଗୋପନ ମନର ପ୍ରିୟାରେ
ମୁଁ କି ହୋଇ ନ ଥାନ୍ତି ଦିଲ୍ଲୀ ବାଦଶା ମହୀର

ସେ ଗୋ ! ମର୍ତ୍ତ୍ୟ ଧରାରେ ଅପ୍‌ସରା ନବ ଛଇଳା
ତା'ର କଟାକ୍ଷେ କିବା ଭୁବନମୋହିନୀ ମାୟା ଗୋ !
ସେ ଗୋ ! ଏତେ ରସବତୀ ରସ ସାଗରର ମହିଳା
ମନ ଉଲସି ଉଠିବ ଦେଖିଲେ ଖାଲି ତା' ଛାୟା ଗୋ !

ମୁଁ ତ ଗୁହାଁ ଗୁହାଁ ଆସେ ଗୁହାଁ ଗୁହାଁ ଜିତ ଫେରେ ଗୋ !
ମୋର ସମସ୍ତ ଦେଇ କେତେ ତା'ରେ ଭଲ ପାଇନି !
ତା'ରେ ରାତି ହେଲେ ପୁଣି ଦେଖେ ମୁଁ ସପନ ଖେଳେ ଗୋ
ତା'ରେ ପାଗଳ ପରି ମୁଁ ନିର୍ଜନେ କେତେ ଧାଇଁନି !

ସେ ତ ଆପଣାର ମୋର ଅତି ଆପଣାର ଜଣେ ଗୋ !
ମୁଁ ଗୋ ! ଯହିଁ ଯାଏ ସିଏ ନୟନେ ନିୟତେ ଭାସଇ;
କିବା ଆକାଶ ପବନ ନଈ ହ୍ରଦ ବିଲ ବନେ ଗୋ
ମୁଁ ଯେ ଏତେ ଲୋଡ଼େ, ତା'ର ମନେ କି ଏ କଥା ଆସଇ ?

ମୁଁ ତ ପଲ୍ଲବେ କହେ, କହେ ବାଆ ସନ୍‌ସନେ ଗୋ
ମୁଁ ତ ଆଦ୍ୟ ଆଷାଢ଼ ମେଘ ମନ୍ଦ୍ରରେ କହଇ
ମୁଁ ତ କହେ ନଈ ନାଳ ପରବତ ବିଲ ବନେ ଗୋ !
ତା'ର ବିହୁନେ ମୋ ବୁକେ ତୀବ୍ର ଦହନ ଦହଇ !

ଗାଆ ମାଧବୀ କୁଞ୍ଜେ କୋକିଳ ତୁ ଆଜି ଗାଆରେ !
ଆସ ଜ୍ୟୋତ୍ସ୍ନା ଲହରୀ ଉପରେ ଲହରୀ ଖେଳାଇ,
ବହ ମନ୍ଦ ମଳୟ ଛନ୍ଦେ ନୂତନ ରାହାରେ !
ନାଚ କଳାପୀ କୁଳହେ କଳାପ ମେଲଇ ମେଲଇ;

ନଭେ ନାଚ ନାଚ ଯାଅ ହେ ଧବଳ ମେଘ ମାଳିକା !
ଫୁଲ ଫୁଟି ଫୁଟି ଯାଅ ଗନ୍ଧେ ଆମୋଦି ଧରଣୀ,
ସେଇ ଉର୍ବଶୀ ପରି ପଲ୍ଲୀକିଶୋରୀ ବାଳିକା
ମୋର ନୟନ ଦୁଇର ହେଉ ସୀମାହୀନ ସରଣୀ ।

ମୋର ଯାହା ଅଛି ଯାଉ ସକଳ ତିମିରେ ମିଳାଇ,
ମୁଁ ଗୋ ଖୋଜି ଖୋଜି ତା'ରେ ନ ପାଏ ନ ପାଏ ନ ପାଏ !
ସେ ଗୋ ବିଦ୍ୟୁତ ପରି ଦୂରେ ଦୂରେ ଯାଉ ପଳାଇ,
ମୁଁ ଗୋ ଖୋଜି ଖୋଜି ତା'ରେ, ତାହାଠି ଜୀବନ ହଜାଏ !



# ତାର ଅନ୍ତର ଭରା ଗୃହାଣୀ

ତାର ଅନ୍ତର ଭରା ଗୃହାଣୀ
ମୋର ମନେ ପଡ଼ି ପଡ଼ି ଯାଏ ଗୋ !
ମତେ ବିଜନେ ମାରିବେ କେତେ ସେ
ଆହା କିଭି କିଭି ଭଲ ପାଏ ଗୋ !

ଯେବେ ସେଦିନ ବିଦାୟ ନେଇ ମୁଁ
ଆସେ କୁଟୀର ଦୁଆରୁ ତାହାର,
ସେତ ରହି ପାରିଲାନି ଆସିଲା,
ମୋର ପଛେ ପଛେ ଘରୁ ବାହାର !

"ଆଜ ଫେରିଯିବ ସଖା ତୁମେ ହେ
ଆଉ ଦେଖା ହେବ ନାଇଁ ସତେ କି ?
ତୁମେ କାଲ କାଳ ପାଇଁ ହୃଦୟେ
ପୋଛି-ଦେବ ମରମରୁ ମତେ କି ?"

ନୀଳ ନୟନ ଯୁଗଳୁ ଲୋତକ
କେତେ ଝର ଝର ଝର ବୋହିଲା,
ତା'ର ସକଳ ଅଙ୍ଗ କି ବାଣୀ—
ମତେ କରୁଣ ଭାଷାରେ କହିଲା !

ଲୁହ ପୋଛି ଦେଇ ନୀଳ ନୟନୁ
ତାର ନୟନେ ନୟନ ଡାଳି ଗୋ !

କେତେ ବେଳ ଯାଏଁ ଗୃହିଁ ରହିଲା
ହେଲ ଯିବ ନାଇଁ ଗୋଡ଼ କାଢ଼ି ଗୋ !

ସେତ ଲୁହ ପୋଛୁ ପୋଛୁ ବସନେ
ଗଲ ଗୃହିଁ ଗୃହିଁ ଘରେ ଚଳ ଗୋ !
ମୁଁ ତ ଆସିଲ ମୋହର ଅୟନେ
ମୋର ନୟନରେ ଲୁହ ଭର ଗୋ !

ପଥେ କେତେ ଯେ ଚନ୍ଦ୍ର ଦେଖିବ,
କେତେ ଶୁଣିବ ମୋହନ କାହାଣୀ,
ମୋର ବୁକୁ ତଳେ ଥିବ ଲେଖା ଗୋ !
ତା'ର ଅନ୍ତରଭରା ଗୃହଣୀ !

—*—

# ଧନ୍ୟ

କାହା କୁଟୀରର ମଧୁ ସମ୍ପଦ ତମେ !
ମୋହ ଭୁଲେ ଆଜ
ଯୁକ୍ତ ହୋଇଚ ଅମୃତ ବନ୍ଧନେ !
ମୋରେ ଦେବା ପାଇଁ ଆନନ୍ଦ ଚିରକାଳ
ମୋର ଲୋଚନ ଯୁଗଳୁ ପୋଛୁଦେବାପାଇଁ
ବେଦନାର ଲୁହ ଧାର !
ଫୁଟିଅଛ ତମେ ଏ ମାଟି ଉପରେ
ଗୋଲପ କଳିକା ପରି,
ଭ୍ରମର ବୁଲୁର ସବୁ ସଉରଭ
ଦେଉଅଛ ମତେ ଭରି;
ଏତେ ସମ୍ପଦେ ଜୀବନର କଏ ପାଏ ?
ଏତେ ଭାଗ୍ୟ କାହାର ଥାଏ ?
ଏତେ ତନ୍ମୟ ହୋଇ
କଏ ମତେ ଏତେ ଗୃହେଁ !

ଦୁଃଖ ବେଦନା ଅଭିଶାପଭରା ଜୀବନରେ ତ   ର
        କିଏ ହେବ ଏଡ଼େ ସାଥୀ
ଆନନ୍ଦମୟ ଅମୃତମୟ କରିବା ପାଇଁ କି ମତେ
        ପାତି ଦେବ'ତାର ପ୍ରୀତି ।
ଅନ୍ତର ଭରା ଆଶ୍ଳେଷ ଦେଇ
        ପଚାରିବ କିଏ ମୃଦୁ ମଞ୍ଜୁଳ ବାଣୀ
ତୁମେ ରଜା ହେଲେ
        ମୁଁ ହେବି ତୁମର ରାଣୀ ।
ତୁମେ ଭିକ୍ଷୁକ ହୋଇ
        ବୁଲିଲେ ହେ ସାଇ ସାଇ
ଅଣ୍ଡି ପାତି ମୁଁ ଭିକ୍ଷା ମାଗିବି
        ତୁମ ସହ ଥାଇ ଥାଇ !
ତୁମର ମରଣେ, ତୁମର ଚିତାର—
        ଚଳପେ ପଡ଼ିବି ତଳେ;
ତୁମେ ବଞ୍ଚିବ ଯେଉଁ ପାରେ ରହି
        ତୁମ ସହ ଥିବି ରହି ।
ଏଇ ଅଧିକାର ଟିକ,
        ତୁମର ପାଖେ ମୋ ଅଳି !'
ଏଇଭଳି ଏକ ସୁନ୍ଦର ଜୀବନରେ—
        ପାଇ ମୁଁ ଧନ୍ୟ ନିଖିଳ ଧରଣୀ ତଳେ ।

———

## ପ୍ରୀତି-ତୃଷ୍ଣା

ମନେ ହୁଏ ବୁଝୁଥିବ ସେହି ମୋ ଅନ୍ତର କଥା,
ମନେ ହୁଏ ଶୁଣୁଥିବ ମୋର ଜ୍ୱାଳାମୟ ବ୍ୟଥା;
ମନେ ହୁଏ ମନେ ମନେ ଲୋଡ଼ୁଥିବ ସିଏ ମତେ,
ମନେ ହୁଏ ମୋ ଦରିଦ୍ର ଜୀବନର ଯାତ୍ରା ପଥେ—

ସାଥୀ ହେବା ପାଇଁ ସେହୁ ଲୋଡ଼ୁଥିବ କେତେ ପର,
ମୋ ଅଭାବେ ନେତ୍ରୁ ତା'ର ଅଶ୍ରୁ ପଡ଼ୁଥିବ ଝର !
ଜୋଛନା ନିଶୀଥେ ମତେ ଖୋଜୁଥିବ ବାରବାର
ବସନ୍ତ ମଳୟେ ଥର ଉଠୁଥିବ ଦେହ ତା'ର !

ବରଷା ସନ୍ଧ୍ୟାରେ କେଉଁ ତା' ନିଃସ୍ୱ କୁଟୀର କଣେ
ଭାବୁଥିବ ମୁଁ ପହଞ୍ଚି ଯାଆନ୍ତି କି ସେଇକ୍ଷଣେ !
ରାତି ହେଲେ କେତେରୂପେ ଦେଖୁଥିବ ମୋ ସପନ
ମୁଁ ଯେହେତୁ ତା' ଜୀବନର ଏକମାତ୍ର ଗଣ୍ଠିଧନ !

ତା'ଯୌବନ ଅଙ୍ଗଲତା ମୋ ଦେହେ ମଡ଼ାଇ ଦବ,
ତହିଁରେ ଫୁଟିବ ତା'ର ଜୀବନର ଗଉରବ !
ତାହାର ସମସ୍ତ ଶିଖ ଦେବ ସେହୁ ମତେ ଖାଲି
ଜାଣେନା କି ବଡ଼ କରି ମତେ ସେ ଦେଖିଚି ପାରି !

ତା'ହୃଦୟ ସିଂହାସନେ କେତେ ଦିନୁ ରଖି ମତେ
ପୂଜା ସେ କରୁଚି ଆହା ଚିରଦିନ କି ଉତ୍ସବେ !
କେତେ ଥର ଦେଖିଚି ମୁଁ ମୋରେ ଟିକେ ଚାହିଁଦେଇ
ହସି ହସି ଲଜେ ମଥା ପୋତି ଦିଏ କାହିଁପାଇଁ ?

ଯେଉଁ ଦିନ ନ ଥିବ ମୋ ଅଧରେ ଆନନ୍ଦ ହାସ,
ପାଇଥିବ ଧରଣୀରେ ଗଭୀର ବେଦନା ତ୍ରାସ—
କଳାକାଠ ପଡ଼ି ଯାଇଥିବ ମୋ ଅଧର ମୁଖ
ଧରଣୀରେ ମୋରେ କିଛୁ ଲାଗୁଥ ନ ଥିବ ସୁଖ ।

ସେ ଦିନ ସାକ୍ଷାତ ହେଲେ ଗୋଲାପ କଳିକା ପରି—
ତା'ର ଯଉବନ ଅଙ୍ଗୁ ମରି ଯାଇ ଥାଏ ଝଡ଼ି ।
ମୋର ଦୁଃଖ ଜୀବନର ସମସ୍ତ କାହାଣୀ ତାରେ
ନ କହିଲା ଯାଏଁ ଥୟ ରହିତ ପାରେନା ବାରେ,

ଗୋଟିଏ ନିମେଷ ଯେହେତୁ ବଞ୍ଚିନ ତାହାର ବାରେ
ମୋରେ ତା'ର ଅନୁଭବେ ନ ଆଣିଚି ଏ ସଂସାରେ

ଏବେ ସିନା ଦେଖିନି ମୁଁ ତା'ରେ ବହୁଦିନ ଧରି
ସେ କି ମୋତେ ଦିନ ରାତି ନଥିବ ନୀରବେ ସ୍ମରି !
ସାଥୀ କରି ଜୀବନର କାରେ ସେ ନଥିବ ନେଇ,
ତା' ଆଖିରେ ପ୍ରାଣବନ୍ତ ଦିଶୁ ତ ନ ଥିବେ କେହି !

ଏବେ ମଧ୍ୟ ରହିଥିବ ସୂର୍ଯ୍ୟମୁଖୀ ପରି ଚାହିଁ,
ଏବେ ମଧ୍ୟ ତା' ଅନ୍ତର କାନ୍ଦୁଥିବ ମୋହ ପାଇଁ ।
ଯେଉଁଆଡ଼େ ଚାହୁଁଥିବ ଦିଶୁଥିବ ଛାୟା ମମ
ଖୋଜୁଥିବ ପାଇବାକୁ ମୋ ବାହୁର ଆଲିଙ୍ଗନ !

ନୟନେ ନୟନ ତାଳି ଦେବା ପାଇଁ କଥାଭାଷା
ବୁକୁ ତଳେ ଜାଗୁଥିବ ତା'ର କି ଅଦମ୍ୟ ଆଶା !
ଗୋଟିଏ ନିମେଷ ଖାଲି ବକ୍ଷେ ବକ୍ଷ ଦେଇ ତାଳି,
ପ୍ରାଣବାୟୁ ଉଡ଼ିଯାନ୍ତା ଏ ମହା ଧରଣୀ ଛାଡ଼ି —

ଭାଳୁଥିବ ବାରବାର ବସି କେଉଁ ଅନ୍ଧକାରେ,
ନିଜ ବିନୁ ଆନ କେହି ଜାଣୁ ତ ନ ଥିବେ ବାରେ ।
ତାର ଦେହ ମନ ପ୍ରତି ରେଣୁରେ ରେଣୁରେ ମମ
ଏ ଜୀବନ ଜାଗୁଥିବ ହୋଇ କିବା ଅନୁପମ !

ମୋ ପାଇଁ ସେ ରଖୁଥିବ କେତେ କାହିଁ ସ୍ୱପ୍ନପୁରୀ
ଦିବା ନିଶି ମୋହ ପାଇଁ ନିତି ହେଉଥିବ ଝୁରି !
କେତେ ଝଡ଼ କେତେ ବାତ୍ୟା ଭେଦି ମତେ ଥିବ ଚାହିଁ
କେଉଁଠି ସେ ରହିଥିବ ବକ୍ଷ ଖାଲି ମୋହ ପାଇଁ ।

ପୃଥିବୀର କେଉଁପାରେ ଅଛି ଏ ଜୀବନ କହ !
ଅନ୍ତର ଅନ୍ତର ସହ ମାଗେ ଯହିଁ ପରିଚୟ !
ପୃଥିବୀର କେଉଁପାରେ ଅଛି ଏଇଭଳି ଦେଶ
ଜଣେ ପାଇଁ ଆନ ଯହିଁ ଢାଳେ ଅଶ୍ରୁ ଅହର୍ନିଶ !

ପୃଥିବୀର କେଉଁ ପାଟର ଅଛି ଏଇଭଳି ଥାନ
ଅନନ୍ତ ସେନେହ ଯହିଁ ବାନ୍ଧ ପାରିବ ଏ ପ୍ରାଣ !
ପୃଥିବୀର ସେଇ ପାରେ ଯିବ ମୁହିଁ ଯିବ ଉଡ଼ି
ଯେଉଁଠି ମୋ ପାଇଁ କଏ ବିରହିନ ହୁଏ ଝୁରି !

ପୃଥିବୀର ସେଇ ପାରେ ମୋ ରାଇଜ ମୋର ଘର
ଯେଉଁଠି ମୋ ଅଶ୍ରୁମାଗେ ଅଶ୍ରୁ ଆନ ନୟନର !

—୦—

# ଭ୍ରମର ଆଶେ

ସେନେହ କାହାଠୁ ପାଇନାଇଁ ବୋଲି ସିନା,
ଭ୍ରମରେ ଗୁହୁଁରି ଏତେ ଥର ଥର କରି,
ଏ ବୁକୁର ପ୍ରତି ଶିରାରେ ଶିରାରେ ତମେ
କ ମିଠା ପୀୟୁଷ ଦେବ ଗୋ ରୂପସି ଭରି
ଏ ମହା ବିରାଟ ବସୁନ୍ଧରାର ପରେ,
ତୁମଠୁ ଦୃଷ୍ଟି ଫେରାଇ ପାରୁନି କାହିଁ,
ସେନେହ ନୟନେ ଗୁହିଁବନି ମତେ ଥରେ ?
ହୃଦୟ ବେଦୀରେ ଭଲେ ବସାଇବ ନାଇଁ !

ସମ୍ରାଟ ସମ ଗଉରବ ମୋର ନାଇଁ,
ଧନ ଦଉଲତ କ୍ଷମତା ଆଡ଼ମ୍ବର,
ସବୁଥିରୁ ମୁହିଁ ବଚ୍ୟୁତ କାଲ କାଲ,
ମହା ସଂସାରେ ମୁହିଁ ଦରିଦ୍ରତର;
ଗଗନ ଚୁମ୍ବୀ ହର୍ମ୍ୟ ମୋହର ନାଇଁ
ନାଇଁ ବେଶଭୂଷା ନାଇଁ ପଦ ମର୍ଯ୍ୟଦା,
କିନ୍ତୁ ରଖିଛି ଭ୍ରମର ପାଇଁ ମୁଁ ସଖି !
ଗୋଟିଏ ମରମ ସେନେହ ଆର୍ଦ୍ର ସଦା !!

ଯେତକ ଦେଖୁଚ ସେତକ ହେଉଚ ମନ,
ଏକାନ୍ତେ ଦେବ ଚୁମ୍ବନ ଓଠେ ତବ,
ପ୍ରେମିକ ଠାଣିରେ ତୁମର ନୟନେ ଚୁହିଁ,
କହିବ ତୁମେ ମୋ ଶ୍ରେୟ ଯେ ଗଉରବ !
ଯେତିକ ଦେଖୁଚ ସେତିକ ବକ୍ଷତଳେ
ଗଭୀର ପିପାସା ବାର ବାର ଉଠେଜାଗି,
କହିବ ମୁଁ ତୁମ ଯୋଗ୍ୟ ନହେଲେ, ହେଲେ
ଚିରଦିନ ତୁମ ରୂପର ମୁଁ ଅନୁରାଗୀ !

ଯେତିକ ଦେଖୁଚ ସେତିକ ମୁଁ ଆଜ ଭଲେ,
ତୁମଭଳି ମୋର କିଶୋରୀ ନ ହେଲେ ସାଥି,
ଏ ମହା ଧରାରେ ବଞ୍ଚି ରହିବ କିନା,
ଚିରଦିନ କର ପଥର ମୋର ଛାତି !
ଏତେ ଚଞ୍ଚଳ ଏତେ ମୁଁ ଅଧୀର ହୁଏ,
ବୁଝୁ ତି ମୋରେ ନିଅନ୍ତ ବୋଲି ଥରେ !
ତୁମ ଲାବଣ୍ୟେ ବୁଡ଼ି ରହନ୍ତୁ ବୋଲି
ମଧୁ କଳ୍ପନା କେତେ ମୁହିଁ ନାଇଁ କରେ ?

ଦେଖୁଚ ତୁମର ନବ ଯଉବନ ତନୁ,
ବିଦ୍ୟୁତ ସମ ଦିଶେ ଯାହା ଝଲମଲ,
ଦେଖୁଚ ତୁମର ମୁଖର ଗଠନ କଳା
ଚୁହିଁଲେ ପାଷାଣୁ ଉଠିବ କବିତା ଝର ।
ତୁମରି ଭିତରେ ତୁମରି ଭିତରେ ମୁହିଁ,
ଚିର ଦିନ ରହି ଗାଇବଇଁ ମଧୁଗାନ;
ମନା କର ନାଇଁ ମନା କର ନାଇଁ ମତେ,
ଅନ୍ତରେ ତବ ଦିଅ ମତେ ସଖି ଥାନ

ମୋ ବୁକୁ ଭିତରେ କାନ୍ଦୁଚି କିଏ ଜଣେ,
ତୁମର ପୀରତି ପାଇବାକୁ କାଳ କାଳ;
ତାହା ଚହୁଁ ବଳି କିଏ ତୁମ ଏତେ ପ୍ରିୟ ?
କିଏ ଅଛି ଏତେ ପ୍ରାଣଭରା ସମ୍ଭାର ?

ଯିଦ୍ କରି ମୁଁ ପାରିବ ପାରିବ କହିବ,
ମୋ ଶୋଣିତ ପ୍ରତି ବିନ୍ଦୁରେ ଅନୁଭବ,
ତୁମକୁ ଭୁବନେ ମୁଁ ଯେ ଭଲ ଦେଖିପାରେ,
ତୁମ ପାଇଁ କେହି ଉଠେନି ସେଭଳି ଦ୍ରବି !

ମୋର ପ୍ରତି ଇନ୍ଦ୍ରିୟେ ତୁମେ ଖାଲି ଟଳ ଟଳ !
ତୁମ ପାଇଁ ଏତେ ମମତା ମୋ କାହିଁ ଆସେ ?
ସୁନ୍ଦର ତୁମେ ! ସୁନ୍ଦର ! ସୁନ୍ଦର !
ଚିର ଦିନ ମୁହିଁ ରହିବି ତୁମରି ଆଶେ !

—୦—

# ଗୋପନେ ଗୋପନେ ଗୁହିଁ ରହିଲେ

ମୋ ରକତ ମାଉଁସର ତଳେ ତଳେ କିଏ ସେ
ଚଞ୍ଚଳ ହୋଇ ଉଠେ
ମଧୁଛିକ ପାଇଁକି !
ଦେଖି ଯାଏ, ଗୁହିଁ ଯାଏ, ମାଗି ଯାଏ ଗୋପନେ,
ଓଠ ଫେଇ କହି ପାରେ ନାହିଁ କହ କାହିଁକି ?
ଗୋପନେ ଗୋପନେ ଖାଲି ନିତି ଗୁହିଁ ରହିଲେ
ତଥାପି ତ ମଧୁ ଧାରା ଝରି ଆପେ ପଡ଼ିଲେ !

ଆସେ ସେହି ଓଠ ତଳୁ ଆଖି ତଳୁ
ଦେହ ଓ ମନର ପ୍ରତି ରେଣୁରୁ,
ଅସୀମର ରୂପ ଧରି
ବିମୁଗ୍ଧ କରି କରି,
ଉଡି ଯାଏ ବନ୍ଧନ ଉଡିଯାଏ ମାୟା ଯେ !
ମୋ ଭିତରେ ମୋ ବାହାରେ ଖେଳି ବୁଲେ
ସରଗର ଛାୟା ଯେ,

ସୁନ୍ଦର ମଧୁମୟ ଏ ଭୁବନେ ଭରି ଯାହା ଅଛଇ
ଅମୃତମୟ କରି ଜୀବନକୁ ନିତି ନିତି ରଚଇ
ତା' ପରଶେ ଫୁଟି ଉଠେ
ରୁକ୍ଷ ଶିଳାରେ ସଜପଦ୍ମ;
ଖୋଲିଯାଏ ଯେତେ ଯାହା ଛଦ୍ମ;
ଗ୍ଲାନି ସେହୁ ଗ୍ଲାନି କିବା ନିଖିଳର ଚିତ୍ତରେ
ଆପଣାକୁ ଗଭୀରବେ ଫୁଟାଇ
ଯେତେ ଯାହା ଭ୍ରାନ୍ତି ଓ କଳୁଷ ନିତି ନିତି ତୁଟାଇ ।

କହିବାକି କହିବାକି ଅକୁହାରେ ପାଉଥିବା
ସେନେହ ଓ ସୁହାଗର ବିମୋହନ ଝଙ୍କାର ଗୋ !
ଅଜଣାରେ ନେଉଥିବା ଚିରଦାନ ନିଜରୁ—
ନିଜର ମୁହିଁ କରି ଗୋ !
ଅଦେଖାରେ ଦେଉଥିବା ଚୁମ୍ବନ ଶତ ଶତ
ଗଢ଼ୁଥିବା ସୀମାହୀନ ସପନର ମୂଳକ
ଭରି ଏଇ ଗୋଲକ !
ଅଦେଖା ଓ ଅଜଣାରେ ସୀମାହୀନ ମିଠା ଗୋ !
ତୃପ୍ତିର ଶେଷ ନାହିଁ ତହିଁରେ !
ଚିରି ଦାନ ଚଞ୍ଚଳ ନିର୍ମଳ ସୁନ୍ଦର ଦିଶୁଥିବା ମୁହିଁ ଗୋ !
ତା'ରେ ଗୋପନେ ଗୋପନେ ଗୁହିଁ ରହିଲେ !

—o—

# ଅଦ୍ୱିତୀୟା

ପ୍ରଥମେ ପ୍ରଥମେ ମୁହିଁ ଯେତେବେଳେ
ଏଇ ପଥଧାରେ ଭ୍ରମରେ ଗୁହେଁ,
ପ୍ରଭାତୀ ଆକାଶ ଅରୁଣିମା ପରି
ଅନ୍ତର ମୋର ପୁଲକ ଯାଏ !
ଥରି ଥରି କରି ଗୁହେଁ କେତେ ଥର
କେତେ ଯେ ତୃପ୍ତି ପାଏ ଅବିରଳ,

ତୁମରି ରୂପର ବନ୍ଦନା ଗୀତ ଆରବେ ଗାଏ
ପ୍ରଭାତ ଆକାଶ ଅରୁଣିମା ପରି
ଅନ୍ତର ମୋର ପୁଲକ ଯାଏ !

ତୁମେ ମତେ ଚାହିଁ, ମୁଁ ତୁମରେ ଚାହେଁ,
କେତେ ଦିନ ଗଲା ଏଭଳି ଚାଲି
ଚିତ୍ତ ବଳିଲା ହୃଦୟ କବାଟ
ଖୋଲି କହିବାକୁ ପଦଏ ଖାଲି
ମନର ବାସନା ରହି ମନେ ମନେ
ଉଚାଟ ମୋରେ କଲା ପ୍ରତିକ୍ଷଣେ !
ଗୋଳ ହୋଇ ଯିବ ତୁମଠି ପ୍ରାଣର ଆବେଗ ଢାଳି,
ଚିତ୍ତ ବଳିଲା ହୃଦୟ କବାଟ—
ଖୋଲି କହିବାକୁ ପଦଏ ଖାଲି !

ପ୍ରଥମେ ସେ'ଦିନ ଏ ଅଧର ମୋର
ଫୁଟିଲା ଗୋ ବାଣୀ ତୁମରି ଲାଗି,
ମନେ ଅଛି ମୋର ଅଙ୍ଗେ ଅଙ୍ଗେ
ରୋମାଞ୍ଚ କିବା ଉଠିଲା ଜାଗି !
କେତେ ଯେ ସ୍ୱପ୍ନ କେତେ ଦିନ ଧରି
ଅନ୍ତରେ ଥିଲି ତୁମ ପାଇଁ ଭରି,
କିଛି ଫୁଟିଲାନି ପାରିଲାନି କିଛି ମାଗୁଣି ମାଗି ।
ମନେ ଅଛି ମୋର ଅଙ୍ଗେ ଅଙ୍ଗେ
ରୋମାଞ୍ଚ କିବା ଉଠିଲା ଜାଗି !

ସେନେହ ନମ୍ର ନୟନ ଯୁଗଳେ—
ଚାହିଁ ଥାଏ, ଭାଷା ରୁଦ୍ଧ ହେଲା,
ତାହାରି ଭିତରେ କୋଟି ସମ୍ପଦ
ତୁମରି ଭିତରୁ କିଏ ସେ ଦେଲା ।
ଚାହାଣୀରୁ ମୋର ବୁଝି ନେଲ ଖରି
କି ଭାଷା ଜାଗଇ ମୋର ବୁକୁତଳେ,
ସେ'ଦିନୁ ମୋ ଲାଗି ଅନ୍ତର ତବ ରଖିଲ ଖୋଲା
ତାହାରି ଭିତରେ କୋଟି ସମ୍ପଦ
ତୁମରି ଭିତରୁ କିଏ ସେ ଦେଲା !

ପ୍ରାଣର ବେଦନା ହୃଦୟ ଆବେଗ
ମରମର ଭାଷା ଫୁଟିଲ ଛମେ
ଜୀବନର ସବୁ ସଞ୍ଚିତ ଶିଖା
ଢାଳିଦେଲି କିବା ସୋହାଗ ମନେ !
ପାରିଲ ତ ଫୁଟି ହେ କଣେଶ ବଧୂ
ପିଇବାକୁ ତୁମ ଅନ୍ତର ମଧୁ—
ଜାଗ୍ରତ ଏଇ କଣେଶର ଭୃଙ୍ଗ କି ଉନ୍ମନେ !
ଜୀବନର ସବୁ ସଞ୍ଚିତ ଶିଖା
ଢାଳି ଦେଲି କିବା ସୋହାଗ ମନେ !

ତୁମ ତହୁଁ ବଳି ପ୍ରାଣର ଦଇନି
ଏ ଧରଣୀ ପରେ ଫୁଟିବା ପାଇଁ,
ଦେଖୁଛ ଜାଣୁଛ ହେ ମୋ କଲ୍ୟାଣି !
ମୋର ହୋଇ କେହି ବିଶ୍ୱାସ ନାଇଁ ;
କେଉଁ ମରୁଭୂଇଁ ବାଲି ଶେଯ ତଳେ,
ଲୁହ ମୋହର ସଖି ! ହଜିଗଲେ,
ତୁମର କରର ଆଘାତେ ଉଠିବ ଜୀବନ ପାଇ,
ଦେଖୁଛ ଜାଣୁଛ ହେ ମୋ କଲ୍ୟାଣି
ମୋର ହୋଇ କେହି ବିଶ୍ୱାସ ନାଇଁ !

———

# ପ୍ରିୟତମା

ତାରେ ମୁଁ କହିବ ପ୍ରାଣ ପ୍ରେୟସୀ ମୋ
ତାରେ ମୁଁ କହିବ ଜୀବନ ସାଥୀ,
ମୋରେ ଗୁହାଁ ଦେଲେ କୋଟିଏ ଗବେ
ଫୁଲ ଉଠେ ଯାର କନକ ଛାତି ।
ତାରେ ମୁଁ ଡାକିବ ପ୍ରିୟତମା ମୋର
ଅନ୍ତର ସବୁ ସେନେହ ଦେଇ,
ମୋହ ବନ୍ଧୁ ଯାର ଅନ୍ତର ତଳ
ପୂର୍ଣ କରିବ ତରୁଣ କେହି !

ତା'ରେ ମୁଁ କହିବ   ଅନ୍ତର କଥା
ହୃଦୟୁ ବେଦନା ବୁଝିବ ସିଏ,
ମତେ କେ କାନ୍ଦା   ଦେଲେ ଯା' ବକ୍ଷ
ଅଶ୍ରୁରେ ମଗ୍ନରେ "ଏଭଳି କଏ ?"
ମୋ ଆଖି ଅଶ୍ରୁ   ପୋଛି ଦେବ ଏକା
ସେ ବର ବଧୂର କନକ କର,
ମୋର ବେଦନାରେ ବେଳେବେଳେ ଯେହୁ
ଶୁଣିଚ, ଛୁଇଁନ ଅନ୍ନଜଳ !

ତାରେ ମୁଁ କରିବ   ପ୍ରାଣ ପ୍ରିୟତମା
ଅନ୍ତର ମୋର ତାହାରେ ଲେଡ଼େ,
ମୃଦୁ ମୃଦୁ ହାସ   ଓଠରେ ଯାହାର—
ଫୁଟେ, ମୋରେ ଚୁହିଁ ନୟନ ଡୋଳେ !
ତାରେ ମୁଁ କରିବ   ପ୍ରାଣ ପ୍ରିୟତମା
ଭିଡ଼ିବ ବାହୁ ତା ସ୍ୱର୍ଣ୍ଣଗଳେ,
ଯହିଁ ଥିଲେ, ଗଲେ,   ମୋର ଗନ୍ତବ୍ୟ
ଯା ମାଳ ନୟନ ଲକ୍ଷ୍ୟ କରେ ।

ତାର ଅନ୍ତରେ   ଗୋଳ ହୋଇଯିବ
ପିଇ ତା' ଅଧରକାଦମ୍ବରୀ
ଯେ ନବ ଛଇଳା   ଦାମିନୀ ପରାଏ
ଝଟକ ଉଠଇ ମତେ ସ୍ୱର;
ତାହାର ପରଶେ   ପୁଷ୍ପ ଫୁଟିବ
ମୋହର ଜୀବନ ଯାତ୍ରା ପଥେ,
ପୃଥିବୀ ଉପରେ   ତାହା ତହୁଁ ବଳି
ଦେଖ ପାର ନାହିଁ କଏ ସେ ମତେ !

ତାହାରେ କରିବ   ପ୍ରାଣ ପ୍ରିୟତମା
ପଡ଼ୁ ବନ୍ଧନ ଅସୀମତର,
ଯାହା ନୟନେ ମୁଁ   ପୃଥିବୀ ବକ୍ଷେ
ସବୁ ସମ୍ପଦୁ ଅଟଇ ବଡ଼ !
ମରମର ଅତି   ନିଭୃତ ଥାନେ
ମୋରେ ଯେ ରଚିଚ ସେନେହ ବାଡ଼ି,
ପୃଥିବୀର କେଉଁ   କୁଞ୍ଜ ମୋ ଲଗି
ଏତେ ସୁନ୍ଦର ତାହାରେ ଛାଡ଼ି !

ତାହାରେ କରିବ        ପ୍ରାଣ ପ୍ରିୟତମା
  ଯାଚି ଯାଚି ପିଏ ସେନେହ ଦେଲା,
ବୁକୁତଳେ ଯା'ର        ରସର ପୟୋଧି
  ଊର୍ମି ନଚ୍ଚଇ କରଇ ଖେଳା !
ସାଗର ପରି ତା'        ଉଚ୍ଛୁଳା ବୁକୁରେ
  ଜ୍ୟୋତ୍ସ୍ନା ଆକାଶ ପରି ମୁଁ ଢଳି,
ଯୁଗ ଯୁଗ ତାରେ        ପାଉଥିବ ଭଲ
  ହବୁ ସମ୍ପଦ ତାହାଠି ଭରି !

———

# ପ୍ରଥମ ପରିଚୟେ

ନିର୍ଜନେ ସେଇଦିନ ମଳୟ କରୁଥିଲା ଅଥୟ ମନ,
ସୁଦୂର ବନଭୂଇଁ ଭିତରୁ ଶୁଭୁଥିଲା କୋଇଲି ସ୍ୱନ !

କଅଁଳ ହାତ ଦୁଇ ସରାଗେ ଦେଲି ଛୁଇଁ କହିଲି ସତେ,
ପଦିଏ କଥା ତମେ ନିଜର କରିନାଇଁ କହିବ ମତେ ?

ମୋରେ ଗୋ ପ୍ରିୟ କରି ନେବ କି ନାଇଁ ବରି କହୁନ କିଆଁ ?
ମୋ ହୃଦ ତନ୍ତ୍ରୀରେ ତୁମେ ଗୋ ଝଙ୍କୃତ ଷୋଡ଼ଶୀ ପ୍ରିୟା !
ବିଜୁଳି ପରି ତାର କପାଳ ଝଟକିଲା; ମୋ ଦେହ ଛୁଇଁ
କହିଲା ତୁମ ବନ୍ଧୁ ବଡ଼ କେ ମୋ ଆଖିରେ ଦିଶୁନ ନାଇଁ !

ସେ ଦିନ ସେଇ ପଦ ମୋ ପ୍ରାଣ ସମ୍ପଦ ପଡ଼ଇ ମନେ
ସେ ମୋରେ ଯାହା ଦେଲା ନାହିଁ ତା' ପ୍ରତିଦାନ ମୁଁ ଖାଲିମଣେ !

ମୋ ବନ୍ଧୁ ତାର କେହି ଧରଣୀ ତଳେ ନାଇଁ ଏଭଳି ବଡ଼,
କହିଚି ତା'ର ସେଇ ବିରାଟ ଅନ୍ତର ମଧୁର-ତର !

କହିଚି ଓଠ ତାର, କହିଚି ଆଖି ତାର କହିଚି ମତେ,
ମୋ ବନ୍ଧୁ ବଡ଼ କେହି ଦିଶେନି ତା'ରେ ଏଇ ଧରଣୀ ପଥେ ।

ମୁଁ ତାକୁ ଭଲ ପାଏ ମୁଁ ତାକୁ ଭଲ ପାଏ ନିଜର କରି,
ମୁଁ ତାକୁ ଦିଏ ମୋର ହୃଦୟୁ ସବୁ ଟିକ ପୀୟୁଷ ଭରି !

ମୁଁ ତାକୁ ଜାଣେ ଖାଲି ମୁଁ ତାକୁ ଜାଣେ ଖାଲି ମୋ ଗଉରବ,
ମୁଁ ତାକୁ ଦେଖେ ଖାଲି କଭଳି ସୁନ୍ଦର କି ଅଭିନବ !

ମୁଁ ଖାଲି ଶୁଣେ ତାର ଓଠର ହାସ ଆଉ ବୁକୁର ବାଣୀ
ମୁଁ ତାକୁ ଡାକେ ଖାଲି ଜୀବନ ରାଣୀ ମୋର ହୃଦୟୁ ରାଣୀ;

ମୁଁ ଖାଲି ଲୋଡ଼େ ତାରେ ମୁଁ ଖାଲି ଲୋଡ଼େ ତାରେ ଧରିରେ ନିତି
ମୁଁ ଖାଲି ଦିଏ ତାରେ ମୋ ହୃଦ ସୀମାହୀନ ସେନେହ ପ୍ରୀତି !

————

# ପାଗଳ

ମୋ ଲାଗି ସନ୍ଦେଶ ଦେଇଚ ତମେ
ମତେ ଯେ ରଖିଅଛ ମନେ,
ସୁଦୂର ଜଳ ବଣ ପାହାଡ଼ ପାରେ
ମୋହର ହୋଇଅଛ ଜଣେ !
ତୁମରେ ଦେଇନି ମୁଁ ଖବର ମୋର
ତୁମରେ ଯାଇଚି ମୁଁ ଭୁଲି;
ମୋହଠୁ ତୁମ ହୁଆ ବରାଟ କେଉଁ
ପାରନି ତୁମେ ମୋରେ ଗୁଡ଼ି !

ତୁମରେ ଗୁଡ଼ୁଛି ମୁଁ ନିଠୁର ହୋଇ
ନିଠୁର ତୁମେ ହୋଇନାହଁ,
ତୁମରେ ଖୋଜନି ମୁଁ ଖୋଜଚ ମୋରେ
ନଇତ ପାଗଳମି ପ୍ରାୟ !

ଜୀବନେ ତୁମେ ମୋରେ ସେନେହ ଦେଇ,
ଆଦର ଦେବାପାଇଁ ଲୋଡ଼,
କଠିନ ପାଷାଣ ମୁଁ ତୁମର ଲଗି
ସେନେହ କାହିଁ ଅବା ମୋର

ମୋହର ଲଗି ତୁମେ ରହିଚ ଫୁଟି
ଗନ୍ଧ ଠୂଳ କରି ବୁକେ,
ମୋହରେ ସୁଖୀ କରି ଧରଣୀ ତ
ରହିବ ବୋଲି ମହା ସୁଖେ;
ତୁମର ସୁଖ ଶିଖ ସୋହାଗ ଲଗି
ଚିନ୍ତା କରିନି ମୁଁ ବାରେ,
କେଡ଼େ ମୁଁ ପ୍ରାଣହୀନ କଠିନ ଜୀବ
କି ଲଗି ବଞ୍ଚିଚ ହାରେ !

ତୁମେ ତ ଗୃହିଁ ଅଛ ଆକୁଳ ମନେ
ମୋହର ସନ୍ନିଧି ଟିକ,
ତୁମେ ତ ବୁକୁ ପାତି ସୋହାଗଭରେ
ମାଗୁଚ ମତେ କେତେ ଭିକ;
ବଧିର ପରି ମୁହିଁ ଗ୍ଭଲିଚ କେଣେ
ପାରିନି ଶୁଣି ତୁମ ବାଣୀ,
ତୁମେ ତ ରାଜା ମୋରେ ପାଶିଚ କରି
କରିନି ତୁମରେ ମୁଁ ରାଣୀ !

— — —

# ପ୍ରେମ ଓ ପ୍ରାଣ

ତୁମର ନୟନେ ଯେବେ ଗୁହଁ ରହେ ବାର ବାର,
ସବୁ ଦୁଃଖ ଅବସାଦ ଭୁଲିଯାଏ ପ୍ରାଣ ମୋର ।

ତୁମର ଅଧରୁ ଯେବେ ଶୁଣଇ ଅମୃତ ଭାଷା,
ପଲ୍ଲବି ଉଠଇ ମୋର ଜୀବନ ଅନନ୍ତ ଆଶା ।

ତୁମର ସେନେହ ଯେବେ ଅନୁଭବେ ଥରେ ଥରେ
ନିଖିଳ ଧରଣୀ ଯେହ୍ନେ ସରଗ ଲଗଇ ମୋରେ ।

ତୁମ ସ୍ୱର୍ଣ୍ଣ ବାହୁଲତା ପାଶେ ଯେବେ ବନ୍ଧା ଥାଏ,
ମନ ବିନୋଦନେ କିବା ମୋହନ କବିତା ଗାଏ !

ମୋରେ ଗୃହିଁ ତୁମେ ଯେବେ ବେଳେ ବେଳେ ହସି ଦିଅ,
ନିଖିଳ ଜଗନ୍ତ ଭରି ସକଳ ଲଗଇ ପ୍ରିୟ !

ଯେବେ ଗୋ ! ନିଠୁର କରି ଚରଣେ ଆଡ଼େଇ ଦବ,
ଲୁଚିଯିବ ନିମିଷକେ ମୋ ପ୍ରଣୟୀ ଗଉରବ !

---

# ବନ୍ଧନ କର ମତେ

ମୁଁ ଗୋ ! ଗୃହେ ଖାଲି ବନ୍ଧନ ତୁମ ତୁଲେ,
ଥାଏ ପଛେ କାହିଁ ସୀମାହୀନ ବହୁ ଦୂରେ;
ବନ୍ଧନ ସେ ଯେ ନିବିଡ଼ୁ ନିବିଡ଼ ଅତି,
ନ ଥିବ ତହିଁରେ ଦୁନିଆର ଲାଭ କ୍ଷତି;
ଆପଣାରୁ କଳି ଆପଣାର କରି
ରଖିଥିବ ମୋର ମନ ମନ୍ଦିର ପୁରେ,
ମୁଁ ଗୋ ଗୃହେଁ ଖାଲି ବନ୍ଧନ ତୁମ ତୁଲେ !

ଜ୍ୟୋସ୍ନା ରାତ୍ରରେ ବୁଲୁଥାଏ ଯେବେ ଚଟିଳା ସିକତା ମାଡ଼,
ଧୂସର ପାହାଡ଼ ଚୂଳ୍ଡ ଶୁଭୁଥାଏ,
ଚକ୍ରବାଳର କରୁଣ ବିରହ ବାଣୀ
ମରମେ ମରମେ ବନ୍ଧା ଦୁଇଟି ପ୍ରାଣୀ;
ଜଣେ ଜଣକରେ ଲୋଡ଼ଇ ଆକୁଳେ,
ଜଣେ ଜଣେ ପାଇଁ କେତେ ନାଇଁ ଝୁରେ !
ସେଇପରି ମୁହିଁ ଝୁରୁ ହେଉଥିବ,
ମରିବେ ତୁମରି ଲାଗି,
ଯହିଁ ରହୁଁଥିବ, ତୁମରି ସ୍ୱରୂପ-
ଉଠିବ ନୟନେ ଜାଗି;
ମୁଁ ଗୋ ସ୍ନେହେ ଖାଲି ବନ୍ଧନ ତୁମ ତୁଲେ;
ଥାଏ ପଛେ କାହିଁ ସୀମାହୀନ ବହୁ ଦୂରେ ।

ବନ୍ଧନ କର ! ବନ୍ଧନ କର ! ବନ୍ଧନ କର ମୋରେ,
ତୁମ ଅନ୍ତର ଅନ୍ତର-ତମ ଡୋରେ;
ଆକାଶ ଧରଣୀ ପ୍ରତି ରେଣୁ ସହ,
ସେଇ ବନ୍ଧନ ଜାଗୁ ଅହରହ,
ବନ୍ଧନ କର ! ବନ୍ଧନ କର ! ଡାକେ ମୋ କୁଟୀର ପୁରେ,
ମୁଁ ଗୋ ସ୍ନେହେ ଖାଲି ବନ୍ଧନ ତୁମ ତୁଲେ;
ଥାଏ ପଛେ କେଉଁ ସୀମାହୀନ ବହୁଦୂରେ !

— — —

## ଟିକିଏ ପରଶ

ଟିକିଏ ପରଶ ମୋ ପାଇବ ଯେବେ ଜାଣି
ସେ ଟିକ ସବୁ ମୋର ଧରିବରେ ଆଗୋ ରାଣି !
ପରାଣ ତଳେ କେଉଁ ଅତଳ ପାରିବାରେ,
ଉର୍ମି ଟିଏ ଯେବେ ମୋ ଲାଗି ଉଠି ପାରେ,
ସେଥିରେ ପାଇବ ମୁଁ ସକଳ ସାଧନାର—
ସରଗ ଦୁର୍ଲ୍ଲଭ—ବିପୁଳ ସମ୍ଭାର !

ଜୀବନ ପଥ ପରେ କେ କେତେ ଯିବେ ଆସି
ପାରିବେ ନାହିଁ କେହି ଏ ହିଆ ଉଲ୍ଲାସି,
ନୟନ ତଳୁ କେତେ ଅଶ୍ରୁ ଯିବ ବୋହି,
ଗୋଟିଏ ବିନ୍ଦୁ କେ ପାରିବେ ନାହିଁ ଧୋଇ;
ତୁମରି ସମ୍ପଦ ନଦେଇ ଦେଲ ଯାହା,
ନିଃସ୍ୱ ପଥେ ମୋର ହେବ ସେ ଚିର ସାହା !
ଟିକିଏ ପରଶ ମୋ ପାରିଚ ଯେବେ ଜାଣି
ସେ ଟିକ ସବୁ ମୋର ଧରିରେ ଆଗେ ରାଣୀ !

—*—

## ତୁମ ତୁଲେ

ତୁମ ତୁଲେ ଦେଖନ୍ତି ମୁଁ ନବ ସୂର୍ଯ୍ୟୋଦୟ
ତୁମ ତୁଲେ ବୁଲନ୍ତି ମୁଁ ବିଲ ବନ ପାହାଡ଼ କନ୍ଦର,
ତୁମ ତୁଲେ ହସି ଖେଳି ଯାଆନ୍ତି ସଞ୍ଚରି
 ଜ୍ୟାସ୍ନା ପାରାବାରେ,
ତୁମ ତୁଲେ ଶୁଣନ୍ତି ମୁଁ ବିହଗର ମଧୁ କଣ୍ଠ ତାନ,
ତୁମ ତୁଲେ ଏଇ ଶ୍ୟାମ ବନ କୁଞ୍ଜ ତଳେ
କରନ୍ତି ମୁଁ ମଧୁ ଆଳାପନ !

ତୁମ ତୁଲେ ବସି କେଉଁ ସୁନେଲି ସନ୍ଧ୍ୟାରେ
ଦୂରତର ଶ୍ୟାମ ଘାସ-କ୍ଷେତେ,
ଶୁଣନ୍ତି ମୁଁ ନଈ କଳତାନ,
ତୁମ ତୁଲେ ଆକାଶର ଏଇ ମହାନୀଳିମାରେ
ଯାଆନ୍ତି ମୁଁ ମିଶି
ତୁମ ତୁଲେ ଏଇ ସ୍ୱର୍ଣ୍ଣ ମେଘମାନେ
ଉଡନ୍ତି ଉଦାସୀ ।

ତୁମ ତୁଲେ ସାଗର ବେଳାରେ ବସି
ଦେଖନ୍ତ ମୁଁ ସୀମାହୀନ ଜଳଊର୍ମି ଲୀଳା
ତୁମ ତୁଲେ ଟିପି ଟିପି ଗୋଧନ ଟିପାର
ସେ ଅବୋଧ ମଧୁବୋଳା ବାଣୀ
ଶୁଣନ୍ତ ମୁଁ କାନ ପାତି,
ଆହୁର ମଧୁର କେତେ ଲଗୁଥାନ୍ତା ଗଣି !

ତୁମ ତୁଲେ ବସି କେଉଁ ଗଛ ଗୁଇ ତଳେ
ବିତାଇ ଦିଅନ୍ତ ସଖି ! ଘାସ୍ତ ଦ୍ୱିପ୍ରହର
ସୁଦୂରୁ ସୁରଭି ଧରି ମନ୍ଦର ମଳୟ
ବହି ଆସୁଥାନ୍ତା ହୋଇ ଚଞ୍ଚଳ ଅଥୟ !
ସୀମାହୀନ ରୂପରସ ଗାନର ମହା ସ୍ୱପ୍ନ ପୂରି
ଏ ବିରାଟ ବସୁନ୍ଧରା ପରେ
ସମସ୍ତ ମୁହୂର୍ତ୍ତ ମୋର ତୁମ ତୁଲେ—
ନେବାକୁ ବିତାଇ ମୁହିଁ ଇଚ୍ଛା କରେ ।

ହୃଦୟର ସାଥି ବିନେ, ବନ୍ଧୁ ବିନେ
ଜୀବନର ମିଠା କାହିଁ ହୁଏ ଅନୁଭବ ?
କେତେ ପ୍ରାଣହୀନ ଲାଗେ—
ବ୍ୟୋମ ବସୁନ୍ଧରା ଭର
ଯେତେ ଯେତେ
ଆନନ୍ଦର ଅମୃତର ଛବି ! !

—o—

# ଆପଣାର କର ମତେ

ବୁକୁତଳ କଥା ରହିଲା ଏ ବୁକୁତଳେ,
ତମେ ଚାଲଗଲ ପଦ ଚାଳ ତରତରେ ।
ଚାହିଁ ରହିଲି ମୁଁ ଚାତକ ପକ୍ଷୀଟି ପରି;
ଥରେ ହେଲେ ମୋରେ ଚାହିଁବ ଗୋ ! ଅପସର;

ଏ ସରସୀକୂଳେ ତୁମ ପଦ ସଞ୍ଚାର
ମରମେ ଫିଟାଏ ପୁଲକର ଧାରାବାର,
ସନ୍ଧ୍ୟା ଯେ ହେଲା ଦ୍ୱିତୀୟା ଚନ୍ଦ୍ର ବୁଡ଼େ,
ଆଉ ଦେଖିଲିନି ଆଜି ଏ ସରସୀ କୂଳେ;

କାଲି ତ ଆସିବ କାଲି ମୁଁ ରହିବ ଚାହିଁ,
ତୁମରି ମୁହଁର ପଦଏ ବଚନ ପାଇଁ,
ମୋରେ ଯେବେ ହସି ସରମେ କହିବ ବାଣୀ
କୋଟି ଉଲ୍ଲାସେ ଡାକିବ ହୃଦୟରାଣି

ମୋ ମନ ଭିତରେ ତୁମେ ଗୋ ଜହ୍ନର ବାଳା
ପଶ୍ଚିମ ନଭେ କି ଅବା ସାନ୍ଧ୍ୟ ତାରା !
ତୁମରି ନୟନେ ନୟନ ମୁଁ ବାରେ ଭରି
କହନ୍ତୁ ସଖି ! ମୁଁ ନୁହେଁ କି ତୁମରି ?

ତୁମରି ପାଇଁ ମୁଁ ଜୀବନ ସାରଟି ଚାହିଁ
ମୋର ସାଧନାରେ ସିଦ୍ଧି ଯେ ଆସିନାଇଁ,
ତୁମେ ଯେବେ ମୋରେ ନିଠୁରେ କରିବ ଦୂର
ଆସୁଥିବ ପ୍ରତି ନିତି ଏ ସରସୀକୂଳ ।

ସେ କେଉଁ ସବୁଜ କୁଞ୍ଜ ଉଢ଼ାଳେ ରହି
ଚାହିଁବ ତୁମରି ନୀଳ ଭ୍ରୂଲତା ଛବି;
ଦେଖିବ ତୁମରି ବଧୂଳି ଅଧରେ ହାସ
ଦେଖିବ ତୁମରି କେଶପାଶ ବିନ୍ୟାସ ।

ଶୁଣିବ ହେବାର ସଙ୍ଗିନୀ ତୁଟିଲ କଥା
ଦେଖିବ ହଳଦି ଗ୍ଭଳିବାର ଭୂଜଲତା;
ଅଲତା ଚରଣ ମିଳ ଦୁବଘାସେ ପଡ଼ି
ଦେଖିବ କଭଲ ଫୁଟାଏ କୁସୁମ କଳି !

ଆମରଣ ରହ୍ଵ କୁମାର ଗୋ କୁମାରିକା !
ତୁମର ରୂପର କରିବିଇଁ ମୁଁ ଜୀବିକା,
ମୋ ଦେହ ତୁମର ଦେହର ପରଶ ମାଗେ
ମୋ ଆଖି ତୁମର ରୂପ ଗ୍ଭହେଁ ଅନୁରାଗେ ।

ଅନ୍ତର ଗ୍ଭହେଁ ଅନ୍ତରେ ତବ ତଳି
ଫୁଟିବାକୁ ସଜ ବିକଚ କମଳ ଭଳି;
ଧରଣୀ ଆକାଶ ଲକ୍ଷ ସୁଷମା ମେଳେ
ରହ୍ଵିବାକୁ ଲୋଡ଼େ ତୁମର ପ୍ରଣୟ ଖେଳେ ।

ଏ ମାଟି ଉପରେ ତୁମର ଜୀବନ ସହ
ନିତି ମୋ ହୁଅନ୍ତା ନୂଆ ନୂଆ ପରିଚୟ;
କେତେ ଫୁଲ ଫୁଟି କେତେ ଯେ ଝଡ଼ଇ ନାହିଁ
ଏ ଭଳି ଫୁଲ ମୁଁ ନୟନେ ଦେଖିଛ କାହିଁ ?

ପଲ୍ଲୀ-ବାଳିକା ଅୟି ସୁକୁମାରି ସତି !
ବୁଝି କି ପାରିବ କବିର ବେଦନା ଅତି ?
କୁଟୀର ଭିତରେ କବି ଯେ ତୁମର ପାଇଁ
କେତେ ଗ୍ଭଳିହୁଏ ଦିନ ନାହିଁ ରାତି ନାହିଁ ।

କବି ମୁଁ ଲୋଡ଼େ ନା ଧନ ମାନ ବଇଭବ,
କବି ମୁଁ ଗ୍ଭହେଁ ନା କ୍ଷମତାର ଗଉରବ ।
ଗ୍ଭହେଁ ମୁହିଁ ଖାଲି ସପନ ଦୋଳାରେ ଦୋଳି
ପୀରତି କୁସୁମ ନିତି ଯାଉଥିବ ତୋଳି ।

ଗୋପନେ ଗୋପନେ ତୁମରେ ମୁଁ ଭଲପାଏ,
ପଥେ ତୁମ ପାଦ ପଡ଼ିଥାଏ ଯେଉଁ ଯାଏ,
ସେ ପଥ ମାଟି ମୁଁ କପାଳେ ତିଳକ କରି,
କି ସରଗଶିରୀ ଅନ୍ତରେ ନିଏ ଭରି !

ଯିଏ ଯାହା କହୁ ଯିଏ ବା ଯେ ଭଳି ଗୃହୁଁ ।
ମୁଁ ତ ଲୋଡ଼େ ନାହିଁ ସାଧିବି କା ତୁଲେ ଦାଉ ।
ମୁଁ ଗୋ ବସି ଖାଲି ସପନ ଜଡ଼ିତ ରଥେ
କହୁଥିବି ସଖି ! ଆପଣାର କରି ମତେ !

---

# ଛାଡ଼ିଦେଲି

ସାଥୀ କଲି, ବନ୍ଧୁ କଲି, କଲି କେତେ ଆପଣାର,
ଢାଳିଦେଲି ବୁକୁ କାଟି ତୁମ ପାଇଁ ରକ୍ତଧାର;
ଦିନ ଦିନ ଧରି କଲି ତୁମ ମଧୁ କଳପନା,
ତୁମେ ମୋର କେଡ଼େ ବଡ଼ ମୋ ବିନୁ କାହାକୁ ଜଣା ?
ଏବେ ମୁଁ ନିଜର କରି ସଁପି ଦେଲି ମୋର ପ୍ରାଣ
ମତେ କିନ୍ତୁ ଛାଡ଼ି ଦେଲ କରି ସାତ ସ୍ୱପ୍ନମାନ !

ସାଯ୍ୟାହ୍ନେ ମୁଁ ବୁଲୁଥିଲେ ବିଲ ବନ ସଇକତେ
ତୁମକୁ ହିଁ ଭାବୁଥିଲି କେଜାଣି କାହିଁକି ସତେ !
କଳ୍ପନାରେ ତୁମ ତୁଲେ ହେଉଥିଲି କେତେ କଥା,
ହରି ନେଉଥିଲି ମୋର ସଞ୍ଚିତ ଯାବତ ବ୍ୟଥା ।
ବୁଝୁଥିଲି ତୁମେ ମୋର ଏକମାତ୍ର ବରଦାନ,
ମତେ କିନ୍ତୁ ଛାଡ଼ିଦେଲ କରି ସାତ ସ୍ୱପ୍ନମାନ !

ତୁମକୁ କେ ନିନ୍ଦା କଲେ ପାରୁ ତ ନ ଥିଲି ସହି,
କରୁଥିଲି ପ୍ରତିବାଦ ଅସୀମ ସାହସ ବହି ।

ତୁମକୁ କେ ଗ୍ରେଟକରି ଧରିଲେ ଧରଣୀ ଆଗେ,
ଦୁଃସହ ବେଦନା କଥା ମୋର ବୁକୁତଳେ ଜାଗେ !
ମତେ ଭଲ ଲାଗୁଥିଲା ତୁମର ସମସ୍ତ କାମ
ମତେ କାହୁଁ ଛାଡ଼ିଦେଲ କରି ସାତ ସ୍ୱାନମାନ ।

ତୁମେ ଯେବେ ବୁଲୁଥିଲ ଏ ଶ୍ୟାମ ପ୍ରାନ୍ତର ପରେ,
ତୁମେ ଯେବେ ଗାଉଥିଲ ଗୀତ ମଧୁଭରା ସ୍ୱରେ,
ତୁମେ ଯେବେ ହସୁଥିଲ କେବେ ମନ ବିନୋଦନେ,
ତୁମରେ ବିଲୋକ ମୁହିଁ ରହୁଥିଲି ବହୁକ୍ଷଣେ,
ମୋ ଗ୍ରନ୍ଥ ଭିତରେ ନିତ୍ୟ ଜାଗୁଥିଲା ତୁମ ନାମ,
ମତେ କାହୁଁ ଛାଡ଼ି ଦେଲ କରି ସାତ ସ୍ୱାନମାନ !

ଅସୀମ ଜନତା ମେଳେ କେଉଁ ମେଳା ମଉଛବେ,
ଯେବେ କାହିଁ ବୁଲୁଥିଲ ସାଥୀ ଜନ ଭୁଲେ କେବେ,
କାହିଁରେ ନିମେଷ ପାଇଁ ଲାଗୁତ ନ ଥିଲା ମନ,
ମୋ ଆନନ୍ଦ ତୁମକୁହିଁ କରିବାରେ ଅନ୍ୱେଷଣ !
କହୁଥିଲ ତୁମ ବିନେ କାହିଁରେ ନାହିଁଟି ପ୍ରାଣ,
ମତେ କାହୁଁ ଛାଡ଼ିଦେଲ କରି ସାତ ସ୍ୱାନମାନ !

ଜ୍ୟୋତ୍ସ୍ନାର ଆକାଶ ତଳେ ବାସନ୍ତୀ ସନ୍ଧ୍ୟାରେ ସଖି !
ବୁଲୁଥିଲେ ତୁମରେ ମୁଁ କଥା ଥାଏ ମନେ ରଖି,
ତୁମ ଭୁଲେ ବୁଲାବାକୁ ବନ ବିଲ ଏ ପ୍ରାନ୍ତର
କେତେ ଥର ଛନ ଛନ ହୋଇନାଇଁ ଏ ଅନ୍ତର !
ସେ ସବୁ ସ୍ମୃତିରେ ଆଜ ନାଚଯାଏ ତୁମେ ଜାଣ ?
ମତେ କାହୁଁ ଛାଡ଼ିଦେଲ କରି ସାତ ସ୍ୱାନମାନ !

ମୋ ଦରିଦ୍ର ନେତ୍ରେ ଯେବେ ଲୁହ ହୁଏ ଛଳଛଳ,
ବିକ୍ଷତ ହୋଇ ମୁଁ ଯେବେ ପଡ଼ିଥାଏ ଧରାତଳ,
କେଉଁ ଯେବେ ମ ଆସନ୍ତ ନିମିଷେ ମୋହରି ପାଇଁ;
ସବୁ ଦୁଃଖ ଭୁଲିଯାଏ ତୁମରେ ମୁଁ ଦେଖିଲେ ଗହିଁ ।
ତୁମ ଲାଗି ମୋର ଥିଲା କେତେ ଯେ ମନର ଟାଣ !
ମତେ କାହୁଁ ଛାଡ଼ିଦେଲ କରି ସାତ ସ୍ୱାନମାନ !

ତୁମେ ମୋର ବୋଲି କେତେ ଗର୍ବ ଆଉ  ଗଉରବ
ଦିନ ଦିନ ଧରି ମୁହିଁ କରୁଥିଲି ଅନୁଭବ !
ଶୋଚନା ନ ଥିଲା ମୋର ଖାତିର ନ ଥିଲା ତିଳେ,
ଯେତେ ବାଧା ପାଉଥିଲି  ନିଖିଳ ଏ ଧରଣୀରେ,
କେମନେ  ଏ ସବୁ କଥା କଲି ନାହିଁ ଅନୁମାନ ?
ମତେ କିନ୍ତୁ ଛାଡ଼ିଦେଲ କରି ସାତ ହାନିମାନ !

ମନେପଡ଼େ ତୁମେ ଦିନେ ବିଷଣ୍ଣ ବଦନେ ସନ୍ଧି !
ତୁମର କୁଟୀର ଦ୍ୱାରେ ଉଭା ହୋଇଥିଲ ରହି
ପଚାରିଲ କାହିଁ ଦୁଃଖ ? କଥା କହିଲନି କାହିଁ,
ସେଇ ଦିନଯାକ ମୁହିଁ ସତେ  ଅନ୍ନ ଛୁଇଁ ନାହିଁ,
ଏତେ ଏତେ ମମତାର ସବୁ ହେଲା ଅବସାନ
ମତେ କିନ୍ତୁ ଛାଡ଼ିଦେଲ କରି ସାତ ହାନିମାନ !

ମୋର ତ ହେଉଚି ମନେ ଦିନେ ହେଲେ ଦଣ୍ଡେ ହେଲେ
ପରାଣେ ଆଘାତ ତବ ଦେଇ ନାହିଁ କେତେବେଳେ;
ସବୁବେଳେ  ତୁମେ ମୋର ଏକାନ୍ତ ହିଁ ଆପଣାର
ସବୁବେଳେ ତୁମ ବିନେ କେ ଅଛି, ଏ ଅଭାଗାର  ?
ମୁଁ କିମ୍ବା ତୁମର ନେହେ ହେଲି ମିଥ୍ୟା ହେଲି ଭାନ ?
ମତେ କିମ୍ବା ଛାଡ଼ିଦେଲ କରି ସାତ ହାନିମାନ  ।

ତୁମ ପଥେ ଆଉ ମୁହିଁ ପଥିକ କି ହେବି ନାହିଁ ?
ତୁମର ଅନ୍ତର ସୁଧା ଆଉ ଖୋଜିବନି କାହିଁ ?
ଆଉ କି ଚାହିଁବି ନାହିଁ ତୁମରେ ମୁଁ  ବାରବାର
ତୁମ ମୋ ବନ୍ଧନ ସତେ ହୋଇଯିବ ଛାରଖାର !
ଚତୁର୍ଦ୍ଦିଗେ ଚାହିଁ ଖାଲି କହୁଥିବ ମୋର ପ୍ରାଣ
ମତେ କିମ୍ବା ଛାଡ଼ିଦେଲ କରି ସାତ ହାନିମାନ !

———

# ଏ ପାଖେ ଓ ସେପାଖେ

ମୁଁ ତୁମକୁ ଚାହିଁ ଆଜ ଚାହିଁ ତ ପାରିଲ ନାହିଁ
କଥା ପଦେ କହିବାକୁ ସାହସ ବା ହେଲି କାହିଁ ?
ମୁଁ ତୁମରି ପାଖେ ପାଖେ ଦୂରେ ଥିଲି ପରି ଲାଗେ,
ତୁମ ପାଇଁ ଓଠ ତଳୁ ହସଟିଏ ନାହିଁ ଜାଗେ !

ତୁମେ ମଧ୍ୟ ମଥା ପୋତି ମଉନେ ରହିଛ ଏକା,
ଭରସି ମୋ ପାଖେ ପଶି ହୋଇ ପାରୁନାହିଁ ଦେଖା !
ମନେ ମନେ କେତେ ରାଗ ଉଭାଇ ଯାଇଛ କାହିଁ
ମିଶିବାକୁ, ଲୋଡ଼ା ହେଲେ ମିଶି ହୋଇ ପାରୁନାହିଁ !

ମୁଁ ତୁମରି ପାଖେ ପାଖେ ଆଡ଼କରି ଚାହିଁ ରହେ
ମୋ ଆଖିରେ ଲୁହଟିଏ ତଳ ତଳ ଯେବେ ବହେ
ଅଜଣାରେ ପୋଛୁଦିଏ, ଫେଇ ମୋ ବସନ କାନି,
ତୁମେ ମୋରେ ବୁଝିଲନି ଜୀଅନ୍ତାରେ ଦେଲ ହାଣି !

ମୁଁ ତୁମରେ ଯେତେ ଚାହେଁ ସେତେ ମୁହଁ ପୋତି ଦିଏ,
ମୁଁ ଯେହ୍ନେ ତୁମର ନୁହେ ଆଉ ବା ଇତର କିଏ !
ତୁମେ ବୋଧେ ମନେ ମନେ ଲୋଡ଼ା ହେଉଥିବ ମତେ
ଅମୃତ ପ୍ରଲେପଟିଏ ଦେବାକୁ ମୋହର କ୍ଷତେ !

କିଛି ତ ପାରୁନ କରି, ବସିଛ ତୁନିଟି ହୋଇ,
ନେତ୍ର ପ୍ରାନ୍ତୁ ଥରି ଥରି ଲୁହଟିଏ ଆସେ ବୋହି !
ସେ ଲୁହ ଟିକକ ପୋଛି କହିବାକୁ ପଦେ କଥା
ଭରସି ପାରୁନ ମୁହିଁ ଲଇଁ ଆସେ ମୋର ମଥା !

ବୈକୁଣ୍ଠ ଏ ଧରଣୀରେ କିଏ କି ଜାଣିଲି ହେଲେ ?
ତୁମ ମୋ ଭିତରେ ଯେଉଁ ବାଧାଟିକ ଆସି ଖେଳେ !
ତୁମେ ଜାଣ, ମୁଁ ଜାଣେ କି ଅଛି ଘଲେଣି ଆଉ ?
ତୁମ ଦେହ ମନେ ମୋର ଦେହ ମନ ମିଶିଯାଉ !

ଅବା ଆମ୍ଭେ ରହିଥିବା ଏଇପରି କାଳ କାଳ
ବେଣୀ ପାଇଁ ବେଣୀ ନେଇ ବହିଥିବ ଲୁହଧାର !
ମିଶିବାକୁ ଲୋଡ଼ା ହେଲେ ମିଶି ପାରୁଥିବା ନାହିଁ,
ଖାଲି ଚାହିଁଥିବ ବନ ପରସ୍ପରେ ଗୁହିଁ ଗୁହିଁ !

ଆକାଶ ଅବନୀ ଭରି ଯେତେ ଶିଖି ବଇଭବ,
ଚାତୁରୀ ନ ଥିବା କରି ତଳେ ହେଲେ ଅନୁଭବ ।
କନକ ତପନ ଉଇଁ ମୃଦୁର ଶିଖରି ଘଟଲେ,
ଯାଉଥିବ ସଞ୍ଜି ବୁଡ଼ି କେଉଁ ଦୂର ପର ପାରେ ।

ବହି ଯାଉଥିବ ନଈ ତାର ପ୍ରତି କଲ ତାନେ
କି ମଧୁମୋହନ ଶିଖି ଫୁଟୁଥିବ କେତେ ଥାନେ;
ଫେରୁଥିବେ ଗୋରୁଗୋଠ ବଣ ପାହାଡ଼ର ବାଡ଼େ,
କାକ କୋକିଳର ଗୀତ ଖେଳୁଥିବ ଗୁରିଆଡ଼େ ।

ରୂପେଲି ଜୋଛନା ଢାଳି ଉଇଁ ଆସୁଥିବ ଜହ୍ନ,
ମାଳତୀ ମରୁଆ ଫୁଟି ହସୁଥିବ ଛନ ଛନ;
ତଟିନୀ ସିକତା ଶେଯେ କଅଁଳ ପବନ ବହି,
କା' ପରାଣ ଅବସାଦ ହରି ନେଉଥିବ କାହିଁ ।

ଏ ମଧୁ ସଂପଦ ମେଳେ ତୁମେ ମୁହିଁ ଦୁଇଜଣ
କେମନେ ପାରିବା ରହି ଏକା ଏକା ପ୍ରତିକ୍ଷଣ !
ପ୍ରିୟ ପ୍ରିୟା ଆଉ ଥରେ ହେବା ନାହିଁ ଉକାଉକ ?
ସେ'ଦିନର ଗଗରସା ସବୁବେଳେ ଥିବା ରଖି ?

ମତେ ଗୁହିଁ ହସିଦିଅ, ମୋ ଲୁହରେ ତୁମ ଲୁହ
-ମିଶାଇ, ସୋହାଗଭରେ ମୋରେ ପଦେ କଥା କୁହ !
ମୋହନ ପରଶ ଦିଅ ଅଙ୍ଗେ ଅଙ୍ଗ ଦେଇ ଢାଳି
ଯେତେ ଯା' କାଳିମା ସବୁ ଦୂରେ ଦୂରେ ଯାଉ ଗୁଲି !

ଗୁହିଁ ମତେ ଭଲ କରି, ପୁଣି ସେ ସେନେହ ମାୟା
ଜାଗୁ ତମ ବୁକୁ ତଳେ, ଆଗ ପରି ଥିଲା ଯାହା !

ହସି ଖେଳି ଆସ ଚାଲି, ହସାଅ ଖେଳାଅ ମତେ,
କି ବାଧା ବନ୍ଧନ ଅଛି, ମୋ ଲାଗି ତୁମର ପଥେ ?

ଜୀବନର ବୀଣା ତାନ ମୋ ପାଇଁ ଫିଟାଇ ଦିଅ !
ଅଙ୍ଗେ ଅଙ୍ଗେ ବିଦ୍ୟୁତର ମୋହନ କମ୍ପନ ଦିଅ !
ଡାକ ସାଥି, ଡାକ ସଖା, ଡାକ ମୋର ପ୍ରିୟତମ
ଏତେ ଦିନେ ତୁମ ମୋ'ର ହେଲା ମଧୁ ସମ୍ମିଳନ !

ଆସ ତମେ, ପାଖେ ବସି ପୋଛି ଦିଏଁ ଲୁହ ଧାର,
କାଢ଼ି ନିଏଁ ବୁକୁତଳେ ଥିବ ଯେ ଟିକିକ ଭାର;
ପ୍ରାଣ ଖୋଲି କହେ କଥା ତୁମ ପାଖେ ଏତେ ଦିନେ
ଏତେ ଦିନ ରହିଥିଲେଁ ତୁମେ ମୁହିଁ ଭିନେ ଭିନେ ।

ତୁମେ ମୁହିଁ ଧରଣୀରେ ହୋଇ ହାତ ଧରାଧରି,
ବାହି ନେବା ଆମରି ଏ ଦରିଦ୍ର ଜୀବନ ତରୀ !
କୂଳେ କୂଳେ ପଥ ଘାଟେ, ସୁଖ ଦୁଃଖ ଗଉରବ
ଚାଲିଥିବା କରି କରି ନିତି ଦିନ ଅନୁଭବ !

ମୁହିଁ ଥିଲେ ତୁମ ପାଖେ, ତୁମେ ଥିଲେ ପାଖେ ମୋର,
ତୁମ ମୋ ଭିତରେ ଥିଲେ ସେନେହ ସୋହାଗ ଡୋର,
କିବା ଦୁଃଖ କି ଜାଳେଣି ଅଛି ଏ ଧରଣୀ ଘରେ ?
ହସି ହସି ଚାଲିଥିବା ଦୁହିଁ ଦୁହିଁ ପରସ୍ପରେ !

ସୁନ୍ଦର ଆକାଶ ଏଇ ସୁନ୍ଦର ଧରଣୀ ତଳ,
ଯା ଭିତରେ ହସି କିମ୍ପା ନ ଚାଲିବା ନିରନ୍ତର ?
କଥା କହ, କଥା କହ ଜୀବନର କଥା କହ !
ପ୍ରାଣ ପୂରି କରି ମତେ ଆଉ ଥରେ ଚାହିଁ ରହ ?

କେତେ କଷ୍ଟ କେତେ ବାଧା ଆସିବ ଧରଣୀ ପରେ,
ସବୁ ସହିଯିବ କିନ୍ତୁ ସହି କି ପାରିବ ଥରେ ?

ତୁମେ ଯେବେ ନ ଗୁହାଁବ ଚାଲିଯିବ ପର କରି
ଚିରଦିନ ମୋ ନୟନେ ଲୁହ ଉଠୁଥିବ ଥରି ।

ଭୁଲିଗଲି ସବୁ ବାଧା ଭୁଲିଗଲି ସବୁ ତମେ !
ନା, ଆଉ ରହିବ କିଛି କହ ମତେ ଏଇକ୍ଷଣେ,
ହାତ ଧରି ମାଗିନେବି ସବୁ ଦୋଷ ଅପରାଧ
ନ ରହୁ ଜୀବନେ ଆଉ କିଛି ଦୁଃଖ ପରମାଦ,

ଗୋଲାପ କଳିକା ପରି ଫୁଟି ଉଠ ଆଉ ଥରେ,
ଖେଳାଇ ମୋହନ ଗନ୍ଧ ଢଳି ପଡ଼ ବୁକୁ ପରେ ।
ଜୀବନ୍ତ ସୁନ୍ଦର କରି ପୁଣି ମତେ ଦିଅ ଗଢ଼ି ;
ପଥ ପ୍ରାନ୍ତେ ପଡ଼ିଛି ମୁଁ ମୁମୂର୍ଷୁ ପଥିକ ପରି !

—*—

# ଏ'ପଥେ

ଏ ପଥେ ଆସଇ ନିତି, ନିତି ମୁହିଁ ଏ ପଥେ ଆସଇ ଚାଲି,
ସନ୍ଧ୍ୟା ସକାଳେ ନିବିଡ଼ ନିଶୀଥେ କେତେ କେତେ କଥା ଭାଳି !
ଉପରେ ନାଚଇ ଉଦାର ଆକାଶ ତଳେ ବହିଯାଏ ନଈ
ବନ ବଲ ପଦା କାନେ କାନେ କିବା ମଧୁର ବାରତା କହି
ସବୁଜ କେଦାର ତୀରେ
ସେଇ ପାହାଡ଼ଟି ସେପରି ରହିଛି ମେଘ ଚରିଯାଏ ଶିରେ !

ଏ ପଥେ ଆସଇ ନିତି, ନିତି ମୁହିଁ ଏ ପଥେ ଆସଇ ଚାଲି
ଦେଖଇ ଯିବାର ଏଇ ରାଜପଥେ ସୀମାହୀନ ଲୋକ ଧାଡ଼ି
ଫୁଟଇ କୁସୁମ, ଛୁଟଇ ମଳୟ ଜୋଛନା କରଇ ଲୀଳା,
ମୁଗଧ ଚକିତ ସପନେ ରସାଣି ବଲ-ବନ-ପଥ-ଶିଳା !
ଏଇ ରାଜପଥ ଧାରେ
ଦେଖଇ ଭୁମରି କ୍ଷୁଦ୍ର କୁଟୀର ନୟନରେ ବହୁବାରେ ।

ଏ ପଥେ ଆସଇ ନିତ, ନିତ ମୁହିଁ ଏ ପଥେ ଆସଇ ଗୃଳ,
ମରମେ ମରମେ ଅଖିତର କେତେ ସୁମଧୁର ସ୍ମୃତି ଖଳ;
ତୁମେ ନାହିଁ ଆଜ ଅଛି ଏ କୁଟୀର ଅଛି ଏ ପାଦପ ଲତା,
ପାହାଡ଼ର କାନେ ନଈ କଲକଲେ କହୁଯାଏ କେତେ କଥା !
ଏ ସବୁରେ ମୋର ମନ
—ବୁଡ଼ି ରହି କିବା ସପନ ଦେଖଇ ସୁନ୍ଦର ଅନୁପମ !

ଏ ପଥେ ଆସଇ ନିତ, ନିତ ମୁହିଁ ଏ ପଥେ ଆସଇ ଗୃଳ;
ଜାଣେନା କି ଅବା ଅଜଣା ବ୍ୟଥାରେ ବୁକୁ ଟଳ ହୁଏ ଘାରି ।
ମନେ ପଡ଼ି ତୁମେ, ମନେ ପଡ଼ି ମୋର ଆଗୋ ସୁନ୍ଦରୀ ବାଳା,
ତୁମର ବିହ୍ନେ ଛଳ ଛଳ ହୁଏ ନୟନେ ଅଶ୍ରୁ ଧାରା;
ଶୂନ୍ୟ କୁଟୀରେ ଗୃହିଁ,
କେତେ ଗୃହିଁ ରହେ, ଫେରିବାକୁ ମୋର ଚରଣ ଚଳଇ ନାହିଁ !

ଏ ପଥେ ଆସଇ ନିତ ନିତ ମୁହିଁ ଏ ପଥେ ଆସଇ ଗୃଳ,
ପ୍ରତି ପଦପାତେ ତୁମର ସ୍ୱରୂପ ମନେ ମନେ ଯାଏ ଖଳ ।
କେତେ ଡାକୁଥିଲ ଆପଣାର କରି ପ୍ରିୟତମ ପ୍ରିୟତମ !
ତୁମେ ମୋରେ ସତେ ସେନେହ ଦିଅ କି ସୁନ୍ଦର ଅନୁପମ !
କେତେ ମୋର ହାତ ଧରି
କହୁଥିଲ ମୋରେ ଭୁଲିଯିବ ନାହିଁ ଦିନେ ହେଲେ ପର କରି !

ଏ ପଥେ ଆସଇ ନିତ ନିତ ମୁହିଁ ଏ ପଥେ ଆସଇ ଗୃଳ,
ତୁମର କୁଟୀରେ ଗୃହିଁ ଗୃହିଁ ଯାଏ ଗୃହିଁ ଗୃହିଁ ଫେରେ ଖାଲି,
ପୃଥିବୀରେ ଯହିଁ ଅମୃତ ପୁରୀ ମୋହ ପାଇଁ ଥାଏ ରହି,
ଏଇ ସେ କୁଟୀର, ଏଇ ସେଇ ଭୂଇଁ ଅନ୍ତର ଉଠେ କହି ।
ଏ ସାରା ଜୀବନ ଧରି
ଏ ଭୂଇଁରେ ମୁହିଁ ଭଲ ପାଉଥାଏ ମୋର ଅନ୍ତର ଭରି !

—————

# ମୋ ପାଇଁ

ଚାରିଆଡ଼େ ଖାଲି ପାହାଡ଼ ବନ
ଚାରିଆଡ଼େ ଖାଲି କେଦାର ମାଳା,
ମଳୟ କେଉଁଠି ଆସୁଛି ବହି,
କୋଇଲି କେଉଁଠି ମେଲିଛି ଧାରା !
ଶାନ୍ତ ସବୁଜ ମୁକ୍ତ ଶୋଭା
ଗିରି ବନ ଦେହୁ ପଡ଼ୁଛି ଝରି,
ଯୁଆଡ଼େ ଟିକିଏ ପକାଏ ଆଖି
ଆନନ୍ଦେ ଉଠେ ମରମ ଭରି !

ଏ ମୋହନ ଶିରୀ ମେଲେ ମୁଁ ଆଜି,
ଗୋଳି ହୋଇଯାଏ କାହାରି ଲାଗି !
କାହାର ମୁଗ୍‌ଧ ମମତା ଟିକି
ଏ ମରମେ ମୋର ଉଠଇ ଜାଗି !
ଦୂର ବହୁଦୂର ଅଜଣା ମାଟି
ପ୍ରତି ଧୂଳିକଣା କି ପ୍ରିୟ ଲାଗେ !
ଆଗକୁ ଯେବେ ମୁଁ ପକାଏ ପାଦ,
ବାଟ ସରି ଆସେ କି ଅନୁରାଗେ !

ଏ ଗଛ ସେ ନଈ ଏ ବିଲ ହିଡ଼
ସେଇ ବଣଗୋଡ଼ା ପାହାଡ଼ ଘାଟୀ
ଏ ଗାଆଁ ଗୋହିରି ସେ ଗାଆଁ ତଳି,
ଲାଗେ ମୋର କିବା ମରମ ସାଥି;
ଯେତିକି ମୁଁ ଚାହେଁ ସେତିକି ମତେ
ଆପଣାର ପରି ଲାଗଇ କିଆଁ ?
ହାଇରେ ଯେଉଁଠି ସେନେହ ଥାଏ
ଲକ୍ଷି ଲକ୍ଷି ସେଠି ଯାଏ, ଏ ହିଆ !

କେତେ ମୁଁ ଏ ବାଟେ ଚାଲିନି ସତେ !
ଏବେ ବି ଚାଲୁଛି କାହାରି ପାଇଁ,
ଟିକିଏ ବିଚାର ଲାଗୁନି, ଚାହେଁ
ଚାଲୁଥିବି ଦୂର ଆଡ଼କୁ ଚାହିଁ !

ସୁଦୂର ମାଟି ଏ ଅଜଣା ମାଟି,
କେଉଁଠି ମୋର କେ ରହିଛ କାହିଁ ?
କାହାର ଟିକକ ପରଶ ଲାଗି
କେତେ ଅମୃତ ପାରୁଚ ପାଇ !

ପାଖ ହୋଇ ଆସେ ସେ ପ୍ରିୟ ଭୂଇଁ
ଆଖୁ କ୍ଷେତ ଦିଶେ ଦୂରରୁ ଏଇ
ଏଇ ବରଗଛ ଯେଉଁଠି କଏ,
ଗୁଡ଼ ଅଛି ମୋରେ ବିଦାୟ ଦେଇ ।
ଏଇ ସେ ପୋଖରୀ ପଦ୍ମଫୁଲ
ଯେଉଁଠି ସିଏ ମୁଁ ତୋଳିଚୁ ଦିନେ,
ତା ପାରେ ଦେଖିବାକୁ ଯାଉଚ ଆଜ,
କେତେ ନିଃସ୍ୱ ମୁଁ ତାହାର ବିନେ ।

ମୋରେ ଯେବେ କଏ ଆଦର କରେ
କରଇ ତାହାର ବକ୍ଷ ତଳ,
ମୋ ଶିରେ ଯେବେ କେ ମୁକୁଟ ଦିଏ,
ଦିଅଇ ତାହାର କନକ କର ।
ମୋ ପାଇଁ ଯେବେ କେ କାନ୍ଦି ଉଠେ,
କାନ୍ଦି ଉଠେ ତା' ବିରାଟ ହିଆ
ମୃତ୍ୟୁ ପରେ ମୋ ଖୋଜିଲେ ମତେ
ଖୋଜିବ ସେ ଏକା ମୋହର ପ୍ରିୟା ।

— — —

## ଜ୍ୟୋସ୍ନାର ଆକାଶ ତଳେ

ଜ୍ୟୋସ୍ନାର ଆକାଶ ତଳେ ତୁମେ ମୁହିଁ
ଏକାନ୍ତ ନିଜର ଦୁଇ ଜଣ !
କେତେ ଭଲ ଲାଗେ
ଏଇ ପ୍ରାଣର ବନ୍ଧନ !

ଓଠେ ଓଠେ କି ବିଲୋଳ ହସ !
ବକ୍ଷେ ବକ୍ଷେ କି ସେନେହ ମାୟା !
ଚିରଦିନ ଚିରକାଳ
ଏ ଜ୍ୟୋତ୍ସ୍ନାରେ ତୁମେ ମୁହିଁ
ବୁଲୁଥାନ୍ତେ ଆହା !

କି ମଧୁର ସ୍ୱପ୍ନ ଆମେ
ଦେଖୁଥାଉଁ ଏଥି ଦୁଇଜଣ !
କି ମହା ବିଚିତ୍ର ସୃଷ୍ଟି
ସ୍ୱର୍ଗ ତହୁଁ ନୁହେ ଏ କି—
ସୁନ୍ଦର ସୁଷମ !
ଲକ୍ଷ ଲକ୍ଷ ମଣିଷ ତ
ଆମ ପରି ଏ ଜ୍ୟୋତ୍ସ୍ନାରେ
ଯାଉଥିବେ ବୁଲି,
କିଏ କାରେ କହୁଥିବ
ସତେ କ'ଣ ପ୍ରିୟତମ
ଯିବ ମୋରେ ଭୁଲି !
କିଏ କାର ଗଣ୍ଡେ ଦେଇ
ନିବିଡ଼ ଚୁମ୍ବନ
କହୁଥିବ—ତୁମେ ମୋର—
ଅନ୍ତରର ଚିର ଗଣ୍ଠିଧନ ।

ପ୍ରିୟା ମୋର !
ଶତ ସ୍ମୃତି ବିଜଡ଼ିତ
ପୃଥିବୀର ଏଇ ପୁଣ୍ୟ ଭୂଇଁ
ଅମୃତର ସୁନା କାଠି
ଏ ଅନ୍ତରେ ଯାଏ କେତେ ଛୁଇଁ
ତୁମ ମୋହ ଭରା
କେତେ ଅନ୍ତରର
ସ୍ନେହ ଏଥି ହୋଇ ନାହିଁ ବୁଣା ?
ଏ ମାଟି ପବିତ୍ର କେଡ଼େ !
କି ମହା ବୈଚିତ୍ର୍ୟମୟୀ
ଲାଗେ ଯା'ର ପ୍ରତି ଧୂଳିକଣା !

ସୁନ୍ଦର ସୁନ୍ଦର ଅଛନ୍ତି ସୁନ୍ଦର ଏଇ ମାଟି !
ଏ ମାଟିର କୋଳେ
ଆହୁରି ସୁନ୍ଦର ଆମେ
ଜଣେ ଯେବେ ଜଣକୁ ଗୋ ଅନୁଭବେ ପ୍ରାଣେ ।

—o—

# ଯଥେଷ୍ଟ ମୋହର ସେଇ

ଏଇ ମହା ପୃଥିବୀରେ ଆନନ୍ଦର ଉପାଦାନ
ଏତେ ଏତେ ରହିଅଛି କଳି କି ପାରିବ ପ୍ରାଣ ?
ଜୀବନକୁ କରିବାକୁ ମଧୁରୁ ମଧୁରତର,
କା ପାଇଁ କାହାକୁ କିଏ ଗଢ଼ିଚି କି ମନୋହର ।
ସୁଖ ସମ୍ପଦର ସୁଏ ଭସାଇ ଦେବାକୁ ମତେ,
କାହାକୁ ଭେଟିଚି ମୁହିଁ ମୋ ଦରିଦ୍ର ଯାତ୍ରା-ପଥେ ।
କାହାକୁ ଗୃହିଁଚି ମୁହିଁ କରି କେତେ ଆପଣାର,
କିଏ ମୋ ନୟନେ ଦିଶେ ଅମୃତର ପାରାବାର !
ଆକାଶ ପୃଥିବୀ କିବା ସ୍ୱପ୍ନ ବୋଳା ମହାସ୍ଥଳ
ଇଚ୍ଛା ହୁଏ ଚିରକାଳ ଏଇଠି ମୁଁ ଥିବି ପଡ଼ି !
ଏଇଠି ଏ ବ୍ୟୋମ ବସୁନ୍ଧରା ପରେ ମୋତେ କେହି
ଭଲପାଏ ବକ୍ଷଭରି, ଯଥେଷ୍ଟ ମୋହର ସେହି !
କି ଆନ ସମ୍ପଦ ଲୋଡ଼ା ଯଦି ମୁଁ କା' ବୁକୁତଳେ
ଜଳ କଳତାନ ପରି ଫୁଟି ଉଠେ ଅବିରଳେ !!

—o—

# ଆଜି

ଆମରି ଗାଆଁର ମାଜଣା ପୋଖରୀ ଘାଟେ,
ପ୍ରତି ସନ୍ଧ୍ୟାରେ ଆସେ ସଙ୍ଗିନୀ ସାଥେ;
କଜଳ ବେଣୀରେ ଖୋସି କଦମ୍ବ କଳି
କେତେବାର ତାରେ ଯାଇଛି ଲକ୍ଷ୍ୟ କରି ।

ସେ'ଯେ ଅପରୂପ ସୁନ୍ଦରୀ ବର-ବଧୂ
ଯଉବନ ତାର ଅଧରେ ବୋଳିଛି ମଧୁ !
ମଂଗଳ ଦୀପ ପରି ତା' ନୟନ ଦୁଇ
ନୀଳ ଭୂରୁଲତା ଲାଜେ ଲାଜେ ପଡ଼େ ଲଇଁ ।

ପଦେ ସେ କହିଲେ ଅମୃତଗୋଳା ବାଣୀ
କନ୍ଦର୍ପ ବୀଣା ସମାନେ ତା ନାଇଁ ଆଣି ?
ତା' ଓଠ ହସରେ ପୃଥ୍ୱୀ କ ମାଦକତା
ପରଶେ ଯାହାର ପଥର କହିବ କଥା !

ପ୍ରତି ଅଙ୍ଗ ତା' ଚାହିଁଲେ ନିମିଷେ ଥରେ,
ନୟନ ଚାହେନା ଆନ କିଛୁ ଜଗତରେ !
ଏଡ଼େ ସେ ଉଜଳ ଏଡ଼େ ଲବଣ୍ୟମୟୀ
ତାହା ବିନୁ ନାଇଁ ଧରଣୀରେ ଆନ ଛଇ ।

ଦିନେ ମୁଁ ଚାହିଁଲି; ରହିଲି ମୁଁ ଖାଲି ଚାହିଁ,
ତାର ମୋର ଆଉ କଥା ଭାଷା ହୋଇନାହିଁ।
ମର୍ତ୍ତ୍ୟ ଧରାରେ ସେ ଯେ ଉର୍ବଶୀ ରାଣୀ
ଟିକିଏ ଚାହିଁଲେ ସାର୍ଥକ ଆଖି ବେନି !

ଆଉ ଦିନେ, ସାରା ଆକାଶ ଧରଣୀ ତଳ—
ଲାଗୁଥିଲା କିବା ସପନ ରାଇଜ ଘର;
ତରଳ ଜୋଛନା କୁସୁମ ଗନ୍ଧ ସହ
ଗୋପନେ ଗୋପନେ ଦେଉଥିଲା ପରିଚୟ ।

ଭାଗ୍ୟବାନ ଏ ଦରିଦ୍ର କବି ତାରେ
ଆଉ ନୟନରେ ଚାହିଁ ଥିଲା ବହୁବାରେ ।
ନୟନେ ନୟନେ ହେଲା କିବା କଥା କୁହା
ଅଧରେ ଅଧରେ ଫୁଟିଲା ହାସର ଶୋଭା ।

ପଦ ମଞ୍ଜୀରେ ଚମକାଇ ଗ[illegible]ପଥ,
ଚାଲିଗଲା ଗଜ ଗାମିନୀ କାମିନୀ ସତ;
ଉତ୍‌ପଙ୍‌କ୍ଷ ହୋଇ ରହିଲି ତାହାରେ ଚାହିଁ
ସ୍ରଷ୍ଟା କ ମୋରେ ଗଢିନ ତାହାରି ପାଇଁ ?

ଦିନେ ନିଶୀଥର ନିବିଡ଼ ଅନ୍ଧକାରେ
ବିଦ୍ୟୁତ ସମ ପଥ ଉଜଳାଇ ଚାଲେ
ଧରି ତାର କର-ପଦ୍ମ କହିଲି "ମତେ,
ପଥିକ କି ତୁମେ କରିବନି ତୁମ ପଥେ ?"

ଟିକିଏ ହସି ସେ ଲଜ୍ଜି ହୋଇଲା ଠିଆ
ପ୍ରଥମ କରି ମୁଁ ଡାକିଲି ସେ ଦିନ ପ୍ରିୟା ।
ବିଲୋଳ ହାସ୍ୟ ଗଲା ଓଠଯୁଗେ ଖେଳି,
ସେ ଗଲା, ଆସିଲି, ମୁଁ ମୋର କୁଟୀରେ ଫେରି ।

ଆଉ ଦିନେ ଏଇ ବନ ପ୍ରାନ୍ତର ପରେ
ଦେଖା ହେଲା ଅତି ଗୋପନେ ଗୋପନେ ଥରେ,
ଦଶମୀ ଚନ୍ଦ୍ର ଆସୁଥିଲା ହସି ହସି,
ମତେ ଦେଖି ଠିଆ ହେଲା ସେହି ମଦାଳସୀ ।

ସେ'ଦିନ ମୋରେ ସେ କହିଲା ନମ୍ରଗୀରେ
ପ୍ରାଣର ମଞ୍ଜୁ ବାରତା ଏ ନଈ ତୀରେ
'ତୁମ ଛଡ଼ୁଁ ବଳି କିଏ ମୋ ପରାଣ ନାଥ ?'
ତା' କରପଦ୍ମେ ରହିଥାଏ ମୋର ହାତ ।

ମନ୍ଦ ସମୀର ବକୁଳ ଗନ୍ଧ ବହି—
ଆମ ତଡ଼ାଗେ ବହୁଥାଏ ରହି ରହି;
ଦଶମୀ ଚନ୍ଦ୍ର ହସୁଥାଏ ଶିର ପରେ
ସେ ମୋରେ କହିଲ 'ତୁମେ ମୋର ମହୀ ତଳେ !'

ସେ'ଦିନୁ କେତେ ଯେ ସମୟ ଗଲଣି ଚଳି,
ଆଜ ମୋ କୁଟୀର ଲକ୍ଷ୍ମୀ ସେ ସହଚରୀ ।
କେତେ ସୁଖେ ଦୁଃଖେ ଧନ ଆଜ ନେଉ ବାହି,
ସେ ଯେ ଆଜ ମୋର, ମୁହିଁ ଯେ ତାହାର ପାଇଁ ।

ତାହାର ପାଇଁ ଗୋ କୁଟୀରେ ସରଗ ଜାଗେ
ତାହାର ପାଇଁ ମୋ ଜୀବନ ମଧୁର ଲାଗେ,
ସେ ଥିଲେ, ପୂର୍ଣ୍ଣ ସକଳ ବାସନା ମମ,
ତା' ବିହୁନେ ମୁହିଁ କେଡ଼େ ଦରିଦ୍ରତମ !!

———

## ତୁମେ ଓ ମୁଁ

ଜୀବନ ପଥ ପରେ ତୁମେ ଓ ମୁହିଁ,
ଯାଉଚେ ଜଣୁ ଜଣେ ନିବଡ଼େ ଛୁଇଁ;
ବୁଝୁଚ ତୁମେ ମୋରେ,
ବୁଝିଚି ମୁଁ ତୁମରେ
ଛିନ୍ନ ହୋଇ ଯେବେ ରହିବା କିଏ କାହିଁ,
ପ୍ରାଣର ବ୍ୟଥା କେତେ ଗଭୀର ହେବ ନାହିଁ ?

କି ସୁଖ ସମ୍ପଦ ଦେଉଚ ତୁମେ ମତେ
ଗୋଟି କି ଗୋଟି ମନେ ପଡ଼େ ଗୋ ଅନ୍ତରତେ !
ଏତେ ଯେ ଅମୃତ ଦେଉଚ ପ୍ରାଣଚର
ଭୁଲିଲେ ଭୁଲା ନାହିଁ ହୁଏ ସେ ଧନ୍ୟ ଶିଖା;

ଦେଇଚ ଯେତେ ଯାହା ତା' ତହୁଁ ବଳ ତମେ
ଆହୁରି ଦେବା ପାଇଁ ଲୋଡ଼ ଗୋ ଅନୁକ୍ଷଣେ !
ତୁମରି ଦାନ ଯାହା ତାହାର ଶେଷ କାହିଁ ?
ତୁମରି ଶେଷ ଅଛୁ,
ତୁମରି ଦାନ କେବେ ସରି ତ ଯିବ ନାହିଁ !
ଛିନ୍ନ ହୋଇ ଯେବେ ରହିବା କିଏ କାହିଁ,
ପ୍ରାଣର ବ୍ୟଥା କେତେ ଗଭୀର ହେବ ନାହିଁ ?

ଜଣକୁ ଜଣେ ଆମେ ନିଯୁତ ଖୋଜୁଥିବା,
ନ ପାଇ କି ବିକଳେ କେ କାହିଁ ରହିଥିବା !
ସୂର୍ଯ୍ୟ ବୁଡୁଥିବ ଶ୍ୟାମଳ ଗିରିଚୂଳେ,
ପାପିଆ ଗାଉଥିବ ଗୀତଟି ବହୁଦୂରେ
ଦୂରରୁ ଦୂରେ ଏଇ ତଟିନୀ ନୀଳ ବେଣୀ,
ବହି ଗୋ ଯାଉଥିବ,
ଅସୀମ ଯୁଗର କ ଅସୀମ ସ୍ମୃତି ଘେନି !
ଏ ପଥଘାଟ ଏଇ ପଲ୍ଲୀ-ବନମାଳ
ଥିବ ଗୋ ମୁକୁଳାଇ ସପନ ସ୍ବରିଆଡ଼;
ଏ ସବୁ ସମ୍ପଦେ ଛିନ୍ନ ହୋଇ ଯେବେ—
ରହିବା କିଏ କାହିଁ
ପ୍ରାଣର ବ୍ୟଥା କେତେ ଗଭୀର ହେବ ନାହିଁ ?

ଜୀବନ ଗୃହେ ଖାଲି ମମତା ବନ୍ଧନ
ଜଣକୁ ଜଣେ ଦେବ ମରମ ଗୋଟି ଭରି,
ଜୀବନ ସ୍ବପ୍ନେ ଖାଲି ଗଭୀର ଆଶ୍ଳେଷ
ଜଣକୁ ଜଣେ ଦେବ ପ୍ରାଣରୁ ବଡ଼ କରି;
ଜୀବନ ଚାହେଁ ଖାଲି ଜଣକୁ ଜଣେ ଏଥି
ଅସୀମ ଅନୁରାଗେ ନିଯୁତ ଥିବ ଚାହିଁ,
ଏ ମଧୁ ସମ୍ପଦୁ ବାହାରେ ସଂପଦ—
ଧରାରେ କିଛି ଅଛି ଜୀବନ ଜାଣେ ନାହିଁ,
ଛିନ୍ନ ହୋଇ ଯେବେ ରହିବା କିଏ କାହିଁ,
ପ୍ରାଣର ବ୍ୟଥା କେତେ ଗଭୀର ହେବ ନାହିଁ ?

———

# ଜୀଇ ଥିଲେ

ଜୀବନର ମଧ୍ୟାହ୍ନରେ ସୁଦୂର ପ୍ରବାସେ ଯେବେ
ଆସିଲି ମୁଁ,
ଦରିଦ୍ର କୁଟୀର କଣେ ଛିଆଗି ତୁମଧେ,
ନୟନର ତପ୍ତ ଅଶ୍ରୁଧାରେ
କହିଥିଲ ତମେ,
"ଜୀଇଥିଲେ, ଜୀବନରେ ପୁଣି ଦେଖା ଦେଖି"
କେତେ କେତେ ଥର ମୁହିଁ
ତୁମଠୁ ବିଦାୟ ନେଇ,
ଦୁରେ ଦୂରେ ବହୁଦୂରେ ଯାଇନାଇଁ ଗୃଲି !
ଗୃଲି ଏ ଅଙ୍ଗୁଳି,
କେତେ ଲୁହ ଦେଇନାଇଁ ପୋଛି !
ଆପଣାରୁ ଆପଣାର କରି,
ଦେଇନାଇଁ କେତେ ପ୍ରବୋଧନା !
ଏଥର କପାଇଁ
ତୁମ ନୀଳ ନେତ୍ର ପ୍ରାନ୍ତୁ
ଶ୍ରାବଣର ବାରିଧାର ପରି,
ପ୍ରତି ଲୁହବିନ୍ଦୁ ବୋହିବାର ବେଳେ,
ରହିଲି ମୁଁ ନିର୍ବାକ ମଉନ ?
ଗଲନାଇଁ ହାତ ମୋର
ଗୋଟିଏ ତରଳ ଅଶ୍ରୁ
ପୋଛି ଦେବା ପାଇଁ !

ପଦେ ବାଣୀ
କହିଲନି ବୋଧାଇ ତୁମରେ;
କେମନ୍ତେ ମୁଁ
କଠୋର ପାଷାଣ ପରି
ପାଲଟିଲି, ମୂକ-
ପ୍ରାଣହୀନ ଜଡ଼ ?
ଦେଖିଲନି

କ ଗୁରୁ ଆଘାତ ବାଜ
ତୁମ ମର୍ମ ଥଳ
ହୋଇଯାଏ ଦୁହିଁ ;
ବୁଝିଲନ
କାହିଁକି କହିଲ ମତେ
ଜୀବନରେ
ଜାଇଥିଲେ ପୁଣି—
ଦେଖାଦେଖି;
ତୁମ ପାଖେ ରହିବାକୁ
କ୍ଷଣେ ଦଣ୍ଡେ ପାଇଁ
ନିଜକୁ ମୁଁ ନିଜେ
ଦେଲନାହିଁ ଲବେ ଅବସର !
ବୃନ୍ତରୁ କୁସୁମ କଳକାଟିଏ
ଛିନ୍ନ ହେଲ ପର,
ଛିନ୍ନ ହୋଇ; ଆସିଲି ମୁଁ
ଏତେ ଦୂରେ ଚଳି;
ମାସ ମାସ ପାଇଁ
ପ୍ରାଣହୀନ ସେଇ ବୃନ୍ତେ
ସେ କେଉଁ ସୁଦୂର ଶାଖେ
ରହିଥିବ, ଏକୁଟିଆ
ଅନନ୍ତ ଶୂନ୍ୟକୁ ଗୃହିଁ;
ଦ୍ୱନ ଦ୍ୱନ ଧଇ,
କାହାକୁ ଅନାଇ,
ଓଠେ ତବ ଉକୁଟି ଉଠିବ ହାସ ?
କା ଆଶ୍ଳେଷେ
ବୁକୁତଳ ଉଠିବ ଉଲ୍ଲସି ?
ହୃଦୟର ଦୁଃଖ
ଗଭୀରୁ ଗଭୀର ହେଲେ
ଯିବ କାହା ହୃଦୟ ଋପଣି ?

ମନୁଷ୍ୟ ମୁଁ ?
ଗୋଟିଏ ଅନ୍ତର ତଳ

ମଡ଼େ ଧରି କାନ୍ଦୁଅଛୁ, ବକ୍ଷତା ଦରଣୀ ପରି
କାଠ ପରି ଠିଆ ମୁଁ ହୋଇଚି ଖାଲି,
ଗୃହିଁ ତାରେ ବଲ ବଲ କରି;
ଗୋଟାଏ ହୃଦୟବାନ୍ ଆତ୍ମା ପୁଣି ଅଛୁ ମୋହର ଭିତରେ !
ଗୋଟାଏ ଆତ୍ମାର ସୀମାହୀନ ମମତାର ବାଣୀ
ନିଷ୍ଠୁର ପିଶାଚ ପରି ଦଳି ଦେଇ ପାଦେ
ଗୃଲିଛୁ ମୁଁ; ସେ କେଉଁ ସୁଦୂର ଭୂଇଁ ପରମ ଆହ୍ଲାଦେ ?
ଘୁଙ୍ଗ ଛାରେ ପାଦେ ମାତ୍ର
ଘୁଞ୍ଚି ମୁଁ ପାରନ୍ତି ?
ଯିଏ ମୋରେ କହିପାରେ
“ପ୍ରିୟ ମୋର ! ପ୍ରାଣ ମୋର !
ଜୀଇଥିଲେ, ଜୀବନରେ
ପୁଣି ଦେଖା ଦେଖି”
ନିଷ୍ଠୁରତାର କେଉଁ
ତୁଙ୍ଗ ଶିଖରରେ
ରହିଲେ ମନିଷ ଏ ବାଣୀ ଆଡ଼େଇ ପାରେ
ଯେ ବାଣୀର ପ୍ରତ୍ୟେକ ଅକ୍ଷର
ହୃଦୟର ତପ୍ତ ଅଶ୍ରୁ କୋଳେ ଢଳ ଢଳ !!

ଜୀବନର ଏଇପାରେ, ଆରପାରେ
ସକଳର ପାରେ
ଯିଏ ମୋ ଏକାନ୍ତ ସାଥି,
ପ୍ରାଣ ପ୍ରତି ଶୋଣିତ ବିନ୍ଦୁରୁ ବଳି
ଯିଏ ମୋର ଏକାନ୍ତ ନିଜର,
ଏ ବକ୍ଷର ଅବାରିତ, ଅନନ୍ତ ମମତା ଦେଇ
ଜୀବନର ସକଳ ମୁହୂର୍ତ୍ତେ
ଯାହାରେ ମୁଁ ଗଣ୍ଠିଧନ କରି
ରଖିଅଛୁ
ଏ ଦେହ ମନର ପ୍ରତିଶିରା ଉପଶିରା ଧରି,
ମାଳତୀ ମଞ୍ଜରୀ ପରି
ଯାହାର ଅନ୍ତର
ମୁକୁଳାଇ ଦେଇଚି ଯେ

ମୋର ଦେହ ମନ ପ୍ରତି ଇନ୍ଦ୍ରିୟରେ,
ଅନ୍ତରର ମୋହନ କମ୍ପନ
ମୁହୂର୍ତ୍ତ ଦୂର ସୃଜ, କାଳ କାଳ ଧର,
ତା'ର ଦୁଃଖ,
ତା'ର କଷ୍ଟ,
ତା'ର ଅଶ୍ରୁ,
ତା'ର ପ୍ରାଣବୋଳା ଅଭିମାନ
ମୁହିଁ ଯେବେ
ପାରିଲନି ଦେଖି,
ମୁହିଁ ଯେବେ ପାରିଲନି ବୁଝି,
କେମନ୍ତେ କହିବ ନାଇଁ
ମୁକ୍ତ କର ରସନାର ପ୍ରତି ତନ୍ତ୍ରୀ—
ମାନବର ମହା ମହିମାରେ
କରିଚ ମୁଁ ବେଖାତର,
ଦେଇଚ ମୁଁ ତୀବ୍ର ଅପମାନ;
ଯୁଗେ ଯୁଗେ ଜନ୍ମେ ଜନ୍ମେ,
ଲୋକେ ଲୋକେ,
କାହିଁ ହେଲେ
ନାଇଁ ମୋର
ଅଣୁମାତ୍ର ସ୍ଥାନ !

ଏକାକୀ ବିହଗ ପରି,
ସୁଦୂର ପ୍ରବାସ ଗାଁଏ
ବୁଲୁଚ ମୁଁ ପେଟ ପାଇଁ;
ମୋର ଏଥି ଆପଣାର କଏ ଜଣେ ନାଇଁ;
ଦେଖୁଚ ମୁଁ ଘରଆଡ଼େ
ବିଲ ବଣ ଗାଆଁ ଗଣ୍ଡା
ପର୍ବତ ପାହାଡ଼ ନଦୀ ପ୍ରାନ୍ତର ସରଣୀ,
ଦେଖୁଚ ମୁଁ ସୀମାହୀନ ଜନତାର କଳ କୋଳାହଳ,
ଦେଖୁଚ ମୁଁ ଆନନ୍ଦ ଉତ୍ସବ,
ଦେଖୁଚ ମୁଁ ସୂର୍ଯ୍ୟ ଉଇଁବାର; ବୁଡ଼ିବାର
ପାଟଳ ବକ୍ଷରେ ରଞ୍ଜି ବାରୁଣୀ ପଟଳ,

ଦେଖୁଚି ଗିରି ଚୂଳେ
ମେଘର ଘୂମନ୍ତ ଲୀଳା,
ଦେଖୁଚି ମୁଁ କଶୋର କଶୋରୀ
ତରୁଣ ତରୁଣୀ, ଯୁବା ଯଉବନୀ
ହସିଖେଳ ଅନନ୍ତ ସୋହାଗେ
ପବଣେ ପବଣ ତାଳ
ଗୁଳିଛନ୍ତି ଦିବସ ରଜନୀ,
ଦେଖୁଚି ମୁଁ ଆକାଶ ଅବନୀ ପୂରି
ଜୋଛନାର ମହା ପାରାବାର—
ସୀମାହୀନ ସପନର ବିପୁଳ ସଂସାର;
ଦେଖୁଚି ମୁଁ ବଇଁଶୀ ବଜାଇ,
ବସି ମଇଁଷି ଉପରେ,
ଫେରୁଚି ଗଉଡ଼ ପିଲା
ପାହାଡ଼ର ପାଦତଳୁ
ସେ ଦୂର ପାହାଡ଼ୀ ଗାଏଁ,
ଓଠରେ ଆନନ୍ଦ ହାସ
ଖେଳ ଖେଳ ଯାଏ !
ଦେଖୁଚି ମୁଁ ଗ୍ରାମ ସୀମନ୍ତିନୀଦଳ
କେଶେ ଖୋସି ବଣଆଫୂଲ
କାଖେ ଧରି କଳସୀରେ ଜଳ
ଉଦ୍ଦାମ ଯୌବନ ତେଜେ
ଜୀବନ୍ତ ସୁନ୍ଦର –
ପାହାଡ଼ ପ୍ରାନ୍ତର
ବନଭୂମି ତଳେ ତଳେ ଗୁଳିଛନ୍ତି
କେତେ ହସ ଖୁସି କଥା
କହି ପରସ୍ପର !

ଏ ସବୁ ସମ୍ପଦ ଶିରୀ
ପ୍ରତି ନିତି ଦେଖି ଦେଖି ଯାଏ;
କାନ୍ଦି ଉଠେ ବୁକୁ ତଳ,
ଲୋଚନ ଯୁଗଳ,
ମାତିବ ଅଶ୍ରୁରେ ହୁଏ ଛଳ ଛଳ;

ପେଟ ପାଇଁ ବୁଲୁଚ ମୁଁ
ଦୂରେ ରହି
ତୁମ ଭଳ ଗୋଟିଏ ଅନ୍ତର !
ମୁହିଁ ସତେ କେଡ଼େ ହତଭାଗା ?
ସମୁଦାୟ ପୃଥିବୀରେ
ମୋହ ପାଇଁ ନାହିଁ ଟିକେ ଜାଗା—
ଯେଉଁଠାରେ ତୁମେ ମୁହିଁ
ସୁଖେ ଦୁଃଖେ ବିପଦେ ଆପଦେ
ଦିନ ନେଉଥାନ୍ତେ ବାହି
ଜଣେ ଜଣକୁ ଯେ ଗୃହିଁ;

ଜୀବନ ଜୀବନ ପର
କରୁଥାନ୍ତ ମୁହିଁ ଅନୁଭବ,
ଏହି ମହା ନିସର୍ଗର ଅନନ୍ତ ଉତ୍ସବ
ପ୍ରାଣେ ପ୍ରାଣେ ସୃଜୁଥାନ୍ତା
ଅନନ୍ତ ମାଧୁରୀ !
ମୁହୂର୍ତ୍ତି ମୁହୂର୍ତ୍ତି ଧର ଏ ଜୀବନ ପାତ୍ର
ଉଠୁଥାନ୍ତା ପୂର
ସରଗର ସୁଧା ଉପାୟନେ !!
'ଜୀଇ ଥିଲେ ଜୀବନରେ
ପୁଣି ଦେଖା ଦେହି'
କହୁ ତ ନ ଥାନ୍ତ ତୁମେ
ଅଶ୍ରୁଳ ନୟନେ,
ସୁଦୂର ସେ କୁଟୀର ଅଙ୍ଗନେ—
ଯହିଁ ତୁମେ ରହିଥିବ ଏକା,
ଗୃହିଁ ଥିବ ଗୃତକ ପକ୍ଷୀଟି ପର,
ପାଇବାକୁ
ମୋ ଟିକକ ଦେଖା !!

———

# ଯାଉଚ, ଥାଅ !

ବିଦାୟ ବେଳେ ଗୁହାଁଚ ମୋରେ
କହିନି ପଦେ କଥା !
ଗୁହାଁଚ ଖାଲି ନୟନ ତୋଳି !
ଲୁଗଇ କିବା ବ୍ୟଥା !
ଯାଉଚ, ଥାଅ ! କହିଲି ହାୟ !
ଜବାବ ନାହିଁ ଆସେ,
ସେ ଆଖି ଦୁଇ ଆଘାତ ପାଇ
ଲୋତକ ନୀରେ ଭାସେ !

ଗୁଲିଲ ମୁହିଁ କର୍ମ ଭୁଲି
ମାନୁନି ମୋର ମନ,
ସେ ଦୁଇ ଆଖି ମତେ କି ଡାକି
କରଇ ଛନ ଛନ !
ସ୍ୱର୍ଗ ଯଦି କାହିଁରେ ଥାଏ
ଅଛି ସେ ଦୁଇ ଆଖେ
ମୃତ୍ୟୁ ଯଦି ମଧୁର ଲାଗେ
ଲାଗେ ତାହାରି ପାଖେ !

—*—

# ଗୋଟିଏ କଥା

ପରାଣ ଆବେଗେ ଦିନେ କହିଥିଲି ସଖି !
ଜୀବନେ ଗୋଟିଏ କଥା ପାରିବ କି ରଖି ?
ସେଇ ନବ ପରିଚୟେ ମଧୁ ଆଳାପନେ
ଫଗୁଣ ପ୍ରଭାତେ ବସି ଯୂଥିକା ଅଙ୍ଗନେ !

ସେ ଦିନ ପ୍ରଶାନ୍ତ ରବି ଆସୁଥିଲା ଉଇଁ,
କନକ କିରଣେ ରଞ୍ଜି ଶ୍ୟାମ ପଦ୍ମା ଭୂଇଁ,
ହସି ଉଠୁଥିଲା ଦୂର ସହକାର ବନ
ବକୁଳ ମଞ୍ଜରୀ ଘେନି ପିକର ପଞ୍ଚମ !

ସରମେ ନୁଆଇଁ ମଥା କହିଲ ସୁନ୍ଦରି !
ବଙ୍କିମେ କନକ ଗ୍ରୀବା ତୋଳ କେତେ ଭଳି,
"କି କଥା କହିବ ମୋରେ ମୋ ଜୀବନ ସ୍ୱାମୀ
ପାରିବନି ରଖି ହୋଇ ତୁମ ହୃଦ ରାଣୀ;

କହୁନା କାହିଁକି ପ୍ରିୟ ? କହିବ କି କଥା
ବେଳୁ ବେଳ ବଢ଼େ ମୋର ପ୍ରାଣ ଆକୁଳତା ।"
ମଥା ତବ କୋଳେ ଥାପି କହିଲଇଁ ମୁହିଁ
"ଯେବେ ମୁଁ ଛାଡ଼ିଆସି ଯିବି ଏ ମୋହନ ଭୂଇଁ—

ଯୁଗ ଯୁଗ କାଳ କାଳ ପାଇଁ ଲୋ ସୁନ୍ଦରି !
ମୋ ଲାଗି କାନ୍ଦିବୁ ନାଇଁ ବକ୍ଷ ପୁଟେ ଭରି-
ଅସୀମ ଅନନ୍ତ ବ୍ୟଥା, ଏ ପଦ୍ମ ଆନନ
କରିବୁନି କଳାକାଠ ପରି ଶିରୀ ହୀନ !

ଚଳ ଚଳ ଏ ଯେ ତୋର ମୀନ ଆଖି ଦୁଇ
ସକଳ ବେଦନା ଘୁଞ୍ଚେ ଯାହା ସ୍ପର୍ଶ ପାଇ,
ଉଷ୍ଣ ଅଶ୍ରୁମାନରେ ସିକ୍ତ କରିବୁନି ସଖି !
ଏତିକି ମାଗୁଣି ମୋର ପାରିବୁ ଲୋ ରଖି;

ଏ ଯେଉଁ ରକ୍ତିମ ଓଠ ବାଳଭାନୁ ଜିଣି
ବେଦନାର କୃଷ୍ଣଛାୟା ଅର୍ପି ଗରବିଣି !
କେମନ୍ତ ନାଚିବ ତହିଁ ? ଲଗେ କଳବଳ
ରହିଥିବୁ ହୋଇ ନିତ୍ୟ ସଜ ଶତଦଳ ।

ମୋ ବରହେ କାତର ତୁ ହେବୁନ ସୁନ୍ଦର !
ଏ ଅନନ୍ତ ସ୍ନେହ ତୋର ରଖିଥିବୁ ଭର
କହୁ କହୁ ଫୁଲ ଇନ୍ଦୀବର ଜଣା ଆଖି
ଲୋତକରେ ଆର୍ଦ୍ର କର କାନ୍ଦ କାନ୍ଦ ଡାକ—

କହିଲ—"ହେ ପ୍ରିୟତମ ! ଏ ନିଷ୍ଠୁର କଥା
କହିବାକୁ ଥିଲ ମତେ ଦେବା ପାଇଁ ବ୍ୟଥା !
କହନି କହନି ମୋରେ ସେ ନିଠୁର କଥା
ତୁମ ବିନେ କାହିଁ ମୋର ସୁଖ ସରସତା ?

ତୁମ ବିନା କିବା ଲଭ ଏ ଶିଶୁ ଦେହର
ତୁମ ଆଗେ ଆଖି ବୁଜେ ଆଶୀର୍ବାଦ କର ।"

———

## ହୃଦୟର ଦାନ

ଦରିଦ୍ର କୁଟୀରେ ବସି ପ୍ରେୟସୀରେ ଚାହିଁ,
କହିଲଇଁ "ଇଚ୍ଛା ହୁଏ ଖାଇବାର ପାଇଁ—
ଭୂଜା କିଛି, ଏ ବର୍ଷଣ ବାଦଲ ବେଳାରେ
ଅଛି କିଛି ଘରେ କଣ ?" ସେ ବଣା ଡଙ୍କାରେ !

ଖୋଜିଗଲା କିଛି ନାଇଁ; ଗୃହ କଣେ ଠାଏଁ
ଡଖୁଡ଼ା ଓ ଚୂଡ଼ାଭୂଜା ପ୍ରତ୍ୟେକ ମୁଠାଏ,
ଟସ କେଉଁ ଯୁଗର ସେହ୍ନେ ରହିଅଛି ପଡ଼ି
ପାଛୁଡ଼ି ସଜାଡ଼ି ଏକ ଗୁଙ୍ଗୁଡ଼ରେ ଭରି—

କହିଲା ସସ୍ନେହ ଭାଷେ, "ଖାଇବକି ପ୍ୟାରେ ?
ସେତେ ଭଲ ଲଗିବନି" ବୋଇଲି ମୁଁ ତାରେ

"ଆଣ ସଖି ! ଦଅ ମତେ ନଷ୍ଟେ ଖାଇବଇଁ
ଏ ତହୁଁ ଅମୃତ ନୁହେ ଏତେ ମିଠା ସତ୍ୟ !

ତୁମର ପ୍ରାଣର ମଧୁ ସହୁଁ ଢଳ ଢଳ
କେମନେ ସେ ହେବନାଇଁ ମତେ ରୁଚିକର ?"

———

# ଆଜି କମ୍ପା ଯାଇଅଛୁ ମତ ?

କେତେ ସ୍ନେହ ଦେଇଚ ମୁଁ ଅକାତରେ ତାହାଠାରେ ଭର
ପୃଥିବୀର ସବୁ ସମ୍ପଦରୁ ଦେଖିଚ ମୁଁ ତାରେ ବଡ଼ କର ।
ମୋ ଅନ୍ତର ପ୍ରତି ସୂକ୍ଷ୍ମକୋଷେ ଏଇଭଳି ନାଇଁଥିବ ଥାନ
ଯେଉଁଠାରେ ଉଠିନାଇଁ ବାଜ ତା ବୁକୁର ମଧୁମନ୍ଦ୍ର ତାନ;

ଯେତେ ଯାହା ସୁନ୍ଦର ମଧୁର ଦେଇଛୁ ମୁଁ ତାହା କରେ ଭର
ତାରେ ଯେତେ ମୁହିଁ ଦେଖିପାରେ, କଳ୍ପନା କେ ପାରବନି କର ।
ତାର ସେଇ ନୀଳନେତ୍ର ତଟେ ଝୋପେ ଲୁହ ହେଲେ ଢଳ ଢଳ
ସହି ପାରେ ନାଇଁ ମୋ ଅନ୍ତର, ପୋଛିଦଏ ହୋଇ ତରତର ।

ଓଠେ ହାସ ନ ଜାଗିବାଯାଏଁ ଶାନ୍ତ ପଡ଼େ ନାଇଁ ମୋର ହିଆ
ମୁଁ ଜାଣେ ମୋ ସୁନାର ଶିକଳ ବାନ୍ଧ ରଖିଅଛୁ ସେ ମୋ ପ୍ରିୟା !
ଜୀବନେ ମୋ କେତେ ଯେ ମୁହୂର୍ତ୍ତ କଟିଛୁ ତା ସୀମ ସଂଖ୍ୟା କାହିଁ ?
ଦିନେ ହେଲେ ପଦେ ରୁଷ୍ଟ-ବାଣୀ ତାରେ ମୁହିଁ କେବେ କହିନାଇଁ !

ପ୍ରଭାତର ଶିଶିର ଧଉତ ଅର୍ଦ୍ଧସ୍ଫୁଟ ଗୋଲାପଟି ପର,
ନିତ ଯେବେ ହସି ଉଠୁଥାଏ ମୋର ପ୍ରିୟା ଧୀରର ଅପ୍ସରୀ,
ଶୁହୁଁ ଦେଲେ ଲାଜଲାଜ ବୋଲା ତାର ସେଇ ଅଧର ପଲ୍ଲବେ
ସେନେହର ମଧୁବୋଲା ଭାଷା ଜାଗେ ଯେବେ ମୋହନ ଗୌରବେ,

ମତେ କେତେ ଲଗଇ ଅଧିକ ! ପୃଥିବୀର ଆଉ କେଉଁ କଣେ
କ ଅମୃତ ରଖିଚ ବିଧାତା ବିଶ୍ୱାସ ମୋ ହୁଏ ନାହିଁ କ୍ଷଣେ !
ତା ଓଠର ସେ ଅମୃତ ହାସ ଆଜ କମ୍ପା ଯାଇଅଛି ମର ?
ଆଉ ମତେ ସେନେହ ଉଦ୍‌ବେଳେ କହୁନ ସେ କଥା ଆଗପର ।

ଗୃହିଁ ଦେଲେ ଜୀବନର ଦୁଃଖ ଯାହା ପାଖେ ଯାଉଥିଲ ଭୂଲି,
ଆଜ ତାରେ ଗୃହିଁ ଦେଲେ ଖାଲି ନେତ୍ରେ ମୋର ଲୁହ ଉଠେ ପୂରି !
ଏତେ ଦୁଃଖ ଏତେ ଯେ ବେଦନା ଏତେ ଲୁହ ଏତେ ହତାଶାର
ତା ଜୀବନ ସକଳ ସମ୍ପଦ କରି ଦେଇଅଛି ଚୂରମାର !

ତା ବୁକୁରେ ଟିକିଏ ଆଘାତ, ମୋ ଅନ୍ତରେ ମହା ବଜ୍ରପରି,
ତା ନୟନେ ଏକ ବିନ୍ଦୁ ଲୁହ, ମୋ ନୟନେ ସପ୍ତ ସିନ୍ଧୁ ସରି;
ତଳେ ସେତୁ ରହିଲେ ମଉନ, ପୃଥ୍ୱୀ ମୋରେ ମରୁଭୂଇଁ ସମ,
ତା' ଓଠରୁ ମରିଗଲେ ହସ, ମରିଯାଏ ମୋ ନିଃସ୍ୱ ଜୀବନ;

ତା' ବୁକୁରୁ ନ ଫୁଟିଲେ କଥା, ମୂକ ରହେ ମୁଁ ପାଷାଣ ପରି,
ନ ଝରିଲେ ତା ଦେହୁଁ ଲାବଣ୍ୟ ନିଭିଯାଏ ମୋ ଦେହରୁ ଝଳ ।
ଶତ ବଜ୍ର ପଡ଼ୁ ମୋର ଶିରେ ସହି ନେବି ନ ହୋଇ କାତର,
ମୁଁ ଗୃହେଁ ସେ କମଳକଳିକା ପରି ଦିଶୁ ନିତ୍ୟ ତଳ ତଳ !

ତା' ଓଠର ସେ ଅମୃତ ହସ ଆଜ କମ୍ପା ଯାଇଅଛି ମରି ?
ଆଉ ମତେ ସେନେହ ଉଦ୍‌ବେଳେ କହୁନ ସେ କଥା ଆଗ ପରି !

—*—

# ପ୍ରବାସୀ-ପଥିକ

ଗୋଟିଏ ଆଖି ତଳୁ କୋଟିଏ ଭାଷା ଜାଗେ
ଅଥପୁ କରଦ୍ଧଏ ମୋତେ,
ମୁଁ ଖାଲି ଚାହିଁ ରହେ, ମୁଁ କହୁ ନାହିଁ କହେ
କଉଳ ଯିବ ମୋର ପଥେ ।

ଅସୀମ ପଥେ ମୁହିଁ ଯାତ୍ରୀ ଚାଲିବଇଁ
ଆଜ ମୁଁ ଚାଲ ନାଇଁ ପାରେ,
ସେ ମୋରେ ଚାହିଁ ରହେ ମମତା ଉଦ୍‌ବେଳେ
ବୁଡ଼ ମୁଁ ଯାଏ ଲୁହ ଧାରେ ।

ବସନ ଅଞ୍ଚଳେ ମୋ ଲୁହ ପୋଛୁ ଦେଇ
ନିବଡ଼ ଆଶ୍ଳେଷ ଦିଏ,
ଏ ମହା ଧରଣୀରେ କେତେ ସେ ଦେଖିପାରେ
ହୃଦୟୁ ବ୍ୟଥା ବୁଝିନିଏ ।

ଆସିବ କେବେ ତମେ ନ ଆସ ପଛେ ଷଣେ
ମନରେ ଥିଲେ ସବୁ ହେଲା,
କେସନେ ଯିବ କାହିଁ ତାହାର କଥା ହାଇ !
ମରମେ କରେ ଖାଲି ଖେଳା ।

ନିଃସ୍ୱ ଏ କୁଟୀରେ ରହିଲ ରହିଲ ମୁଁ
ଯିବତ ଯାଅ କଥାଁ ଡେର ?
ପ୍ରଥମ ପଦପାତେ ଚାହେଁ ମୁଁ ପଶ୍ଚାତେ
ମାରବେ ତାହା ଆଡ଼େ ଫେର;

ନିଠୁରେ ଏଡ଼ ଦେଇ ମୋହନ ମାୟା ତାର
ଚାଲିଲି ଦୂର ପଥେ ମୋର
ମନ ତ ମାନୁନାଇଁ; କଉଳ ସୁନିବଡ଼
ତାହାର ସେ ମମତା ଡୋର !!

କେତେ ଯେ ବିଲ ବଣ ପାହାଡ଼ ପ୍ରାନ୍ତର
ପଥେ ଯେ କେତେ ନଈ ନାଳ,
ଲଙ୍ଘି ଆସିଲଇଁ ତଥାପି କାହିଁପାଇଁ
ନେତ୍ରୁ ବହିଯାଏ ଧାର ?

କେତେ ଯେ ସଖା ସାଥି ଭେଟିଲେ ପଥେ ପଥେ
ସେନେହ ଆଳାପନ କରି,
ଗଲଚ ହାଇ ! ହାଇ ନ୍ୟୂନ ବୋଧ ମତେ
ତାହାର କଥା ଯାଏ ସ୍ମରି;

କର୍ମ ଭୂଇଁ ମୋର ଏଇତ ଏଇ ଏଇ
କେତେ କା' ଭୁଲେ ହୁଏ ଦେଖା,
ଏ ସବୁ ଭିତରେ ବି ତା' କଥା ମନେ ପଡ଼େ
ଦିଶି ଯେ, ତାର ରୂପରେଖା !

ସନ୍ଧ୍ୟା ହେଲେ ଏଇ ପାହାଡ଼ ତଳେ ତଳେ
ମିରବେ କେତେ ଯାଏ ବୁଲି,
ସଡ଼କ ଧାରେ ଧାରେ ଝଟିମି—କଲତାନ
ଶୁଣେ ମୁଁ କେତେ କାନ ପାରି !

ପାହାଡ଼ ଚୂଳେ ଦେଖେ ମେଘର ନର୍ତ୍ତନ
ଇନ୍ଦ୍ରଧନୁ ମଧୁ ଗ୍ଭଇ,
ଏ ସବୁ ଶିଖି ମେଲେ ସେହୁ ବି ମନେ ପଡ଼େ
ଦିଶେ ତା' ରୂପ ରହି ରହି !

ଜାଣୀଥେ ଗ୍ଭରଆଡ଼ ହେଲେକ ଶୂନଶାନ
ସେ ମୋର ବେଣୀ ପଡ଼େ ମନେ,
କଭଳ ଉଛୁଥିବ କସ ସେ ସାଜୁଥିବ
ନିଃସ୍ୱ ସେ କୁଟୀର କଣେ !

ନୀରବେ ଲୁହ କେତେ　　ଯାଉ ତ ଥିବ ଝରି
ତା ନୀଳ ନୟନର ତଟୁ,
ବେଦନା ସିନ୍ଧୁ ଯେ　　ଉଚ୍ଛୁଳି ପଡୁଥିବ
ରୋଧିବ କିଏ ମନ ପଟୁ !

ନେତ୍ରେ ନୀର ତାର　　ଆସୁ ତ ନାହିଁ ଥିବ
ବେଦନା ଲାଗୁଥିବ ବଡ଼,
ମନର କଥା ତାର　　ମନରେ ରହୁଥିବ
ହୋଇ କି ନିଦାରୁଣତର !

ସେ ଖାଲି ବସିଥିବ　　ନୀରବେ ମନେ ଗୁହିଁ
ସେ ଖାଲି ଭାଳୁଥିବ ମନେ,
କେମନେ ଆସିଲି ମୁଁ　　ନିଠୁରେ ଛାଡ଼ି ଦେଇ
ସେ କେଉଁ ବହୁଦୂର ପଥେ !

ତାହାର ବୁକୁ ତଳେ　　ଦାରୁଣ ବ୍ୟଥାଟିକ
ବୁଝିବା ପାଇଁ ମନେ ହୁଏ
ମିଳିଲା ନାହିଁ ଯେବେ　　ଟିକିଏ ଅବସର
କି ଶିଖ ଏ ଜୀବନେ ଥାଏ !

ଗଭୀର ମରମର　　ସେ କେଉଁ ସାତ ତଳେ
ସାଇତି ରଖିଛି ସେ ମନେ,
ସକଳ ସମ୍ପଦୁ　　ବଳି କି ସମ୍ପଦ
ସେ ନୁହେଁ ମୋର ଏ ଜଗତେ



# ଆସିଲି କି ଫେରି ?

ବହୁଦିନ ପରେ ଯେବେ ମୁଁ ଫେରିଲି
ସେଇ ପରିଚିତ ସୁଦୂର ଭୂଇଁ,
ଦେଖିଲି ସେ ନଈ ବହୁଚି ସେପରି
କଳଚାନେ କୋଟି ପଥର ଛୁଇଁ ।

ବହୁଦିନ ପରେ ଯେବେ ମୁଁ ଫେରିଲି
ସେଇ ପରିଚିତ ସୁଦୂର ପଥ
ଦେଖିଲି ଆକାଶେ ନୀଳ ମଥା ଟେକି
ଠିଆ ହୋଇଅଛି ସେ ପରବତ ।

ଦେଖିଲି ଫୁଟୁଚି ଗଛରୁ ଚମ୍ପକ
ଗନ୍ଧେ ଆମୋଦେ ସବୁରି ହୃଆ,
ଦେଖିଲି କେଉଁଠି ଗଛର କୁଟୀର
କେଉଁଠି ସଉଧ ଗରବେ ଠିଆ ।

ଦେଖିଲି ଦୋକାନ ବଜାର ଓ ହାଟ
ବିକା କିଣା ନିତି ଲାଗିଚି ତହିଁ,
ଦେଖିଲି ରାସ୍ତାଚି ଗୋଟି ଗୋଟି ହୋଇ
ସବୁ ବାଟ ଘାଟ ସବୁରି ପାଇଁ ।

ଦେଖିଲି ସଞ୍ଜେ ଗୋଧନ ବାହୁଡ଼ା,
ଶୁଣିଲି ଚିପାର ମଧୁର ବାଣୀ,
ଦେଖିଲି ସୂର୍ଯ୍ୟ ପାହାଡ଼ ସେପାରେ
ବୁଡ଼ିଯିବା ଡାଳ ପାଟଳ ଠାଣି,

ଦେଖିଲି କେତେ ମୁଁ ଯୁବା ଯଉବନୀ,
ଦେଖିଲି ବାଳକ ବାଳିକା ଦଳ
ଦେଖିଲି କା' ଓଠେ ମୋହନ ହାସ୍ୟ
ନୟନେ ଗୃହାଣୀ ମଧୁରତର ।

ସବୁତ ଦେଖିଲି, ସବୁତ ବୁଲିଲି,
ସବୁତ ଗୃହିଁଲି ଗୋଟିକି ଗୋଟି
ସବୁ ଅନୁଭବେ କାହା ଅନୁଭବ,
ବିଶାଳୁ ବିଶାଳ ହୁଅଇ ମୋ'ଠି !

ବହୁଦିନ ପରେ ଯେବେ ମୁଁ ଗୃଲିଲି
ସେଇ ପରିଚିତ ସୁଦୂର ଭୂଇଁ
ଦେଖିଲି ସବୁତ ସବୁଠି ରହିଚି,
କିଏ ଯାଏ ମୋରେ ନିବର୍ଡ଼େ ଛୁଇଁ ?

କା' ପାଇଁ ଢାଳିଲି ଲୋଚନୁ ଲୋତକ,
କାହାକୁ ଖୋଜିଲି ନୀରବ ମନେ
କାହାକୁ ନ ଦେଖି ଦେଖିଲି କାହାକୁ
ପରିଚିତ ବିଲ ପାହାଡ଼ ବନେ !

କିଏ ସେ ବୁଲୁଚି ସେଇ ପଥେ ଘାଟେ,
ନ ଦିଶି କିଏ ସେ ଯାଉଚି ଦିଶି
ଅଧେ ବାଣୀ କାରେ କହିଲି ବେଳଳୁ
ଆନ ଅଧେ ଯାଏ ଅଧରେ ମିଶି ।

କିଏ ସେ କାହାର ବିମୋହନ ଛବି
ବେଶି ବେଶି ପଡ଼ି ଯାଉଚି ମନେ,
ଖୋଜିଲେ କାହାକୁ ଖୋଜି ମୁଁ ପାରୁନି,
ଅଛୁ କି ନ ଅଛୁ ମୋ ପାଇଁ ଜଣେ।

ନିଆଶା ଭିତରେ ଆଶାର ସପନ,
ଆଶା ଭିତର କେ' ନିଆଶା ଆଣେ ?
ମୋ ବିନୁ କିଏ ସେ ଜାଣିବ ଏ ସବୁ
କିବା ଲଭ କହି କାହାର କାନେ ?

ବୁଝିଲେ କିଏ ସେ ବୁଝିବ ଏ ସବୁ
ନିଜେ ବୁଝି ନିଜେ ରହିଚି ଭୁଲି,

ଯେତେ ଭୃଙ୍ଗ ହେଲେ କି ମଧୁ ଧିଆନେ
କିଏ ଆସି ମୋରେ ଉଠାଏ ପୁଣି !

ବହୁଦିନ ପରେ ଯେବେ ମୁଁ ଗୃକଲି
ସେଇ ପରିଚିତ ସୁଦୂର ଭୂଇଁ
ଦେଖିଲି ସବୁତ ସବୁଠି ରହିଚ
କିଏ ଯାଏ ମୋରେ ନିବିଡ଼େ ଛୁଇଁ ?

ବହୁଦିନ ପରେ ଯେବେ ମୁଁ ବୁଲିଲି
ସେଇ ପରିଚିତ ସୁଦୂର ଭୂଇଁ
ଦେଖିଲି ସବୁତ ସବୁଠି ରହିଚ
କିଏ ଯାଏ ମୋରେ ନିବିଡ଼େ ଛୁଇଁ ?

ବୁଲିଲେ ବୁଲୁଚ ହସିଲେ ହସୁଚ
ଦେଖିଲେ ଦେଖୁଚ ମୁଁ ଗୃହଆଡ଼,
କାନ୍ଦିଲେ ମୁହିଁ କାନ୍ଦୁଚ ବସି
ନୟନୁ ଝଆଗି ଲୋତକ ଧାର ।

ଏ ସବୁ ଭିତରେ କାହାରେ ଖୋଜୁଚ
କାହାରେ ଡାକୁଚ ଏ ବୁକୁ ତଳେ,
କାହାର ଅଭାବ ଟିକକ ପାଇଁ ମୁଁ
ବୁଡ଼ିଯାଏ ମହାସାଗର ଜଳେ !

କେଉଁ ମହାପାରେ କିଏ ସେ ରହିଛି,
କାହା ଲାଗି ଏତେ ମମତା ଜାଗେ
କାହା ବୁକୁତଳ ସମ୍ପଦ ଟିକ
ଈଶଆଡ଼େ ଚାହିଁ ନୀରବେ ମାଗେ !

କାହାରେ ଚାହିଁ ମୁଁ ପିବାପାଇଁ ଫୁଟି
ଅସୀମ ଧିଆନେ ଯାଉଚ ବୁଡ଼ି
କାହା ଲାଗି ମୋର ନୟନେ ଦିଶେ ଏ —
ଝିଲ ବନ ଗାଆଁ-ସପନପୁରୀ ।

କି ମଧୁ ସୋହାଗ ଦେଇଛୁ ମତେ କେ,
ସେ କେଉଁ ଜନମେ ଜୀବନ ଭରି,
ତା'ରେ ମୁଁ ଦେଖୁଛି କି ବିରାଟ କରି
ଅନୁଭବ ଖାଲି ପାରିବି ଧରି ।

ବହୁଦିନ ପରେ ଯେବେ ମୁଁ ଗଲି
ସେଇ ପରିଚିତ ସୁଦୂର ଭୂଇଁ
ଦେଖିଲି ସବୁତ ସବୁଠି ରହିଛି,
କିଏ ଯାଏ ମୋରେ ନିବିଡ଼େ ଛୁଇଁ !

ବହୁଦିନ ପରେ ଯେବେ ମୁଁ ଗଲି
ସେଇ ପରିଚିତ ସୁଦୂର ଭୂଇଁ
ଦେଖିଲି ସବୁତ ସବୁଠି ରହିଛି
କାହା ଲାଗି ଏତେ ପାଗଳ ମୁହିଁ ?

ଜୀବନର ଏଯେ ମଧୁ ଦିବା ନିବା
ଜନମେ ଜନମେ ହୁଏ କି ଭୁଲ ?
ଯେତେ ଭରି ଦେଲେ ପରାଣ ପାତ୍ର
ଉଠେନା ଉଠେନା ଉଠେନା ପୂରି !

ମାସ ପୂରିଯାଏ ଦିନ ପୂରିଯାଏ
ଜୀବନ ବି ଯାଏ ମରିବେ ପୂରି,
ଜୀବନରୁ ବଳି କିବା ସେ ମାଧୁରୀ
ଯେତେ ମିଳେ ସେତେ ହୋଇବ ଝୁରି !

କା' ଲାଗି ଏତେ ଯେ ମୋହନ ବାସନା
ଆକାଶ ପରି କି ବିରାଟ ସତେ !
ଖୋଜୁଥିବି ବସି ଜନମେ ଜନମେ
ବୁଲୁଥାଏ ମୁହିଁ ଯେବଣ ପଥେ !

କୁଟୀରେ କୁଟୀରେ ସଉଧେ ସଉଧେ
ବାଲି ବନେ ଯେତେ ବୁଲିଲେ ଏକା,

କେତେ ଆଶା ଜାଗେ ଏ ସବୁ ଭିତରେ
ପାଇବାକୁ ତାର ଟିକିକ ଦେଖା !

ଯାଆନା ବାସନା ଯାଆନା ଯାଆନା
ଯାଅନା ଆଜ ଏ ମରମୁ ମର
ସବୁ ବାସନାରୁ କ ମଧୁ ବାସନା
ଫାଉଅଛି ମୋରେ ପାଗଳ କର ।

ବହୁଦିନ ପରେ ଯେବେ ମୁଁ ଗୃଲଲ
ସେଇ ପରଚତ ସୁଦୂର ଭୂଇଁ
ଦେଖିଲ ସବୁଜ ସବୁଠି ଉହ୍ୱର
କାହାଲଗି ଏତେ ପାଗଳ ମୁହିଁ ?

ବହୁଦିନ ପରେ ଯେବେ ମୁଁ ବୁଲଲ
ସେଇ ପରଚତ ସୁଦୂର ଭୂଇଁ
ଫେର ମୁଁ ଆସିଲ, ଆସିଲ କ ଫେର ?
କଏ ଯାଏ ମୋରେ ନିବଡ଼େ ଛୁଇଁ ?

ଯେତେ ଫେର ଆସେ, ସେତେ ପାଶେ ପାଶେ
କଏ ଛୁଇଁଯାଏ କଭଳ ସତେ ?
ସେଇ ବାଟଘାଟ, ସେଇ ନଈ ନାଳ,
ଭୁଲେ କଏ ଧର ରଖିଛ ମତେ !

ଫେର ମୁଁ ଆସିଲ, ଆସିଲ କ ଫେର ?
କ ଲଗି ଫେରବ କାହାର ଲଗି ?
ମୁଁ ଯାହା ମାଗିଚ ପରଣ ମାଗୁଣୀ
କାହା ବୁକୁ ତଳେ ଉଠିଚ ଜାଗି ?

ଫେର ମୁଁ ଆସିଲ, କା ଭୁଲେ ଆସିଲ,
କାଭୁଲେ ହେଲ ମୁଁ ପରଣ କଥା,
କାହାଲଗି ମୁହିଁ ଯାଇଥିଲ ଗୃଲ
ବୁଝିଲ ମୋର କେ ଜୀବନ ବ୍ୟଥା !

କିଏ ସେ ଶୁଣିଲା, କିଏ ସେ ବୁଝିଲା,
ନିଜର କଣ୍ଠକେ' ଡାକିଲା ମତେ ?
କା' ଲାଗି ଯାଇ ମୁଁ କା' ଲାଗି ଫେରିଲି,
ଭେଟିଲି ବା କାରେ ସେ କେଉଁ ପଥେ !

କାହା ହାତେ ଦେଲି କି ଶିଶୁ ବିଭବ
କା' ଓଠେ ଦେଖିଲି କି ମଧୁ ହାସ
ଗୁଡ଼ ଆସିଲି କେ' ମତେ କେତେ ଦୂରେ
ପୂରିଲା କି ମୋର ପରାଣ ଆଶ ?

ବହୁ ଦିନ ପରେ ଯେବେ ମୁଁ ବୁଲିଲି,
ସେଇ ପରିଚିତ ସୁଦୂର ଭୂଇଁ
ଫେରି ମୁଁ ଆସିଲି; ଆସିଲି କି ଫେରି ?
କିଏ ଗଲା ମୋରେ ନିବଡ଼େ ଛୁଇଁ !!

---

## ଯୁଗଳ-ଯାତ୍ରୀ

ବହୁବାଟ ତୁମେ ମୋ ସାଥେ ଆସିଲ ଚାଲି !
ଆଉ କେତେ ବାଟ ଆସିବ କହ ଗୋ କହ !
କେତେ ଯେ କଣ୍ଟା ଖୁଞ୍ଚି ଚରଣେ-ଲାଗି,
ଆଉ ଚାଲିବାକୁ ଲାଗିବଣି ଦୁର୍ବହ !!

ଚାଲିଅଛ ତୁମେ ଚାଲୁଅଛ, ଚାଲୁଅଛ,
ବିବ୍ରତ ନୋହ କ୍ଳାନ୍ତ ନିମିଷେ ନୋହ,
ଝୁଣ୍ଟିଚ କେତେ ପଡ଼ିବ ଯାଇଚ କେତେ,
ତଥାପି ଚାଲିଚ କିବା ଉଦ୍‌ବେଗ ବୋହ !!

ବଦନେ ତ କହନ୍ତ ଅଧର ଶୁଖାଇ ମତେ,
"ଧାରିବାକୁ ଚାଲି ଏଇ ଦୁର୍ଗମ ପଥେ,
ଥକି ପଡ଼ିଲଣି ପାଦ ମୋର ଚନ୍ଦ୍ରନାଇଁ;
କି ଶିକ୍ଷା ପାଇଲି ଏତେ ଚାଲି ଚାଲି ସତେ।"

ଉପରୁ ଛୁଟୁଛି ନିଆଁ - ଶର ପରି ଖରା,
ତଳେ ଖାଲି ବାଲି ଦଗ୍ଧ ବଳୟର ଯାଏଁ,
ଟିକିଏ କେଉଁଠି ଆଶ୍ରୟ ନେବା ପାଇଁ
ଗଛ ପତ୍ର ତ ନାହିଁ ଦେଖିଲେ ଠାଏ ଠାଏ !!

ତଥାପି ଚାଲିଚ ହାତ ଗୋଟି ମୋର ଧରି
ତଥାପି ହସୁଛ ଅନ୍ତରଭରା ହାସ,
ତଥାପି କହୁଚ ଅମୃତ ଭରା କଥା,
ଭୁଲି ନିମିଷକେ ସକଳ ଦୁଃଖ ତ୍ରାସ !

ପଡ଼ିଗଲେ ମୁହିଁ ଉଠାଇ ଦେଉଚ ମତେ,
ଝାଉଁଳି ପଡ଼ିଲେ ବୈଶାଖୀ ଖରା ତାପେ,
ପଣତ ତଳେ ଆଡ଼ୁଆଳ କରି ରଖ,
ଅଥଚ ମରୁରେ ସିଝି ସିଝି ଚାଲ ଆପେ !!

ମୋହ ଭଳି ଜଣେ ଅଧମ ଯାତ୍ରୀ ଭୁଲେ,
କାହିଁକି ଚାଲିଚ ଦୁର୍ମଦ ଆଶା ରଖି ?
କି ଶିକ୍ଷା ବିଭବ ପାଇବ କେଉଁଠି ଅବା ?
ଦୁଃଖ ଯାତନା ସହି ସହି ଚାଲ ସଖି !!

ଚାଲି ଚାଲି ମୁହିଁ ଅବଶ ଗଲେ ଟେଗା ହୋଇ;
ଦୁଇ ଟୋପା ଲୁହ ନୟନୁ ବୋହିଗଲେ,
ଆପଣାର କରି ବକ୍ଷେ ଧରିଚ ଯାକି,
ପୋଛିଦେଇ ଲୁହ ଆପଣା କାନ୍ତ କରେ !

କେତେ ଦୂର ଯିବ ଏଇପରି ଚାଲି ଚାଲି;
କି ମହା ଧିଆନ ପରାଣେ ରଖିଚ ଭରି !

ତୁମରେ ଚାହିଁ ମୁଁ ଜୀବନେ ବଳକଳ ପାଏ,
କାହିଁକି ଚାଲିଚ ଏତେ ପରିଶ୍ରମ କରି !

ସୀମାହୀନ ମହାବ୍ୟର୍ଥତା ପାରାବାରରେ,
କେତେବାର ତୁମେ ଜୀବନେ ଯାଇଚ ବୁଡ଼ି,
ତଥାପି ଚାଲିଚ ମୋର ପଛେ ପଛେ ତମେ,
କବା ଆକାଂକ୍ଷା ପୂରଣ ଯିବ ବା ଦୂରି !

ମୁହିଁ ଯେ ତାଳକୁ ବଢ଼ାଇ ଦେଉଚ ହାତ,
ଛୁଡ଼ମେ ପଡ଼ୁଚ ଠିକଏ ଗୋ' ଧରୁ ଧରୁ,
ପାଣି ତୋଳେ କାହିଁ ପିଇବା ପାଇଁ କ ଗଲେ,
ନଈ ବା ତଡ଼ାଗ ପାଲଟି ଉଠୁଚ ମରୁ ।

ଅପଦାର୍ଥ ମୁଁ ଯାତ୍ରୀ ଗୋଟିଏ ଚାଲେ,
ତୁମେ ମୋର ତୁଲେ କାହିଁକି ହୋଇଛ ସାଥୀ ?
କଣ୍ଟକ ପାଇନ ପାଇତ ପାରିବ ନାହିଁ,
ଚାହୁଁ ଚାହୁଁ ମାଡ଼ ଆସିବ ଗୋ କଳାରାତି ।

ବେଳ ବୁଡ଼ନାଇଁ ବେଳ ବୁଡ଼ ବୁଡ଼ ଆସେ,
ଯାଉଚ ତପନ ଅସ୍ତ ଶିଖରୀ ଶିଖେ,
ଚାରିଆଡ଼ ପୁଣି ହୋଇଯିବ ଶୂନଶାନ,
ତଥାପି ଚାଲିଛ ହସି ହସି ଏଇ ବାଟେ ।

ମନରୁ ତୁମର ପିପାସା ଯାଇନ ମରି,
ଯାଇନି ପଡ଼ନ ବୁକୁର ସାହସ ବଳ,
ଓଠରୁ ଲିଭନ ଉତ୍ସାହଭରା ହସ,
ନୟନୁ ଝରନ ଟୋପିଏ ଲୋତକ ଜଳ !

ଏତେ ମରୁପଥ ଦୁର୍ଗମ ଦୁସ୍ତର,
ପାର ହୋଇ ତୁମେ ଆସିଲଣି କେତେ ବାଟ
ଏଇ ପରି ତୁମେ ଯୋଜନ ଯୋଜନ ଚାଲ—
ପାରିବା ପାଇଁକି ପସାରି ଦେଉଚ ହାତ ।

ଇଏତ ତୁମର କଅଣ ସାଧନା ନୁହେ,
ଦେଖି ଦେଖି ମୋର ଆଖି ଖୋସି ହୋଇଯାଏ
ସେ କେଉଁ ଲକ୍ଷ୍ୟ କେଉଁଠି ରହିଚି କାହିଁ
କେବେ ସେ ପୂରିବ କେତେ ବାଟ ଗଲେ ହାଏ ॥

ଯେତେକ ଗୁଲୁଚ ଆଗକୁ ଆଗକୁ ତମେ
ସେତିକ ପୁଲକ ଉଠେ ତମ ଦେହ ମନ,
ସେତିକ ତୁମେ ଗୋ କିବା ପାଗଳମି ପ୍ରାଏ
ମୋ ତୁଲେ ରଖୁଛ ନିବିଡ଼ ଏ ବନ୍ଧନ !!

କିଏ କେତେ ସୁଖ ସମ୍ପଦେ ରହିନାହିଁ ।
ତୁମେ ତ ତହିଁରୁ ପାଇନାହିଁ କଣିକାଏ,
ସେ ସବୁରେ ଚାହିଁ ନ ଚାହିଁଲ ପରି ତମେ,
ମୋ ପଥେ ପଥିକ ହୋଇଛ କି ଅଭିପ୍ରାୟେ ?

କାହିଁକି ତୁମେ ଗୋ ବରିନେଲ ଏଇବାଟ ?
କଣ୍ଟକ ଛଡ଼ା ସମ୍ପଦ କିଛି ନାହିଁ,
ଏଇ କଣ୍ଟକେ ବିଦ୍ଧ ହୋଇ ଗୋ ତୁମେ,
ହସିତ ପାରୁଚ ଚିରଦିନ ମୋହପାଇଁ !!

ଚାଲିଚ ଚାଲିଚ ଆହୁରି ଚାଲିଚ ତମେ
ଯେତେ ଦିନ ମୁହିଁ ଚାଲିଥିବ ଏଇ ପଥେ,
ଅଗ୍ନିଭରା ଏ ପ୍ରତିଜ୍ଞା ତବ ସଖି ।
ପ୍ରତି ପଦପାତେ ସ୍ପନ୍ଦିତ କରେ ମତେ !!

ତୁମେ ଅବା ମୁହିଁ ଯେ'ଦିନ ଏପଥ ପରେ
ପାଦ ଚାଳି ଆଉ ଚାଲି ଗୋ ପାରିବା ନାହିଁ;
ତୁମେ ମତେ ଅବା ମୁଁ ତୁମରେ ଥିବ ଚାହିଁ
ସେଦିନରୁ ବଳି ଦୁର୍ଦ୍ଦିନ ଆଉ କାହିଁ ?

———

# ଅସରନ୍ତି

ଯା' ଓଠର ହସଟିକ ତା ବୁକ ର ଅମୃତ ସେନେହ
ତା' ତହୁଁ କି ପରମ ସମ୍ବଳ ଏ ଜୀବନର ଆଉ ଅଛି କହ ?
ଧରଣୀରେ ସେଇଟିକ ମତେ ନାକ ରଖିଚ ବଞ୍ଚାଇ ?
କେତେ ଆସେ ଦୈନ୍ୟ ହାହାକାର
କଷ୍ଟ ହେଲେ ତଳେ ଲଗେ ନାଇଁ !

ଏ ଧୂଳିର ପ୍ରତି ରେଣୁ ତଳେ ପାଇଚି ମୁଁ ରଚି ସ୍ୱପ୍ନପୁରୀ
ବେଦନାରୁ ପାଇଚି ମୁଁ ଆହରି ସନାତନ ଆନନ୍ଦର ଝରି !
ତାରି ଲାଗି ପାଇଚି ନିଯୁତ ବୈଚିତ୍ର୍ୟର ଯାଦୁକରୀ ମାୟା
ତାରି ଲାଗି ବୀଣାତାନ ମୋର ଚିରଦିନ ଫୁଟିଅଛି ଯାହା !

ଯେ' ଦିନ ସେ ଓଠ ହସଟିକ, ପଡ଼ିଯିବ ମଳିନ ନିସ୍ପ୍ରଭ
ଯେ'ଦିନ ସେ ବୁକୁର ସେନେହ ପାଇବା ମୋ ହେବନି ସମ୍ଭବ;
ଯେ'ଦିନ ମୁଁ ସାରା ଧରଣୀରେ ଏ ପାଖରୁ ଆରପାଖ ଧରି,
ଖୋଜୁଥିବି, କାହିଁ ମୋ ସମ୍ପଦ, କେଉଁଠି ବା ଥିବ ଲୁଚିକରି ।

ନ ପାଇ ମୁଁ ଖୋଜୁଥିବି ଖାଲି, ହୋଇ କିବା ଉନ୍ମନ ପାଗଳ,
ଶ୍ରାବଣର ବାରିଧାରା ପରି ନେତ୍ର ଯୁଗ୍ମ ଝରୁଥିବ ଜଳ !
ପ୍ରତି ଲୁହ ବିନ୍ଦୁ ତଳୁ ମୋର ପ୍ରଣୟର ଶତ ସ୍ମୃତି ଧରି,
ମୋ ବୁକୁର ଅନନ୍ତ କବିତା, ଆପେ ଆପେ ପଡ଼ୁଥିବ ଝରି ।

ଏ ଆକାଶ ଏ ପୃଥିବୀ ଧରି ଚତୁର୍ଦ୍ଦିଗେ କଲେ ଦୃଷ୍ଟିପାତ,
ଦେଖୁଥିବି ତା'ପାଇଁ କବିତା ସକଳରୁ ହେଉଛି ସଂଜାତ
ଜୀବନର ସମସ୍ତ ପିପାସା ସୀମାହୀନ ପରିତୃପ୍ତ ପାଇ
ଗାଉଥିବ ଚିରଦିନ ଗୀତ, ଶେଷ ତାର ହେଉଥିବ ନାଇଁ !

—o—

# ବିଶ୍ୱାସ

ଜୀବନର ଅନନ୍ତ ସ୍ପନ୍ଦନ
ଅଯାଚିତେ ଦେଇଚି ମୁଁ ଯାରେ,
ଯାହା ପାଇଁ ନିଖିଳ ଧରଣୀ
ଆନନ୍ଦର ଲୀଳା ଭୂଇଁ ଭଳେ ।

ଯାର ପ୍ରତି ସୁଖ ଦୁଃଖ କଥା
ଜାଗେ ମୋର ହୃଦ ତନ୍ତ୍ରୀତାରେ
ଯାହା ପାଇଁ ଜୀବନ ସର୍ବସ୍ୱ
ଅନାୟାସେ ବଳିଦେଇ ପାରେ !

ଯାର ପ୍ରତି ହାଡ଼ମାଂସ ତଳେ
ବହେ ମୋର ଅନ୍ତର ଶୋଣିତ
ଯାରେ ମୁହିଁ ଅନ୍ତରଙ୍ଗ କରି
ଗାଏ ନିତି ଅନନ୍ତ ସଂଗୀତ !

ଯାହା ପାଶେ ଶତ ଦୁଃଖ ଝଞ୍ଜା—
ଭୁଲି ଯାଏ, ମୋରେ ନାହିଁ ଲାଗେ,
ପ୍ରାଣବନ୍ତ କବିତା ମୋର ଯେ—
ନିତି ମୋର ବୁକୁ ତଳେ ଜାଗେ !

ଏ ଧରଣୀ ସିନ୍ଧୁ ବଳୟିତ—
ଛାଡ଼ି ଯେବେ ଯିବି ଆର ପାରେ,
କେମନ୍ତେ ମୁଁ ଭୁଲିବି ତାହାରେ
ବହୁଥିବ ମନେ ମନେ ଭଳେ !

ମୋର ବେନି ନୟନେ ତାହାର
ଦିଶୁଥିବ ସେଇ ମୁଗ୍‌ଧ ରୂପ
ତା'ର ସ୍ମୃତି ବିପୁଳ ରୋମାଞ୍ଚ
ସୃଜୁଥିବ ମୋର ଲୋମ କୂପ ।

ମୋ ପାଇଁ ଯେ ସୀମାହୀନ ମାଟି
ଗଢ଼ିଅଛି ତାରେ ସୌମ୍ୟ କରି,

ସେ ମାଟିରେ ବାର ବାର ଶିରେ
ଲଗାଇବି ଗଉରବ ଭରି !

ତା' ଗୃହିଣୀ ତା'ର ମୁଖ ବାଣୀ
ତା' ଅନ୍ତର ସରଗ ଦୁର୍ଲ୍ଲଭ,
ସକଳରେ ନମସ୍କାର କରି
ଛାଡ଼ିବଇଁ ଏ ନିଖିଳ ଭବ !

ଧରଣୀର ଯେଉଁପାରେ ଯାଇଁ
ରଚିବଇଁ କୁଟୀର ମୋହରି,
ମୋ ଅନ୍ତରେ ସ୍ୱପ୍ନେ ଜାଗରଣେ
ଉଠୁଥିବ ସେ ବାଲା ସଞ୍ଚରି !

ସମୟର ମହା ବ୍ୟବଧାନ—
ଲଙ୍ଘି ହେବେ ପୁଣି ତାହା ସହ,
କେଉଁ ଶୁଭ ନିମେଷେ ଯେ ହେବେ
ପରସ୍ପରେ ହେବ ପରିଚୟ ।

ଯାଉ ଯେତେ ଜନ୍ମାନ୍ତର ବିତି
ତା'ର ମୋର ଅବଚ୍ଛିନ୍ନ ରହି,
ମହା ବିଶ୍ୱେ କରୁଥିବୁ ଲୀଳା
ଏ ବିଶ୍ୱାସ ଅଛି ମନେ ରହି !

—*—

## କି ଦେବି ପ୍ରତିଦାନ ?

ବାଜେ ଯାହାର ପ୍ରାଣେ ମୋର ଗଭୀର ବେଦନା ବ୍ୟଥା,
ମୋ ଲାଗି ହୁଏ ଆର୍ଦ୍ର ଯା'ର ଯୁଗଳ ଆଖିପତା,
ମୋରେ ଦେବାକୁ ଶାନ୍ତି ଯିଏ ନିୟତ ଚେଷ୍ଟା କରେ,
ମୋରେ ଯିଏ ହୃଦୟ ଭରି ସରାଗେ ଦେଖିପାରେ,
ତାହାକୁ ଦେବି ଧରାରେ ଅବା କି ମହା ପ୍ରତିଦାନ ?
ମୋ ଆତ୍ମାର ଆତ୍ମା ସେ ଯେ ମୋହରି ପ୍ରାଣର ପ୍ରାଣ !

ମୋ ପାଇଁ ଯିଏ ଦିବସ ରାତ୍ର ସଂଗ୍ରାମରେ ଲଢ଼ି,
ରକ୍ତାକ୍ତ ଦେହେ ଓ ମନେ ରହିଛି କାହିଁ ପଡ଼ି,
ସକଳ ଦୁଃଖ ଅଭାବ ଜାଲା ମୋ ପାଇଁ ଖାଲି ସହି,
ହୃଦୟେ ଯିଏ ଆନନ୍ଦ ପାଏ ନିସ୍ପୃହ ବଞ୍ଚି ରହି,
ତାହାକୁ ଦେବ ଧରାରେ ଅବା କି ମହା ପ୍ରତିଦାନ ?
ମୋ ଆତ୍ମାର ଆତ୍ମା ସେ' ଯେ ମୋହର ପ୍ରାଣର ପ୍ରାଣ

ମୋ ପାଇଁ ଯିଏ ଏ ମାଟି ପରେ ମାରିବେ ବୁଜି ଆଖି,
ଅଜଣା କେଉଁ ମୂଲକେ ଯିବା ପାଇଁ କି ରହେ ଝାକି,
ମୋହର ପାଇଁ ସୋହାଗ ମନେ ମରଣ ଶଯ୍ୟା ପରେ
ଗର୍ବ ଆଉ ଗଉରବ ଯେ ଅନୁଭବ କରେ !
ତାହାକୁ ଦେବ ଧରାରେ ଅବା କି ମହା ପ୍ରତିଦାନ ?
ମୋ ଆତ୍ମାର ଆତ୍ମା ସେ' ଯେ ମୋହର ପ୍ରାଣର ପ୍ରାଣ !

—*—

# ପାଷାଣର ପାଦ ତଳେ

ଜୀବନେ ତୁମ ତୁଲେ ହେବ କି ନାଇଁ ଦେଖା ଜାଣେନା।
ତଥାପି ତୁମ ସ୍ମୃତି ପରଶେ ନାଚି ଉଠେ ମୋହର,
ଜୀବନେ ତୁମ ତୁଲେ ଆତୁର ବିହରିବା ପାଇଁକି
ବାସନା ଜାଗି ଉଠେ ଗୋଟିକି ଗୋଟି କିବା ଲହରୀ,
ନିଃସ୍ୱ କବି ମୁହିଁ ରହିଛି ଏତେ ଦୂରେ ସତରେ
ପରଶୁ ପୋଛୁ ନାଇଁ, ପାରିବ ନାଇଁ ପୋଛୁ ତୁମରେ,
ଦେଇଛ ମୋରେ ଯେଉଁ ସେନେହ ସମ୍ମାନ ଟିକକ,
ସେ ଶିରୀଟିକ ମୁହିଁ ନିଇତି ବେଳେ ବେଳେ ସୁମରେ ।

ଜୀବନ ପଥ ପରେ ସେ ଦେଖା ପରିଚୟ ଭିତରେ
ନିଜର ପାଲଟିଛ ଦିନେ ଯେ ଥିଲ ହୋଇ ଇତର,

ନିଜର କର ପାତରେ ନେଇଛ ଧରଣୀରେ ଝର ମୁଁ
ଫିଙ୍ଗି ପାରିବ କି ? କି ଅବା ଗୋଡ଼ ମାଟି ପଥର !
ଟିକିଏ ପରିଚୟ ସେନେହ ଦିଆନିଆ ଟିକିଏ,
ଟିକିଏ ଦେଖା ଦେଖି, ଟିକିଏ ଆପଣାର କରିବା,
ବିରାଟ ବିଶ୍ୱର ଯେ କେଉଁ କଣେ ଯେବେ ମିଳଇ,
ଆଉ କି ଶିଖି ଅବା ଜୀବନେ ବଡ଼ କରି ଲୋଡ଼ିବା ??

ମତେ ଯେ ମନରେ ରଖି, ଦେଉଚ ଚିଠି ଲେଖି ଦୂରରୁ,
ଆଙ୍କି ମୋ ସ୍ୱରୂପ ସୂକ୍ଷ୍ମ ମନପଟେ ତୁମରି,
ମୋ ଲଗି କେତେ ଆଶା, ମୋ ଲାଗି କେତେ ଭାଷା ମରମେ,
କ ଦିବା ନିଶିଥିନୀ ସୋହାଗେ ଉଠେ ନାଇଁ ଗୁମରି !
ମୋ ଲାଗି କାନ୍ଦିଛ ମୋ ଲାଗି ହସିଅଛ ଜୀବନେ,
ମୋ ଲାଗି ଦେଖିଅଛ ସପନ ଶତ ଶତ ସୁନାର,
ମୋ ଲାଗି ତୋଳିଅଛ ସ୍ୱର୍ଣ୍ଣ ପାରିଜାତ ସରଗୁ,
ଗଢ଼ିଛ ଗଉରବେ ମନର ନିଭୃତ ମିନାର !

ଏସବୁ ମୋରେ କେତେ ଦିଏନି ଅମୃତ ସୁଦୂରେ
ତୁମରି ବୁକୁତଳେ ବାନ୍ଧି କରି ମୋତେ ନିୟତେ,
ମୋ ଲାଗି ତୁମେ ଯେବେ ରହିଛ ସୀମାହୀନ ଯାପନେ;
ମୃତ୍ୟୁ ହେଲେ ମୋର ଦୁଃଖ କରିବନି କଯୁତେ;
ତୁମରି ପାଇଁ ଆସି ତୁମରି ପାଇଁ ଯିବି ଉଭାଇ,
ଏ ଦେହ ମନେ ବୋଳି ତୁମରି ଅମୃତ ପରଶ,
ସେତିକି ମୋରେ ଦିଅ କହେ ମୁଁ ଅହରହ କାହାରେ,
ବିଜୟୀ ଜୀବନରେ ସେଇତ ମୋ ସୁନାର କଳସ !!

ଟିକିକ କଥାରେ କେ ମୋ ପରେ ଗରଜି ଓ ତରଜି
ମୋରେ କେ' ଦେଉଅଛି ତୀବ୍ର ଅପମାନ ଜୀବନେ,
ଆଖିରୁ ବହୁଅଛି ଶ୍ରାବଣ ଧାର ପରି ଲୋତକ,
କିଏ ତ ଜଣେ ଆସି ଦେଇନି ପୋଛି ସାରା ଭୁବନେ !
ଆର୍ଦ୍ର ଆଖି ଦୁଇ, ଚାହିଁଚ ରହି ମୁହିଁ ଏକାକୀ,
ବହୁତ ବାର ଏଇ ସୁଦୂର ଦେଶେ ଗୁଡ଼ ତୁମରେ,
ସେତିକିବେଳେ କିଆଁ ତୁମରେ ଭୁଲିଯାଏଁ ମରିରେ
ଶାନ୍ତି ପାଏ ଅବା ବିଜନ ମୋ କୁଟୀର କଣରେ !

ଧରାରେ ଏତେ ଏତେ ଛନ୍ତି ବିଷଧର ତମ୍ପ
ଦେଖିଲେ ଦିଶିବେନି ତୁମକୁ କେବେ ଖାଲି ଆଖିରେ,
ତାଙ୍କୁ ଧରି ଏଥି ଚଳିବା ମୁସ୍କିଲ କଥା ତ,
କଥା କି ଶୁଣିବେ ସେ ନିଜର କରି ଯେତେ ଡାକିଲେ !
ଉଣ୍ଡୁଥିବେ ଓର କରିବେ ହରବର ବୋଲି ସେ,
ଏଭଳି ଲୋକ ହାତେ କିଏ ସେ ଦେଲା ଏଡ଼େ ଆସନ ?
କିଭଳି କଷ୍ଟ ସେ, ମୁଣ୍ଡ ନୁଆଇଣ ଚାଲିବା
ଯେଉଁଠି ଚାଲିଅଛି ନିୟୁତ ବଜ୍ରାଘାତ ଶାସନ !

ରହି ଏ ଅଠାକାଠି ଭିତରେ ବେଳେ ବେଳେ ବଗିରେ
ଉଡ଼ି ମୁଁ ଯିବି ହେଲେ ତୁମରି ସେ ମୋହନ ରାଇଜେ,
ଜୀବନ ମଧୁଗାନ ଶୁଣିବି କାନପାରି ସୋହାଗେ,
ଯା'ଲାଗି ଉତ୍କଳ ପରାଣ ମନ ଅଛି ରହି ଯେ !
ବିରାଟ ପୃଥିବୀ ଏ ଅସୀମ ଆକାଶ ଏ ଆଗରେ
ଅସୀମ ଲୀଳା ଧରି ନୃତ୍ୟ କରି ଉଠେ ନିୟୁତେ,
କିଭଳି ହତଭାଗା ଅସାର ନୁହେ ଏଇ ଜୀବନ
ନ ତଳି ପାରିଲେ ଏ ମୋହନ ସମ୍ପଦେ କିପୁତେ !

ମୁଁ ଆଜି ତୁମେମାନେ କି ମଧ୍ୟ ଉପାଦାନେ ତିଆରି,
ଜଣକୁ ଜଣେ ଚାହିଁ କି ଶୋହା ଫୁଟି ଉଠେ ହୃଦୟେ !
ପାରିବ ସହି ତମେ ଏ ମରୁଅଙ୍ଗନେ କିଏ ସେ
ହତ୍ୟା କରେ ମୋରେ ନିଇତି କାଟି କାଟି ନିଦୟେ !
ସେଭଳି ହୃଦ କାହିଁ ମୋ ପାଇଁ ଯିବ କହି ପଦଏ
ସଭିଏ ପାଷାଣ ତ ପାଷାଣ ପାଶେ କାହିଁ ମମତା ?
ପାଷାଣ ଗୁହେ ଖାଲି, ତା' ଚାଖେ ଥିବେ ପଡ଼ି ସଭିଏ
ବରଣ କରି କିବା ଅସୀମ ଉତ୍କଟ ଘନତା !

———

# ବିପ୍ଳବ

ମୁଁ ଯେ ବିପ୍ଳବ ଆସିଚି ଜନ୍ମ ଲଭି,
ପତିତ ପୀଡ଼ିତ ନିର୍ଯ୍ୟାତିତର ଦୈନ୍ୟ ଅଶ୍ରୁବିନ୍ଦୁ—
ଶତ ଶତ ଶତ ଆଗ୍ନେୟଗିରି ଅଗ୍ନିର ଶିଖା ସମ,
ଧରି ସୀମାହୀନ ତେଜ ବଳ ବିକ୍ରମ !
ଗରମ ରକ୍ତ ଶିରାରେ ଶିରାରେ ପ୍ରଳୟ ବାତ୍ୟାପରି —
ଅଥୟ ଆକୁଳ ଉନ୍ମାଦ କରେ ମୋତେ,
ମୁଁ ଯେ ଦୁର୍ଜୟ ! ମୁଁ ଯେ ନିର୍ଭୟ !
ମୁଁ ଯେ ମୁକ୍ତିର ଅଗ୍ରଣୀ !
ନିଜେ ମୁଁ ନିଜର ନିର୍ଭର, ମୁହିଁ ଚାଳିତ ମୋ ମନୋରଥେ !
ନୀଳ ନଭ ଚିରି ପତାକା ମୋହର ଉଡ୍ଡୀନ କାଳ କାଳ,
କେହି ନୁଆଇଁ ପାରିବ ନାହିଁ ନିମିଷକ ପାଇଁ,
ସବୁ ଶକ୍ତିର ନିର୍ଯାସ ନେଇ ଉତ୍ଥିତ ମୁଁ ଯେ
ବିରାଟ ଧରଣୀ ପରେ,
ମୋର ପତନ ବା ଅଛି କାହିଁ ?

ବିପ୍ଳବ ମୁହିଁ, ମୋତେ ଦେଖି କିଏ ଯାଉଅଛ ଯେବେ ଥରି,
ବୁଝିବାକୁ ହବ ତୁମେ ଅମୃତର ବିରାଟ ଦୁର୍ଗ—
ତୁମେ ଏ ମାଟିର ନିର୍ମମ ସନ୍ତାନ !
ଜାଣିଅଛ ତୁମେ ଖସି ତ ପଡ଼ିବ ତଳେ,
କରିବ ଯେବେ ମୁଁ ବାରେ ଶର ସନ୍ଧାନ !
ନିଜକୁ ନିଜେ ହିଁ ଧରି ରଖିବାର ବଳ
ଆସିବ କାହୁଁରେ ସନ୍ତାନ ହୁଆ ତଳେ ?
ସେ ତ ଉଡ଼ିଯିବ ସେ ତ ଥରିଯିବ ମରିଯିବ କଳବଳେ !
ସେ ଏକା ନିଜକୁ ପାରିବ ପାରିବ ରଖି,
ସୁନ୍ଦର କରି, ନିର୍ମଳ କରି, ଉନ୍ନତ କରି,
ହିମାନୀ-ଶୁଭ୍ର ହିମାଚଳ ମଥା ସମ,
ମଣିଷ ମାଟିକୁ ଶୋଣିତର ପ୍ରତିବିନ୍ଦୁ ଦେଇ ଯେ
ଭଲ ପାଏ ଅବିରଳେ,
ନିମିଷକ ପାଇଁ ସ୍ୱପ୍ନରେ ହେଲେ ନୋହିବାରେ ନିର୍ମମ ।

ସମାଜର ଶତପୀଡ଼ିତ ଆତ୍ମା
ମୋ ଭିତର ଦେଇ ମାଗଇ ତାହାର ଜୀବନର ଉପଭୋଗ
ମୁଁ ରଚଇ ତାର ସମସ୍ତ ଉପଯୋଗ !

ବିଦୀର୍ଣ୍ଣ ହୁଏ ପୃଥିବୀର ବୁକୁ ଯେବେ,
ଝର ଝର ଝରି ଝରି ପଡ଼େ ତାର ଉଷ୍ଣ ଶୋଣିତ ଧାର
ନିଦାରୁଣ କ୍ଷତ ନିଭାଇବା ଲାଗି ତା'ର
ହାରମାନେ ଯେବେ ବଳପ୍ରୁ ଉପଚାର,
ଅତ୍ୟାଚାରର ଅସ୍ତ୍ରରେ ଯେବେ ଆକାଶ ଅବନୀ
କମ୍ପାଇ ଥର ଥର,
ଚଉଦିଗେ ଖାଲି ଶୁଭୁଥାଏ ଯେବେ
ଆର୍ତ୍ତ ବିକଳ ସ୍ୱର,
ସେତେବେଳେ ମୁହିଁ ବିପ୍ଳବ ଆସେ
ଧ୍ୱଂସ ପୂଜାରୀ କୋଟି ରୁଦ୍ରର ଚଣ୍ଡ ମୂରତି ଧରି,
ବଜାଇ ବଜାଇ ଡମ୍ବରୁ ମୋର
ଚରାଇ ଚରାଇ ନିଖିଳ ବସୁନ୍ଧରା ।
ଜଳାଇ ମୋହର ଆଗ୍ନେୟ ଶିଖା
ଶୋଷକ ଶାସକ ସବୁ ଅହମିକା—
ପୋଡ଼ି ଜାଳି ମୁହିଁ କରଇ ଭସ୍ମ,
ସେଇ ଭସ୍ମାବଶେଷ ପରେ
ରଚିଯାଏ ମୋର ସପନର ଅଟ୍ଟାଳି,
ବିପ୍ଳବ ମୁଁ ଯେ ବନ୍ଧୁ ଧରାର
ସ୍ତରେ ସ୍ତରେ ତାର ସାମ୍ୟ ସୋହାଗ
କୋଟି ବିହନେ ଢାଳି !!!
ବିପ୍ଳବ ମୁଁ ଯେ ମୁମୂର୍ଷୁ ମାଟି ରୂପ ଦାମୀ ପ୍ରାଣ ଦାମୀ !
ମୋର ଚୂଳକାରେ ଚଳିଯାଏ ମୁଁ
ଚଉଦିଗ ଖାଲି ଜୀବନର ଶୋହା
ଅଯାଚିତେ ଢାଳି ଶତଲାବଣ୍ୟ ଠାଣି !
ଶୁଷ୍କ ମଳିନ ଓଠେ ବୋଳି ଦିଏ ଜବାକୁସୁମର ହାସ !
ଧୀରୁ ଦୁର୍ବଳ ଶୋଣିତେ ଶୋଣିତେ
ଭରିଦିଏ ମୁହିଁ ବିଦ୍ୟୁତ୍‌ମାୟା—
ଅପରୂପ ଚରକାଶ ।

ମଡ଼ା ମୂର୍ଦ୍ଧାର ଧମନୀରେ ଆଣେ ଜୀବନର ସଞ୍ଚାର !
ଶୃଙ୍ଖଳିତର ଶୃଙ୍ଖଳ କାଟି,
ମୁକ୍ତ ଗଗନେ ଗୁଡ଼ିଦିଏ ତାର ଜୀବନର ଅଧିକାର !
ଘନ ପରାଜିତ ଶୀର୍ଣ୍ଣ କପାଳେ
ଲଗାଇ ଦିଏ ମୁଁ ଜୟସିନ୍ଦୂର ଶିଖା,
ଜୀବନର ସବୁ ଉପଭୋଗ ଦେଇ
ହସାଇ ଖେଳାଇ ନଚାଏ ବସୁନ୍ଧରା ।
ରୁଧିରପ୍ଲୁତ ହୋଇ ମୁଁ ଧରାରେ ଚାଲିଥାଏ ଅବିରାମ;
କାଟେ ନାହିଁ ମତେ ବନ୍ଧୁକ ଉଦ୍ଧ,
ବାଧେନାହିଁ ମତେ ତୋପ କମାଣର ଗୁଳିଗୋଳା ବର୍ଷଣ ।
ସୀମାହୀନ କୋଟି ଜ୍ୱାଳା ଯନ୍ତ୍ରଣା ମନ୍ଥନା ଭିତରୁ
ଜନ୍ମ ଯେ ଅଛି ନେଇ,
ପୃଥିବୀରେ ନାହିଁ ଏଭଳି ଅସ୍ତ୍ର
ଦେବ ତାରେ ଧମକେଇ ।
ସତ୍ୟ ଲାଗି ମୁଁ, ମୁକ୍ତି ଲାଗି ମୁଁ, ଜାଗ୍ରତ କାଳକାଳ
ମୁଁ ଚାହେ ଧରାରେ ଦେଖିବନି କାହାର
ବିକଳ ଅଶ୍ରୁଧାର !

— ——

## ହେ ମୋର ଉନ୍ମୁକ୍ତ ଜାତି !

ଗଣତନ୍ତ୍ରର ସ୍ୱପ୍ନ ଧରି ଭାରତ ଉଦ୍ଭୂଛି ଆଜ କେତେ ବର୍ଷ ପରେ
ସାଧନାର ହୋମାନଳ ଭିତରୁ ଜନ୍ମିଛି ଯେଉଁେ ଏ ଧରଣୀ ତଳେ;
ଶତ ଶତ ଶହୀଦର ରକତ ରଞ୍ଜିତ ପଥେ ଆସିନି କି ଚାଲି ?
କେତେ ଗୁଳି ବନ୍ଧୁକର ଆମାନୁଷ ଆଘାତେ ସେ ହୋଇନାହିଁ ଘାଇ ?

ଗୁଳିକୁ ପ୍ରସ୍ତରୁଁ ବଳ ଶକ୍ତି କରି ସହିନାହିଁ କେତେ ଅତ୍ୟାଚାର ?
ଅଭାବ ଦୈନ୍ୟର କୋଳେ ଦେଖିନାହିଁ କି ନୈରାଶ୍ୟ ସ୍ୱପ୍ନ ବାରବାର ?
ଦାବାନଳ ପରି ସେହୁ ଜ୍ୱଳନ୍ତ ଅଗ୍ନିରେ କେତେ ଦେଇନାହିଁ ଝାସ !
ରହିନାହିଁ କେତେକାଳ କାହାର ଗର୍ଭରେ ରୁଦ୍ଧ ଜୀବନ ନିଃଶ୍ୱାସ !

ଫୁଟିବାକୁ ଚେଷ୍ଟା କରି କେତେବାର ବୃନ୍ତ ନାଇଁ ହତାଶ ଭୂମିରେ !
ଛୁଟିବାକୁ ଗଲାବେଳେ ଭଗ୍ନଜାନୁ ହୋଇ ନାଇଁ କେତେ ଧରଣୀରେ !
ତଥାପି ଭୁଲନି ତା'ର ଲକ୍ଷ୍ୟରେଖା ହିମ ଶୁଭ୍ର ହିମାଚଳ ସମ
ଫୁଟିବ ଫୁଟିବ ଶେଷେ ତା' ବିରାଟ ସାଧନାର ସେ ସ୍ୱର୍ଣ୍ଣ ସପନ ।

ସାମ୍ରାଜ୍ୟବାଦର ସେ ଯେ ସୁବର୍ଣ୍ଣ ମୁକୁଟ ଆଜି ଧୂଳି ବିଲୁଣ୍ଠିତ,
ଥରିଅଛି ସିଂହାସନ, ରାଜଦଣ୍ଡ ଆପେ ଆପେ ତଳେ ନିପତିତ;
କେଉଁ ସପ୍ତ ସମୁଦ୍ରର ଉଚ୍ଛଳ ତରଙ୍ଗ ପରି ସତ୍ୟ ଯେବେ ଉଠେ,
ଅହିଂସା ବାତ୍ୟାରେ ନାଚି କେ ତା'ରେ ପାରିବ ରୋଧି
କେଉଁ ଅସ୍ତ୍ରକୂଟେ ?

ପୃଥିବୀରେ କେଉଁ ଶକ୍ତି କେଉଁ ବଳ ଆଣ୍ଟି ଧରି ପାରିବ ବା ରହି ।
ବିଶାଳ ସାମ୍ରାଜ୍ୟ ଥାଉ, ଥାଉ କୋଟି ଧନମାନ ଚତୁର୍ଦ୍ଦିଗେ ବହି ।
ଥାଉ ଶତ ବନ୍ଧୁକ ବୋମା ଥାଉ ଶତ ମାରଣାସ୍ତ୍ର ଅସ୍ତ୍ରାଗାର ଭରି,
ଥାଉ ଶତ ସୈନ୍ୟବଳ, ସକଳରୁ ଶକ୍ତି ସବୁ ପଡ଼ିଯିବ ଝଡ଼ି—

ମହାସତ୍ୟ ଶକ୍ତି ଆଗେ, ପିଶାଚର ଲେଲିହାନ ଜିହ୍ୱା ଯିବ ଛିଡ଼ି,
ସତ୍ୟ ଏକା ବଜ୍ରପାତେ ନଖ ଅଗ୍ରେ ସବୁ ବାଧା ନିମିଷକେ ଚିରି;
ମୁକ୍ତିର କନକ ପଥ ରଚିପାରେ ସତ୍ୟ ଦଳି ପିଶାଚ ଭ୍ରୂକୁଟି
ମରିଚି ସାମ୍ରାଜ୍ୟବାଦ ସତ୍ୟର ଭାରତ ଆଜି ଉଠିଅଛି ଫୁଟି ।

ଛିନ୍ନ କନ୍ଥାଧାରୀ ଶତ ଶତ ନିରନ୍ନର ସ୍ପଷ୍ଟ ଅଶ୍ରୁ ତଳେ ରହି
ସତ୍ୟ କେତେ ଦେଇ ନାଇଁ ଡାକ ? ଦରିଦ୍ର କୃଷକ ବଧୂ ଲୁହ ବହି
କାନ୍ଦୁଥାଏ, ଅନ୍ନ ବିନେ ଶିଶୁପୁତ୍ର ଉପବାସେ ଥିବେ କେତେ କାଳ
ତହିଁରୁ ଫୁଟିନି ସତ୍ୟ ପୃଥିବୀର ମେରୁଦଣ୍ଡ ମନ୍ଥି ବାର ବାର ?

କୁଟୀର କା' ହେଲାଣି ନିଲମ, ବାସହୀନ କିଏ ଯାଏ ଭିକ୍ଷା ମାଗି,
ତାହାରି ଭିତରୁ ସତ୍ୟ ରଡ଼ି ଗୁଡ଼ି ଆର୍ତ୍ତ ସ୍ୱରେ ଉଠି ନାଇଁ ଜାଗି ?
ପଶୁରୁ ନିକୃଷ୍ଟ କରି ଅବଜ୍ଞାରେ ମଣିଷକୁ ରଖାଯାଏ ଯହିଁ
'ମଣିଷ ସମ୍ମାନ ଦିଅ' ତା' ଭିତରୁ ସତ୍ୟ କଣ ସତେ ନାଇଁ କହି ?

ଶୃଙ୍ଖଳିତ କରି ଯେବେ ଏ ଜାତିକୁ ଦେଖା ଦେଲା ବର୍ଣ୍ଣ ବର୍ଣ୍ଣ ଧରି
ଚିଆ ହେଲା ନାହିଁ ତା'ର ଜୀବନର ଅଧିକାର; ନଗ୍ନ ରୂପ ଧରି
ସତ୍ୟ କେଉଁଠି ଉଠନ୍ତାକି ? ରୁଦ୍ରମୂର୍ତ୍ତି ପରିଗ୍ରହି ଧରଣୀର ତଳେ,
ସତ୍ୟ ଶୁଭ୍ର କରେ ଆଜ ଜାଗିଛି ଭାରତ ବକ୍ଷ ଘନଘଟା ପରେ ।

ଜାତି ମୋର ! ଦେଶ ମୋର ! କରେ ତୋର ପ୍ରଗତିର ସ୍ୱର୍ଣ୍ଣବୀଣା ତାର,
ସାଧନାରେ ଜଳ ଶେଷେ ମିଳିଛି ଈପ୍‌ସିତ ତୋର, ନାହିଁ ଝଙ୍କାର;
ଯେତେ ଯା ଅର୍ଗଳ ଆସୁ ସବୁ ତୋର ପାଦତଳେ ଦିଅ ଛିନ୍ନ କରି,
ଦୂରେ ଦୂରେ ଗଲା ଆଜ କୋଟି କୋଟି ଅନ୍ତରର ପାରିଜାତ କଳି—

ଫୁଟାଇ ଫୁଟାଇ ତୁମେ, ତିରଙ୍ଗ ପତାକା ଉଡ଼େ ଅନ୍ତରୀକ୍ଷ ଚିରି,
ପ୍ରତି ପ୍ରାଣେ ତାଳ କବା ଜୀବନ ବିକାଶ ବାହ୍ନି ଉନ୍ମାଦନା ଶିଖି ।
ଆଜ ତୁମେ ରୁଦ୍ଧ ନୁହ, ବଦ୍ଧ ନୁହ, ଆଜ ତୁମେ ଉନ୍ମୁକ୍ତ ସୁନ୍ଦର
ପୃଥିବୀର ଚତୁର୍ଦ୍ଦିଗେ ନୂତନ ଜୀବନ ତାଳ ସତ୍ୟ ଶୁଭଙ୍କର ।

ପ୍ରତି ବ୍ୟକ୍ତି, ପ୍ରତି ରାଷ୍ଟ୍ର, ପ୍ରତି ଦେଶ, ଧରଣୀର ପ୍ରତି ଜନପଦ,
ସକଳରେ ଅକୁଣ୍ଠିତେ ତାଳଦିଅ ଶାନ୍ତିମୈତ୍ରୀ ଜୀବନ ସମ୍ପଦ;
ଏ ମାଟିର କେଉଁ ଥାନେ ରଖନାହିଁ ବେଦନାର ଘନକୃଷ୍ଣ ଛାୟା;
ଚତୁର୍ଦ୍ଦିଗେ ବୁଣି ଗଲ ଜୀବନର ପୂର୍ଣ୍ଣଗୀତି ଆନନ୍ଦର ମାୟା ।

ଆଜ ଯେଉଁଠି ଏ ଜାତିର ପ୍ରାଣଦାୟୀ ମୁକ୍ତିଦାୟୀ ବକ୍ଷ ବାୟୁଲୀଳା
ଊର୍ଦ୍ଧ୍ୱରୁ ଆସଇ ଭାସି ପ୍ରତି କାନେ କହି କହି ସୁମଙ୍ଗଳ ଗିର !
ଜାତି ମୋର ଶୁଣିନ କି ? ବାଣୀ ତାର ମେଘ ମନ୍ଦ୍ରେ ଆସେ କେଉଁଠି ଭାସି
'ଜୀବନ ଶୋଣିତ ତାଳ ସୁନାର ଭାରତ ଦିଏ ସୃଷ୍ଟିରେ ପ୍ରକାଶି ।'

ପ୍ରତିବ୍ୟକ୍ତି ଭାଳ ନେଉ ଏ ଜାତିର ଏ ମାଟିର ମୂର୍ଦ୍ଧ୍ନି ସେବାକାଶି
ଯେତେ ଯହିଁ ବ୍ରାହ୍ମଣ ଅଛନ୍ତି ବୈଶ୍ୟ ସକଳରୁ ଦ୍ୱନ୍ଦ୍ୱ ଯାଉ ଗଳି;
ହିମାଦ୍ରିର ପାଦତଳେ, ଜାହ୍ନବୀ, ଯମୁନା, ଗଙ୍ଗା, ଗୋଦାବରୀ କୂଳେ,
ମହୋଦଧି ବାଳବନ୍ତେ, ସହ୍ୟାଦ୍ରିର ନଭସ୍ପର୍ଶୀ ଶ୍ୟାମକାନ୍ତ ଚୂଳେ,—

ଯେତେ ଯହିଁ ଭାରତର ନରନାରୀ ଏକ ପରିବାର ବ୍ୟକ୍ତି ପରି
ପ୍ରାଣର ସୌରଭେ ଦିଅ ଏ ମାଟିର ଦିଗ ଦିଗନ୍ତର ପୂର୍ଣ୍ଣ କରି ।
ସାମ୍ୟ ମୈତ୍ରୀ କଲ୍ୟାଣର ହେଉ ଏଇମାଟି ଏକ ମହା ଗନ୍ତାଘର,
ଏଥିକେ ସମ୍ରାଟ ନାହିଁ, ସଭିଏ ସେବକ ହୁଅ ଏଥି ପରସ୍ପର ।

ଆଜ ଏଇ ପୁଣ୍ୟ ଦିନେ ଜାତି ମୋର କରପୁଟେ ଦିଅ ଶ୍ରଦ୍ଧାଞ୍ଜଳି
ଶତ ଶତ ଶହୀଦରେ; ଏ ମାଟିରେ ଯା ବକ୍ଷର ଉଷ୍ଣରକ୍ତ ପଡ଼ି—
ଆଣିଚି ଏ ଦେଶ ମୁକ୍ତି, ଟେକାଳ ଅଛି ବିଜୟର ଗୌରବ କେତନ
କେମନ୍ତେ ଭୁଲିବ ତୁମେ, ପୃଥିବୀରେ ଶହୀଦର କାହିଁ ବା ମରଣ ?

ଶତଝଞ୍ଜା ଶତଝଡ଼ ଭିତରେ ଯେ, ଗତି କରି ବୀରଦର୍ପ ଧରି,
ଘରଦ୍ୱାର ଭାଇବନ୍ଧୁ ସକଳ ସ୍ୱାର୍ଥରେ ଯେହୁ ଦେଇ ଜଳାଞ୍ଜଳି,
ଜାତିର ହୃତ୍‌ପିଣ୍ଡେ ତା'ର ଆଣିବାର ପାଇଁ ଖାଲି ଶାଶ୍ୱତ ସ୍ପନ୍ଦନ
ମୃତ୍ୟୁରେ ବରଣ କରେ ହସି ହସି ନୋହି ଲବେ କାତର ବିଷଣ୍ଣ,

ବିଳୟ ତାହାର କାହିଁ  ସେ ଯେ ଏ ମାଟିର ପ୍ରତି ରନ୍ଧ୍ରେ ରନ୍ଧ୍ରେ ରହି
ସତ୍ୟପାଇଁ ଧର୍ମପାଇଁ ଉନ୍ମାଦନା ଦେଇଯାଏ କଲ୍ପାନ୍ତର ବହି !
ଚତୁର୍ଦ୍ଦିଗେ ଗ୍ରହି ତମେ ସେ ମୂର୍ତ୍ତି ଦିଶୁନି କେବେ ତଳ ତଳ ?
ଚରଣେ ପ୍ରଣତି କରି, ଏ ମାଟି ମଙ୍ଗଳ ଲଗି ବ୍ରତ ଭିକ୍ଷାକର !

କର୍ତ୍ତବ୍ୟର କାହିଁ ଶେଷ ? ସାଧନାର ଦୀପଶିଖା ଅବଚ୍ଛିନ୍ନ ଚିର,
ଜୀବନର ଗତି ଚକ୍ରେ ପଡ଼ିବ ପ୍ରକାଣ୍ଡ ଶିଳା; ନୋହି ନତଶିର—
ଗୁଳିବାକୁ ହେବ ଏଥି, ଶତ ଶତ ଜନତାର ସେବା କରି କରି
ଜୀବନ ମଧୁର ସ୍ୱପ୍ନ ସହସ୍ରର ବକ୍ଷତଳୁ ଆଣିବ ଆହରି ।

ସେଇତ ପ୍ରାଣର କାମ୍ୟ—ଜୀବନର ଏମମାନ ସମ୍ପଦ ପରମ
ହେ ମୋର ଉନ୍ମୁକ୍ତ ଜାତି ! ବକ୍ଷ ଭରି ସର୍ବସ୍ୱ ତୁ କର ଅରପଣ;
ନିଜପାଇଁ ଅବଶେଷ ଲବେ ମାତ୍ର ନାହିଁ ରଖି କର ଅପ୍ରଗତି,
ଛତକ୍ଷାରୁ ଜନ୍ମ ତୋର ଶସ୍ୟ, ପ୍ରୀତି ପର୍ବା ତୋର ପ୍ରାଣର ସମ୍ପତ୍ତି !

ପୃଥିବୀର ଚତୁର୍ଦ୍ଦିଗେ ଦାବାନଳ ପରି ଆଜି ଉଠେ ଯେତ୍ତେ ଜଳି,
ସ୍ୱାର୍ଥର ତାଣ୍ଡବ ଲୀଳା, ଦିଗ୍‌ବିଦିଗେ ଆତଙ୍କର ମାୟା ସୃଷ୍ଟି କରି,
ହୁଣ୍ଟିଯିବ, ଲୁଚିଯିବ— ପୃଥିବୀରେ ଦେଖା ତୋର ଅମୃତର ପଥ,
ଜୀବନ ଜୀବନ ପରି ଦାଉ ଦାଉ ଜଳି ଉଠୁ ବିଶ୍ୱେ ଅବିରତ ।

—·—

## ପ୍ରତିଜ୍ଞା

ଜାଣି ଶୁଣି କରି ଅନ୍ୟାୟ ତଳେ ଲଇଁବା
ତାହା ତହୁଁ କିବା ବଡ଼ ପାପ ଅଛି ରହିବା ?
ବୀର ବନ୍ଧମେ ଯୁଝି ମରିଯିବା ଭଅଲ
ଜୀବନ ତା' ନୁହେ ଦବିଯିବା ରହି କଅଁଳ ।
ପ୍ରତି ଜୀବନର ଅଛି ଗଉରବ ମହତ
ନିଷ୍ଠୁରେ ତାରେ ମାରି ଦେବା କିଆଁ କହ ତ ?

ବନ୍ଧୁ ହେ ମତେ କହୁଅଛ ତୁମେ ଲଢ଼ନା
ମଥା ପୋତି ସବୁ ସହି ଯିବା ଅଟେ ଭଲ ନା !
ଦୁଃସହ ଯାହା, ଯାହା ଦୁର୍ମତି ପରତ,
ପଳ ପଳ କରି କାଟେ ଯେ ପ୍ରାଣକୁ ତୁରିତ
ବିରୁଦ୍ଧେ ତା'ର ଯିବ ମୁଁ ନିଶ୍ଚେ ଲଢ଼ି ହେ !
ଗୋଟିଏ ନିମିଷେ ରହିବନି ସଢ଼ି ସଢ଼ି ହେ !

ଟିକିଏ ସ୍ୱାର୍ଥ ଟିକିଏ ଶାନ୍ତି ପାଇଁ କି
ଥିର ରହିଯିବ ଏତେ ହେଙ୍ଗାମ କାଇଁକି ?
ବଜ୍ରରଲ୍ ବେଳେ ମୋର ଶିରା ଉପଶିରା ହେ
ତାତି ଉଠେ ବେଗେ କିବା ଇସ୍ପାତ ଶିଳା ହେ !
ଭିତରଟା ମୋର ମହାଜୀବନର ଝରଣା,
ସ୍ପୃହେନା ରହିବ ହୋଇ କାହା ହାତ ଖେଳନା

ସାତ ସ୍ୱାମିମାନ କରି କିଏ ମତେ ଥୋଇଲେ,
ତଳିତଳାନ୍ତ କରିବାକୁ କିଏ ବୋଇଲେ,
ଅମ୍ବର ମରୁ ଦେଲେ ମୋ ସବୁଠି ସରଜି,
ପାରିବନି ମୋର ପ୍ରତିଜ୍ଞା କେବେ ବରଜି;
ଉଦ୍ଫେଣ ନାଗ ପରି ମୁଁ ଉଠିବ ଊର୍ଦ୍ଧ୍ୱେ
ଜୀବନ ଲକ୍ଷ୍ମୀ ଆଣିବ ମୁଁ ଜିତ ଯୁଦ୍ଧେ !!

—o—

# ଯୁଦ୍ଧଯାତ୍ରୀ

ଜାତିପାଇଁ ଦେଶପାଇଁ ଜୀବନ ପାରିବ ଦେଇ,
ନାଇଁ ମୋ ବନ୍ଧନ ମନା ପାରିବେନି କରି କେହି ।
ଯେ' ମାଟିର ରସଧାରା ବହେ ମୋର ବୁକୁତଳେ,
ଯେ ମାଟିର ସମୀରଣ ବଞ୍ଚାଇ ରଖିଛି ମୋରେ,
ସେ ମାଟିର ବନ ବଣ ଶଇଳ-ସାଗର-ସ୍ରୋତ,
ଗଛ ପତ୍ର ଫୁଲ ଫଳ ଶ୍ୟାମଳ ପ୍ରାନ୍ତର ପଥ,
ଧମନୀ ଶୋଣିତେ ଆଣେ ଜୀବନର ଜାଗରଣ
କେମନ୍ତେ ତା' ପାଇଁ ନାଇଁ କରିବ ଜୀବନ ପଣ ?

ଯେ' ମାଟିର ବୁକୁ ପରେ ଠିଆ ହୋଇ ଖେଳେ ବୁଲେ,
ଯେ ମାଟି ବାନ୍ଧିଛି ମୋରେ ଶତ ସଖା ବନ୍ଧୁ କୁଳେ,
ଯେ ମାଟିର ବଳ ବୀର୍ଯ୍ୟେ ଗଠିତ ମୋ ପ୍ରତି ଅଙ୍ଗ,
ଯେ ମାଟିର ସୁଖେ ଦୁଃଖେ ଫୁଟେ ମୋ ଜୀବନ ରଂଗ,
ଯେ ମାଟିର ସାଥେ ମୋର ଜନ୍ମ ଜନ୍ମ ପରିଚୟ,
ହୁଏ ଯହିଁ ସୁଖ ଦୁଃଖ ଜନ୍ମ-ମୃତ୍ୟୁ ଅଭିନୟ,
କେମନ୍ତେ ତା' ଲାଗି କହ ଦେବ ନାଇଁ ଆତ୍ମବଳ ?
କେମନ୍ତେ ତାଡ଼ିବ ନାଇଁ ତାହାର ଶୋଣିତ ଧର !!

ସତ୍ୟ ଲାଗି ନ୍ୟାୟ ଲାଗି କୃପାଣ ଧରିବ କରେ,
ତା' ଆଖିର ଉଷ୍ଣ ଅଶ୍ରୁ ସହି ପାରିବନି ଥରେ ।
ବଜାଇ ବିଜୟ ତୂରୀ, ଚାଲିବ ମୁଁ ପଥେ ପଥେ
ଚାଲିବ ସାଗର ବକ୍ଷେ ଚାଲିବ ଅନଳ ସ୍ରୋତେ,
ମେରୁର ତୁଷାର ଶୈଳେ ତା'ଲାଗି ଚାଲିବ ପଥ
ସାହାରା ପ୍ରାନ୍ତରେ ଯିବ ନୋହି ଲବେ ଅବନତ;
ଆଣିବ ବିଜୟ-ଲକ୍ଷ୍ମୀ, ତା'ପାଇଁ ସୋହାଗେ ବର
ସତ୍ୟ ଲାଗି ନ୍ୟାୟ ଲାଗି କୃପାଣ ଉଠିବ ଧର,

ଦିଅ ଗୋ ଜନନୀ ଦିଅ ବିଦାୟ ମୁଁ ଯାଏ ଚଳି,
ଗୋଟିଏ କୋଟିଏ ପାଇଁ ସଂଗ୍ରାମେ ପଡ଼ିବ ଢଳି ।

ବଜପୁ-ସିନ୍ଦୂର ଟିକା ବୋଳ ଦଅ ଶିରେ ମମ !
କର ମୋରେ ଆଶୀର୍ବାଦ, ମୋରେ ଯେ ଦେଇଛ ସ୍ତନ୍ୟ—
କେଶଗ୍ର ବନ୍ଧମ ଛାର, ଦେଖାଏ ମୁଁ ଧରଣୀରେ
ମୁଁ ଥାଉ ମୋ ଦେଶ ମାଟି ପଡ଼ିଥିବ କଳବଳେ—
ଏ ରକ୍ତାକ୍ତ ଦେହ ଧର, ହୋଇ ସାତ ଖଣ୍ଡମାନ !
ମୁଁ ତାହାର ସନ୍ତାନ, ନା, ହତ୍ୟାକାରୀ ସପୁତାନ ?

ବଜାଇ ସଂଗ୍ରାମ ବାଜା, ଉଡ଼ାଇ ଚର୍ବାଳ ମାଳା
ଗୁଳଚକ୍ର ସୈନ୍ୟ ଧାଡ଼ କାନ୍ଧରେ ବନ୍ଧୁକ ଗୋଳା,
ପଡ଼େ କେତେ ହୁଲହୁଳ, ପଡ଼େ କେତେ ବୀର-ଡାକ
ଜାତିର ହୃତପିଣ୍ଡ ପର ଚାଲନ୍ତୁ ଜବାନଯାକ;
ସଂଗ୍ରାମେ ଫେରେ ବା ମରେ ଲୋଡ଼ା ନାହିଁ ଜାଣିବାର
ବଞ୍ଚାଏ ଦେଶରେ ମୋର ଚାଳ ଖଣ୍ଡା ତଲୁଆର
ଯାଉଛ ଯାଉଛ ମାଆ ! ଏ ତୋର ଆଶିଷ ମାଗି
ଶିରରେ ଶୋଣିତ ମୋର ଫୁଟୁଛ ମୋ ଦେଶ ଲାଗି—

———

## ଜୀବନ ଶ୍ମଶାନ

ପଦ ମର୍ଯ୍ୟାଦାର ମହା ଅଭିମାନ ଧରି
କଏ ଏଥି ବୁକୁ ଠେଲି ଚାଲେ,
ଅପୂସ ଓ ଆଡ଼ମ୍ବରେ ହର୍ମ୍ୟ ରଚି କଏ
ଖାତିର ତ କରେ ନାହିଁ କାରେ,
କା' ହାତରେ ସୁନାଘଣ୍ଡ,
କଣ୍ଠେ ସୁନା ଚେନ୍
ଅତରର ଗନ୍ଧେ ମହକଇ,
ଦରିଦ୍ର କୁଟୀରେ କଏ ଗଳୁଣି ସାଂଢୁଡ଼,
ପେଜପାଣି ଟୋପେ ନ ମିଳଇ !

ପଥପ୍ରାନ୍ତେ କେ' କହୁଚି ଲୁହ ନେଇ ତା'କୁ,
ଚାରି ଦିନେ ଆଜ ଜଳେ ଚୁଲି,
ନେହୁରା ହୋଇ ମୁଁ କେତେ ମାଗିବାର ପରେ,
ଦେଲା ବୋଲି ଅଳ୍ପେ ଗମ ଖୁଦ୍ର ।
କହୁଚି ଜନନୀ କା'ର କୋଳ ସଂଗୀଙ୍କରେ
ହୀନ ପେଟ ଲଭିଚ ଜନମ
ଏ ମାଟିର ଯେତେ ଯାହା—
ସୁଖ ବଇଭବ,
କେଉଁ ଥିକ ହେବୁ ତୁ ଭଜନ !

ଏକଇ ଏ ପୃଥିବୀରେ ଗୋଟିଏ ପ୍ରାଣର
କୋଟି ଶାଖା ହୋଇଅଛୁ ମେଲା
ସବୁ ଶାଖେ କାହିଁ ପାଇଁ ରସାଳ ସମ୍ପଦ
ଗଡ଼ରବେ ନ କରିବ ଖେଳା ?
ବିନ୍ଦୁ ବିନ୍ଦୁ ରକ୍ତ ଯହିଁ କାନ୍ଦୁଛୁ ନିସୃତ
ନିଖିଳର ବୁକୁ ତଳେ ତଳେ,
ପୃଥିବୀ ବଞ୍ଚିବ ତହିଁ,
ଆଶା ଓ ବିଶ୍ୱାସ ଧରି
ଚାରିବ କ କହ ବଜ୍ରସ୍ୱରେ ?

ଦଣିଧର ବଡ଼ାନଳ ଜଳୁନି କି ସେଠି
ଅବିଶ୍ରାନ୍ତ ରକ୍ତଶିଖା ମେଲି,
ଗୃଧ୍ର ଓ ଶୃଗାଳ ପରି ଚଉପାଖେ ତା'ର
ନାହାନ୍ତି କି ଲକ୍ଷପତି ବେଢ଼ି ?
ବାଜୁନି ବାଜୁନି କାହିଁ ପ୍ରାଣର ଦୁନ୍ଦୁଭି,
ଶୁଭୁଅଛୁ ଆର୍ତ୍ତର ଚିତ୍କାର
ଚତୁର୍ଦ୍ଦିଗେ ଏ ମାଟିର ଭୀଷଣ ଶ୍ମଶାନ,
ଚତୁର୍ଦ୍ଦିଗେ ପ୍ରାଣହୀନ—
ବେଶ ବସୁଧାର !

— — —

# ପୂର୍ଣ୍ଣ ହୁଅ

ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !
ସୁନ୍ଦର ଏ ସାଗର ପରେ
ଚାଲୁ ମୋ ତରୀ କାଟିଣ ସୂଅ !

ଅସୀମ ଏଇ ପ୍ରାଣର ମେଳେ,
ଖେଳେ ଖେଳେ ନିୟତ ଖେଳେ;
ଏଇତ ମୋର ଆନନ୍ଦର
ଜୀବନଭରା ଗୋଟିଏ ଗୃହ !
ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !

ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !
ଖେଳରେ ତରୀ ଚାଲରେ ଚାଲ !
ସବୁର ପ୍ରାଣ ସରଗେ ଛୁଅଁ !

ସଫଳ ସ୍ୱପ୍ନ ଦେଖି ଦେଖି
ଚାଲରେ ତରୀ ତୋ ପାଲ ଟେକି,
ଏତେ ନିଜର ରାଇଜ ଆଉ
ଏ ତହୁଁ ବଳ କେହ୍ବ ତ ନୁହ,
ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !

ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ
ଯା ପାଇଁ ଯେତେ ଫୁଟିବ ଅଛୁ
ପାଉରେ ଫୁଟି ହାସ୍ୟ ଲୁହ ।

ଆଜ ତ କାରେ ପାଇବ ନାହିଁ
ଆଜ ତ କାରେ ଚାହିଁବ ନାହିଁ,
ସଭଏ ଆସି ପ୍ରାଣର କଥା
ମୋ କାନ ପାଖେ କୁହରେ କୁହ !
ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !

ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !
ଯେଉଁଠି ଭବ ରହିବ ଏତେ
ସଖା ବନ୍ଧୁ ସେନେହ ସୂଅ !

ଏଇଠି ହେଉ ଅବସାନ
ଯେତେ ପ୍ରାଣର ଧାରଣା ଧ୍ୟାନ,
ଏଇତ ମୋର ପ୍ରାଣର ମାଟି
ବୁଝେ ପ୍ରାଣର ହସ ଓ ଲୁହ
ପୂର୍ଣ୍ଣ ହୁଅ ! ପୂର୍ଣ୍ଣ ହୁଅ !
ସକଳ ଆଶା ପୂର୍ଣ୍ଣ ହୁଅ !

—*—

# ଉତ୍ସର୍ଗ

ମୋ ଜନ୍ମମାଟିର ବରେଣ୍ୟ କବି
ସ୍ୱର୍ଗତ ପଣ୍ଡିତ ଗୋଦାବରୀଶଙ୍କ
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ···

# ଆମେ ଜଣେ

ତୁମେ କିଏ ମୁହିଁ କିଏ କିଏ ଏଇମାନେ ?
ଏକା ଅଙ୍ଗ ଅବୟବ ଏକା ଆଶା ପ୍ରାଣେ ।
ଏକା ଅନୁଭବ ଏକା ସୁଖ ଦୁଃଖ ପ୍ରୀତି
ଏକଇ ମାଟିରେ ଆମ ସଭିଙ୍କର ସ୍ଥିତି !
ଏକା ହସ ଫୁଟେ ଓଠେ, ଏକା ଲୁହ ଝରେ
ସଭିଏ ତ ଆମେ ଗଢ଼ା ଏକଇ ହାତରେ
ଏକଇ ଫୁଲର ଆମେ ସହସ୍ର ପାଖୁଡ଼ା
ଏକା ସୂତେ ଗୁନ୍ଥା ଆମ ଜୀବନର ପୁଡ଼ା
ତେବେ କାହିଁ କହ ଏତେ ମୁହଁ ମୋଡ଼ାମୁଡ଼ି ?
କାହିଁଇ ରହୁନ କହ ହୃଦ ଖୋଲିଖୋଲି ?
ଆମେ ଜଣେ ସହସ୍ରର ରଚି ମଧୁତାନ
ପୃଥିବୀରେ ବୁଣୁଅଛେ ନବ ନବ ପ୍ରାଣ !
ଏଥିରେ ଆମର କେତେ ଗର୍ବ ଗଉରବ !
କପାଇଁ ଅସୁନ ଏଇ ପୁଣ୍ୟ ଅନୁଭବ ?

———

## ବର ଦାନ

ହେ ଅନନ୍ତ ! ହେ ଅସୀମ ! ଦେଇଚ ଜନମ
ତୁମର ସୃଷ୍ଟିରେ ମତେ, ଅନନ୍ତ ବନ୍ଧନେ—
ବାନ୍ଧିଚ ଅନନ୍ତ ପ୍ରାଣେ ; କେମନ୍ତେ ଜୀବନ
ଭୁଲିବ କରୁଣା ତବ ଜନମେ ଜନମେ !
ପ୍ରତି ପୁଷ୍ପ ପ୍ରତି ଫଳ ପ୍ରତି ଗୁଳ୍ମ ଲତା
ନର, ନାରୀ, ପଶୁପକ୍ଷୀ, କାନନ, ଭୂଧର,
ନଦ, ନଦୀ, ନୀଳ ନଭ—ସବୁରେ ମମତା—
ଭରି ଆସେ ଗୃହେଁ ମୁହିଁ ଯେତେ ଯେତେ ଥର !
ସଭିଏ ସଭିଙ୍କ ତୁଲେ ଯୁକ୍ତ ଏକ ଖିଏ
କେ' କାରେ ଯିବାକୁ ଗୃହେଁ ନୁହଇ ସମ୍ମତ
କେତେ କା ଉପରେ ମାନ ଅଭିମାନ କଏ—
କରେ ନାଇଁ ? କି ସୁନ୍ଦର ତୁମ ସୃଷ୍ଟି ପଥ !
ଏ ପଥେ ପଥିକ ମତେ କଲ ଭଗବାନ
ଏ ଠାରୁଁ ଅଧିକ କିବା ଅଛି ବରଦାନ ?

---

## କେମନ୍ତେ ଯିବ ଫେରି ?

ହସ ଖେଳ ଆନନ୍ଦର ବସୁନ୍ଧରା ପରେ
ହସି ଖେଳି ଗୃଳିବ ମୁଁ ସବୁରି ସଙ୍ଗରେ ।
ସଭିଏ ମୋହର ସାଥି ପ୍ରାଣ ପ୍ରିୟତମ
ଭିନ୍ନ ନୁହେ ଭିନ୍ନ ନୁହେ କେହି ଏକଜଣ !
ବକ୍ଷଭରା ସେନେହରେ ସବୁରି ଅନ୍ତର—
ପରସ୍ନାତ କରି ମୁହିଁ, ଗୃଳିବ ସତ୍ୱର !
ଦେଖିବ ସବୁରି ଓଠେ ଆନନ୍ଦର ହାସ
ଦେଖିବ ଅନନ୍ତ ଆଶା ଉତ୍ସାହ ଉଚ୍ଛ୍ୱାସ

ସକଳର ବୁକୁ ଚକ୍ଷୁ ଉଠୁଅଛୁ ଫୁଟି
ତହିଁରେ ସଗଗେ ଯିବ ଏ ଜୀବନ ଛୁଟି !
ବିରାଟ ବିଶ୍ୱର ପ୍ରତି ଧୂଳିକଣା ସହ
ମୁଁ ଗୁହେଁ ଜୀବନବୋଲା ପ୍ରାଣ ପରିଚୟ !!
ଚତୁର୍ଦ୍ଦିଗେ ଯେ ଅନନ୍ତ ରହିଅଛୁ ଘେରି
ନ ପିଇ ସବୁଠୁ ସୁଧା କେମନ୍ତେ ଯିବ ଫେରି !!!

—✳—

## ଡାକ

କେଉଁ ଦେଶ ପଥିକ ମୁଁ କେଉଁ ଦେଶେ ଯାଏ ?
ଅଲକ୍ଷ୍ୟ ମୋ ଯାତ୍ରା ପଥେ ସୁଖ ଦୁଃଖ ପାଏ !
ହସେ ଖେଳେ କାନ୍ଦେ କେହି ବୁଝେନା ତ ଆସି !
ପଥେ ପଥ ଜନ ପ୍ରାଣୀ ପ୍ରିୟ ପ୍ରତିବାସୀ
ଗ୍ରହଚନ୍ଦ୍ର ତରତରେ କିବା ଲକ୍ଷ୍ୟ ଧରି !
ଉପରେ ଅନନ୍ତନଭ ତଳେ ଅଛି ପଡ଼ି
ସୀମାହୀନ ବସୁନ୍ଧରା, ଗିରି ବଳ ବନ—
ମାଳମାରେ କରି ନିତ୍ୟ ଗଭୀର ଗାହନ !
ଯାତ୍ରୀ ମୁଁ ଗ୍ରହଳ ନିତ୍ୟ ଚହବାଳ ଫେଇ
ଯେତେ ଯାଏ ସେତେ ଦୂରେ ଦୂରେ ଯାଏ ସେଇ ।
କମ୍ପା ଆସିଥିଲ ଏଥି କାହାର ଇଂଗିତେ ?
କାହାର ସୁକଣ୍ଠ ବୀଣା ମୋହନ ସଂଗୀତେ
ଯାଏ ମୁହିଁ ଦୂରେ ଦୂରେ; କାହା ନିତ୍ୟ ଡ଼ାକେ
ଗ୍ରହଳ ବିଶାଳ ସୃଷ୍ଟି ମଣ୍ଡଳେ ନିବାକେ !!

# ଯାତ୍ରୀ ଓ ଯାତ୍ରା

ଆଶା ଆଜି ଆନନ୍ଦର ସୁନେଲି ସପନେ
ବାଞ୍ଛି ମୁଁ ରହିଚି ଏଇ ଅନନ୍ତ ଭୁବନେ ।
ସୀମାହୀନ ବିପଦର ଯେ ଝଡ଼ ତୋଫାନ—
ଭୁଲେ ମୁହିଁ କରିଅଛି ନିୟତ ସଂଗ୍ରାମ
ଗୁଳିଚି ମୁଁ ବାଟ କାଟି ଲଭିବେ ନାଇଁ ଡର
ଦୁର୍ଦ୍ଦମ ଅଭାବ ଯେବେ ପଥେ ଅଛି ପଡ଼ି ।
ଅସୀମ ବେଦନେ ଯେବେ ଲୁହ ଅଛି ଝରି,
ଦେଇଚି ନୟନୁ ପୋଛି ମୁହିଁ ବୀର ପରି !
ଘାତ ପ୍ରତିଘାତ ଯେବେ ଆସି ବାରବାର
କରିଅଛି ହଇରାଣ ଦେଖାଇ ଦୁର୍ବାର —
ତେଜି ମନେ, ଯାଇନି ମୁଁ ଯାଉନି ମୁଁ ଦବି
ଗୁଳିଚି ମୁଁ ବୈଶାଖର କିବା ତପ୍ତ ରବି !
ଏ ମହା ବିଶ୍ୱର ପ୍ରତି ରେଣୁ ରନ୍ଧ୍ର ତଳେ
କି ମଧୁ ସମ୍ବାଦ ମୋରେ ଆକୁଳିତ କରେ !!

—○—

# କର୍ମ ଭୂମି

ବିଶାଳ ଧରଣୀ ପରେ ଦେଖ ଲୋ ସୁନ୍ଦର !
କେମନ୍ତେ କର୍ମର ତେଜ ଦିବସ ଶର୍ବରୀ
ଲଗିଅଛି ପରଂପରା । ନାଇଁ ଅବସାନ
କ୍ଷୁଦ୍ର ପିପିଲିକାଠାରୁ ମଣିଷ ମହାନ
ବଳ କଳ ବୁଦ୍ଧି ଗୁଳି ଲଗିଚନ୍ତି କାମେ
ସଂଗ୍ରାମର ଭୂମି ଏହୁ ନୁହେଁ ହେଲେ ଧାନେ !
ଆଜି ଯାରେ ଚଞ୍ଚୁ ପୁଟେ ଖାଦ୍ୟ କାହୁଁ ଆଣି
ବିହଗୀ ଶାବକେ ତାର ଖୁଆଏ ସେ ପୁଣି—

ଦିଗ୍‌ବଳୟ ଆରପାରେ ବୁଲି ପକ୍ଷୀମାନେ
ପୂରାଏ ଆପଣା ପେଟ, ପ୍ରତି ଜୀବ ପ୍ରାଣେ
କେମନ୍ତେ ବିଧାତା ଦେଇ ସାଧନାର କଣା,
ଦେଖଇ ସୁଦୂରୁ ଏଇ ଖେଳ ଅକଳନା ।
କର୍ମର ମୋହନ ଖେଳ ଚତୁର୍ଦ୍ଦିଗ ଭରି
ରଖିଚି ସୃଷ୍ଟିକୁ ନିତ୍ୟ ଉଦ୍‌ଜୀବିତ କରି !!

—୦—

# ଆଉ ସ୍ଥାନ କାହିଁ ?

ମୋର ବଡ଼ ରାଗ ହୁଏ ଯେଉଁଠି ମଣିଷ
ମଣିଷକୁ ଭଲପାଏ ନାହିଁ ଅହର୍ନିଶ !
କି ସୁନ୍ଦର ପୃଥିବୀ ଏ ବିଲ ପଦା ଧରି
ଧରି ଶ୍ୟାମ ଅରଣ୍ୟାନୀ ଉନ୍ନତ ଶିଖରୀ,
ନୀଳକାନ୍ତ ଊର୍ମି ତୋଳି ନାଚଇ ସାଗର
ରବି ଶଶୀ ତାରକାରେ ଭିରେ ନୀଳାମ୍ବର
ରଚଇ ଅନନ୍ତମାୟା; ପୁର ପଲ୍ଲୀ ଗ୍ରାମ
ନଗର ସହର କେତେ ଧରି ଲକ୍ଷ ପ୍ରାଣ—
ଅନନ୍ତ ଆକାଙ୍କ୍ଷା ଭରି, ଲୀଳା ଉଠେ କରି ।
ନିଜରୁ ନିଜର କରି ସବୁରେ ସଞ୍ଚରି
ଗାଇବାକୁ ଜୀବନର ସୀମାହୀନ ଗାନ
କାହିଁକି କୁଣ୍ଠିତ କହ ମଣିଷର ପ୍ରାଣ ?
ଛାଡ଼ିଦେଲେ ଏଇ ମାଟି ଆଉ ସ୍ଥାନ କାହିଁ ?
ପ୍ରାଣର ଈପ୍‌ସିତ ମଧୁ ପାଇବାର ପାଇଁ !

—୦—

# ଚଥକ୍ତ ପ୍ରାସାଦ

ଆସୂନ ଆସୂନ ମୋର ତଳେ ଅବସାଦ
ଦେଖି ଜୀର୍ଣ୍ଣ ପରତ୍ୟକ୍ତ ଏ ରାଜପ୍ରାସାଦ ।
ମଣିଷର ପ୍ରାଣବୋଲା ମୋହନ ଅନ୍ତର
ନଥିଲା ନଥିଲା ଏଥି ତିଳେକ ମାତର !
ମଣିଷର ବ୍ୟଥା ଏଥି ବୁଝିବାର ପାଇଁ
କା' ନୟନ ପ୍ରାନ୍ତୁ ଲୁହ ଝରୁଥିଲା ନାହିଁ !
ହେବା ପାଇଁ ମଣିଷର ବନ୍ଧୁ ସଖା ସାଥି
ନୟୂତ ଚନ୍ତ୍ରତ ନାହିଁ ଥିଲା କାର ଛାତି !
ମଣିଷର ମୁଣ୍ଡ କାଟି କାଟି ତା' ଅନ୍ତର
ମୁଣ୍ଡ ଟେକ ଉଠିଥିଲା ଏ ସୌଧ ଶିଖର !
କେମନ୍ତେ ରହନ୍ତା ଚର ତୀର୍ଥ ଭୂଇଁ ସମ ?
ମାଟିର ନରକ ଏ ଯେ ଭୀଷଣୁ ଭୀଷଣ ।
ମଣିଷ ଲୁହର ବାଣୀ ଗୁଳଚ ଯେ ଦଳ
କେମନ୍ତେ କହବ ତା'ଠି ପ୍ରାଣ ଅଛୁ ଭଳ



# କେଉଁଠି

କେଉଁଠି ହସୁଚ କଏ ନର୍ଖକର ହାସ !
କେଉଁଠି କହୁଛ କଏ ପ୍ରାଣବୋଲା ଭାଷ !
କେଉଁଠି ଗୁଳଚ କଏ ମୁଖରତ କର
ଆନନ୍ଦର କଳ ତାନେ ଦ୍ଵବସ ଶବଙ୍ଗ !
କେଉଁଠି କେ ସ୍ୱର୍ଣ୍ଣ ମାୟା ଢଣି ଢଣି ଭର
ଅମୃତର ମଧଧାର ଆଣୁଚ ଆହର !
କେଉଁଠି କେ ଫୁଟାଉଛ ଜୀବନର ଫୁଲ
ବର୍ଣ୍ଣ ଦେଇ ଗନ୍ଧ ଦେଇ ଅମୂଲ ଅତୁଳ !

ସାଗର ଉଚ୍ଛ୍ୱାସ ପରି ଗଳା ଗରଜୀର
କେଉଁଠି ଜୀବନ ସ୍ରୋତ ଆକୁଳ ଅଧୀର !
ଅନନ୍ତରେ ଅସୀମରେ ମିଶିଯିବା ପାଇଁ
ସବୁ ସ୍ୱାର୍ଥ ସବୁ କ୍ଷୁଦ୍ର ଦୂରେ ଫିଙ୍ଗି କାହିଁ !
କେଉଁଠି ଏ ସବୁ ଅଛୁ କହ ମତେ କହ ?
ସେ ସବୁରେ ତଳ ହେବ ମୁଁ ଆନନ୍ଦମୟ !

———

## ମାନବ

ହେ ମାନବ ! ଗୃହେଁ ଥରେ ଗୃହେଁ ଭଲ କରି
କଏ ତୁ ଆସିଚୁ ଧରାପୃଷ୍ଠେ ଅବତରି
ସୀମାହୀନ ଶକ୍ତି ନେଇ ମହା ବିଧାତାର
ନିଜକୁ ପଚ୍ଛର ନିଜେ କେଉଁ ଅଧିକାର—
ପାଇଚୁ ଏ ଧରଣୀରେ, ତୋହଠାରୁ ବଳ
ଧରାରେ ବରିଷ୍ଠ କରି ସ୍ରଷ୍ଟା ନାହିଁ ଗଢ଼
କାହାରେ ଆପଣା ହାତେ । ତୁହି ଏ ଧରାର
ପ୍ରାଣ ଦାମୀ ରୂପ ଦାମୀ ଜୀବନ ଆଧାର ।
ସଂଗ୍ରାମର ବିଭୀଷିକା, ଶତ ରକ୍ତପାତ ।
ଶାନ୍ତି, ମୈତ୍ରୀ, ସୌଭାଗ୍ୟର ମୂଳେ ତୋର ହାତ
ଯାଦୁକର ଯଷ୍ଟି ସମ ଯେତେବେଳେ କାମ କରେ !
ଧରଣୀର ଭାଗ୍ୟ ତୋର ତୋହର ହାତରେ
ବନ୍ଧା ନି କି ? ଏ ଧରିତ୍ରୀ ରହିଅଛି ଗୃହେଁ
ସତତ ତୋ ଶୁଭ ଦୃଷ୍ଟି ପାଇବାର ପାଇଁ !!

—୦—

## ମାଗେ

ବିଷ ଭରି ଦେବି ମୁହିଁ ସୁଧା ଆଲିଙ୍ଗନ
ଆସ ଆସ ନିଖିଳର ଅନନ୍ତ ଜୀବନ !
ଆସ ଦୀନ ! ଆସ ଦୁଃଖୀ ! ନିରନ୍ନ କାଙ୍ଗାଳ !
ଆସ ହତଭାଗା ! ଆସ ରୁଗ୍‌ଣ ପ୍ରତିଭାର
ହତାଶ ପଥିକ ତୁମେ ! ଆସ ପଥ ଭ୍ରାନ୍ତ—
ଅତ୍ୟାଗ୍ରହୀ, ଅନାଗ୍ରହୀ ଦୁର୍ଦ୍ଧର୍ଷ ଦୁର୍ଦ୍ଦାନ୍ତ !
ଆସ ପଂଗୁ ପଦାନତ ! ଆସ ବିଲ ବନ !
ନଦୀ ସିନ୍ଧୁ ଶୈଳ ଶିଖ ସଂକଟ ବିଷମ !
ଆସ ଶୁଦ୍ଧ ନୀଳାମ୍ବର ଚିର ପ୍ରସାରିତ !
ଆସ କୀଟ !, ପତଂଗମ !, କ୍ଷୁଧିତ ତୃଷିତ !
ଆସ ହେ ଅନନ୍ତ ବିଶ୍ୱ— ତୁମ ସମସ୍ତର—
ଭିତରେ ରହିଛି ନିଃଶ୍ଚ ଜୀବନ ନିର୍ଝର !
—ତା'ର କଲତାନ ମୁହିଁ ମାଗେ ଖାଲି ମାଗେ
ଶୁଣିବାକୁ ତୁମ ମେଳେ ଅନନ୍ତ ସରାଗେ !!!

—○—

## ସ୍ୱପ୍ନିଳ ମାଟି

କିଏ କାହା କୁଟୀରର ଆଦରର ଧନ
ଯାଉଚ ଏ ପଥେ ଘାଟେ ଦେଖୁଚି ତୁମରେ
କାହା ବୁକୁ ତଳେ କିଏ ବନ୍ଧା ଚିରନ୍ତନ
ଫୁଟିଚ କି ଭଳି କିଏ ଏ ମାଟି ଉପରେ !
କାହା ପାଖେ କେତେ ଶିକ୍ଷା ବୈଭବ ନାହିଁ ?
ଭୁଲିତ ଫୁଟାଇ ସହି ଉତ୍‌ଥାନ ପତନ
ହତାଶେ କିଏ ବା ଶୂନ୍ୟେ ରହିଅଛ ଗୃହିଁ
ସମ୍ମୁଖେ ବିଲୋକି ଶତ ବାଧା ଓ ବନ୍ଧନ !

କା ନେନ୍ତ ଦୁର୍ଲଭ ଲୁବ୍ଧ କଏ ପୋଛୁ ଦେଇ
ସାନ୍ତ୍ୱନାର ମଧୁମାଧୁରୀ ଦେଉଚରେ ବୋଳ
ଅତ୍ୟାଗ୍ଭର ନତରେ ଯେବେ ଅତ୍ୟାଗ୍ଭରୀ କେହ୍ମ
ଠିଆହୁଅ ବପ୍ଳବର ଜମୃତ୍ୱେଷୀ ତୋଳ ।
ତୁମ ଆଶା କଳ୍ପନାରେ ସ୍ୱପ୍ନିଳ ଏ ମାଟି
କେତେ ସ୍ୱପ୍ନ ରଖିନାଇଁ ଭରି ତାର ଗ୍ଭଟି !

—୦—

# ରହରେ ଜୀବନ !

ପବେ ପବେ ଖେଳନାଇ ଶ୍ୟାମଳ ମାଧୁରୀ
ଫୁଲରୁ ଫୁଲକୁ ଅଳି ଆସିନାଇଁ ବୁଲି ।
ପଲ୍ଲବ ଗହଳେ କେଉଁ ବଜନ ବପିନେ
କୋଇଲି ତା' କୁହୁତାନ ମେଲନାଇଁ ଦିନେ ।
ଦିଗନ୍ତ ମାଧୁରୀ ଯେନି ଆସିନି ସମସ୍ତ
ବହୁନାଇଁ ମୃଦୁମନ୍ଦେ ମନ୍ଦର ମଳୟ
ଝପ ଝପ ଶ୍ୟାମ ଘାସେ ପଡ଼ିନି କାକର
ଝରଣାଟି ବଣବୁଦା ତଳେ ଝର ଝର—
ଗୀତଟି ମରବେ ଗାଇ ପାଇନାଇଁ ବନ୍ଧୁ
କେଉଁ ଶିଳା ତଳେ ତଳେ ଲବେ ରହି ରହି !
ହଳଦୀ ବସନ୍ତ ବୁଲି ତରୁ ଶାଖା ପରେ
ହେମକାନ୍ତ ଶୋଭା ନାଇଁ ଖେଳାଏ ନିଶ୍ଚଳେ !
ଆସିବ ଆସିବ ଦିନେ ରହରେ ଜୀବନ ।
ଫୁଟିବ ତୋ ହୃଦୟର ମଧୁର ସପନ !

—*—

# ରହିଲି

ରହିଲା ଏ ବୁକୁ ତଳେ ବୁନ୍ଦୁତଳ ବ୍ୟଥା
ଚାଲିଗଲ ! ଚାଲିଗଲ ! କହିଲନି କଥା
ପଦେ ହେଲେ । ଏତେ କମ୍ପା ନିଠୁର ନିର୍ମମ
ଦେଲନାହିଁ ମାଗୁଥିଲି ମୁହିଁ ଅକିଞ୍ଚନ
ହାତ ପାତି ଜୀବନର ଯେ ଟିକିକ ଲୋଡ଼ା
ଚାହିଁଲି ନି ଲବେ ହେଲେ ତାକି ନେଇ ତୋଳା !
ବୁଝିଲନି ମୋ ଭିତରେ କିଏ କାଳି କାଳି
କାନ୍ଦୁଅଛି ତାରି ସୀମାହୀନ ଲୁହ ଧାର !
ମୁଁ ରହିଲି ଚିରଦିନ ଲୋତକ ଆପ୍ଲୁତ !
ମୁଁ ରହିଲି ଚିରଦିନ ହୋଇ କି ବିଚ୍ୟୁତ !
ମୁଁ ରହିଲି ଚିର ଦିନ ଏକା ଏକା ଖାଲି !
ମୁଁ ରହିଲି ତୁମେ ଗଲ ଦୂରେ ଦୂରେ ଚାଲି !
ମୁଁ ରହିଲି ଚିର ଦିନ ଏଥି ହାତ ପାତି
ମୁଁ ରହିଲି ଚିର ଦିନ ଖୋଲି ମୋର ଛାତି !

—o—

# ଆତିଥ୍ୟ

ଦୂର ମଫସଲ ଗାଆଁ, ଗୋଟିଏ ଆତ୍ମୀୟା
ଦେଖି ମୋରେ ପୂରିଗଲା ତା ଦରିଦ୍ର ହିୟା ।
କୁଟୀରେ ନ ଥିଲା କିଛି, ଚରଣ କି ଭଳି—
କରିବ ବିଚାରି ମନେ, ସ୍ନେହାଦର ଭରି—
ମର୍ମ ତଳୁ ଆଣିଲା ସେ ପକ୍ୱ ଫଳଟିଏ
ଆଦରେ ବାଢ଼ିଲା ମୋରେ; କିଛି ନାହିଁ ହେ
ଦେବାକୁ ଦରିଦ୍ର ବାସେ, ଯାଇଚ ସେ କାଳ

ଯେବେ ସବୁ ଥିଲା ମୋର । ଅଶ୍ରୁ ଦୁଇ ଧାର
ନେତ୍ର ପ୍ରାନ୍ତୁ ତାର କେଉଁଠୁ ଠିଆ ହେଲା ପାଶେ ?
ତାର ସେହି ପ୍ରାଣ ବୋଲା ଆଡମ୍ବର, ସହାସେ —
କହିଲ "ଜନନୀ ମୋର କମ୍ପା ଦୁଃଖ କର ?
ମୋହ ପାଇ ରଖିଥାଅ ଏ ସୁଧା ଅନ୍ତର !
ତୁମ ଏଇ ସେନେହର ଲୁହରେ ଲୁହରେ
ମତେ ଦିଅ ଓଦା କର ଏ ମାଟି ଉପରେ" !!

—*—

# ଦୂର କାନ୍ଦୁ ନୁହ

ଶିଶୁଟିଏ ଗୃହଁ ଗୃହଁ ଗୃଲସାଏଁ ମୋରେ
ସୀମାହୀନ ସ୍ନେହର କ ମୋହନ ଡୋରେ
ମତେ ସେ ରଖିଚ ବାନ୍ଧ ! ପୁଣି ଗୃହିଁଦିଏ
ମୋହଠୁ ସେ ଜୀବନର କବା ମିଠା ପିଏ ।
ତଥାପି କାନ୍ଦୁଚ ଗୃହଁ ; ତଥାପି ସେ ଲୋଡ଼େ
ଚିର ଦିନ ରହିଥିବ ମୋ ଦରିଦ୍ର କୋଳେ !
ଲୁହ ନେଇ ଗୃହିଁଚ ମୁଁ ତାରେ ଖଣ୍ଡ ଦୂରେ
ପଛକୁ ପଛକୁ ଗୃହଁ ତା' କୁଟୀର ପୁରେ
ଫେରିଯାଏ କାହା ଭୁଲେ । ଗୃହେଁ ମତେ ଗୃହେଁ
ମୋ ଭିତରୁ ସ୍ୱର୍ଗର କ ମଧୁ ସ୍ପର୍ଶ ପାଏ !
ତା ଆଖିରେ ଲୁହ ପୁଣି ଲୁହ ମୋ ଆଖିରେ
ବେମାଙ୍କ ଅନ୍ତର ପାଏ ବେମାଙ୍କି ଡାକରେ
ସିଏ ଦୂରେ ମୁହଁ ଦୂରେ । ଦୂର କାନ୍ଦୁ ନୁହ
କଣ୍ଠର ଆକୁଳ ଭାଷା ନୟନର ଲୁହ !

———

# ପଦେ କଥା

ତୁମେ ଭିନ୍ନ ମୁହିଁ ଭିନ୍ନ ପଦେକ କଥାରେ
ଆଉ ନାହିଁ ଦେଖା ଦେଖି ମୁହଁ ଚାହିଁ ଚାହିଁ
ପଥପ୍ରାନ୍ତେ ଦେଖା ହେଲେ ଆଉ ହୋଇଯାଏଁ
ସାତ ଶତ୍ରୁ ବଳ ଯେଷ୍ଟେ ଏ ଧରାରେ ଥାଏଁ !
ମୋ ଅନ୍ତର ସୁଖ ଦୁଃଖ ଗର୍ବ ଗଉରବ,
ତୁମର ଯା ଭଲ ମନ୍ଦ ସାର ବା ଅସାର,
କରେ ନାହିଁ ରେଖାପାତ ତୁମ ମୋ ଭିତରେ ।
କେତେ ହତଭାଗା ହୋଇ ରହୁଚେ ସତରେ !
କି ମହା ସମୁଦ୍ର ସତେ ପାଏନାହିଁ ଆଖି !
ଆର ପାରେ ତୁମେ ଆଉ ଏଇ ପାରେ ମୁହିଁ
କେହୁ ତ କାହାକୁ ଲବେ ପାରୁନାହେଁ ବୁଝି
ପଦେ କଥା କେତେ କଣ ଯାଇପାରେ ସୃଜି !
ପଦେ କଥା ନୁହେ ହୀନ ନୁହେ ଅକାରଣ
ପଦେକ କଥାରେ ବନ୍ଧେ ଜୀବନ ମରଣ !

—o—

# ନମସ୍କାର

ପ୍ରାଣର ଅନ୍ତର ମାୟା ଅଯାଚତେ ଭରି
କେ ମୋରେ ଆଣିଚ ଗଢ଼ି ଢଙ୍ଗ ଢଙ୍ଗ ଧରି
କାହାରେ ଦେଖିଚ ଅବା କାରେ ଦେଖିନାହିଁ
ସଭିଏ ମୋ ଆପଣାର ଯୁଗ ଯୁଗ ପାଇଁ !
ପଡ଼ିଗଲେ ଉଠାଇଚ, ଉଠିଲେ ମୁଁ ଭଲେ
କାନ୍ଦିଚ ଅନ୍ତରେ କେତେ ଗର୍ବ ଗଉରବ !
ବନ୍ଧେ ଭିତରେ ଯେବେ ପଡ଼ିଚ ମୁଁ ଲଇଁ
ଦେଇଚ କି ଉନ୍ମାଦନା କେତେ ଦୟାବହି !

ଏ ଶୋଣିତ ପ୍ରତିବନ୍ଦୁ ଭିତରେ ତୁମର
ଦୟା, ଦାନ, ଆଶୀର୍ବାଦ କୃତ୍ୟ ପ୍ଲାବିତ !
କଏ ସେ କେଉଁଠି ଅଛ ଏତେ ଆପଣାର
ତୁମ ଯୋଗୁ ଗୃହେ ପଥ ହୋଇ ଆଗୁସାର
କି ସମ୍ପଦ ଅଛି ମୋର ତୁମକୁ ଦେବାର
ପ୍ରତି ପଦପାତେ ତାଲେ କର ନମସ୍କାର !

—୦—

# ସେଇ ହାତ ଅଣେ

ତରୁଣ ବୟସେ ଯେବେ ପଢ଼ିବାର ପାଇଁ
ସୁଦୂର ବିଦେଶେ ଯାଏ କେତେ ଥର କାହିଁ
ଜନନୀରେ ଚାହିଁ ମୋର କରେ ନମସ୍କାର
ବଅନ୍ତ ଆଶୀଷ ସେହୁ ଶିରେ ବାରବାର—
ଲଗାଇ ତାଙ୍କର ହାତ । କହନ୍ତ ସେ ବାଣୀ
"ଦେଖି ଚାହିଁ ଚଳୁଥିବୁ ବିଦେଶର ପାଣି-
ପବନ ପିବନି ଦେହେ ବାଟେ ଗଲବେଳେ
କାହିଁ ଭୋକ ହେବ ଏଇ ଅଣେ ନେଏ ହେଲେ
ଭୁଜା କିଣି ଖାଇବୁରେ ପାଣି ମନ୍ଦେ ପିଇ
ଚାଲିବୁ ବାଧିବ ନାହିଁ ।" ଏମନ୍ତେ ସେ କହି
ବଅନ୍ତ ପଇସା ଅଣେ କାନିରୁ ଫିଟାଇ;
ମୋ ଦରିଦ୍ର ଜନନୀର ସେଇ ଦାନ ପାଇ
କେତେ କୃତ-କୃତ୍ୟ ହୁଏ ! ସେଇ ହାତ ଅଣେ
ଏବେ କିଏ ଦେବ ଯେବେ ତୁମେ ନିଭୁବନେ ?

—୦—

# ଯାତ୍ରା ପଥେ

ଗ୍ଭଲିଚ ମୁଁ ପଥଧାରେ ଖୋଜ ଖୋଜ କାରେ
ସିକ୍ତ ମୋ ନୟନ ପତା ଉଷ୍ଣ ଲୁହ ଧାରେ ।
ମୋ ଭିତରେ ରହିଅଛୁ ଯେଉଁ ପ୍ରାଣ ପକ୍ଷୀ
ଝୁରେ ସେ ହେଉଚ ତାର ଜୀବନର ସଖୀ ।
ପାଇବାକୁ ଦେଖିବାକୁ କହିବାକୁ କଥା
ଲଭିବାକୁ ତା ଅମୃତ ସେନେହ ମମତା ।
କେତେ ଦୂର ଗଲେ ତାରେ ପାଇବାକୁ ହବ,
କେତେ ସାଧନାର ପରେ ମିଳିବା ସମ୍ଭବ ।
ତା' ଅନ୍ତର ମଧୁଚ୍ଛିକୁ, କହ ପଥ ଧାର—
ଦୁବଘାସ ଗଛପତ୍ର ବଣ ବିଲ ମାଳ ।
ଆକାଶ ବତାଶ କହ କହ ମେଘମାଳ !
ବୃଥା ମୋ ଅନ୍ୱେଷ ଅବା ଫଳ ଅଛୁ ତାର ।
ଶତ ସୁଖ-ଦୁଃଖ ଆଶା ନିଆସା ଭିତରେ
ତା' ବନ୍ଧନ ମୋରେ କମା ଆକୁଳିତ କରେ ।

—o—

# ବନେ

ଜୀବନର ଯାତ୍ରା ପଥେ କେତେ ବାଧା ଆସେ
କେତେ ବେଦନାରେ ନେତ୍ର ଲୁହ ଗାରେ ଭାସେ !
ସବୁ ବାଧା ବପଦର ନିଦାରୁଣ କ୍ଷତ
ବକ୍ଷେ ବହି ଗ୍ଭଲିଚ ମୁଁ ଏଥି ଅବରତ;
ଗୋଟି ଗୋଟି କହିବାକୁ ଇଚ୍ଛା ହୁଏ ମମ
ତୁମର ସମ୍ମୁଖେ ଯାଇ, ଯେବେ ଏ ମରମ
ଯେତେ ଥର ଯାଇଅଛୁ ନିଦାରୁଣେ କଟି
ବୁଝିବ ବୁଝିବ ତମେ ଯେତେ ଯାହା କ୍ଷତ !

ଅନ୍ତରେ ଅନ୍ତର ତାଳ ଆପଣାର କର
ଏ ମହା ବିଶ୍ୱାସେ ମୁହିଁ ଦିନ ଦିନ ଧର
ଗୃଳଚ ଧରାରେ ସହି ମାନ ଅପମାନ
ସୀମାହୀନ ପଦାଘାତ ଶତ ବଜ୍ରବାଣ ।
ଦିନେ ପୋଛୁ ଦେବ ମୋର ତପ୍ତ ଲୁହଧାର
ସେଇ ମୋର ସୀମାହୀନ ମୋହନ ସମ୍ଭାର !



## ଶେଷ-ଶଯ୍ୟା

ଏଇ ତୋର ଶେଷ ଶଯ୍ୟା ? ତୋର ଛିନ୍ନ କରି
କେଉଁ ମହାଶୂନ୍ୟେ ଯିବୁ ଯିଣି ତୋହପର –
ଉଦାର ସୁନ୍ଦର ମୁଗ୍‌ଧ କମନୀୟ ପ୍ରାଣୀ
ଧରାରେ ପାଇବ କାହିଁ ନାଇଁ ପାରେ ଜାଣି !
ନୟନ ଯୁଗଳୁ ତୋର ଅଶ୍ରୁ ଉଠେ ଝରି
ଏ କୁଟୀର ପ୍ରତି ଜନେ କେତେ ହୃଦେ ଭରି
ପାଉଥିଲୁ, ଭଲ ତୁହି ! ମନେ ପଡ଼େ ମମ
ଯେ ଦିନ ମୁଁ ପଡ଼ିଥିଲି ହୋଇଣ ବିପନ୍ନ
ସ୍କନ୍ଧେ ବହି ନିର୍ବିଘ୍ନରେ ନେଇଥିଲୁ ଦୂରେ
ଆଜ ଯେବେ ସେହି କଥା ବସି ମୁହିଁ ଝୁରେ
ଲୁହ ସିକ୍ତ ହୋଇଯାଏ ଆଖି ବେନି ପତା
ତୋହ ମୋ ଭିତରେ କିବା ବିରାଟ ମମତା !
ଗୃଳିଯିବୁ ? ଆଉଁସେ ମୁଁ ଶେଷ ଥର ପାଇଁ
ହୃଦୟ ବନ୍ଧନୁ ବଡ଼ ବିଶ୍ୱେ କିଛି ନାଇଁ !



# ମୂଲିଆ

ଶ୍ୟାମଳ କେଦାର ମାଳେ ଯେବେ ବୁଲିଯାଏ
କେମନ୍ତେ ମୁଁ କେତେ ବାର ଚତେ ଗୁହାଁଥାଏ !
ନିବଡ଼ ଗୁହାଣୀ ତାଳ । ତୋର ପରିଶ୍ରମ—
ମୂଲ୍ୟ ଦେବାପାଇଁ ସାରା ପୃଥିବୀ ଅକ୍ଷମ !
ଦେହରେ ମଳିନ ବାସ ମୁଣ୍ଡରେ ଗାମୁଛା
ନଗ୍ନ ପିଠି, ଅନ୍ନ ବିନେ ପେଟ ଦିଶେ ଛୁଛା
ଦିନ ନାଇଁ ରାତ ନାହିଁ ସାରା ବର୍ଷ ପାଇଁ
ଖଟି ଖଟି ଆୟୁ ତୋର ଗୁଲିଯାଏ କାହିଁ !
ଗୃହେ ଦାରିଦ୍ର୍ୟର ଗ୍ରସ୍ତା ପ୍ରତି ଶିଶୁ ମୁଖେ
ମୁହୂର୍ତ୍ତେ ଜୀବନ ଶିଖା ଭୋଗିନାଇଁ ସୁଖେ ।
କୋଟି ଦୁଃଖ ନିର୍ଯାତନା ଅଭାବ ଭିତରେ
କାମ କରି ଗୁଲିଅଛୁ ଏ ଧରଣୀ ପରେ !
ହାଡ଼ ଭଙ୍ଗା କାମ ଯିଏ ଆସିଅଛୁ କରି,
ଚିର ଦିନ ତା' ନେତ୍ରେ କି ଅଶ୍ରୁଥିବ ଭରି ?

---

# ବିଦାୟ-ଦୃଶ୍ୟ

କାଳୁପଡ଼ା ଇଷ୍ଟେସନ କୋଳର ସଙ୍ଗାଳି,
ବସିଲିଣି ଯାଇ ଏବେ ପାସେଞ୍ଜର ଗାଡ଼ି ।
ରେଙ୍ଗାମ ମୂଲକେ ଯିବ କେତେଦୂରେ କାହିଁ,
ମାଆଟି ସେ ଲଗି ତାର ରହିଅଛୁ ଗୁହିଁ ।
ବରଗଛ ଅନ୍ତରାଳେ, ଆପଣା ତନୟେ,
ମାଆ ପୁଅ ଗୁରି ଆଖି ଏକ ନିଦ୍ଧ ଲୟେ ।
ଏକକୁ ଆରେକ ଗୁହିଁ ହୁଅନ୍ତି କି କଥା,
ଧାରି ଧାରି ଅଶ୍ରୁ କୋହେ; ବୁକେ ଗୁରୁ ବ୍ୟଥା ।

ଅବରୁଦ୍ଧ ବାଟ ସମ ପଡ଼ଇ ଉଚ୍ଛୁଳ,
ଶିଶିର ମାରଣ ଗାଡ଼ ଦୂରେ ଯାଏ ଚଳ—
ଅନପେକ୍ଷ କର୍ତ୍ତବ୍ୟର ମହାମୂର୍ତ୍ତି ପର;
ଦୁଇ ଆଖି ଦୁଇ ଆଖେ ଗୃହ୍ଣି ଚ ସେପର ।
"ରହିଲ ଅଦ୍ଧ ଣୀ ହୋଇ ଧନମାଳୀ ଏଥି",
"ବୋଉଲେ କାନ୍ଦବୁ ନାଇଁ ଆସିବ ଲେଉଟି ।"

—o—

# ଗୋଟିଏ ଅନ୍ତର

ଗ୍ଲଗଲ ଭାଇନା ହେ ଗ୍ଲଗଲ ତମେ
ରହିଲ ଏକାକୀ ହୋଇ ନିଖିଳ ଭୁବନେ !
ମୋ ଅନ୍ତର ବ୍ୟଥାଟିକ ବୁଝିବାର ପାଇଁ
ଏ ମର ଭୁବନେ ଆଉକେହି ଜଣେ ନାଇଁ ।
ଗୋଟିଏ ଅନ୍ତର ତୁମେ ଥିଲ ମୋହ ଲଗି
ମୋ ବକ୍ଷେ ବେଦନା ଯେବେ ଉଠୁଥିଲ ଜାଗି
ଅଶ୍ରୁ ଯେବେ ବୋହୁଥିଲ ବେନି ଗଣ୍ଡ ବାହି
ପୋଛୁ ଅଛ ଆପେ କହି ମୁଁ ଅଛୁ ତୋ ପାଇଁ !
ନାଇଁଥିଲ କେତେ ଦମ୍ଭ କେତେ ମୋର ବଳ ?
କେମନ୍ତେ ମୁଁ ଥିଲ ଯେବେ ଉଷତ ଚଞ୍ଚଳ ।
ପ୍ରଭାତ ଆକାଶ ପର । କବା ଦିନ ରାତେ
ଲାଗୁଥିଲ କଏ ଜଣେ ଅଛୁ ମୋ ପଶ୍ଚାତେ !
ଏବେ ଯେବେ ଦୁଃଖ ହୁଏ ଅଶ୍ରୁ ବୋହିଆସେ
ଗୃହ୍ଣି ରହେ ମହା ଶୂନ୍ୟେ ସୁଦୀର୍ଘ ନିଶ୍ୱାସେ ।

—*—

## ଜୀବନ

କିଏ ଏ ଧରାରେ ଆସେ କେତେ ଦିନ ପାଇଁ
ପୁଣି ଚାଲିଯାଏ କା' ନିର୍ଦ୍ଦେଶ ଅନୁସରି ।
ସବୁ ବୁଝିହେଲା କିନ୍ତୁ ବୁଝି ହେଲା ନାହିଁ
ଜୀବନର ଇତିହାସ କାଳି କାଳି ଧରି !
ସକାଳେ ମୁଁ ଦେଖିଥିଲି ଏଇ ବଷ୍ଣିତଘ
ନାଚି କୁଦି ଖେଳୁଥିଲି କୁଟୀର ଅଂଗନେ,
କେତେବାର ଆଉଁସିଚି କରେ ମମ ଧରି,
ଶୋଇଛି ସନ୍ଧ୍ୟାରେ ଏବେ ଅନ୍ତିମ ଶୟନେ !
ଅଧେ ତୃଣ କଳେ ଅଧେ ପଡ଼ିଛି ଭୂତଳେ
ଭକ୍ଷିବାକୁ ମିଳି ନାହିଁ ଲବେ ଅବସର,
ଜନମି ଚାହିଁଛି ତାର କେମନ୍ତେ ବିକଳେ
ମମତାର ଶେଷ କାହିଁ ଯୁଗ ଯୁଗାନ୍ତର !
ଏ ମହା ବିରାଟ ସୃଷ୍ଟି ପ୍ରହେଳିକା-ମୟୀ
ଭିତରେ କି ଅମୃତର ସ୍ରୋତ ଯାଏ ବହି !

—*—

## ସଇତାନର ସଂସାର

ତୁମେ କହେ ଦେଖିବାକୁ ଚାହୁଁଅଛ ବାରେ
ସଇତାନର ସଂସାର ଅଛି କେଉଁଠାରେ ?
ତୁମେ କହେ ଖୋଜୁଅଛ ନିମିତ୍ତକ ପାଇଁ
ଠିକଏ ଆସିବ ବୁଲି ସେ ରାଇଜେ ଯାଇ ?
କି ଭଳି ସେ ସଇତାନ ଆକାର ପ୍ରକାର
କି ଭଳି ଥିବେଟି ହୋଇ ତାର ପରିବାର
ତାର ବନ୍ଧୁ ସଖା ହୋଇଥିବେ କେଉଁମାନେ
କି କାମ ସେ କରୁଥିବେ କି ଚିନ୍ତା ପରାଣେ

ଜାଗୁଥିବ ? ତୁମ ପ୍ରତି କି ଭଳି ମମତା
ଦେଖାଇବେ କହିବେ କି ନାଇଁ ମିଠା କଥା
ଯିବାକୁ କି ଜାଗେ କୁତୁହଳ ବାର ବାର ?
ପାରୁନ କି ଦେଖି ? ସଇତାନର ସଂସାର—
ଖଳେ ସର୍ପସମ ଅଛୁ ଏ ଧରଣୀ ଭରି
ତା' ବିଷ ଜାଳାରେ କାନ୍ଦେ ଶ୍ୟାମା ବସୁନ୍ଧରୀ !

—*—

# ଅନାଥ ଏକ ପ୍ରାଣୀ

ଧନୀଘର ଶିଶୁଟିଏ କନକ ପିତୁଳୀ—
ରୂପ ତାର ଦେଖି ପ୍ରାଣ ପଡ଼ଇ ଉଚ୍ଛୁଳି ।
ଯାଇ ପଡ଼ୋଶାରେ ଯେତେ ପ୍ରିୟ ପରିଜନ
ସମସ୍ତେ ଧରନ୍ତି ତାରେ ଦିଅନ୍ତି ଚୁମ୍ବନ,
ଶୁଣନ୍ତି ଦଉରୋଡି ଭାଷା ଓଠ ପୁଟ ତାର
କୃତାର୍ଥ ହୁଅନ୍ତି ସେହି ଧନୀ ପରିବାର !
ଗରିବ ଘରର ଏକ ଶିଶୁ ନିତି ଆସେ
ଗୃହେ ଯାଇ ଜନତାରେ, କନ କନ ଭାଷେ—
କେତେ କଥା କହିଯାଏ, କେହି ଜଣେ କାହିଁ
ନିମିଷକ ପାଇଁ ତାରେ କୋଳେ ଧରେ ନାହିଁ !
ନିତି ସେ ପିଲାଟି ଗୃହୁଁ ନିତିଯାଏ ଚଳି !
କେହି ଜଣେ ଡାକେ ନାହିଁ ଆପଣାର କରି
ଫେରିଯାଏ ତାକି କେହ୍ନେ କିବା ଶ ଦୁହାଣୀ !
ସେ ଯେତ୍ନେ ଏ ଜଗତରେ ଅନାଥ ଏକ ପ୍ରାଣୀ !

—o—

# ମୁଁ ଗୁହେଁ

ପୃଥିବୀର କେଉଁ ଏକ ରାଜପଥ ଧାରେ
ଠିଆହୋଇ ଗୁହିଁଲେ ଏ ମହା ଜନତାରେ
ଦେଖଇ ଅଭାବ ଦୁଃଖ ଅଛି କେତେ କାର
ହେଉନି ସବୁର ଓଠେ ପୁଲକ ସଞ୍ଚାର !
ମୁଁ ଗୁହେ ଏ ସୀମାହୀନ ଜନତାର ହୃଆ
ନାଚୁଥାନ୍ତା ପୁଲକରେ । ଖାଲି ଦଆ ନିଆ
ହେଉଥାନ୍ତା ପରସ୍ପରେ ଆନନ୍ଦ କଲ୍ୟାଣ
ହସୁଥାନ୍ତା ଚିରଦିନ ସକଳର ପ୍ରାଣ
ଜୋଛନା ଶର୍ବରୀ ପରି—ପଥେ ଘାଟେ ଯହିଁ
ଗୁଲଗଲେ ଫୁଟୁଥାନ୍ତା ସୁବର୍ଣ୍ଣର ଛଇ
ବାଳକ ବାଳିକା ଯୁବା ଯଉବନୀ ଦେହୁ
ବିକଳାଙ୍ଗ ହୋଇ ଜଣେ ନାହିଁ ଥାନ୍ତେ କେହୁ ।
ନାହିଁ ଥାନ୍ତେ ନିଆଶ୍ରିତ ହୋଇ କେହି ଜଣେ
ରହିଥାନ୍ତେ ଏକୁ ଏକେ ଅନନ୍ତ ବନ୍ଧନେ !

———

# ସ୍ମୃତିର ଉନ୍ମେଷ

ପରିଚିତ ଏଇ ମୋର ତଟିନୀ ସୈକତେ
ପଦ ଗୁଳ ଯେତେ ବାର ଯାଏ କେଉଁ ପଥେ
ମୀରବେ କପାଇଁ ଗୁହେଁ ବେଳେ ବେଳେ ରହି
ବିଜନ ଏ ଭୂଇଁ ଅଛି କି ସମ୍ପଦ ବହି ।
ମୋହ ପାଇଁ । ପାଦ କମ୍ପା ଚଳେ ନାହିଁ ଆଗେ ?
ବୁକୁ ତଳେ କାହା ସ୍ମୃତି ବାର ବାର ଜାଗେ !
ଦରିଦ୍ର କୃଷକ ସେ ଯେ ମୋହର ପଲ୍ଲୀର
ଅଭାବ ଓ ଅନାହାରେ ଡାଳ ଅଶ୍ରୁ ମୀର
ଅନ୍ତିମ ଜୀବନେ ଏଥି ବୁଜିଥିଲା ଆଖି;

ତା ବକ୍ଷ ବେଦନା କହ କଏ ବୁଝିଲା କି ?
ଏଇ ମାଟି ପାଇଁ ସେହୁ ରକ୍ତ ଦେଇ ଦେଇ
କରିଚ ଆୟୁଷ ଶେଷ । ଜଣେ ହେଲେ କେହି—
ଦେଲାନାଇଁ ଗଉରବର ତା'ହିରୀଟ ଦାନେ
କିନ୍ତୁ ତା' ଅନ୍ତର ବୀଣା ବାଜେ ବିଶ୍ୱ ପ୍ରାଣେ !



# ପ୍ରଥମ ଦ୍ୱିତୀୟ ତୃତୀୟ

ପ୍ରଥମେ ନୟନେ ଯେବେ ମିଳାଲ ନୟନ
ଓଠେ ଓଠେ ସ୍ମିତ ହାସ ମୋହନ କମ୍ପନ !
ଦର ବିକଶିତ ପଦ୍ମ କଳକାଠି ପରି
ସେ ସ୍ମୃତି ପରାଣେ ମୋର ରହିଚ ସୁନ୍ଦରି !
ଦ୍ୱିତୀୟେ ଯେ ଦିନଗଲା ହେଲା କଥା ଭାଷା
ମରମେ ମରମେ କିବା ତଢ଼ତର ଆଶା
ବୁଲିବା ଏକାନ୍ତେ ତାଳ ପରାଣେ ପରାଣ
ଭୁଲିବନି କହିବାର ଦେଇ ଲକ୍ଷ ଗଣ !
ତୃତୀୟେ ଯେ ଦିନ ଗଲା ରହିଁଲ ସୁନ୍ଦରୀ !
ଅସ୍ଥି ଭସ୍ମ ଅବଶେଷ ରହିଅଛୁ ପଡ଼ି !
ଜନହୀନ ଶମଶାନେ ଗିରି ପଦ ତଳେ
କାହାର ଅପେକ୍ଷା ଯେହ୍ନେ ଲୋଡ଼ି ମୀରବରେ !
ସାରା ଅଙ୍ଗେ ମୋର କିବା ବିଶୁଦ୍ଧ ପ୍ରଣୟ
ଧଇଲଇଁ ଯେବେ ଭସ୍ମ ଅସ୍ଥି ଚତୁଷ୍ଟୟ !



# ପ୍ରଶ୍ନ

ବିଶାଳ ବସୁଧା ଯେବେ ଆମ ସମସ୍ତର
ଏଥି ଯେବେ ଜନ୍ମ ଆମ, ମରଣ ଆମ୍ଭର
ଏଇ ଯେବେ ଏକମାତ୍ର ଆମ ପାଇଁ ସ୍ଥଳ
ବାନ୍ଧି ନେବା ପାଇଁ ନିତ୍ୟ ଆମଲ୍ଲାଳା ତଳ
ଯେବେ ଯ୍ହାର ବିଲ ବନ ପାହାଡ଼ ପ୍ରାନ୍ତର
ଖୋଲିଛି ଆମରି ପାଇଁ ତା' ମଧୁ ଅନ୍ତର
ଏ ଯେ ଅଯାଚିତ ଦାନ, ଏ ଯେ ସ୍ୱର୍ଣ୍ଣମାୟା
ଆମକୁ ଦେବାକୁ ଯେବେ ଏ ଧରଣୀ ଆହା
ନୁହଇ କୁଣ୍ଠିତ ଲବେ; ଆମେ କିମ୍ପା କହ
ରଚେ କଳ ତକରାଳ ବିଷମ ଦୁର୍ବହ !
ଆମେ କିମ୍ପା ଏ ମାଟିକୁ ଚିରଦିନ ପାଇଁ
ଭେଦ ଦ୍ୱନ୍ଦ୍ୱ ହତ୍ୟା ବିଷେ ଦେଉଛେ ଭସାଇ ?
ରଖିଅଛେ ସଏତାନ ନିତ୍ୟ ବାସ ପରି
ସୀମାହୀନ କଳଙ୍କରେ ସମାଚ୍ଛନ୍ନ କରି !

—*—

# କୁଳିବାହୀ ଯାତ୍ରୀଗାଡ଼ି

ଏ ପାଖେ ବସିଛି ମୁହିଁ ସେଇ ପାଖେ ଗୁହ୍ନେଁ
କୁଳିବାହୀ ଯାତ୍ରୀଗାଡ଼ି ଖରବେଗେ ଧାଏଁ
ସୁଦୂର ମୁଲକେ କାହିଁ ? ହୋଇ ଗୋଟି ଗୋଟି
ବସିଛନ୍ତି ମୋ' ଦେଶର ଲୋକ କୋଟି କୋଟି
ସେମାନେ ନିରନ୍ନ କୁଳି ଚିର ନିରାଶ୍ରୟ
ନାହିଁ ଜମିବାଡ଼ି ନାହିଁ ପାଆନ୍ତି ଅଭୟ
କାହାଠୁ ନିମିଷେ ପାଇଁ ! ଯାଉଥିବେ ଦୂରେ
ଛାଡ଼ି ଭାଇ ଭଗ୍ନୀ ଜାୟା ନିଜ ନିସ୍ୱ ପୁରେ ।

ଦେହେ ଛିନ୍ନବାସ, ରୁକ୍ଷ କେଶରାଶି ଶିରେ,
ଦୈନ୍ୟର ଅଭାବ ଗ୍ଲାନି ସମସ୍ତ ଶରୀରେ
କେମନ୍ତେ ଉଠୁଚି କହ ବୁଝୁ ଫଟା ବାଣୀ !
ମୋ ଦେଶର ଏଇମାନେ ହତଭାଗା ପ୍ରାଣୀ !
ଚିରଦିନ ଭୋଗି କଷ୍ଟ ରୋଗ ପରାଭବ
ଲଭେକ ନାହାନ୍ତି ଜାଣି ଜୀବନ ସୌରଭ ।

———

## ଦୁଇ ସ୍ରୋତ

କେତେ ଦୁଃସ୍ଥ କେତେ ଦୀନ ଏ ଧରଣୀ ତଳେ
ପଥ ଧାରେ ଗଛ ମୂଳେ ଆଖି ଆଗେ ପଡ଼େ ।
କାହା ଦେହେ ଛିନ୍ନ ବସ୍ତ୍ର ଚିର ରୁଗ୍‌ଣ କିଏ
ଦ୍ୱାରେ ଦ୍ୱାରେ ଭିକ୍ଷା ମାଗି କିଏ ଦିନ ନିଏ ।
କେ ପାଏ ଲାଞ୍ଛନା ମାଡ଼ ଗାଳି ଅତ୍ୟାଚାର
କରୁଣ ସ୍ଥହାଣୀ ଢାଳି କେ' ଲୋଡ଼େ ଆଧାର
ଅଦ୍ୟ ଅନ୍ନଥାଳି ପ୍ରତି, ଶୀର୍ଣ୍ଣ ଶିଶୁ କାଖେ
ଦରିଦ୍ର ଜନନୀ କାର ଅନ୍ନ ବସ୍ତ୍ର ମାଗେ;
ଧରଣୀର ଏ ଦରିଦ୍ର ଜୀବ ପ୍ରତିକାର—
ଅନ୍ତର ଉଠେ ନା କାନ୍ଦି ! କହାର ବକ୍ଷର
ମରମେ ଉଠେ ନି ଲଭେ କେମନ୍ତେ ଏମାନେ
ରହିବେ ଧରଣୀ ତଳେ ମନ ସନମାନେ
ଗୁଳିଚି ଏକଇ ସ୍ରୋତ କଲତାନ କରି
ଆନ ସ୍ରୋତ ପ୍ରାଣହୀନ ଯୁଗ ଯୁଗ ଧରି ।

———

# ହୋଇଥିଲେ

ହୋଇଥିଲେ ଥିଲା ଘର କଣୋଣ୍ଣ ବାଳକା
ଓଠ କଣ ଏଇଭଳ ପଡ଼ିଥାନ୍ତା ଫିକା ?
ଫିଟି ଆସୁ ନ ଥାନ୍ତା କ ରଙ୍ଗ ଯୌବନର
ନ ଥାନ୍ତା କ ଦେହେ ପାରିଜାତ ପରିମଳ !
କନକ କପାଳ ତଳେ ଭ୍ରୂଲତାର ଛଇ
ଲଜେ ଲଜେ କେତେ ତଳେ ପଡ଼ୁଥାନ୍ତା ଲଇଁ !
ରକ୍ତ କୋକନଦ ପରି ହାତର ପାପୁଲି
ଦିଶୁଥାନ୍ତା ଲୋଭମୟ, ପିଠେ ବେଣୀ ଫୁଲ—'
ପଡ଼ିଥାନ୍ତା ବିମୋହନ ବିମୁଗ୍ଧ ଠାଣିରେ
କେଉଁ ରାଜଜେମା କେଉଁ ଉର୍ବଶୀ ରାଣୀରେ
ସମାନ କରନ୍ତା କବ ? ହେମ ହର୍ମ୍ୟ କୋଳେ
ସୁନେଲ ସପନ ଦେଖୁଥାନ୍ତା ନେତ୍ର ଡୋଳେ ।
ସୀମାହୀନ ଅଭାବର ଅତ୍ୟାଗୁରେ ପଡ଼ି
ତା' ଭିତରୁ ମରିଅଛି ସରଗ ଅପ୍‌ସରୀ !!

———

# ଭୋକିଲା ପେଟ

ଯେଉଁଠି ଭୋକିଲା ପେଟେ ହୋଇ କଳବଳ
ସଢ଼ୁଚି ଅସଂଖ୍ୟ ପ୍ରାଣ ମୋର ସମାଜର ।
ଗୃହିଁ ହେଲେ ଗୃହିଁବାକୁ ଇଚ୍ଛା ହୁଏ ନାହିଁ
ସେ ସମାଜ ଭାଗ୍ୟେ କବା ଶିଳ୍ପ ଅଛି କାହିଁ ?
କିଏ ସେ ମାଗୁଚି ଭିକ ପିନ୍ଧି ଚିରା କନା
କି ବେଦନା ବୁକୁତଳେ ତାକୁ ଏକା ଜଣା !
ସହି କାହା ତିରସ୍କାର କିଏ ମାଗି ମାଗି
ଫେରି ଆସେ ରକ୍ତ କରେ ଲୁହ ଉଠେ ଜାଗି ।

ନେତ୍ର ପ୍ରାନ୍ତେ ବାର ବାର, ଯେତେ ପୋଛୁ ଦେଲେ,
କଏ ଖାଇବାକୁ ନାହିଁ ପାଇ ଆଉ ବେଳେ
ନିଘଣେ ବସିଚ ତାର ଜୀର୍ଣ୍ଣ କୁଡ଼ିଆରେ,
ଏ ସବୁ ଦେଖୁଚ ବସି ଆଜ ଏ ଗାଆଁରେ !
ଭୋକଲା ପେଟର ନିଦାରୁଣ ଛଟପଟ—
ଭିତରେ କି ମଧୁ ସ୍ୱପ୍ନ ହୋଇବ ପ୍ରକଟ !!



# ଏ ମାଟି କୁଡ଼ିଆ ତଳେ !

ଏ ମାଟି କୁଡ଼ିଆ ତଳେ ପୋକ ମାଛି ପରି
ଏଇ ଯେ ପିଲାଟିମାନେ ଛନ୍ଦ ବନ୍ଧ ଧରି
ଦେଖିଲେ ପଥର ପ୍ରାଣ ଉଠିବ ତରଳି
କିଭଳି କରୁଣ ନେତ୍ରେ ଥର ଥର କରି
ଖୁହୁଁ ଚନ୍ତି ସେଇମାନେ, କହ ମନ୍ତ୍ରୀଦଳ !
ହୋଇଥିଲେ ଏଇମାନେ ସନ୍ତାନ ତୁମ୍ଭର
ଏଇଭଳି ହୀନମାନେ ରହିଥାନ୍ତେ ପଡ଼ି ?
ଉଠନ୍ତାନି କାନ୍ଧ ଶିରା ଉପଶିରା ଧରି
ତୁମର ଶୋଣିତ ବିନ୍ଦୁ ଏବେ ନେତ୍ରେ ରୁହିଁ
ଟିକଏତ ପ୍ରଶ୍ନ କରୁନ ! ତୁମେ କାହିଁ ପାଇଁ
ହୋଇଚ ଶାସକ କହ ? ଶାସକ ଅନ୍ତର
ଧରଣୀର ବେଦନାରେ ଯେବେ ନିରନ୍ତର
ନ କାନ୍ଦିବ, ନ ଜଳିବ, ପନ୍ଥା ନାହିଁ ଦବ;
ସେ ନୁହେ ଧରାର ମୂର୍ତ୍ତିମାନ ଉପଦ୍ରବ ?



# କଳାସୂତା

ପିଲାଟିକ ସାତ ପୂରି ହେଲାଣି ଯେ ଆଠ
ସ୍କୁଲକୁ ଯାଏ ନିତି ପଢ଼ିବାକୁ ପାଠ ।
ସେ' ଦିନ କହିଲା ତାର ଜନନୀରେ ଗୁହାଁ
'ବୋଉଲୋ ଆସନ୍ତି ପିଲେ ପଢ଼ିବାର ପାଇଁ
କା' ବେକେ ଉଷୁଣୀମାଳ ପଦୀସୁନା ହାର
ମୋରେ କମ୍ପା କରିଅଛୁ ଏଡ଼େ ନାରଖାର
ମୋ ବେକ ଲଙ୍ଗଳା ରଖି, କହ ମତେ କହ
ଗୋଟିଏ ବୋଲ ମୁଁ ତୋର ଆଦରର ଝିଅ
ନଥିଲେ ଜଉଡ଼ିଟିଏ କଳା ସୂତାଟିଏ—
ପିନ୍ଧିଲେ ବେକରେ କଣ ମାନହାନି ଯିଏ ?'
କହିଲା ପ୍ରେୟସୀ ମୋର ଶିଶୁ କନ୍ୟାଟିର
ଅନ୍ତର ବେଦନାଟିକ, ଲବେ ପ୍ରତଗୀର—
ନ ଦେଇ ଲଭିଲ କେତେ ସୁଖେ ଅଛୁ କଏ !
ମୋ ପିଲର କଣ୍ଠେ ନାହିଁ କଳାସୂତାଟିଏ !!

—*—

# ଆଶ୍ରୟ ପ୍ରାର୍ଥିନୀ

କାଲ ଫୁଟିଥିଲ ତମେ ପୁଷ୍ପ-କଳ ସମ
କାହାର କୁଟୀର ପୁରେ, ସରଗ ନନ୍ଦନ,
ଖେଳ ବୁଲୁଥିଲ ତହିଁ, ଆଜ କନ୍ତୁ ତମେ
ଅସହାୟ ଅବସନ୍ନ ନିଖିଳ ଭୁବନେ;
ଓଠର ମୋହନ ହାସ ବେଣୀର ବିନ୍ୟାସ
ପ୍ରିୟ ଜନେ କହବାର ମୋହନ ସଂଭାଷ

ସବୁ ଆଜ ସ୍ୱପ୍ନ ସମ ଗଲ ଦୂରେ କାହିଁ
ନୟନରୁ ଝରଇ ଅଶ୍ରୁ, ଆଶ୍ରା ମିଳେ ନାହିଁ ।
ମୁଣ୍ଡ ଗୁଞ୍ଜି ରହିବାକୁ କେହ୍ନେ ନାରଖାର
ହୁଅ ଗୋ କଣଶାଗ୍ର ବଧୂ କେଉଁ ପରିବାର
ପୃଷ୍ଟି ତା ଛଇଲା ତମେ ? ମଣିଷର ହାତ
କେମନ୍ତେ ଏ ପୃଥିବୀରୁ କରେ ଆତଜାତ;
ମଣିଷ ଭିତରୁ ଯେବେ ଜାଗେ ସମ୍ଭୃତାନ
ମାରିହିଏ ଜୀବନକୁ ସବୁ ମଧୁତାନ !



# ଜୀବନ ମମତା

ଶୀର୍ଣ୍ଣ ଶିଶୁ କାଖେ ଆଜ ଗୃଳିତ ଭଗିନୀ
ବାରଦ୍ୱାରେ ଭିକ୍ଷା ମାଗି, କେହ୍ନି ଆପଣାର
ନାହାନ୍ତି ଧରଣୀ ପରେ, ହୋଇ କାଙ୍ଗାଳିନୀ
କେତେ ଦୁଃଖ ପାଉନାହଁ ତୁମେ ଅନିବାର
କ୍ଷୁଦ୍ର ଏ ଶିଶୁଟି ଲଗି ବୁଲୁଅଛ ପଥେ
କଏ ଭିକ୍ଷା ଦିଏ କଏ ଗୃହେଁ ନାଇଁ ଲବେ
ଥିଲ ଘର ହୋଇଥିଲେ କେତେ ଲୋକ ସତେ
ଖଟୁ ଥାନ୍ତେ ପଦଯୁଗେ, ନିଖିଳ ଏ ଭବେ;
ଅନ୍ନ ନାଇଁ, ବାସ ନାଇଁ ଗୃଳିତ ଜୀବନ
ଥିବାଯାଏ ଜୀବନର ଅନ୍ତିମ ନିଶ୍ୱାସ
ଗୃଳିବାକୁ ହେବ ଏଥି, ବିପଦ ବନ୍ଧନ—
ଦରିଦ୍ର କପାଳେ ସତ୍ୟ ମାସ ମାସ ମାସ !
ହାୟ ! ଏ ଜୀବନ ପ୍ରତି କିଭଳି ମମତା
ସୀମାହୀନ ବିପଦରେ ଗୃଲେ ଖୋଜ ପନ୍ଥା ।



# ପଡ଼ିଥିବ

ପୃଥିବୀର ଆର୍ତ୍ତନାଦ ଗଭୀର ବେଦନ
ଫାଙ୍କି ଦେଇ ଯେଉଁଠାରେ ଚାଲିଛି ଜୀବନ,
ଆପଣାର ସୀମାହୀନ ବଡ଼ିମା ଦେଖାଇ
କ ଫୁଲ ଫୁଟିବ ତହିଁ ଜାଣି ପାରେ ନାଇଁ
ପକ୍ଷପାତ, ଅବିଚାର, ଅନ୍ୟାୟ ଭିତରେ
ଚାହୁର ବିରାଟ ହେବ । ଅନ୍ଧକାର ଘରେ
ଚିରଦିନ ରହି ରହି କେ ଆଲୋକ ପାଏ,
ସେଇ ଘନ ଅନ୍ଧକାରେ ସେ ଯେ ଲିଭିଯାଏ !
ପ୍ରାଣର ଅତଳ ତଳୁ ଯେଉଁ ଅଶ୍ରୁଧାର
ନିଃସୃତ ବହୁଛି, ତାକୁ ଏଡ଼ି ଚାଲିବାର
ସାଧ୍ୟ କାର, ଏ ମାଟିରେ ? ପାରୁଅଛ ଚାଲ !
ପଡ଼ିବ ନିଶ୍ଚୟ ଦିନେ ହୋଇଣ କଚାଡ଼
ନାଇଁ ଥିବେ ସାହା ସାଥି ଧରିନେବା ପାଇଁ
ପଡ଼ିଥିବ ପଡ଼ିଥିବ ମହାଶୂନ୍ୟେ ଚାହିଁ ।

———

# ଯେବେ

ଦରିଦ୍ର କୁଟୀର ତଳୁ ଆସିଚଲେ ମାଆ
କେଡ଼େ ଘନହୀନ ତୋର ଅଙ୍ଗ ଦିଶେ ଆହା !
ସର୍ବାଙ୍ଗ ବଳିତା ପରି ଯାଇ ଅଛି ଶୀର୍ଣ୍ଣ
ଧରଣୀରେ ଯେହ୍ନେ ତୁହି ଅଟୁ ମହା ଦୁଃଖୀ ।
ବଜୁରୁ ବଜାରେ ବସି ଏଇ ଚୁନା ମାଛ
ପାଇଲେକ ଦି ପଇସା ଖାଇବୁ ତୁ ଭାତ !
ପିଲାଟିଏ, ହେଉ ଆଜି କେତେ ହୀନମାନ
ତୋ ଅବସ୍ଥେ ଅଛି କିବା ଶିଶୁ ସନମାନ !

ତୋରେ ଗୃହିଁ, ପାରେ ନାହିଁ କହିଁ ମୁହିଁ ?
କ ମହା ଦଇନେ ଦନ ନଉଚ୍‌ଲେ ଭୁହି !
କେ' କହିଁ ଜନମ ଚଟତ ଦେଲ୍‌ ଏ ମାଟିରେ
ଦେଲ୍ ଯେବେ କହିଁ ବୁଡ଼ାଇଲ ଲୁହ ମରେ ?
ଏତେ ଶିକ୍ଷା ଥାଇ ବଣ୍ଟେ ନଥିବାର ପର !
ମର ମର ଯାଏ ଯେବେ ତୋ ଜୀବନ କଳ ।

———

# ଗୋଲାପ

ହେ ବନ୍ଧୁ କହୁଚ ମତେ ଲେଖିବାର ପାଇଁ
ଗୋଟିଏ କବିତା ଏଇ ଗୋଲପରେ ଗୃହିଁ !
ତରୁ ବୃନ୍ତେ ଫୁଟି ଯେହ୍ନ ହୁଏ ଢ଼ଳ ଢ଼ଳ
ଐଶ୍ୱର୍ଯ୍ୟ ଆନନ୍ଦେ ଯେହ୍ନ ନିପୁତ ଉତ୍ଥଳ
ତରୁଣୀ ବଧୂଟି ପର, କନ୍ତୁ ବନ୍ଧୁ ମମ
ଦେଖି ଏଇ ଗୋଲାପରେ ମୋ ଅନ୍ତର ମନ
କାନ୍ଦେ କାନ୍ଦ ହୋଇଯାଏ, କେତେ ପୁଷ୍ପ କଳ
ନ ଫୁଟଣୁ ଯାଉଛନ୍ତି କଲବଲେ ଝଡ଼ି ।
ହତ୍‌ଭାଗ ନୟନେ କେତେ ରହିଛନ୍ତି ଗୃହିଁ,
ଦରିଦ୍ର ଜୀବନେ ତାଙ୍କ ଆଉ ହେବ ନାହିଁ—
ସୌଭାଗ୍ୟର ଅଭ୍ୟୁଦୟ, ଆଉ କେତେ କାର
ଜୀବନ ଜୀବନ ପର ନୁହେ ଏକବାର
ପଡ଼େନା କାହାର ଆଖି ସେମାନଙ୍କ ପରେ
ଏ ଗୋଲପ ଫୁଟୁଥାନ୍ତା ସବୁର ଅନ୍ତରେ !!

———

# ଯୁଗ ଯାତ୍ରୀ !

ହେ ମୋର ଯୁଗର ଯାତ୍ରୀ, ତୁମ ଯାତ୍ରା ପଥେ
କାହାକୁ ଦେଖୁଛ ତମେ ? ଆଖି ବୁଜି ସତେ
ଚାଲିଛ କି ? ଅବା ତୁମେ ମାତିଅଛ ଖାଲି
ପ୍ରାଣହୀନ କଳ୍ପନାରେ । ଚତୁର୍ଦ୍ଦିଗେ ବାଲି —
କେମନ୍ତେ ଯାଇଛି ମାଡ଼ି ଶ୍ୟାମଳ କେଦାର
ପର ଯାହା ଶୋଭୁଥାନ୍ତା । ବିକଳ କାଙ୍ଗାଳ
କେମନ୍ତେ ହସୁଛି ଦେଖ । ତୁମ ବକ୍ଷତଳେ
ମଣିଷର ରକ୍ତ ଅଛି । ତୁମ ନେତ୍ରେ ଜଳେ,
ସତ୍ୟର ବିଦ୍ୟୁତ ଶିଖା । ତୁମ ଦେହେ ମନେ
ସିଂହର ବିକ୍ରମ ଫୁଟେ । ତୁମେ ଜଣେ ଜଣେ
ଗୋଟିଏ ଗୋଟିଏ ସୂର୍ଯ୍ୟ । ତୁମକୁହିଁ ଧରି,
ଦିଗ୍‌ବଳୟ ବ୍ୟାପୀ ଏ ଯେ ଶ୍ୟାମା ବସୁନ୍ଧରା,
ସରାଗେ ଉଠିବ ନାଚି । ଚାଲ ପଥ ଚାଲ ।
କାଟି କାଟି ଚତୁର୍ଦ୍ଦିଗୁ ନିବିଡ଼ ଅନ୍ଧାର ।

———

# ଖୋଲି ଦେଖ

ହସ ମାଡ଼େ ଦୁଃଖ ଲାଗେ ଯେବେ ପଡ଼େ ମନେ
ସେ ଦିନ କି ଭଳି ସିଏ ଗମ୍ଭୀର ନର୍ମିମେ
ମୋ ଟ୍ରଙ୍କ୍ ବିଛଣା ସବୁ ଦୁରେ ଫିଂଗିଦେଲେ
ମୁଁ ଯେହେତୁ ଇତର କିଏ, ନୁହେ ତାଙ୍କ ମେଳେ
ଜଣେ ବନ୍ଧୁ ଆପଣାର । ସମସ୍ତ ଗୋଟାଇ
ଗୋଟିଏ ଅପରିଷ୍କୃତ କୋଠରୀରେ କାହିଁ
ଯାପିଲି କେତୋଟି ଦିନ, ଯନ୍ଧା ଓ ପମ୍ମୃଡ଼ି—
ଅଲକ୍ଷ୍ୟରେ ସେ ଘରଟି ରହିଥାଏ ପୂରି ।

ସେ ଦରିଦ୍ର ବାସେ ରହି ଭାବୁଥାଏ ମନେ
ଅଶ୍ରୁସିକ୍ତ ହେଉଥାଏ ନେତ୍ର କ୍ଷଣେ କ୍ଷଣେ
'ହେ ମନୁଷ୍ୟ ! ଖୋଲି ଦେଖ ତୋର ବୁକୁତଳ
ବହୁଛି ନିଯୁତ ତହିଁ ଆନନ୍ଦ ନିର୍ଝର
ସେ ନିର୍ଝରେ ଉଚ୍ଛୁଳାଇ ସାରା ବିଶ୍ୱ ପଥ
ନ ଭୁଲୁ କପାଇଁ ? ବାଟ ହୁଡ଼୍ ଅବିରତ'।

---

## ଶାସକ-ଶାସନ

ଶାସକ ଆସନେ ବସି ନ୍ୟାୟ ଓ ଅନ୍ୟାୟ,
ନ ବୁଝି ଯେ ଇଚ୍ଛା ମତେ ଦେଇସଏ ରାୟ,
ଜାଣିର ଦେଶର ସେ ଯେ ମହା ସଇତାନ
ତାହା ତହୁଁ ବଳି ନାହିଁ ମାରାତ୍ମକ ପ୍ରାଣ !!
କି ବୁଝିଲ କି ବୁଝିଲ ରାଜକର୍ମଚାରୀ
ଜଣେକର ଗୁପ୍ତ ଶଠେ ବଡ଼ ହେଲ ଭାରି !
ତାର ବଳେ ସେ ଯେ କେଉଁ ମହା ନିର୍ଦ୍ଦୋଷରେ
କରିଗଲ ଅତ୍ୟାଚାର ଦେଖିଲନି ଥରେ
ବିଚାର ଆସନେ ବସି କି କଲ ବିଚାର
ତୁମେ ଯେହ୍ନେ ମୂର୍ତ୍ତିମନ୍ତ ମହା ଅତ୍ୟାଚାର
ନିର୍ଦ୍ଦୋଷ ନିଃଶ୍ୱାସେ ତୁମେ ଯିବ ପୋଡ଼ିଜଳି
ଶାସକ ଆସନ ନୁହେ ପୁଷ୍ପ-ଶଯ୍ୟା ପରି,
ବିଳାସ ଓ ଯଥେଚ୍ଛାର ଲୀଳା ନିକେତନ
ଖଣ୍ଡାଧାର ପରି ସେ ଯେ ଅତି ତୀକ୍ଷ୍ଣତମ !

---

# ବଂଚିବି ବିରାଟ ହୋଇ !

ଗଧ ଓ ଘୁଷୁରି ପରି ବଂଚି ରହିବାର ।
ସ୍ୱପ୍ନ ମୁହିଁ ଦେଖିନାହିଁ ବିଶ୍ୱେ ଏକବାର ।
ମୁଁ ଏକ ସ୍ୱାଧୀନ ଶୁଭ୍ର ଜୀବ ଧରଣୀର
ସ୍କନ୍ଧେ ମୁହିଁ ଚାଲିବାକୁ ନୋହି ନତ ଶିର !
କାହା ପାଶେ; କିଏ ମୋରେ କଲେ ପଦାଘାତ
ଉତ୍‌ଫଣ ଚମ୍ପର ସମ ଉଠିବି, ଉଦ୍ଧାତ—
ବିରଚିବ ଧରଣୀରେ, ପେଡ଼ରେ କେଳାର
ଅହିରାଜ ଅର୍ଦ୍ଧମୃତ ହୋଇ ରହିବାର
ପରି ମୁଁ ବଞ୍ଚିବା ପାଇଁ, ଚାହେନା ଜୀବନେ ।
ଜୀବନ ପଥର ନହେ ଯେ ଯା ଇଚ୍ଛା ମନେ,
ଯୁଆଡ଼େ ଗଡ଼ାଇ ଦେଲେ ଯିବ ଗଡ଼ି ଗଡ଼ି
ଯେଉଁଠି ରଖିଲେ ତହିଁ ରହିଥିବ ପଡ଼ି ।
ମୁଁ ଏକ ବିରାଟ ଶକ୍ତି ବିରାଟୁ ଜନମ
ବଞ୍ଚିବି ବିରାଟ ହୋଇ ଯାବତ ଜୀବନ !

—o—

# ମନେରଖ

ରହିଚ ସମସ୍ତ ହୋଇ ବନ୍ଧୁ ତୁମେମାନେ ।
ମୋର ସେଇ ପ୍ରିୟ ପରିଚିତ ଅନୁଷ୍ଠାନେ ।
ଜଣକର ଶାସନର କଠୋର ପୀଡ଼ନେ,
ଅପରାଧୀ ବନ୍ଦୀସମ ବଚନେ ମନନେ—
ଫୁଟେ ନା ସ୍ୱାଧୀନ ଆଶା, ଡର ଭୟ କର
ଯେହ୍ନେ କେଉଁ ପ୍ରାଣହୀନ ମହାରାକ୍ଷସର
କବଳେ କଣ୍ଠୁର ଦାନ କରଦେଲ ହାଆଁ
ଯାଉଚ ଗୁଜୁରିଆ ହୋଇ, ଦିଶୁନାହିଁ ରାହା—

ପଶୁ ପାଖେ ପଶୁ ହୋଇ ରହିବ କେବଳ
ନାରଖାର କରି ତୁମ ଜୀବନ ସୁନ୍ଦର !
ଭୟଙ୍କର ମରିବାଠୁ ବିଦ୍ରୋହ ଭିତରେ
ଝାସି ଏ ଜୀବନଟିକୁ, ବରଂ ଆନନ୍ଦରେ
ମରି ଆସେ । ସେ ମରଣେ ରହିବ ସମ୍ମାନ
ମନେରଖ ତୁମେ ନୁହ ପଶୁର ସନ୍ତାନ !

---

# ପ୍ରଣତି

ତୁମର ହୃଦୟେ ମୁହିଁ ଜଣାଏ ପ୍ରଣତି
ସିଂହପରି ଯେଉଁ ଦିନ ସବୁ ଲୋଭ କ୍ଷତି
ବର୍ତ୍ତମାନ ଭବିଷ୍ୟତ ସମସ୍ତ ବିସ୍ମରି
ଅତ୍ୟାଚାର ବିରୁଦ୍ଧରେ ଥିଲ ଯୁଦ୍ଧକରି !
ସେଇ ଶ୍ରେଷ୍ଠ ଅନୁଷ୍ଠାନେ, ଦେଖିଛି ତୁମର
ଭିତର କି ଅଗ୍ନିଭରା ଶକ୍ତି ସାହସର !
ସତ୍ୟ କହି ଫାସି ବରଂ ପାଇବା ଶ୍ରେଷ୍ଠ । ଭଲ
ଅସତ୍ୟର ଭକ୍ତ ହୋଇ ବଞ୍ଚି ନିରନ୍ତର
ହେଉଥିବା ଜଳବଳ ଭିତରେ ଭିତରେ
ଏ ଚିନ୍ତାକି ବଡ଼ ବ୍ୟାଧି ଅଛି ଜଗତରେ !
ବନ୍ଧୁହେ ପାଇବ ଚଢ଼ା କ୍ଷୋଭ ନାହିଁ ତିଳେ
ଯେଉଁଠି ରହିବ ତୁମେ ମହାଧରଣୀରେ
ଫୁଟିବ ତୁମର ଗନ୍ଧ ! ତୁମର ଅନ୍ତର
ଚିରଦିନ ଅମୃତରେ ଖାଲ ତଳ ତଳ !

---

# ଜାଣି ନାହିଁ ପାରେ

ପଶୁର ରାଜତ୍ୱ ଆଜ ପଶୁର ଶାସନ
ଯେତେଦିନ କରଥିବ ଧରଣୀ ଆଚ୍ଛନ୍ନ
ଧରଣୀର ପ୍ରତି କୋଣରୁ ଉଷ୍ମ ଲହୁଧାର
ଝରୁଥିବ, ତା'ର ଶେଷ ନାହିଁ ଏକବାର !
କୁଟୀରେ କୁଟୀରେ ଖାଲି ହା ହୁତାଶ ବାଣୀ
ପ୍ରତି କଣ୍ଠୁ ଫୁଟୁଥିବ ନିତ୍ୟ ଦିବାଯାମୀ
ଜୀବନର ସାରସତ୍ତ୍ୱ ଯାଉଥିବ ମରି,
ଶ୍ମଶାନରୁ ବଳେ ଏଇ ଧରଣୀ ସୁନ୍ଦରୀ
ଦିଶୁଥିବ ହତଶିରୀ ! ହେ ବନ୍ଧୁ ସକଳ !
ବୁଝି ମୁଁ ପାରୁଛି ତୁମ ଆର୍ତ୍ତି ଓ ବିକଳ
ଦେଖି ମୁଁ ପାରୁଛି ତୁମ ସୁନ୍ଦର ଜୀବନ
ଝାଉଁଳି ପଡ଼ିଚି ଲଭି କ୍ରୂର ନିର୍ଯ୍ୟାତନ !
ଜୀବନକୁ ମାରି ହାଣି ଧ୍ୱଂସ କରିବାରେ
କିବା ବଡ଼ପଣ ତହିଁ ? ଜାଣିନାହିଁ ପାରେ

---

# ଯାହା ତୁମ୍ଭେ ହୁଅ

ଯୁଗେ ଯୁଗେ ରାଷ୍ଟ୍ରେ, ରାଷ୍ଟ୍ରେ ପ୍ରତି ଅନୁଷ୍ଠାନେ
ଜଣେ ସ୍ୱୟେ କାହିଁ ପାଇଁ ଦଳ ଆନ ପ୍ରାଣେ
ଠିଆ ହେବ ଶିର ଟେକି । ତା' ବଚନ ବାଣ
ରଚୁ ମହା ଧରଣୀରେ ଘୋର ଅକଲ୍ୟାଣ
ମାନିବାକୁ ବାଧ ସବେ । ତାରେ ପ୍ରତ୍ୟୁତ୍ତର
ଦେବାହିଁ ଅନ୍ୟାୟ ହେବ ହେବ ଅସୁନ୍ଦର
ଏଇ କଣ ମାନଦଣ୍ଡ ମାନବିକତାର ?
ଏଇ କଣ ଶାସନର ଶ୍ରେଷ୍ଠ କାରବାର ?

ମୁଁ ବସ୍ତୁରେ ଧରଣୀରେ ଯାହା ତୁମ୍ଭେ ହୁଅ
ମନୁଷ୍ୟ ତୁମେତ ନଷ୍ଟେ ଆଉ କିଛୁ ନୁହ
ମନୁଷ୍ୟର ହାସ୍ୟ ଅଶ୍ରୁ ମନୁଷ୍ୟର ମାନ
କପାଁ ତୁମେ ବୁଝ ନାଇଁ ଦିଅ ନାଇଁ ସ୍ଥାନ ?
ଯେଉଁ ଅନୁଷ୍ଠାନେ ଯେତେ ଯେ ଉପରେ ରହ
ମନୁଷ୍ୟଙ୍କୁ ମନୁଷ୍ୟର ଦରି କଥା କହ !!

—o—

## ଲୋଡ଼ା

ମନୁଷ୍ୟ ମନୁଷ୍ୟ ଗୃହେ ପୃଥିବୀ ଉପରେ ।
ବୁଝିବ ସେ ସୁଖ ଦୁଃଖ, ନିଜ କାନ୍ଧକରେ
ପୋଛି ସେ ଆଣିବ ଲୁହ, ଆପଣାର କରି,
ହସି ହସି ପାରିବ ସେ ଆପେ ଆପେ ମରି
ମନୁଷ୍ୟ ମଙ୍ଗଳ ଲାଗି, ଯାର ଅବସ୍ଥିତି,
ଚତୁର୍ଦ୍ଦିଗେ ବୁଣିଯିବ, କଲ୍ୟାଣ ଓ ପ୍ରୀତି;
ମନୁଷ୍ୟ ଗୃହେନା କେବେ ସମ୍ମାନ ସହ
ବଞ୍ଚି ରହିବାକୁ ପାଇ ଲକ୍ଷ ଅନୁଗ୍ରହ
କା କ୍ର ର କଠୋର ହାତୁ ନିମିତ୍ତକ ପାଇଁ,
ପଶୁସମ ତା ଦୁଆରେ ଖର ଦିନ ଯାଇ
ବନ୍ଧାହୋଇ ରହିବାକୁ ମଥା ନତ କରି,
ଡର ଭୟେ ସବୁ ଦିନ, ସଢ଼ି, ସଢ଼ି, ସଢ଼ି ।
ମନୁଷ୍ୟ ମନୁଷ୍ୟ ଗୃହେ ମନୁଷ୍ୟ କେବଳ
ରଚିବାକୁ ପୃଥିବୀରେ ଆନନ୍ଦର ଘର ।

———

# ସେ ଦୁଃସ୍ୱପ୍ନ ନାଇଁ ଜାଗୁ

ଜୀବନକୁ ଚପି ଧରି ବଞ୍ଚିବାର ଲାଗି
ଦୁର୍ବାର ଆକାଙ୍‌କ୍ଷା ଉଠେ ଯାହା ବକ୍ଷେ ଜାଗି
କି ମଧୁ ସମ୍ପଦ ସେତ୍ତୁ ପାଏ ଧରଣୀରେ
କାହିଁକି ବା ବଞ୍ଚି ରହେ ? ମହାକାଳ ମାରେ
ବୁଡ଼ି ଘଟି ଯିବା ନାକ ଶତ ଶ୍ରେୟସ୍କର
ସେଇ ଆକାଙ୍‌କ୍ଷାରେ ମୁହିଁ କାନ୍ଦେ ନିରନ୍ତର !
ହେ ବନ୍ଧୁ, ଏ ଜୀବନରେ ନିମିଷକ ପାଇଁ
ସେ ଦୁଃସ୍ୱପ୍ନ ନାଇଁ ଜାଗୁ, ମତେ କଏ କାହିଁ
କରନ୍ତୁ ଭର୍ତ୍ସନା ନିନ୍ଦା, ଦିଅନ୍ତୁ ଅପମାନ
କହନ୍ତୁ ଅଲୋଡ଼ା ମୁହିଁ, ପୃଥ୍ୱୀ ପ୍ରତି ସ୍ଥାନ
ମୋହ ଲାଗି ହୋଇ ଉଠୁ ଦୁର୍ବହ ନରକ
ତଥାପି ମୋ ଓଠେ ହାସ ମରମେ ପୁଲକ
ଜାଗୁଥିବ ପ୍ରତି ନିତି । ଦରିଦ୍ର ଜୀବନେ
ମଥା ନତ କରି ମୁହିଁ ଚଳି ନାଇଁ କ୍ଷଣେ !



# କାମ୍ପ କୁଟୀରେ

ଏ କାମ୍ପ କୁଟୀରେ ମୁହିଁ ଦରିଦ୍ର ଅତିଥି
କାମ୍ପ ବଧୂ ଚାହିଁ ରହେ, ଭଗ୍ନୀସମ ପ୍ରୀତି—
ସେନେହ ମମତା ଢାଳି, ତୈଲଙ୍ଗ ବାଣୀରେ
ପଚାରଇ ଆଜ ଆମ ଏ କ୍ଷୁଦ୍ର କୁଟୀରେ
ରହିବାକୁ ହେବ ତମେ, ଆସିବକି ଆଉ ?
କାହା ଘର ପୁଅ ତମେ ଆସିଅଛ କାହୁଁ
ସୁଦୂର ରାଇଜ ପାନ୍ଥ, ହଲଇ ବଦନ
ଜଣାଇଲ ପାରିବ ନି ରହି କଦାଚନ

କ୍ଷମା କର ହେ ଭଗିନି ! ଗୃହା ଆଜ ପାନ
ବାଡ଼ ଦେଲ ! ହେଲ ନାହିଁ ଏ ତୁମ ସମାନ
ଭୋଜ୍ୟ ବୋଲି କହିଲ ସେ ମନ ଦୁଃଖ କରି
ଆସିବ ହେ ଆଉ କେବେ ଲଭେ ନ ପାଶୋରି—
ଗୃହୀ ସେ ରହିଛ ମୁହିଁ ଆଉ ହେବା ଯାଏଁ
ମନୁଷ୍ୟ ପ୍ରେମଠୁ ବଳ ବଡ଼ କବା ଥାଏ !!

—୦—

# ମୁକ୍ତ ପତ୍ର

ଭୁଲିଯାଅ ବନ୍ଧୁ ଯେବେ ପାଇଥିବ ବ୍ୟଥା
କର୍ତ୍ତବ୍ୟର ପଥେ ଯେବେ ଗୃଲିଚ ସର୍ବଥା
ହୋଇ ନିତ୍ୟ ନ୍ୟାୟ୍ୟ-ନିଷ୍ଠ ହୋଇ ସତ୍ୟବ୍ରତ
ସେ ଏକା ଗଢ଼ିବ ତବ ସ୍ୱର୍ଣ୍ଣ ରାଜ ପଥ !
ଏ ଧରଣୀ ହେଉ ଯେତେ ଜଟିଳ କୁଟିଳ
ସୀମାହୀନ ବାଧା ଦେଉ, ବିକଳ ଅସ୍ଥିର
କରୁ ପ୍ରତି ପଦ କ୍ଷେପେ, କିବା ପରବାୟୁ
ସତ୍ୟର ଅଗ୍ନିରେ ଯେବେ ତୁମ ସମୁଦାୟ
ଦେହ ମନ ଉଦ୍‌ଭାସିତ । ଗୃହେ ଏଇ ମାଟି
ସଭିଏ ଗୃଲିବା ଆମେ ହୋଇ ବନ୍ଧୁ ସାଥୀ
ପରସ୍ପରେ ନାହିଁ ରଖି ଭେଦ ଦ୍ୱନ୍ଦ୍ୱ ଛଳେ
କ୍ଷତର ପ୍ରାନ୍ତର ମାୟା ନିଖିଳର ମାଡ଼େ ।
ଏ ପଥେ ପଥିକ ଯେବେ ତୁମେ ବନ୍ଧୁ ମମ
ବୁକୁ ଚିର ଦେଉଛି ମୋ ସେନେହ ପରମ !

———

# ହତଭାଗ୍ୟ ସେଇ

ମୁଁ ଯେ ଶ୍ରେଷ୍ଠ କବି ଜଣେ ନିଖିଳ ବିଶ୍ୱର
ଝରଣାର ସେ ଗୀତ ପରି ମୋ ଅନ୍ତର ତଳୁ
କବିତା ଆସଇ ଝରି ଦିନ ଦିନ ଧରି
ତହିଁରେ ମୋ ବକ୍ଷ ଉଠେ ଆନନ୍ଦରେ ଭରି ।
କବିତା ମୋ ଜୀବନର ଏକମାତ୍ର ବ୍ରତ
କବିତା ମୋ ଜୀବନର ପରମ ଆଧାର
କବିତା ଭିତରେ ମୁହିଁ ମୋ ଭିତରେ ସିଏ
ଅନନ୍ତ ଯୁଗରୁ ଛନ୍ଦି ରହି ଅଛୁ କହେ !
ଏ ଜନମେ ଆର ଜନ୍ମେ ଶତ ଜନ୍ମ ପରେ
ଗାଉଥିବ ସୀମାହୀନ କବିତା ମୁଁ କବି
କବିତାରୁ ସେ ଅମୃତ ପାଇବି ଧରାରେ
ସେଇ ମୋର କୋଟିନିଧି କାଳେ କାଳେ କାଳେ !!
ହତଭାଗ୍ୟ ନୁହେଁ ମୁହିଁ, ହତଭାଗ୍ୟ ସେଇ
କବିତାରେ ପ୍ରାଣକୁ ଯେ ଗଢ଼ି ନାହିଁ ନେଇ !

---

# ଏଇ ବିଦ୍ୟାପୀଠେ

ବାଲ୍ୟତ ବୟସେ ଦିନେ ଏଇ ବିଦ୍ୟାପୀଠେ
ପଢ଼ୁଥିଲି ପାଠ ମୁହିଁ ମନ ସନମାନେ
ଆଜ ଯେବେ ବୁଲିଯାଏ, ନାଚିଯାନ୍ତି ପ୍ରାଣେ
କେତେ ବନ୍ଧୁ କେତେ ସଖା ଯେ ଶିକ୍ଷକମାନେ !
ଏଇ ଠାଂଗି ଲଟାବୁଦା ଏଇ ପଲ୍ଲୀପୁର
ଏ ପାହାଡ଼ ଏ ପ୍ରାନ୍ତର ଏଇ ପଥ ଘାଟ
ସବୁ ମୋର ପରିଚିତ ସବୁ ଆପଣାର
ଚୁହିଁଲେ ଏମାନ ନେତ୍ରୁ ବହି ଆସେ ଧାର

ଏ ଯେ ମୋର ଜୀବନର ଅତୁଳ ସମ୍ପଦ
ରହିବ ମୋ ବୁକୁତଳେ ସ୍ୱର୍ଣ୍ଣଦୀପ ପରି
ସ୍ମରିଲେ କୁଟୀରେ ବସି ଏକାନ୍ତେ ଏମାନ
ସରସି ଉଠଇ ମୋର ବିଶୁଷ୍କ ପରାଣ
କେତେ ବଇଭବ ମୋର ଏ ମାଟିରେ ନାହିଁ
ଆର୍ଦ୍ର ହୋଇଉଠେ ହିଆ କେତେ କାହାପାଇଁ !

—*—

# ହେ ବାପୁଜୀ !

ହେ ବାପୁଜୀ ପୃଥିବୀର ଅମୃତ ଜୀବନ !
ଲକ୍ଷ କୋଟି ମାନବର ବନ୍ଧୁ ସନାତନ !
ନିଜକୁ ଦେଇଛ ଢାଳି ମାନବର ପାଇଁ;
ମାନବର ସୁଖ ଶାନ୍ତି ସ୍ୱାଧୀନତା ନାଇଁ—
ଯେଉଁଠାରେ, ସେଠି ତୁମେ କରିଛ ସଂଗ୍ରାମ;
ନୁହେଁ ଖଣ୍ଡା ତଲୁଆରେ, ଆପଣାର ପ୍ରାଣ—
ପ୍ରତିଶକ୍ତି ଦେଇ ଦେଇ ! ଦୁଃଖ କଷ୍ଟ ବରି;
ପ୍ରାଣର ବିରାଟ ଶକ୍ତି ତହୁଁ କଳ୍ପି ବଳି,
ବଡ଼ ଶକ୍ତି ନାହିଁ ବିଶ୍ୱେ, ପାରିଛ ଦେଖାଇ;
ଆଣିଛ ବିଜୟଲକ୍ଷ୍ମୀ ଏଇ ମାଟିପାଇଁ ।
ତୁମରି ଏ ଶ୍ରାଦ୍ଧ ଦିନେ ତୁମ ପୁଣ୍ୟ ଛବି,
ହୃଦୟର ପ୍ରତି ତନ୍ତ୍ରେ ମୁହିଁ ଅନୁଭବି,
ତୁମ ପଦେ ଢ଼ାଳିଦିଏ ମୋର ନମସ୍କାର !
ପ୍ରାଣବାନ୍ କର ! ଥିବ ବିଶ୍ୱେ ଯେତେକାଳ !

—*—

## ଘୂଲେ

ବହୁବାର ପଗୃଶଚ ପ୍ରଶ୍ନ ଆପଣାରେ
କିଏ ମୁହିଁ ଆସିଅଛି ବିଶ୍ୱ ଛଥଧାରେ—
କାହିଁ ପାଇଁ ? କିଏ ମତେ ଦେଇଛି ପଠାଇ
କେଉଁ ଅନ୍ତରରେ କେବେ ଯିବି ମୁଁ ମିଳାଇ !
ପୁଣି କେବେ ଜନ୍ମ ହେବି ଏଇ ବସୁଧାରେ
ଯେ ମୋରେ ଆଣିଛି ପାଳି ସୁଖ ଶରଧାରେ,
ବର୍ଷ ବର୍ଷ ଯୁଗ ଯୁଗ କାଳ କାଳ ଧରି
ଅବା ଏଥି ଫେରିବନି ? ଯେ ଟିକି ମୋହର
କେଉଁଠି ରହିବ କାହିଁ ? ଅବା ସ୍ୱପ୍ନ ମମ
ଏକାବାର ଭାଙ୍ଗିଯିବ ? ସମସ୍ତ ସପନ—
ପରି ମତେ ଲାଗେ ଖାଲି ! ଦୂର ଚନ୍ଦ୍ରବାଳେ
ଗୃହେଁ ରହେ । ମନେ ମନେ ଯେହ୍ନେ ଖାଲି ଘୂଲେ ।
ଲୋଡ଼ା ନାହିଁ ଏ ସକଳ ଜାଣିବାର ପାଇଁ
ଘୂଲେ ମୋର ଜ୍ୟୋତିଷିକ ପୁଚ୍ଛାଇ ପୁଚ୍ଛାଇ !!

—*—

## ଶନିଆ ବୋଉ

ହେ ନିଃସ୍ୱ ଜନନୀ ମୋର ହେ ଶନିଆ ବୋଉ !
ଡାଲପିଠା କରି ମତେ ଖାଇବାକୁ ଦେଉ
ତୁମ ଘରେ ଯାଇ ଯେବେ ବାଳୁତ ବୟସେ
ଖେଳୁଥିଲି କେତେ ଖେଳ ପରାଣ ହରଷେ ।
ମୁହିଁ ଖାଏ, ଖାଏ ତୁମ ଦରିଦ୍ର ଶନିଆ
ଏ ସକଳ ଦେଖି ତୁମ ପୂରିଯାଏ ହିଆ ।
ଆଉ ଖଣ୍ଡେ ମତେ ଦେଉ ଆଦରେ ବଢ଼ାଇ
ଆର ଖଣ୍ଡ, ଅଧା ସରିଥାଏ କିବା ନାହିଁ

ତୁ କେଉଁ ସରଗେ ମାଆ ରହିବୁଣି ଯାଇ
ସେ ସ୍ମୃତିଟି ମୋର ମନେ ପଡ଼େ କାହିଁ ପାଇଁ !
କେତେ ଭଲ ମନ୍ଦ ମୁହିଁ ଖାଉନାହିଁ ଏବେ !
ସେ ତାଳ ଚକୁଳି ପିଠା ପାଇବି କି କେବେ ?
ଦୀନ ଦୁଃଖୀ ଘରେ ଯେଉଁ ନିଧିଟିକ ଖେଳେ
ବଡ଼ଲୋକ ଘରେ ମିଳିବ କି ? କେତେ ବେଳେ ?

— — —

## କବି ଗୋପାଳକୃଷ୍ଣଙ୍କ ପ୍ରତିମୂର୍ତ୍ତି ଦର୍ଶନେ

ତୁମରି କୁଟୀରେ ଆଜ ତୁମରି ସମ୍ମୁଖେ
ଗୃହିଁ ମୁଁ ରହିଚି କବି ! ଗଭୀର ଉତ୍ସୁକେ
ବନ୍ଧୁ ମୋ ଖାଇବାଲାଗି ଦେଲେଣି ତ ଡାକ
କାହିଁକି ହେଉନି ଇଚ୍ଛା ଛାଡ଼ି ତୁମ୍ଭ ପାଖ —
ଯିବା ପାଇଁ କ୍ଷଣେ ହେଲେ ଆନ କେଉଁ ଆଡ଼େ—
ଏଇ କ୍ଷୁଦ୍ର ନଗରୀର ଯହିଁ ଗୃହଧାରେ
କେତେ ହର୍ମ୍ୟ ରହିଅଛି ଶିର ଟେକି ନଭେ
ହସି ଖେଳି ପ୍ରାଚୁର୍ଯ୍ୟର ମୋହନ ଗୌରବେ
କେତେ ଧନୀ ମାନୀ ଜ୍ଞାନୀ ନାହାନ୍ତି ଏଠାରେ
କାହାର ତ ଆକର୍ଷଣ ମୋ ଅନ୍ତର ତାରେ—
କରେନି ଆଘାତ ଲବେ ! ବିମୁଗ୍ଧ ନୟନେ
ତୁମରେ ଗୃହିଁଛି କମ୍ପା ? ବିଶ୍ୱେ ଯେଉଁ ଜଣେ
ଚଳେଇ ଦିଏ ସୀମାହୀନ ଆନନ୍ଦର ମାୟା
ତାହା ତହୁଁ ବଳି କିଏ ଏତେ ପ୍ରିୟ ଆହା ।

— — —

# ଫେରିଯାଅ

ଧରଣୀର ଏ ଜଟିଳ ସଂଗ୍ରାମ ଭିତରେ
ବୁଡ଼ିଗଲେ ହଜିଗଲେ ଅନ୍ତରେ ଅନ୍ତରେ—
ବେଦନାର ଶତ ଢେଉ ନାଚେ କମ୍ପା କହ ?
ଲାଗେ କମ୍ପା ତଉଦଗ ମୋରେ ଦୁର୍ବିସହ ?
ବଡ଼ କଷ୍ଟ ବଡ଼ ଦୁଃଖ ଏଥୁ ବର୍ଣ୍ଣିବାର
ଏ ଧରଣୀ ଭିତରେ ଯେ ଆନନ୍ଦ ସଂସାର—
ରହିଛି ଅନନ୍ତ ମାୟା ଧରି କାଳ କାଳ
ସେ ଲାଗି ନିଯୁତ ମୋର ଅନ୍ତର ବାହାର
ଉଠଇ ଉଦ୍‌ଗ୍ରୀବ ହୋଇ; ହସି କାହା ଭୁଲେ
କେମନ୍ତେ ହେବନି କଥା ? ପାଖେ ରହି ଦୂରେ—
ରହିବାର ପରି କେହ୍ନେ ଦେଖାଇବ ଠାଣି ?
ଆପଣାକୁ ପର କରି କେହ୍ନେ ଜାଣି ଜାଣି,
କରିବ ମୁଁ ହତାଦର ? କୁଟିଳ ସଂସାର
ଫେରିଯାଅ ଫେରିଯାଅ ଯାଅ ଏକ ବାର ।

— — —

# ତଥାପି

ଘରଟି ଯାଇଛି ଭାଂଗି ପଡ଼ିଅଛୁ ଉହ
ତଥାପି ସେ ମତେ କମ୍ପା ଲାଗେ ଏତେ ପ୍ରିୟ ?
କେତେ ବନ୍ଧୁ କେତେ ସଖା କଲ କୋଳାହଳ
କେତେ ଦଆନିଆ କେତେ ସେନେହ ଆଦର
ସମସ୍ତ ଯାଇଛି ଭୁଲି, ଯେ ଯହିଁ ଘରର
ଯାଇଚନ୍ତି ମରିହଜି କେ'ବା ଦୂରସ୍ଥର
କେଉଁ ଥାନେ ରହି ହେଉଅଛୁ ନାଚଂଘାର !

ଏ ଉନ୍ମ ପଡ଼ଚ ଏଥି, ଅଶାନ୍ତ ସମ୍ଭାର
ପ୍ରତି ମାଟି କଣିକାରେ ଯେତ୍ନେ ଅବା ବନ୍ଧ,
ମୁଁ ଗୃହିଁଲେ ମୋରେ କେତେ କଥାଯାଏ କହି !
ବୁଲୁଚି ଦେଖୁଚି ମୁହିଁ ତନ୍ନ ତନ୍ନ କରି
କା' ଭୁଲେ ହେଉଚ୍ଛି କଥା କି ସବାଗ ଭରି !
କିଛି ତ କୁଆଡ଼େ ନାହିଁ, ତଥାପି ଅନ୍ତର
ପାଉଚି କାହାର ସ୍ପର୍ଶ ସୁଧା ତଳ ତଳ !!

—*—

# ମିଶିଯାଏ

ଅନନ୍ତ ଆକାଶ ଏଇ ଅନନ୍ତ ପୃଥିବୀ
ଏ ମହା ସମ୍ପଦ ଗୁଡ଼ କେଉଁଆଡ଼େ ଯିବ—
ଯହିଁ ଚାହିଁ ଦିଏ ତହିଁ ଦିଶି ଦିଶି ଭରି
କି ଅମୃତ ବଇଭବ ଯୁଗ ଯୁଗ ଧରି
ରହିନାଇଁ ଅସରନ୍ତି ଗନ୍ଧାଘର ସମ
ମୁହୂର୍ତ୍ତ ମୁହୂର୍ତ୍ତ ଧରି ଆନନ୍ଦ ପରମ
ଢାଳି ଦିଏ ମୋ ଅନ୍ତର ପ୍ରତି ରେଣୁତଳେ,
ହସି ଖେଳ ନାଚ ମୁହିଁ ଚାଲେ ନିରନ୍ତରେ
ଜୀବନ ବିପଞ୍ଚି ମୋର ମଧୁମନ୍ଦ୍ରେ ବାଇ
ଏ ମହା ସୃଷ୍ଟିରୁ ବଳି, ଆଉ ମୋହ ପାଇଁ
କି ମଧୁ ସମ୍ପଦ ଅଛି ? କିଛି ନାହିଁ ଲୋଡ଼େ
ଚିରଦିନ ଚିରକାଳ ସୁଧା-ମୁଗ୍ଧ ଡୋଳେ
ଏଇ ମହା ଅନ୍ତରେ ଚାହିଁ ଚାହିଁ ଚାହିଁ
ଏହାରି ଭିତରେ କେବେ ମିଶିଯାଏ କାହିଁ !!!

—o—

# ପ୍ରିୟ ପଣ୍ଡିତଜୀ !

ନମସ୍କାର କରେ ଆଜ ତୁମ୍ଭ ପାଦତଳେ
ଏ ଦୂର ବିଦେଶେ ଯେବେ ମୋର ମନେପଡ଼େ
କେମନ୍ତେ ସେ' ଦିନ ମତେ ଗୁଡ଼ିଦେବା ପାଇଁ;
ଅର୍ଦ୍ଧପଥ ଯାଏଁ ଆସି ରହିଥିଲ ତୁହିଁ,
ସୋଦର ମମତା ବୋଲା ନେଇବିନି ତାକ !
ଯହିଁ ଝର ପଡ଼ୁଥିଲ ତପ୍ତ ଅଶ୍ରୁ ବାର !
ରୁଦ୍ଧ କଣ୍ଠେ ଦେଲାବେଳେ ଆଶ୍ୱାସନା ବାଣୀ
ତୁହିଁ ତ ନଥିଲ ପାର, ବୁଝୁଥିଲ ହାଣି—
ହୋଇଯାଉଥିଲ କିବା ଖିଷଣ କ୍ଷୁରଧାରେ
ଭାଙ୍ଗୁଥିଲ ମୋହଲାଗି ମହା ବସୁଧାରେ—
ତୁମେ ଯେବେ ରହିଅଛ ଜଣେ ଖାଲି ଜଣେ,
ଆସୁ ଯେତେ ଝଡ଼ ସହିଯିବି ପ୍ରତିକ୍ଷଣେ ।
ଜଣେ ଯେବେ ବୁଝିପାରେ ମହାବିଶ୍ୱେ ମତେ
କି ଦୁଃଖ ଭାଲେଣି ମୋର ଅଛୁ ଯାତ୍ରାପଥେ !!

———

# ବାହିନେକ

ସେ ଭଳ ମମତା ସତେ ରଖିଚ ମୋ ପାଇଁ ।
ମତେ ଦେଖିବାକୁ ଏଥି ଆସିଅଛ ଧାଇଁ ;
ପଚ୍ଛୁରୁଚ ଗୋଟି ଗୋଟି କୁଶଳ ପ୍ରଶ୍ନ
ଭଲ ଲଗୁଛି କି ନାଇଁ ବିଦେଶ ଭୁବନ ।
ଆମେ ସବୁ ମନେପଡ଼ୁ କେବେ କେବେ କାହିଁ
କି ଭଳିରେ ଦିନ ତହିଁ ନିଅନ୍ତୁ ପୁହାଇ;
ଏ ସବୁ ଦେଖିଲେ ମୋର ଖାଲି ହୁଏ ମନ
ରହେ କୋଟି ହଇରଣେ ଏ ସାରା ଜୀବନ,

ତୁମ ଠିକ ମନ ତଳେ ଯେବେ ମୋହ ଲଗି
ଏତେ ଅନୁଭୂତି ଉଠେ ବେଳେ ବେଳେ ଜାଗି,
ମୋ ଅଶ୍ରୁରେ ତୁମେ ଯେବେ ଓଦା ହୋଇପାର,
ମୋ ଦୁଃଖେ କମ୍ପିତ ଯେବେ ତୁମ ଗୃହଆଡ଼,
ସେଇତ ମୋ ଗଉରବ, ତାହାକୁହିଁ ଧରି
ବାହିନେବି ନିର୍ଭିକେ ମୁଁ ମୋ ଦରିଦ୍ର ତରୀ !

—*—

## ସାଥିହରା

ସାଥିହରା ହୋଇ ଆଜି ଏ ଦୂର ଭୁବନେ
ରହିବାକୁ ହେଲା ମତେ ମହା ନିଜାଞ୍ଚନେ !
ସକାଳରୁ ସଞ୍ଜଯାଏ ଖାଲି ହୁଏ ଭାଳ !
ଏ ମୁହୂର୍ତ୍ତେ ତୁମ ପାଖେ ଯାଆନ୍ତି ବାହାରି !
ଜୀବନର ଯେତେ ଦୁଃଖ ଗୋଟି ଗୋଟି କରି
ତୁମ ପାଖେ କହନ୍ତି ମୁଁ, ନେତ୍ରୁ ଲୁହ ଝରି—
ଯାଉଥାନ୍ତି, ପ୍ରତି ପଦ କହିବାର ବେଳେ
କେତେ ଯେ ଆଶ୍ୱାସ ଆହା ଲଗୁଥାନ୍ତା ମୋରେ !
ତୁମେ ମୋରେ ଦେଉଥିଲ ସେନେହ ସମ୍ମାନ
ବୁଝୁଥିଲ ମୋ ଅନ୍ତର ସୁଖ ଦୁଃଖମାନ
ତୁମେ ମୋରେ ଲୋଡ଼ୁଥିଲ ପ୍ରତି ମୁହୂର୍ତ୍ତରେ
ଯେତେ ଯେତେ ଦିନ ଥିଲି ତୁମରି ସଙ୍ଗରେ ।
ସକଳ ତେଆଗି, ଏକା ନାଇଁ ରହିପାରେ !
କହିଉଠେଁ ଗୃହିଁ ବନ ବିଲ ଘରଆଡେ ।

———

# ଏକାକୀ ପ୍ରବାସେ

ସୁଦୂର ପ୍ରବାସେ ଏଇ ଗିରିମାଳା ତଳେ,
ନୀରବେ ବସିଛି ଏକା, ମୋର ମନେ ପଡ଼େ
ମୋ ଦରିଦ୍ର ଜୀବନର ଅଜ୍ଞାତ କାହାଣୀ
କେତେ ଦୁଃଖେ ଆସିଛି ମୁଁ ବଢ଼ି ଦିବା ଯାମୀ;
କାହା ଦ୍ୱାରେ ଗୋଡ଼ ଭାଙ୍ଗି ଠିଆ ହୋଇନାଇଁ
ମୋରେ କେ ସାହାଯ୍ୟ କରୁ ଲୁହ ନେତ୍ରେ ଚାହିଁ,
କିଏ କେତେ ମୋ ଦରିଦ୍ର ଜୀବନର ପଥ
କରିଚନ୍ତି କଣ୍ଟକିତ, ଭଗ୍ନ ମନୋରଥ —
ହୋଇ ମୁଁ ଯାଇନି ଫେରି, ଚାଲିଅଛି ଆଗେ
ନେତ୍ରପ୍ରାନ୍ତୁ ଅଶ୍ରୁ ପୋଛି କୋଟି ଅନୁରାଗେ,
କେତେ ଦୁଃଖ ଅତ୍ୟାଚାର କ୍ରୂର ଆକ୍ରମଣ
ଦେଇନି ପ୍ରହାର ମୋରେ ବିଷମୁ ବିଷମ !
ତଥାପି ଚାଲିଛି ଲବେ ନୋହି ମୁଁ ଚଞ୍ଚଳ
ଦେଖିବାକୁ ଜୀବନର ସ୍ୱର୍ଣ୍ଣ ଶତଦଳ !

—*—

# ତରୁଣ କବି ବିଶ୍ୱମ୍ଭରଙ୍କ ପ୍ରତି !

ହେ କବି ! ଦରିଦ୍ର ତବ ଜୀବନର ପଥେ
ଚାଲିଛ ସାଧନା କରି ପଡ଼ନାଇଁ ଲଇଁ
ସମ୍ମୁଖକୁ ଚାହିଁ ଚାଲ ଚାଲ, ଚାଲ ଚାଲ !
ଦେଖିବ ନିଶ୍ଚୟ ସ୍ୱର୍ଣ୍ଣ ଆଲୋକର ଛବି !
ପ୍ରତିପଦେ ଜୀବନକୁ ତୁଚ୍ଛ ମନେକରି
ଆପଣାକୁ ଦେଇ ଦେଇ ଶତେକ ଧିକ୍କାର
ରୁଦ୍ଧ ଗୃହ ଅନ୍ଧକାରେ ବିତାଇ ଜୀବନ
କରନା କରନା କବି କେବେ ହାହାକାର !

ଦାରିଦ୍ର୍ୟ ଅଭାବ ଅବା ତୀବ୍ର ଅନଶନ
ହୋଇ ପାରେ ମହାବାଧା ଜୀବନର ପଥେ
ଆତ୍ମାର ଯେ ମହାଶକ୍ତି ଓତପ୍ରୋତ ହୋଇ
ଜଳୁଚି ତୁମର ଦେହେ ମନେ ଅବିରତେ
ତାହାରେ ପରାସ୍ତ କରି ଊର୍ଦ୍ଧ୍ୱେ ଉଠିବାର
କ୍ଷମତା ସାହସ ଅଛି ଏ ବିଶ୍ୱେ କାହାର ?

— ——

# ସେତେବେଳେ

ଏ ଜୀବନ ଫୁଲଟି ମୋ ତରୁ-ବୃନ୍ତଚୂଡ଼େ
କେମନ୍ତେ ରହିଚି ଫୁଟି ଏ ଧରଣୀ ପୁରେ
ପ୍ରତି ନିତି ଦେଖୁଚି, କି ବିମୁଗ୍ଧ ସପନ !
ଚତୁର୍ଦ୍ଦିଗେ କରି ବର୍ଣ୍ଣ ଗନ୍ଧ ବିକୀରଣ !
ପ୍ରତିବାସୀ ବନ୍ଧୁଜନେ କରି ଆପଣାର
ଗ୍ରହିଅଛି ସୁଖେ ଦୁଃଖେ, ଯାହା ଆସିବାର—
ଯେତେବେଳେ ଝଡ଼ଝଞ୍ଜା ଉତ୍ଥାନ ପତନ
କାହାରେ ଖାତିର ନାହିଁ କରି କଦାଚନ ।
ସମୟ ଆସିବ ଦିନେ ବୃନ୍ତ ତେଜି ତଳେ
ପଡ଼ିଥିବ ମ୍ଳାନମାନେ, ପାଖୁଡ଼ା କେଶରେ—
ନାହିଁ ଥିବ ବର୍ଣ୍ଣ ଗନ୍ଧ ଶିରୀ ଜୀବନର,
ନାହିଁ ଥିବ ଏ ଲାବଣ୍ୟ ମନୋମୁଗ୍ଧକର ।
ସେତେବେଳେ ପଥପ୍ରାନ୍ତେ ଠିଆ ହୋଇ କ୍ଷଣେ
କିଏ କି ଗୃହିଁବ ନାହିଁ କରୁଣ ନୟନେ ?

———

# ବଢିଯାଉ ଦିନ କରି ଜାତିର ମଙ୍ଗଳ

ହେ ପୁଣ୍ୟ ଦିବସ ମୋର ଜାତିର ଶୃଙ୍ଖଳ
ଛିନ୍ନ ହେଲା ଯେଉଁ ଦିନ ମହା ଶୁଭଙ୍କର
ନବ ସୂର୍ଯ୍ୟୋଦୟେ ତବ । ସ୍ମୃତି ସେ ଦିନର
କେମନ୍ତେ ଭୁଲିବି କହ ଜନ୍ମ ଜନ୍ମାନ୍ତର ।
ନିବିଡ଼ ତମିର ତଳେ ଶତ ନିସ୍ପେଷଣେ
କେମନ୍ତେ ମୋ ଜାତି ଥିଲା ପଡ଼ିଗଲେ ମନେ,
ରୋମାଞ୍ଚେ ଶରୀର ସାରା କହେ ଶୂନ୍ୟେ ଗୃହିଁ
ଦାସତ୍ୱ ବନ୍ଧନ ଠାରୁ ବଡ଼ ଦୁଃଖ ନାହିଁ—
ମାନବ ଜାତିର ବକ୍ଷେ । ଦାସତ୍ୱ ହିଁ ତାର
ମାରି ମାରି ଦିଏ ସବୁ ହୃଦୟ ଝଙ୍କାର !
ସ୍ୱାଧୀନ ମାଟିର ମୁହିଁ ସ୍ୱାଧୀନ ଜୀବନ
କେମନ୍ତେ ଦେଖଇ ଲକ୍ଷ ସୁନାର ସପନ
ଅଗଷ୍ଟ ପନ୍ଦର ! ଦିଅ ବକ୍ଷେ ନବ ବଳ
ବଢିଯାଉ ଦିନ କରି ଜାତିର ମଙ୍ଗଳ !

———

# ସେ'ଯେ ଗଲା କାହିଁ ?

ଯେତେ ଯା ସଂପଦ ମୋର ନିଃସ୍ୱ ବୁକୁତଳେ
ସବୁତକ ଦେବା ପାଇଁ ଅକୁଣ୍ଠିତ କରେ ।
ଗୃହିଁ ମୁଁ ବସିଚ ଏଥି ଦିନ ଦିନ ଧରି
କେତେ ଦିନ ମାସ କେତେ ବର୍ଷ ଯାଏ ଚଳି !
କେତେ ସଂଧ୍ୟା ଯାଇ ପୁଣି କେତେ ସଂଧ୍ୟା ଆସେ
କେତେ ସ୍ୱର୍ଣ୍ଣଶିଖା ଜାଗେ ଉଷାର ଆକାଶେ
କେତେ ଲହ ବହିଯାଏ ନେତ୍ରୁ ଝରି ଝରି,
କେତେ ସ୍ୱପ୍ନ ଦିବାନିଶି ଦେଖେ ଅବିରଳ !

କେତେ ଡାକେ ମହାଶୂନ୍ୟେ ଚଉହଦେ ଗୃହିଁ
ସଜାଡ଼ି ରଖିଛ ମବୁ ସେ ଯେ ଗଲା କାହିଁ ?
ଥରେ ସେ ଦେଖିଶ ମୋରେ, ମୁଁ ଦେଖିଚ ଥରେ
ଭଲ କରି ଚିହ୍ନି ଅଛୁ ଆମେ ପରସ୍ପରେ !
ବର୍ଷଣ ବାରିଦ ପରି ରହିଚ ଅନାଇଁ
କା' ବକ୍ଷେ ପଡ଼ିବ ଢଳି ସେ ଯେ ଗଲା କାହିଁ ?

———

## ଯାର ଅଛି ତ୍ୟାଗ

ବସିଚ ଆଜ ମୁଁ ଏଇ ଆମ୍ର କୁଞ୍ଜତଳେ
ଶୀତଳ ସମୀର ବହିଆସେ କୁତୁହଳେ
ପ୍ରତିଆମ୍ରତରୁ ଢଳି ଆନ ତରୁ ଶିରେ
ମତ୍ତ କି ମାଧୁରୀ ପାନେ ! ଆନନ୍ଦେ ଅଧୀରେ;
ପ୍ରତିତରୁ ପ୍ରତିଶାଖା ଦେଇଚି ବିସ୍ତାରି
କି ଶାନ୍ତ ଶୀତଳ ଛାୟା; ପକ୍ୱ ଆମ୍ବ ବାଢ଼ି —
ହଏ ପୁଣି ବେଳେ ବେଳେ । ଭାଳେ ମୋ ଅନ୍ତର
ଅନ୍ୟକୁ ବିତରିବାରେ କି ଐଶ୍ୱର୍ଯ୍ୟଝର
ଦେହେ ମନେ ଫିଟିପଡ଼େ । ଏଇ ଦାନ ଲାଗି
ପ୍ରତିତରୁ ଶାଖେ ଶାଖେ ପର୍ଣ୍ଣେ ଉଠେ ଜାଗି
ଏ ମଧୁ ମୋହନ ମାୟା; ଆମ୍ର କୁଞ୍ଜ ତଳ—
ଲାଗେ ଯେହ୍ନେ ପୃଥିବୀର ଏକମାତ୍ର ଘର—
ଶାନ୍ତି ଆଉ ଐଶ୍ୱର୍ଯ୍ୟର । ଯା'ର ଅଛି ତ୍ୟାଗ
ସେ ଏକା ଧରାରେ ପାଏ ଅମୃତର ଭାଗ !

———

## ଆଶାୟୀ

ଘୃଣ୍ୟ ହେୟ ତୁଚ୍ଛ ମୁହିଁ ପୃଥିବୀ ନୟନେ
ମୋର ହୋଇ ପୃଥିବୀରେ ନାହିଁ କେହି ଜଣେ;
ଚତୁର୍ଦ୍ଦିଗେ ବାତ୍ୟା ବହେ ଭୀମ ଭୟଙ୍କର
କା ଆଗେ ଫିଟାଇ ମୋର ସମସ୍ତ ଅନ୍ତର
କହିବ ଅନ୍ତର କଥା ? ପାଏ ନ ଇଁ କାରେ,
ବହିଯାଏ କେତେକାଳ ଅଶ୍ରୁ ହାହାକାରେ ।
ସବୁ ଦୈନ୍ୟ ସବୁ ବାଧା, ସବୁ ଧକ୍କା ଆସେ,
ଆପଣାର କରି ମୁହିଁ ଯାଏ ଯାହା ପାଶେ,
ମୁହଁ ମୋଡ଼ି ଦେଇ ମୋରେ କହନ୍ତି ନି କଥା !
ଗଭୀରୁ ଗଭୀରତର ହୁଏ ମୋ'ର ବ୍ୟଥା !
ଭୀଷଣ ସଂକଟ କୋଳେ ମୁହିଁ ଯାଇଁଟିଏ
ପଡ଼ିଅଛି । ମୋର ବକ୍ଷତଳେ ତୁମେ କଏ ?
ଅନନ୍ତ ଆଶାର ଦୀପ ଦେଇଅଛ ଜାଳି ।
ତେଜୁଚି ସେ ଦୀପ ମୋର ସବୁ ତୈଳ ଢାଳି ।

— ——

## ଅମୃତ ରୂପ !

ସେଦିନ ମୁଁ ସେ' ଗାଡ଼ିରେ ସେ' ଦିନ ସକାଳେ
ଯାଉଥିଲି ବନ୍ଧୁ ମୋର ! ଦରିଦ୍ର କପାଳେ
ନ ଘଟିଲା ପାଇବାକୁ ସାକ୍ଷାତ ତୁମ୍ଭରି,
ତୁମେ କିନ୍ତୁ ଆସିଥିଲ ପଥ ଶ୍ରମ କରି,
ମତେ ଟିକେ ଦେଖିଥାନ୍ତ ବୁଝିଥାନ୍ତ ମମ—
ପ୍ରାଣରେ ଅତଳ ତଳେ ଆଘାତ ବିଷମ
କେମନ୍ତେ ରହିଛି ଲଗି, ତୁମ୍ଭମାନଙ୍କର
ସ୍ନେହ ଶ୍ରଦ୍ଧା ସମ୍ମାନର ପାତ୍ର ନିରନ୍ତର

ମୁଁ ଯେବେ ଚାରଣ ହୋଇ ନିଃସ୍ୱ କବିଜନ,
କି ଦେବି ତା ପ୍ରତିଦାନ ? ଏକ ଅଶ୍ରୁ କଣ—
ଛଡ଼ା ମୋର କିବା ଅଛି ? ତୁମେ ମୁଁ କେ' କାହିଁ ?
ଅନ୍ତର ଅନ୍ତରେ ଖୋଜେ ଚିରଦିନ ପାଇଁ
ସ୍ରଷ୍ଟା ଯେ ଗଢ଼ିଛି ଏଇ ଜୀବନ ଆମ୍ଭର
ବାସ୍ତବିକ କି ସୁନ୍ଦର ରୂପ ଅମୃତର !!

--*--

# ହେ ମୋ ଆଲମ !

ହେ ମୋର ଆଲମ ! ମୋର ନେତ୍ରଉଷ୍ଣ ବାରି
କାହିଁକି ଦଉଚ ପୋଛି ? ସ୍ୱର୍ଣ୍ଣ କର ଗ୍ରହି !
ଯେତେ ଯା ବେଦନା ଦୁଃଖ ଦାରିଦ୍ର କପାଳେ
ଭୋଗିବାକୁ ହେବ ମତେ । ନିଖିଳ ସଂସାରେ—
କାହାକୁ କିଭଳି ରୂପେ ଚଳିବାକୁ ହବ –
କେତେବେଳେ, ଜାଣିବାତ ନୁହଇ ସମ୍ଭବ !
ବୋହିଯାଉ ଯେତେ ଅଶ୍ରୁ ଅଛି ବହିବାର
ଆସୁ ଯେତେ ଯେତେ ଦୁଃଖ ଅଛି ଆସିବାର
ପୃଥିବୀର ପୁଞ୍ଜୀଭୂତ ଦୁର୍ଦ୍ଦଶା ସକଳ
ଲୀଳାରୁ ଆସି ମୋର ଏଇ ବୁକୁତଳ ।
କାନ୍ଦି କାନ୍ଦି ଗଡ଼ିଯାଏ, ମୁଁ ପାଗଳ ପରି,
ମତେ କିପାଁ ହେ ଆଲମ ରଖିଅଛ ଧରି ?
ଦେଉଚ ସାନ୍ତ୍ୱନା ବନ୍ଧୁ ! ମୋହର ଜୀବନ,
ଶତବାଧା ଶତଦୁଃଖ ଲୀଳା ନିକେତନ !

———

# କପାଁ ଗୃହେଁ ପ୍ରତିକ୍ଷଣେ !

ମୋର ଏଇ ଅପୁନିକ ଦରିଦ୍ର ଜୀବନେ
ତୁମକୁ ଆଲମ କପାଁ ଗୃହେଁ ପ୍ରତିକ୍ଷଣେ ।
ପଲ୍ଲୁରେ କପାଇଁ ତୁମେ ଖାଇଚ କି ନାଇଁ ?
ନାଇଁ ଖାଇଥିଲେ କପାଁ ପାଖରେ ବସାଇ
ଖୋଇବାକୁ ତୁମରେ ମୁଁ, ମନେ ଇଚ୍ଛା ଜାଗେ
ଖାଉଥିଲେ ଜଳଖିଆ, ତହୁଁ ଆନ ଭାଗେ
କପାଇଁ ତୁମକୁ ଦିଏ, ସବୁର ଅଜ୍ଞାତେ,
କି ମଧୁ ମୋହନ ଡୋର ବାନ୍ଧେ ତୁମ ସାଥେ !
ପାଇଲେ ବିରାମ ଲବେ, ବସି ତୁମ ସହ
ଶୁଣିବାକୁ ତୁମ ତୁଣ୍ଡ କଥା କି ଆଗ୍ରହ—
ଜାଗେ ଏ ଅନ୍ତରେ, ତୁମ ଗଉରବଟିକ,
ଲଗେ କପାଁ ମୋରେ ଏତେ ଅଧିକୁ ଅଧିକ,
ସୁଖେ ବଞ୍ଚିଥାଅ ବାବୁ ! ନିଖିଳ ଭୁବନେ
ତୁମକୁ ଆଲମ କପାଁ ଗୃହେଁ ପ୍ରତିକ୍ଷଣେ ।

—*—

# ମୁଁ ଗୋଟିଏ ଲୋକ

ମୁଁ ଗୋଟିଏ ଲୋକ ଏଇ ମହା ପୃଥିବୀର
ଦିନେ ନିଭିଯିବ ଏଥି, ସୂର୍ଯ୍ୟସମ ଥିର—
ରହିବ ପାରିବ ନାହିଁ । ସୃଷ୍ଟି ଆଦିକାଳୁ
ମୋହ ଭଳି ଲକ୍ଷ ଜନ ଏ ମହାସଂସାରୁ
ବିଦାୟ ନେଲେଣି, ପୁଣି ମୋହଭଳି ଲୋକ
ଆସିବେ ଅଗଣ୍ୟ ଲଭି ସୁଖ ଦୁଃଖ ଶୋକ—
ଧରାରେ କାଟିବେ କାଳ ପୁଣି ଯିବେ ଚାଲି,
ସତ୍ତ୍ୱ କାର ମିଳିବନି ସ୍ୱପ୍ନେ କେବେ ଖାଲି

ନିମିଷକେ ଦେଖିବାକୁ । ମୋର ଅବସ୍ଥିତି
ମୋର ଏତେ ଦିଏ କମ୍ପା ସୁମଧୁର ପ୍ରୀତି !
ଦୁଃଖ ନାହିଁ କ୍ଷଣେ ଦଣ୍ଡେ ରହେ ଧରାପରେ
ଅସୀମ ପ୍ରାଣର ମାୟା ମୋହନ ଭିତରେ
ରଚେ ଯେଉଁ ମଧୁ ତାନ ସେହିଟିକି ଧର
ମୁଁ ଗୋଟିଏ ଲୋକ ବୋଲି ଯାଏ ଗର୍ବ କର !

—※—

# କବି ଓ କବିତା

କରମେ ବିରାମେ ଯେବେ ଲେଖନୀଟି ଧରି
ଲେଖଇ କବିତା ବସି ତାନମାନ ଭରି;
କହନ୍ତି କୁଟୀର ରାଣୀ "ଗୃହଧନ୍ଦା ଛାଡ଼ି
ଏ କବିତା ଲେଖିବାରେ କି ସମ୍ପତ୍ତି ବାଢ଼ି
ମିଳଇ ତୁମରେ କହ ? ଆଜଯାଏଁ ଲେଖି
କେତେ ଖଣ୍ଡ ବହି ଭଲ ଛାପିଅଛ ଦେଖି
କବି ବୋଲି କେବେ ଅବା ପାଇଚ ସମ୍ମାନ
ବିପୁଳ ଜନତା ମେଳେ ବରଂ ହଇରାଣ—
ହୁଅ ତୁମ୍ଭେ ପ୍ରତି ପଦେ, ଦୁଃଖ ଅଭାବର—
କଷାଘାତେ ବେଳେ ବେଳେ ତୁମେ ଥକପଡ଼ !
ପ୍ରଭୁତ୍ୱ କ୍ଷମତା ନାହିଁ, କେହି ତୁମ୍ଭ ବାଣୀ
ମାନନ୍ତିନି, ସମାଜର ଅପଦାର୍ଥ ପ୍ରାଣୀ"
"ହୁଏ ମାନହାନ କେହି ନ ଲୋଡ଼ନ୍ତି ଲବେ
କବିତାରେ ବିଶ୍ୱପ୍ରାଣ ନିତି ଅନୁଭବେ !"

———

# ଦୁଇଟି ପ୍ରାଣର……

ଦୁଇଟି ପ୍ରାଣର ଯେଉଁ ନିବିଡ଼ ବନ୍ଧନ
ଦୁଇଟି ପ୍ରାଣର ଯେଉଁ ମଧୁ ଆଳାପନ
ଦୁଇଟି ପ୍ରାଣର ଯେଉଁ ବେଦନା ଦୁର୍ବହ
ଦୁଇଟି ପ୍ରାଣର ଯେଉଁ ଅଶ୍ରୁ ପ୍ରାଣମୟ !
ଦୁଇଟି ପ୍ରାଣର ଯେଉଁ ଚୁପି ଚୁପି ଭାଷା
ଦୁଇଟି ପ୍ରାଣର ଯେଉଁ ବୁକୁଛଳ ଆଶା
ଦୁଇଟି ପ୍ରାଣର ଯେଉଁ ପ୍ରାଣବୋଲା ହାସ
ଦୁଇଟି ପ୍ରାଣର ଯେଉଁ ଶତ ଦୀର୍ଘ ଶ୍ୱାସ
ଦୁଇଟି ପ୍ରାଣର ଯେଉଁ ଦାରୁଣ ବିରହ
ଦୁଇଟି ପ୍ରାଣର ଯେଉଁ ମିଳନ ଆଗ୍ରହ
ଦୁଇଟି ପ୍ରାଣର ଯେଉଁ ଦେଖିପାରିବାର
ଦୁଇଟି ପ୍ରାଣର ଯେଉଁ ପୁଣ୍ୟ ବ୍ୟବହାର
କି ଅନନ୍ତ ଅଇଶ୍ୱର୍ଯ୍ୟ ନାହିଁ ତହିଁ ଭରି ?
ଏ ମାଟିର କେଉଁପାରେ ଅଛି ଏଇଭଳି ?

———

# ଲତିକା !

ଲତିକା ଗୋ ! ତତେ ମୁହିଁ ଖାଲି ଭଲପାଏ !
ଲତିକା ଗୋ ! ତତେ ମୁହିଁ ଚିରଦିନ ଗୃହେଁ ।
ଲତିକା ଗୋ ! ତତେ ମୁହିଁ ଖାଲି କଥା କହେ !
ତୋ ପାଇଁ ମୁଁ ପଥପ୍ରାନ୍ତେ ଅଟକି ଯେ ରହେ !
ଲତିକା ଗୋ ! ତତେ ଖାଲି ଦେଖିବାକୁ ଡୋଳେ
ଚୁଳିଆସେ ତୋର ଗାଆଁ ବିଲ ବନ ଖୋଲେ !
ଲତିକା ଗୋ ! ତୋ ଓଠର ମୃଦୁ ମୃଦୁ ହାସ
ଦେଖିବାକୁ କେତେ ନାହିଁ କରଇ ପ୍ରୟାସ !

ଲଜ୍ଜକା ଗୋ ! ତୋ ଅନ୍ତର ସେଇ ମଧୁ ଟିକ
ମତେ ଲାଗେ ଶରଦନ ଅଧିକୁ ଅଧିକ !
ଲଜ୍ଜକା ଗୋ ! ତୋହ ପାଖେ ନେଇ ଲୁହ ଢ଼ାଳ
କହିବାକୁ ମୋ ବେଦନା ଇଛା ହୁଏ ଘର !
ଲଜ୍ଜକା ଗୋ ! ଲଜ୍ଜକା ଗେ ! ଗୁହାଁ ମତେ ଗୁହାଁ !!
ମୋ ପାଇ ରଖିଚି କଏ ସୀମାହୀନ ମାୟା ??

---

## କେତେ ଭଲ ତମେ ?

ଏ ଧରଣୀ କେତେ ଭଲ ! କେତେ ଭଲ ତମେ !
ମୁଁ ତୁମକୁ ଆପଣାର କରେ ମନେ ମନେ !
ପ୍ରଜାପତି ଉଡ଼ୁଥିଲେ ଉଡ଼ୁଥିଲେ ମୁହିଁ
ତୁମକୁ ସେନେହେ ଟିକେ ଦେବାଲାଗି ଛୁଇଁ !
କଥା ପଦେ କହିବାକୁ କେତେ ଲୋଡ଼ାହୁଏ
ତୁମେ ଦୂରେ ମୁହିଁ ଦୂରେ ଅଲଗା ଯେ ଦୁହେଁ !
ତୁମେ ଜାଣ ମତେ ମୁହିଁ ତୁମକୁ ଗୋ ଜାଣେ !
ଟିକଏ ତ ମିଶିଗଲେ ନାହିଁ ପ୍ରାଣେ ପାଣେ ?
ଫୁଲ ହସେ ତାରା ହସେ ଚନ୍ଦ୍ର ହସେ ନଭେ
ତୁମେ ଟିକେ ହସିଲନି ମୋ ପାଖେ ମାରିବେ ?
ତୁମେ ଯିବ ମୁହିଁ ଯିବ ମିଶି କେଉଁ ପାରେ
ଅବୁଝା ରହିବା ଆମେ ଦେଖି ଏ ସଂସାରେ
ପ୍ରାଣ ପାଖେ ପ୍ରାଣର ଯେ ମଧୁ ନିବେଦନ
ତାର କଣ ଶେଷ ସଖି ! ହେବ କଦାଚନ ।

---

# ଜନକର ପ୍ରଶ୍ନ

ସେ ଦିନ ଶାରଦ ସନ୍ଧ୍ୟା, ଦିନାନ୍ତ ତପନ —
କନକ ଆଭାରେ କରି ସିକ୍ତ ଏ ଭୁବନ,
ଶାନ୍ତ ଗିରିଚୂଳେ ବୁଡ଼ି, ବୁଡ଼ି ଯାଇନାହିଁ,
ଆସୁଚି ଶସ୍ୟର ଗନ୍ଧ ଦିଗ ମହକାଇ ।
ଅଗଣିତ ଜହ୍ନିଫୁଲ ପ୍ରକୃତି ବଧୂର
ସ୍ୱର୍ଗୀ ହାସ ସମ ଫୁଟି ଦିଶଇ ରୁଚିର
କୋଳେ ମୋର ମଥା ଥାପି ଜୀବନର ରାଣୀ
କହିଲା ଖେଳାଇ ସ୍ମିତ ଓଠେ ମଧୁବାଣୀ ।
"ମୁଁ ଯେବେ ତୁମରେ ପ୍ରିୟ ଏଇପରି ଶୁଅନ୍ତି
ବୁଜନ୍ତ ନୟନ ଡୋଳା ଚିରଦିନ ପାଇଁ
କେମନ୍ତେ ଲାଗନ୍ତା ଭଲ ! କି କରନ୍ତ ତମେ ?"
ନିବିଡ଼ ଆଶ୍ଳେଷ ଦେଇ ଅଶ୍ରୁଳ ନୟନେ,
କହିଲି, "ମୁଁ ଚିରଦିନ ତୁମ ସ୍ୱପ୍ନ ଦେଖି
ଅଶ୍ରୁରେ ଗୋ ଯାଉଥାନ୍ତି କୋଟିକାବ୍ୟ ଲେଖି ! "

———

# କାହିଁକି ?

ସ୍ମୃତିପଥେ ସେଇକଥା ପୁଣି ଆସେ ଉଇଁ
ଥିର ହୋଇ ମୁହୂର୍ତ୍ତେ ମୁଁ ନାହିଁ ରହିପାରେ
କେତେ ଦୁଃଖ ଦୁରଦଶା ଯାଇନାହିଁ ଛୁଇଁ ?
ଆଜି କି ଆସିବ ବୋଲି ସବୁବେଳେ ଭାଳେ !
ଆସିଲେ ଆସବ ମୋର କିବା ଅଛି ହାତ
କିନ୍ତୁ ମୁଁ ଭୁଲିଚି ସଖି ! ମଧୁଆଶା ଧରି
ଯେତେ ହେଉ ଦିନୁଦିନ ପିଚ୍ଛିଳ ମୋ ବାଟ;
ଭୁଲିଥିବ ପାଦ ଚପି ନିମିଷେ ନ ଡରି ।

ଦିଗ୍‌ବଳୟୁ କୋଳେ ଉଇଁ ପାଟଳ ତପନ
ନିଭିଯାଉ ଯେତେବାର ଅଛି ନିଭିବାର
ଝରିପଡ଼ୁ ଲକ୍ଷ କଳି ନ ହୋଇ ସୁମନ
କିପାଇଁ ଢାଳିବ ବସି ଚିନ୍ତ ଲୁହଧାର ?
ଭୁଲିବାର ପଥେ ସଖି ! ଭୁଲିଥିବା ଆମେ
କାହିଁକି ସେ କଥା ଆଜି ଭାଳିହେବା ପ୍ରାଣେ !

———

# ତୁମଠି ମୁଁ ହଜିଯାଏ !

କୁସୁମର ଗନ୍ଧରେ ତୁମେ ସଖି ! ମତେ
ମୁଗ୍‌ଧ କରି ରଖିଅଛ ଧରାରେ ସନ୍ତତେ;
ଅନ୍ତରର ଯେତେ ଯାହା ସମ୍ପଦ ବିପୁଳ
ନ ହୁଏ କୁଣ୍ଠିତ ମୁହିଁ କରିବାକୁ ତୁଳ—
ତୁମରି ଚରଣ ପ୍ରାନ୍ତେ, ମହାସୃଷ୍ଟି ମମ
ତୁମ ଲାଗି ଲାଗେ ମୋରେ କାନ୍ତ ମନୋରମ,
ତୁମରି ଭିତରେ କିବା ଆନନ୍ଦର ମାୟା
ସତତ ଆକର୍ଷେ ମୋରେ, ସବୁ ଦୁଃଖ ଛାୟା
ଅପସରିଯାଏ କାହିଁ; ମନେହୁଏ ମମ
ବସନ୍ତ ତୁମଠୁ ଯେହ୍ନେ ପାଇଛି ଜନମ,
ଓଠରୁ ପଦ୍ମର ସୃଷ୍ଟି, ନାଶାରୁ ମଳୟ;
ରସନାରୁ ପଞ୍ଚମର ବାଣୀ ମଧୁମୟ
ଦେଇଛ ଧରାରେ ଢାଳି, ହେ ମୋର ସୁନ୍ଦରି !
ତୁମଠେ ମୁଁ ହଜିଯାଏ ନିଜରେ ବିସ୍ମରି !

—o—

# ସେ

ଫିଙ୍ଗିଦେବ ସମ୍ରାଟର ମଣି ସିଂହାସନ
ଫିଙ୍ଗିଦେବ ଧନରତ୍ନ ସ୍ୱର୍ଣ୍ଣ ଆଭରଣ
ଫିଙ୍ଗିଦେବ ରାଜଦାଣ୍ଡ ଥିଲେ ମୋର କରେ
ମୋ ଆନନ୍ଦ ନାହିଁ ସେଇ ଭୋଗ ଆଡ଼ମ୍ବରେ ।
ପୃଥିବୀରେ ହୁଏ ମୁହିଁ ଦରିଦ୍ର ଭିକାରି
ଅନ୍ନ ଲାଗି ବୁଲେ ନିତି କରପୁଟ ପାରି
ତହିଁରେ ମୋ ସମ୍ମାନର ହେବନାହିଁ ହାନି
ଥିବ ଯେବେ ପ୍ରଣେ ମୋର ହୃଦ କୁଞ୍ଜରାଣୀ—
ଷୋଡଶୀ ଉର୍ବଶୀ ସେଇ ପଲ୍ଲୀବଧୂ ମମ
ବାଜ ଯା ନିଶ୍ୱାସ ବଶ୍ୱ ହସେ ମନୋରମ;
ତାହାର ସାନ୍ନିଧ୍ୟ ଲଭି ହସିବ ସୁନ୍ଦର
ତା' ପରଶେ ବକ୍ଷ ବାଧା ହୋଇବ ଶୀତଳ
ସବୁ ସୁଖ ସମ୍ପଦର ସ୍ୱର୍ଣ୍ଣ ନିକେତନ
ତାହାର ଗୋଟିକ ବକ୍ଷ ଲାଗେ ପ୍ରିୟତମ !

—*—

# ତୁମେ ଗୋ ରହିତ !

ଆଖି ଆଗେ କେଏ କାହିଁ ଚାଲିଗଲେ ମମ
ପାଇଲି ନାହିଁ ତ କା'ର ଦେଖା ଦରଶନ !
ତୁମେ ତ ରହିଲ ହୋଇ ଏକାନ୍ତ ନିଜର,
ତୁମେ ତ ରହିଲ ହୋଇ ଆଶାର ନିର୍ଝର,
ତୁମେ ତ ରହିଲ ହୋଇ ସ୍ୱପ୍ନ ଜୀବନର.
ତୁମେ ତ ରହିଲ ହୋଇ ପ୍ରାଣର ଦୋସର !
ତୁମରେ ଗୁହିଁଲେ ସବୁ ଭୁଲିଯିବ ବ୍ୟଥା !
ତୁମଠୁ ଶୁଣିଲେ ପଦେ ଅମୃତ ବାରତା

ମଣିବ ଜୀବନ ମୋର ଆନନ୍ଦର ଘର,
ସବୁ ତ ଯାଇଛି ତୁମେ ରହିଛ ନିଜର !
ଯେତେ ଦୂର ଯାଏ ମୁହିଁ, ଯାଏ ତୁମ ଲଗି,
ତୁମ ଲଗି ଶ୍ୟାମ ଦୁବା ଉଠେ ମିନା ଜାଗି ।
ଏ ମରୁ ଅନ୍ତର ତଳେ ସବୁଜ ସମ୍ଭାରେ !
ତୁମେ ଗୋ ରହିଛ ସବୁ ସମ୍ପଦ ଦେବାରେ ।



## କି ମଧୁ ସମ୍ପଦେ ଭରିଉଠେ ମୋ ଅନ୍ତର

ନଈ ଯେବେ ବହିଯାଏ କଳତାନ କରି,
ଫୁଲ ଯେବେ ମହକାଏ ଖିଳ ବସୁନ୍ଧରା
ସୂର୍ଯ୍ୟ ଯେବେ ବୁଡ଼ିଯାଏ ଦିଗନ୍ତ ସେ ପାରେ
ପୃଥିବୀ ସନ୍ତରେ ଯେବେ ଜ୍ୟୋସ୍ନା ପାରବାରେ
ଧୂସର ଶଇଳ ଚୂଳେ ସନ୍ଧ୍ୟା ତାରା ଉଇଁ
ଥିରି ଥିରି ଯାଏ ଯେବେ ଦିଗ୍‌ବଳୟ ଛୁଇଁ,
ନିଶୀଥ ନୀରବ ନଭେ ମହାନିସ୍ତବ୍ଧତା
କାନେ କାନେ କହେ ଯେବେ ଅନନ୍ତ ବାରତା
ପ୍ରାଚୀଚକ୍ରବାଳ ଶିରେ ସିନ୍ଦୂର ଲହରୀ
ଖେଳ ଖେଳ ଯାଏ ଯେବେ, ମଧୁର କାକଳୀ—
ସୋହାଗେ ନଚାଇ ଯେବେ ଶଳ ପଦା ବନ
ରଚଇ ବିମୁଗ୍ଧ ପୁଷ୍ପ ସ୍ୱପ୍ନ-ନିକେତନ,
ଏସବୁ ଭିତରେ ତୁମେ ନିତ୍ୟ ମନେ ପଡ଼
କି ମଧୁ ସମ୍ପଦେ ଭରି ଉଠେ ମୋ ଅନ୍ତର ।

—o—

# ଲଜ୍ଜାବତୀ

ଏତେ ଲଜ କାହିଁପାଇଁ ମୋ ପାଖେ ଛଇଲା
ଚାହଁ ମୋତେ ଭଲକରି, ହେ ମୋର ମହିଳା !
ମଧୁକଣ୍ଠୁ ଫେରି କହ ପଦେ ମଧୁବାଣୀ
ଶାନ୍ତ ହେଉ ତପ୍ତ ଏଇ ବକ୍ଷ, ଦିବାଯାମୀ
ଚାହିଁ ରହ, ସୂର୍ଯ୍ୟମୁଖୀ ଯଥା ସୂର୍ଯ୍ୟ ଚାହେଁ
ଲଜ ଲଜ କରି ରହ କବା ଅଭିପ୍ରାୟେ ?
ଯୁକ୍ତ ଯେବେ ତୁମ୍ଭେ ସଖି ! ନିତ୍ୟ ମୋର ସହ
ଅନ୍ତରେ ଅନ୍ତରେ ଯେବେ ପୂର୍ତ୍ତି ପରିଚୟ
ଏତେ କମ୍ପା ଲଜକୁଳୀ ଲତା ପରି ତମେ
ମୋରେକ ଚାହିଁଲେ ଲବେ ଢଳପଡ଼ କ୍ଷଣେ
ଆସ ଆସ ଚାଲ ତବ ସର୍ବାଙ୍ଗେ ଅଙ୍ଗୁଳି
ସେନେହ ପରଶ ଦିଏ, ବକ୍ଷ ଉଠୁ ପୂରି
ଅମୃତର ଉପାୟନେ, ମନ ତୃପ୍ତ କରି
ବିଳସେ ଭ୍ରମର ବକ୍ଷେ ରୂପସି ସୁନ୍ଦରୀ !

—o—

# ଭୁଲିବନି ଏ ମଧୁବନ୍ଧନ

ସେ ସୌମ୍ୟ ଚାହାଣୀ ସେଇ ନୀଳ ନୟନର
ମନେ ମୋ ପଡ଼ଇ ଯେବେ ନିଖିଳ ଅନ୍ତର
ଉଠଇ ଉଲ୍ଲସି କେହ୍ନେ ଶ୍ୟାମ ଦୁର୍ବାପରି !
ଶାରଦ ପ୍ରଭାତ କୋଳେ ! ସୁଭାଗା ସୁନ୍ଦରୀ
ରଚିଛି ଯେ ମଧୁତାନ, ନୁହେଁ ଶୁଖିବାର ।
କେମନ୍ତେ ସେ ଭଲ ପାଏ ମୋତେ ଅନିବାର,
ଅରପି ସମସ୍ତ ତା'ର ନାହିଁ ରଖି ବାକି—
ଇଚ୍ଛା ହୁଏ ବେଳେବେଳେ ନିଭୃତେ ମୁଁ ଡାକି,

ସେ ବରବାଳାରେ ମୋର ପଗ୍ଭରନ୍ତ ମୂର୍ତ୍ତି ।
କହଲେ କଣୋଗ୍ଭ ପ୍ରିୟା ହୃଦ ମୋର ଛୁଇଁ
ଏ ସେନେହ ଏଇ ସ୍ନିଗଧ ଶୁଭଦୃଷ୍ଟି ତାଳ
ମୋରେ ନିତ କରୁଥିବ ପ୍ରାଣର ସଙ୍ଗାଳ ?
ଆସୁ ଶତବାଧା ବନ୍ଧ ଘୂର୍ଣ୍ଣିବାୟୁ ସମ
ତା' ଭିତରେ ଭୂଲବନି ଏ ମଧୁ ବନ୍ଧନ !

—୦—

# ସରସୀଘାଟେ

ସେଦିନ ସରସୀ ଘାଟେ ପ୍ରଥମ ଯୌବନେ,
କହିଥିଲ ଯେଉଁ ବାଣୀ ଆଗୋ ବରାନନେ ।
ଅଧରର ସ୍ୱର୍ଣ୍ଣହାସେ ନୟନ କଟାକ୍ଷେ —
ଏ ବକ୍ଷେ ରହିଛି ଲେଖା ସହି ! ଆଜଯାକେ;
ସେ ଯେ ବାଣୀ ସେ ସ୍ନହାଣୀ ସେଇ ସ୍ୱର୍ଣ୍ଣହାସ
ତ୍ରିଭୁବନେ କାହିଁ ତା'ର ମୋହନ ଉଚ୍ଛ୍ୱାସ ?
ଅନନ୍ତ ଘଟଣା ସ୍ରୋତ ଭିତରେ ସୁନ୍ଦର !
ଗ୍ଭଲଅଛୁ ମୋ ଦରିଦ୍ର ଜୀବନର ତରୀ ।
ସକଳ ଭିତରେ କନ୍ତୁ ମନେ ପଡ଼େ ମମ
ସେ ଦିନର ସେଇ କ୍ଷୁଦ୍ର ମୁହୂର୍ତ୍ତ ପରମ !
'ତୁମେ କ ମୋହର ନୁହ' ? ସେ ବାଣୀ ତୁମ୍ଭର
ପିନ୍ଧାଇଛ ଶିରେ ସ୍ୱର୍ଣ୍ଣ ମୁକୁଟ ମୋହର ।
ଦେଇଛ ଦେବାର ଯାହା ଅନ୍ତରେ ଅନ୍ତର
ତାହା ବଳେ ବର୍ଷେ, ମୁହିଁ ଯୁଗେ ଯୁଗେ ବଡ଼ !

—୦—

# ଅନୁଭବ

କାହିଁକି ମୁଁ ତାରେ ଏଥି ଏତେ ଏତେ ସ୍ମରେ
କାହିଁକି ମୁଁ ତାହା ସ୍ୱପ୍ନ ଦିନରାତି କରେ ?
ସମସ୍ତ ସମୟ ମୋର ଦେଇ ତାହା ପାଇଁ
କି ମଧୁ ସମ୍ପଦ ପାଏ ଜାଣିପାରେ ନାହିଁ !
ମୋ ଦେହ ମନର ପ୍ରତି ସୂକ୍ଷ୍ମ ତନ୍ତୁ ତଳେ
ସେ କମ୍ପ୍ରା ନିପୁତ ଏତେ ବିଚରଣ କରେ ?
ମୁଁ ତା'ରେ କଅଣ କହେ କି ସମ୍ପଦ ମାଗେ ?
ସେ ମୋରେ କେମନ୍ତେ ଗୃହେଁ ମୁଗ୍ଧ ଅନୁରାଗେ !
ସେ ମୋରେ ଛୁଡ଼େନା କେବେ ଛୁଡ଼ିନାଇଁ ପାରେ,
ମୁଁ ମୋର ପ୍ରାଣର ମାୟା ଅବିଶ୍ରାନ୍ତ ଢ଼ାଳେ !
ମୁଁ ତାରେ ଯେତିକି ଖୋଜେ ତା' ତହୁଁ ସେ ବଳି
ଖୋଜି ଖୋଜି ମୋରେ, ପଡ଼େ ମୋ ଅଂତରେ ଚଳି
ସୂକ୍ଷ୍ମ ଅନୁଭୂତି ବୋଲା ପ୍ରାଣର ରାଇଜେ
କି ଅମୃତ ପିଇ ମୁହିଁ ଗୃଳିଚ କାହିଁ ଯେ !!

—*—

# ଏଇ ଯେ ଟିକିଏ ହସ !

ଏଇ ଯେ ଟିକିଏ ହସ ତୁମ ଓଠ ତଳେ
କି ବିଦ୍ୟୁତ ବେଢ଼େ ମନେ ମୋର ସୃଷ୍ଟି କରେ !
କି ମଧୁ ସମ୍ପଦ ଏଥି ରହିଅଛି ଭରି
ମୋରେ ନିଏ ନିମିଷକେ ଆପଣାର କରି !
କେମନ୍ତେ ସେ ଜାଗିଉଠେ ସ୍ୱର୍ଣ୍ଣ ଓଠେ ତବ
ଫେନ କି ଅମୃତ ଶିଖ ନିତ୍ୟ ଅଭିନବ !
ଦୁଃଖର ଜୀବନେ ମୋର କେତେ କେତେ ଥର
ଭାଙ୍ଗି ପଡ଼ ନାଇଁ ମୁହିଁ ବ୍ୟଥିତ କାତର

ଚିରଅବସାଦ ଗ୍ରସ୍ତ ଦେହେ ମନେ ଭରି;
ମୋରେ ରଖିଅଛୁ ଯେଉଁ ଚିରମୁଗ୍ଧ କରି ।
ମୃତ ଓ ମୁମୂର୍ଷୁ ମୋର ଏଇ ଦେହେମନେ
ବୋଳିଦିଏ ସଞ୍ଜୀବନୀ, ଅମୃତ ସିଞ୍ଚନେ
ଠିଆହୁଏ ପୃଥିବୀରେ, ସିଂହ ଶିଶୁ ପରି;
କେତେ ଆଶା ଅଭିଳାଷ ଗୋଟି ଗୋଟି ଧରି !!

———

# ଯିବି କେଉଁଆଡ଼େ ?

କେତେ ପ୍ରରିଚୟ କେତେମଧୁ ଆଳାପନ,
ଆପଣାର କରି କେତେ ନେଉଁବାରକ୍ଷଣ,
ଗୁହାଁ ବସିବାର କେତେ ଉଷ୍ଣ ଅଶ୍ରୁ ଢାଳି,
ଡାକିବାର ପ୍ରିୟ ବୋଲି ବୁକୁତଳୁ ବାଡ଼ି—
ସୀମାହୀନ ମମତାର ପ୍ରାଣବୋଳା ମାୟା
ମନେ ମୋର ପଡ଼ିଗଲେ ଏ ସକଳ ଯାହା—
ଛାଡ଼ିରେ ଏ ପୃଥିବୀରୁ ଯିବି କେଉଁଆଡ଼େ ?
କାହିଁକି ବା ଯିବି ? କେଉଁ ସମ୍ପଦ ଆଶାରେ,
କା' ଓଠ ବଚନ ଏତେ ଲାଗିବ ଲୋ ମିଠା ?
କା' ଗୁହାଣୀ ଫିଟାଇବ ଅମୃତ କବାଟା
ଏ ମୋର ମରମ ତଳେ ? କାହା ସ୍ପର୍ଶଟିକି
ଲାଗିବଲେ ପ୍ରାଣୁବଳି ଅଧିକୁ ଅଧିକ ?
ବୁକୁକାଟି ରକ୍ତ କିଏ ଟୋପା ଟୋପା କରି
ଦେବ ଲୋ ମୁଁ ପଡ଼ିଥିଲେ ଜୀବନ୍ମୃତ ପରି ?

———

କୃଷ୍ଣଚନ୍ଦ୍ର

## ସେ' ଦିନ ଆସିଲ ଫେର !

ସେ'ଦିନ ଅସିଲ ଫେର ପ୍ରବାସ ଭୂବନେ
ଏଇ ହତଭାଗିନୀରେ ରଖିଥିବ ମନେ
କହିଥିଲ ତୁମେ ସଖି ! ବାରବାର କରି
ନେତ୍ରପ୍ରାନ୍ତୁ ଅଶ୍ରୁ ପୋଛୁ । ମୁଁ ଆଜ ତୁମ୍ଭରି
ସେ' ପଦିକ ବାଣୀ ଖାଲି ଯାଉଅଛୁ ଭଳି
ପାଛୁନି ପାରୁନି ସଖି ! ପାରୁନି ସମ୍ଭାଳି
ଅନନ୍ତ ସମୁଦ୍ର ପରି ତୁମରି ଅନ୍ତର
ସ୍ନେହ ମାୟା ମମତାରେ ତରଳ ଚଞ୍ଚଳ ।
ରଖିଚ ମୋ ପାଇଁ ତମେ । ନାଇଁ କରି ସ୍ମୃତି
ସୀମାହୀନ ବେଦନାରେ ଆଉଟି ପାଉଟି !
ଦୁର୍ବଳ ପାଗଳ କବି ତା'ର ପ୍ରତିଦାନ
କି ଅବା ପାରିଲା ଦେଇ; ଜୀବନ ତମାମ
କଟୁଛି ପାରନି କରି ମୁହିଁ ତୁମ୍ଭ ପାଇଁ
ତୁମେ ମୋରେ ଶରଦିନ ଚହିଚ ଅନାଇଁ !

———

## ଦୁଃଖିନୀଇଁ—

ଏଇ ମହା ପୃଥିବୀର କେଉଁ ଏକ କଣେ
ଫୁଟି ବିକଶିତ ତମେ ଅନନ୍ତ ସପନେ !
ମୁଁ ଦରିଦ୍ର କବିଜନ ତୁମରେ କିପାଇଁ
ଏତେ ଭଲ ପାଉଅଛୁ ଜାଣିପାରୁ ନାଇଁ !
ତାଳୁରୁ ତଳପା ଯାଏଁ ସମସ୍ତ ତୁମରି
ମତେ ଏତେ ଭଲଲାଗେ । ସମସ୍ତ ମୋହର—
ଦେହମନ ତୁମରେହିଁ କରି ସମର୍ପଣ
ସ୍ପୃହେଁ ମୁହିଁ ରଚିବାକୁ ଅନନ୍ତ ବନ୍ଧନ—

ତୁମ ଭୁଲେ, ଯେହ୍ନେ ଜନ୍ମଜନ୍ମାନ୍ତର ଧର
ନିଅ ମତେ, ଡାକ ମତେ ଆପଣାର କର,
ଆନନ୍ଦର ସୀମାହୀନ ପାରାବାରେ ମତେ
ଦିଅହେ ବୁଡାଇ ଏଇ ଧରାରେ ସଂଚତେ;
ସୀମାହୀନ ଆନନ୍ଦର ଏକ ବିନ୍ଦୁ ପିଇ
ଦୁଃଖ ନାହିଁ କଣ୍ଡେମାତ୍ର ରହେ ଏଥି ଜୀଇ ।



# ପ୍ରବାସ-ଯାତ୍ରା

ହେ ମୋର ତରୁଣୀ ବଧୂ ତୁମର ଅନ୍ତର
କେମନ୍ତେ ମୋହରି ପାଇଁ ହୁଏ କଲବଲ;
ସବୁ ମୁଁ ପାରୁଚ ଜାଣି ଗୋଟି ଗୋଟି କରି
ଯାଉଚ ପ୍ରବାସ ଭୂଇଁ । କୁଟୀର ଆଦରି
କେମନ୍ତେ ରହିବ ତମେ, ମସ୍ତିଷ୍କ ମୋହର
ପୀଡ଼ାଗ୍ରସ୍ତ, ମନ ପୁଣି ଦୁଃଖ ବିଷାଦର
ହୋଇଚ ଶିକାର ଏକ । ଏ ସକଳ ଜାଣି
ଅନ୍ତରେ କି ଘୋରକଷ୍ଟ ପାଉଚ କଲ୍ୟାଣି !
କେତେ ଯେ ଆଶଙ୍କା ଭୟ କୋମଳ ପରାଣେ
ଜାଗିଉଠେ ବାରବାର, ମୁଁ ସବୁ ଏମାନେ
ନାହିଁ ବୁଝି, ଅନ୍ଧପରି ଚାଲିଯାଏ ଦୂରେ
ତୁମେ ଖାଲି ଗୃହିଁ ରହ ବାଷ୍ପ-କଣ୍ଠେ ପୁରେ
ନେଇ ତାଳ ଅଶ୍ରୁ ବିନ୍ଦୁ । ହାଇରେ ଭୁବନ !
କେତେ ମର୍ମନ୍ତୁଦ ନୁହେ ପ୍ରାଣର ବନ୍ଧନ !!



## କାହ୍ନିଁ କି !

କାହିଁକି ଗୋ ଲୁହ ନେନେ ଗୃହଁ ରହ ମତେ ?
ମତେହିଁ ଯିବାକୁ ହେବ ବିଶ୍ବରାଜପଥେ
ସମସ୍ତ ବନ୍ଧନ ବାଧା ନଗଣି ନମାନି,
ସମସ୍ତର ଲାଗି ମୋର ଜୀବନ କଲ୍ୟାଣି !
ହୋଇଛି ନିର୍ମାଣ କେଉଁ ମହାସଷ୍ଟା କରେ,
ପୋଛ ଅଶ୍ରୁ ନେତ୍ରପ୍ରାନ୍ତୁ ଗୃହଁ ମତେ ଥରେ
ମୁହିଁ ମହା ଧରଣୀର ବିରାଟ ଜୀବନ
ହସ ସଖି ! ଆନନ୍ଦରେ ଅଧୀର ଉନ୍ମନ—
ହୋଇ ତମେ, କାହିଁ ଦୁଃଖ କର !
ହୁଏ ରୁଗ୍ଣ, ରୋଗ ଦୁଃଖ କଷ୍ଟ ନିରନ୍ତର
ଦିନ ଦିନ ଧରି ମୋରେ କରୁ କଲବଲ
ମୋ ଲାଗି ଟିକିଏ ଯେବେ ଫୁଟିବ ମଂଗଳ
ଧରଣୀର କେଉଁ ପ୍ରାନ୍ତେ, ଜଣକର ପାଇଁ,
ସାର୍ଥକ ଜୀବନ ମୋର ବିଚାରିବ ନାହିଁ ?

———

## ଅନ୍ୱେଷଣ

ମତେ ସତେ ଖୋଜୁଥିବ ଦରିଦ୍ର କୁଟୀରେ,
ମୋ ସପନ ଦେଖୁଥିବ କୋଟି ଅଶ୍ରୁନୀରେ,
ମୋ ଶୁଭ ମନାସୁଥିବ, ଦିନ ଦିନ ଧରି
ନିଜକୁ ପଚାରୁଥିବ, ନିଜେ କେତେ ଭଲି,
"କି ଭଳି ସେ ରହୁଥିବ ? ଦୂରପଥେ କାହିଁ
ଟିକିଏ ବାରତା ହେଲେ ପାଇଲିତ ନାହିଁ
ଦେହକି ଖରାପ ହେଲା ? ଅବା ଭୁଲିଗଲେ
ଅଥବା ଡ଼େରିରେ ଚିଠି ଦେଉଥିବେ ଘୋରେ

ଆଜକାଲ ପଢ଼ୁଥିବ । କିଛି ଜାଣିଲ ନା
ରହିଛ ଅନ୍ଧୁଣୀ ପର ମୁହଁ ଅଭାଗିନୀ;
ନ ଆସୁ ଉତ୍ତର କିଛି, ସାତ ସ୍ୱପ୍ନମାନେ
ରହେ ପଛେ । ପ୍ରିୟ ମୋର ଥିବେ ଯେଉଁ ଥାନେ
ଜୀବନରେ ରହିଥାନ୍ତୁ ନିଶ୍ଚିନ୍ତେ ସୋହାଗେ,
ଆଖିବୁଜି ମୁହଁ ନିଭିଯାଏ ତାଙ୍କ ଆଗେ ।"

———

## ସିଦ୍ଧବାଣୀ—

ହେ ମୋର ପ୍ରାଣର ପତ୍ନୀ ଅଶ୍ରୁ, ଛଳଛଳେ
ପତ୍ନୁରୁଛ କରପଦ୍ମ ରଖ ମୋର କରେ
ବାଷ୍ପରୁଦ୍ଧ-କଣ୍ଠେ ମତେ "ପ୍ରିୟତମ ମମ
ଦୁଃସ୍ଥ ଓ ଦୁର୍ବଳ ଏତେ ତୁମ ଦେହ ମନ
ଏଭଳରେ ଯାଉଅଛ ପ୍ରବାସ ଭୁବନ
ଦେହ ଯଦି କଣ ହୋଇଯାଏ କେଉଁ କ୍ଷଣେ
କି କରିବ କେମନ୍ତେ ମୁଁ ପାରିବ ସମ୍ଭାଳି
ଦେହ ବଳାବଳ ହେଲେ ଆସିବ ବାହାରି ।"
"ମନେରଖ ଆଗୋ ସଖୀ ଆଗେ ପତିବ୍ରତା !
ବିରାଟ ବିଶ୍ୱରେ ନାହିଁ କାହାର କ୍ଷମତା
—ରେଣୁମାନ, ତୁମରି ଏ ସୀମନ୍ତ ସିନ୍ଦୂର
ଜଳେ ଯା' ଜୀବନ୍ତ ହୋଇ, କରିଦେବ ଜୂର
ପୃଥିବୀର କବି ମୁହିଁ ସିଦ୍ଧ ମୋର ବାଣୀ
ଶ୍ରୀଯୁକ୍ତା ନିଶ୍ଚିତ ତୁମ୍ଭେ ଜାଣ ଗୋ କଲ୍ୟାଣି !

———

# ତେବେ କାହିଁ ରହିଲ !

ଶ୍ୟାମଳ ଶୋଭଶ୍ରୀ ତଳେ ଦରିଦ୍ର କୁଟୀରେ
ରହିଲ ଗୋ ପ୍ରିୟତମା କୋଟି ଅଶ୍ରୁନୀରେ—
ମୋରେ ତୁମେ ଖୋଜୁଥିବ କେତେ ଦିନ ରାତି,
ସୀମାହୀନ ବେଦନାରେ ଭରିଥିବ ଛାତି !
ଝିଅଟି ମୋ ଆଦରର ଦୂରେ ଶାଶୁଘରେ
ଦୁଃଖେ ଯେବେ ଝୁରୁଥିବ ଲୁହ କେବେ ଥରେ
ମୋରେ ଖାଳି କହୁଥିବ ନନା ଟିକେ କାହିଁ
ଦେଖିବାକୁ ମୋରେ ଲବେ ଆସିଲେତ ନାହିଁ !
ମହେନ୍ଦ୍ର ଶିଖରୀ ତଟେ ନିଃସଙ୍ଗ ଜୀବନେ
ମୁଁ ଏଥି ରହିଲି ଏକା, ଏସବୁ ସ୍ମରଣେ
ନେତ୍ରପ୍ରାନ୍ତୁ ଲୁହ ଢାଳେ । ରହିଲ କେ' କାହିଁ
ସଭିଏ ରହିଲେ ଖାଲି ସଭିଙ୍କି ଯେ ଚାହିଁ
ପଶ୍ଚନେତ୍ର ବହିଯାଏ କେତେ ଅଶ୍ରୁଝର
କା' ଲୁହ କେ ଦେଖିଲନି ବାଧେ ନିରନ୍ତର !

— — —

# ନୁହେ ଜଡ଼ିବାର—

ପଚାରିଲି ଦିନେ ମୁହିଁ ଖାଲି କୌତୁହଳେ
ଅଧର ଈଷତ ହାସେ, ଧରଣୀ ଉପରେ
ତୁମେ କାର ? ହଠାତ ମୁଁ ପାଇଲି ଉତ୍ତର
ସେ କାନ୍ତ ଲଳିତ ଓଠେ; "ମୁହିଁ ଯେ ତୁମର
ଚିରଦିନ ଚିରକାଳ ।" ସେ ଟିକିକ ବାଣୀ
ମୋର ଯେବେ ମନେପଡ଼େ କାହିଁକି କେଜାଣି
ଦରିଦ୍ର କୁଟୀରେ ବସି କେତେ କେତେ ଥର
ସ୍ମରିହୁଏ ସେ ବାଣୀର ପ୍ରତ୍ୟେକ ଅକ୍ଷର !

ପ୍ରାଣ ପାଶେ ପ୍ରାଣର ଯେ ପୂର୍ଣ୍ଣ ସମର୍ପଣ,
ହୃଦ ସହ ହୃଦର ଯେ ମୋହନ ବନ୍ଧନ,
ଏ ଡହୁଁ କ ମଧୁଣିମା କବା ଅଛୁ କାହିଁ
ଯେତେ ସ୍ମରୁଏ ସେତେ ମିଠା ଯାଏ ପାଇ ।
ତୁମେ ମୁହିଁ ମର ହେବା ପାଉଁଶ ଅଙ୍ଗାର
ଏ ଶିଖା ଟିକକ କନ୍ତୁ ନୁହେ ନାଭିବାର !!

---

# ଦୂର ଅତୀତର ଗୋଟିଏ ସ୍ମୃତି

ସେଇ ଗଛ ଗୁଳ ତଳେ ସେ ବଣ ପାହାଡ଼େ
ବୁଲବୁଲ ଆସେ ଯେବେ କେବେ ବାରେବାରେ
ଠିଆହୋଇ ନିମିଷକେ ସେ କୁଞ୍ଜ କାନନେ
ତୁମ କଥାଟିକ ସ୍ମରୁଏ ଏ ମରମେ !
କେଉଁଠି ରହିଲ ତମେ ମୋ ମରଣ ସାଥୀ
ମୋ ଗୁଣରେ ମିଶିଲାନ ଆଉ ତୁମ ଗୁଣ
ତୁମ ଓଠୁ ପଦେ ବାଣୀ ପ୍ରାଣ ବିମୋହନ,
ଶୁଣିବା ଜୀବନେ ମୋର ହେଲାକ ସପନ !
ଜୀବନ ସଂଗ୍ରାମେ ଯେବେ ନତଜାନୁ ହୋଇ
ପଡ଼ିଥିବ ନେତ୍ର ଲୁହ ଯାଉଥିବ ବୋହି
କନକ ଅଙ୍ଗୁଳି ଗୁଳ ନେତ୍ର ନୀରଧାରା
କଏ ପୋଛିଦେବ ବୁଝି ଜୀବନର ଜାଳା !
ସାଗର ଉଚ୍ଛ୍ୱାସ ପରି ଅନନ୍ତ ସେନେହ
କଏ ଗୋଳହୋଇଯିବ ମୋର ମନେଦେହେ ?

---

# ଛାଡ଼ିହୁଏ ?

ସମସ୍ତ ଅପେକ୍ଷା ପରେ ଆଉ କମ୍ପା ସ୍ବହେଁ ?
ଆଉ କମ୍ପା ତାହାପଛେ ଏତେବାର ଧାଏଁ ?
ଅ ଉ କମ୍ପା ଖୋଜିବୁଲେ ଥର ଥର କର ?
ଆଉ କମ୍ପା ଏତେ ମ ସ୍ୟା ଉଠଇ ସଞ୍ଚର
ତାହାପାଇଁ ? ମନୁ ସବୁ ପୋଛୁ ଏକବାର
ଗୃଳିବ ଆପଣା ବାଟେ ନୂତନ ସଂସାର
ସୃଜିବ ନୂତନ କର । କିନ୍ତୁ କାହିଁ ପାଇଁ
ଆଗକୁ ପଡ଼ୁ ନି ପାଦ, ଯେହ୍ନେ ତାହାଠାଇଁ
ରହିଚ ମୋ ବୁକୁତଳ ସମ୍ପଦ ସକଳ !
ତାରେ ନ ପାଇଲେ ଯେହ୍ନେ ସମସ୍ତ ବିଫଳ !
ମୋ ହୃଦୟ ପ୍ରତିତନ୍ତ୍ରୀ କରିଚ ଆଛନ୍ନ
ଏ ମାଟି ଉପରେ ଯେହ୍ନେ ତାର ଦେହମନ !
ଏତେ ଆପଣାର କର ଦେଖିବାର ପରେ
ଛାଡ଼ିଲେ କ ଛାଡ଼ିହୁଏ ଶତ ଜନ୍ମାନ୍ତରେ !

—o—

# ପରାଜିତର ଗୌରବ

ଯେଦିନ ପ୍ରଥମ କର ପୃଥିବୀ ଉପରେ,
ପ୍ରିୟା ବୋଲି ଡ଼ାକିଲଇଁ ସଖି ! ମୁଁ ତୁମ୍ଭରେ
ପ୍ରଥମ ଚୁମ୍ବନ ଆଙ୍କି ସ୍ୱର୍ଣ୍ଣ-ଗଣ୍ଡେ ତବ,
କହିଲଇଁ ତୁମଠହୁଁ ବଳି କେ ଗୌରବ—
ମୋର ଅଛୁ ସୃଷ୍ଟି ତଳେ ? ହତଭାଗା ଜୀବ,
ତୁମରେହିଁ ବଡ଼କର ଯାଏ ଅନୁଭବ !
କହିଥିଲି ପ୍ରିୟା ମୋର ! ଆଜି ମନେ ପଡ଼େ,
"ମୁଁ ଯଦି ବରାଟ ଏଡ଼େ ତୁମ ନୟନରେ,

ମୁଁ ଯଦି ସୁନ୍ଦର ଏତେ ତୁମେ ଅନୁଭବ,
ମୁଁ ଯଦି ତୁମର ବକ୍ଷ ଏକାନ୍ତ ଗୌରବ
ମୁଁ ଯଦି ତୁମର ପ୍ରାଣ ସର୍ବସ୍ୱ ହେ ପ୍ରିୟ,
ତୁମେ କମ୍ପା ହେଉଛ କା ? ମତେ କହିଦିଅ ।”
ମାନିଥିଲ ପରାଜୟ ଗର୍ଜରବ ଭରେ,
କହିଥିଲ ‘ମୁଁ ବରିଛି ତୁମ ସ୍ପର୍ଶ ବଳେ ।’

———

# ମାଟିର ମାୟା

ଯେ ଦିନ ବରଜ ଏଇ ପ୍ରିୟ ବସୁନ୍ଧରା
କେବଳ ଶୂନ୍ୟରେ ଦିନେ ଫିଟ ମୁଁ ସଞ୍ଚର,
ପ୍ରିୟଜନ ପରିଜନ ଅନ୍ତୀୟ ସୋଦର
କେ କାହିଁ ରହିବେ ଦୂରେ ! ପୃଥିବୀ ଆଦର
ପାଇ ମୁଁ ପାରିବିନାଇଁ ! ମୋର ପଥ ଘାଟ—
ପର୍ବତ ବନ ବିଲ ନଦୀ ଡୋଟା ପାଟ,
ଦିଗ୍‌ବଳୟ ତଟ ଶ୍ୟାମଘନ ଅରଣ୍ୟାନୀ,
ଶରତ, ବସନ୍ତ, ଗ୍ରୀଷ୍ମ ସନ୍ଧ୍ୟା ଦିବା ଯାମୀ,
ସବୁତ ରହିବ ଦୂରେ, ସବୁ ଛିନ୍ନ କରି
ଏ ମାଟିରୁ ବିଦାହେବ, ଅଶ୍ରୁ ଉଠେ ଭରି
ନେତ୍ରଯୁଗେ କାହିଁ ପାଇଁ ? କାହିଁପାଇଁ ମନ
ଏ ମାଟି ସହିତ ଲୋଡ଼େ ଶାଶ୍ୱତ ବନ୍ଧନ ?
ଯେ ମୋରେ ଯେବେଣ ଦେଶେ ନେଇଯାଉ କାହିଁ
ଏ ମାଟିର ମୁହିଁ ଏବେ ମାଟି ମୋହ ପାଇଁ !!

—*—

# ଟିପ୍ପଣୀ

## ଶେଷ ଶଯ୍ୟା

କବିଙ୍କ ଘରର ଗୋଟିଏ ମୁମୂର୍ଷୁ ବଳଦକୁ ଲକ୍ଷ୍ୟ କରାଯାଇଛି ।

## ଆଶ୍ରୟ ପ୍ରାର୍ଥିନୀ

ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ରେ ପୂର୍ବ-ବଙ୍ଗରୁ ଆସିଥିବା ଗୋଟିଏ ଉଦ୍ବାସ୍ତୁ ବାଳିକାର ଚିତ୍ରକୁ ଦେଖି···

## ମନୋରଥ

କବି ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନ ଛାଡ଼ିଆସିବା ପରେ ସେଠାର ପ୍ରଧାନକର୍ତ୍ତାଙ୍କ କଠୋର ବ୍ୟବହାରରେ ତାଙ୍କର ଶିକ୍ଷକ ବନ୍ଧୁମାନେ ଉତ୍ପୀଡ଼ିତ ହୋଇଥିଲେ ।

## ପ୍ରଣତ

ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନରେ କବିଙ୍କର ଜଣେ ଶିକ୍ଷକ ବନ୍ଧୁ ସେ ଅନୁଷ୍ଠାନର ପ୍ରଧାନ କର୍ତ୍ତାଙ୍କ ଅନ୍ୟାୟ ବ୍ୟବହାରର ତୀବ୍ର ପ୍ରତିବାଦ କରି ତାଙ୍କ କୁଦୃଷ୍ଟିରେ ପଡ଼ିଥିଲେ ।

## ଜାଣିନାଇଁ ପାରେ

କବି ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନ ଛାଡ଼ିଆସିବା ପରେ ସେଠାର ପ୍ରଧାନକର୍ତ୍ତାଙ୍କ କଠୋର ବ୍ୟବହାରରେ ତାଙ୍କର ଶିକ୍ଷକ ବନ୍ଧୁମାନେ ଉତ୍ପୀଡ଼ିତ ହୋଇଥିଲେ ।

## କ୍ୟାମ୍ପକୁଟୀର

ଗ୍ରାଣ୍ଟ ଅଞ୍ଚଳରେ କାମ୍ପ ଜାତିର ତେଲେଙ୍ଗା ଲୋକମାନେ ବାସ କରନ୍ତି ।

## ପ୍ରିୟ ପଣ୍ଡିତଜୀ

କବି ଝଲିକୋଟ ହାଇସ୍କୁଲ ଛାଡ଼ି ପାରିଲା ଝଅଳର ଗୁବଣ୍ଡି ସ୍କୁଲକୁ ଯିବାବେଳେ, ଝଲିକୋଟ ସ୍କୁଲର ପ୍ରଧାନ ପଣ୍ଡିତ ଶ୍ରୀ ଗୌରିଶଙ୍କର ଆଚାର୍ଯ୍ୟ କବିଙ୍କୁ ବ୍ରହ୍ମପୁର ବସ୍‌ଷ୍ଟାଣ୍ଡ ପାଖରେ ବିଦାୟ ଦେଇ ସାଶ୍ରୁଲୋଚନରେ ଫେରିଥିଲେ ।

### ବାହୁନେବ

କବି ଗୁବଣ୍ଡି ସ୍କୁଲରେ ରହିବାର କେତେଦିନ ପରେ ଝଲିକୋଟର ତାଙ୍କ ପ୍ରିୟ ଛାତ୍ରମାନଙ୍କୁ ବାଟରେ ଭେଟିଥିଲେ ।

### ସାଥିହରା

ଗୁବଣ୍ଡିରେ ଥିଲବେଳେ ଲେଖା—କବିଙ୍କ ବନ୍ଧୁ ପଣ୍ଡିତ ଗୌରିଶଙ୍କରଙ୍କୁ ଲକ୍ଷ୍ୟ କରାଯାଇଛି ।

### ତରୁଣ କବି ବିଶ୍ୱମ୍ଭରଙ୍କ ପ୍ରତି

ତରୁଣ କବି ବିଶ୍ୱମ୍ଭର ଗୁବଣ୍ଡି ସ୍କୁଲରେ କବିଙ୍କର ଜଣେ ସହକର୍ମୀ ଶିକ୍ଷକ ।

### ହେ ମୋର ଆଲମ !

ଆଲମ୍ କବିଙ୍କର ଜଣେ ପ୍ରିୟ ଶିଷ୍ୟ—ଗୁବଣ୍ଡିରେ ଥିଲବେଳେ କବିଙ୍କର ମାନସିକ ଓ ଶାରୀରିକ ଦୁର୍ବଳତା ଆସିଥିଲା ।

୦—

# ଉତ୍ସର୍ଗ

ପଣ୍ଡିତ ଗୌରୀଶଙ୍କର ଆଚାର୍ଯ୍ୟ
କାନ୍ତ କରେଷୁ

ଲେଖକ ।

# 'ରୂପାୟନ'ର ରୂପକାର କବି କୃଷ୍ଣଚନ୍ଦ୍ର !

'ରୂପାୟନ'ର ରୂପକାର କବି କୃଷ୍ଣଚନ୍ଦ୍ର ବିଧାଠୀ ଓଡ଼ିଶାର ପ୍ରବୀଣ ଓ ସୁନାମଧନ୍ୟ ବାଣୀପୁତ୍ରମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ସାଧନା ଦୀର୍ଘକାଳବ୍ୟାପୀ—ସିଦ୍ଧି ମଧ୍ୟ ପ୍ରଚୁର । 'ଆହୁତି'ର ଦେଶପ୍ରାଣ କବି କୃଷ୍ଣଚନ୍ଦ୍ର, 'ଅଗ୍ନିଶିଖା'ର ବିଦ୍ରୋହୀ କବି କୃଷ୍ଣଚନ୍ଦ୍ର ଏବଂ 'ଆତ୍ମଲିପି'ର ଦରଦୀ ଓ ମରମୀ କବି କୃଷ୍ଣଚନ୍ଦ୍ର ଓଡ଼ିଆ କାବ୍ୟପାଠକ ପ୍ରାଣରେ ଯେଉଁ ସ୍ୱତଃସ୍ଫୂର୍ତ୍ତ ଆବେଗ ଓ ମୂର୍ଚ୍ଛନା ସୃଷ୍ଟି କରିଛନ୍ତି ତାହା ଅକ୍ଷୟ ଏବଂ ଯେଉଁ ରେଖାପାତ କରିଛନ୍ତି ତାହା ଗଭୀର ଓ ଅମ୍ଳାନ । ଆଜି ସେଇ ପ୍ରବୀଣ ଓ ଅନୁଭୂତିପ୍ରବଣ କବି କୃଷ୍ଣଚନ୍ଦ୍ରଙ୍କର 'ରୂପାୟନ' ପୁଣି ଆତ୍ମପ୍ରକାଶ କରିବାକୁ ଯାଉଛି । କବିଙ୍କର ସସ୍ନେହ ଅନୁରୋଧ, ମୁଁ ଯେପରି ଏହି ଗ୍ରନ୍ଥର ମୁଖବନ୍ଧଟିଏ ଲେଖିଦିଏଁ । କିନ୍ତୁ ଅନୁଭୂତିରେ ଯେ ମୋଠୁଁ ପ୍ରବୀଣ ଓ ସାଧନା କ୍ଷେତ୍ରରେ ମଧ୍ୟ ଯେ ମୋର ଅଗ୍ରଜ, ତାଙ୍କର ରୂପାୟନର ରୂପସମ୍ଭାର କଳନା କରିବାକୁ ଯିବା ମୋ' ପକ୍ଷରେ ଧୃଷ୍ଟତା ବୋଲି ହୁଏତ ବିବେଚିତ ହୋଇପାରେ, ତଥାପି କବିଙ୍କର ଅନୁରୋଧକୁ ମୁଁ ଏକ ସ୍ନେହାଦେଶ ବୋଲି ଜ୍ଞାନକରି 'ରୂପାୟନ'ର ରୂପପ୍ରତି ଏକ ମୁଗ୍ଧ ଦୃଷ୍ଟି ଦେବାକୁ ଅକୁଣ୍ଠ ଭାବରେ ପ୍ରୟାସୀ ହୋଇଛି ମାତ୍ର ।

'ରୂପାୟନ'ର କବି କୃଷ୍ଣଚନ୍ଦ୍ର ବ୍ୟଥା, ବିଦ୍ରୋହ ଓ ଜୀବନ-ନିଷ୍ଠାର କବି । ଏକ ସ୍ୱଚ୍ଛ ଗିରିସ୍ରୋତ ଭଳି କବି ହୃଦୟର ଆବେଗ ଓ ଉଚ୍ଛ୍ୱାସ ପ୍ରତି କବିତା ମଧ୍ୟରେ କେତେବେଳେ ସମତଳ ଓ ଛନ୍ଦୋବଦ୍ଧ ଭାବରେ, କେତେବେଳେ ବା ସ୍ୱାଭାବିକ ଋଜୁତା ଓ ବକ୍ରତାକୁ ବହନ କରି ମୁକ୍ତଛନ୍ଦରେ ପ୍ରବାହିତ । ଆଧୁନିକ ପରୀକ୍ଷା ବା ପ୍ରୟୋଗବାଦୀ କବିମାନଙ୍କ ଭଳି ରୀତିସର୍ବସ୍ୱତା ବା ଆଙ୍ଗିକ ବୈଚିତ୍ର୍ୟକୁ କବି ନିଜ ସୃଷ୍ଟିରେ ପ୍ରଶ୍ରୟ ଦେଇନାହାନ୍ତି ଏବଂ ଅନୁଭୂତିକୁ ପ୍ରଜ୍ଞାର କଷଟିପଥରରେ ପରୀକ୍ଷିତ ଓ ରସାଣିତ କରିବାର ଜଟିଳ ଶିଳ୍ପଶ୍ରମକୁ କବି ସ୍ୱୀକାର କରିବାକୁ କୁଣ୍ଠିତ ହୋଇଛନ୍ତି । କିନ୍ତୁ ଯେଉଁ ସତ୍ୟ ଓ ମୁକ୍ତ ଶିଳ୍ପ-ଦୃଷ୍ଟି, ସ୍ୱଚ୍ଛ ଓ ସରଳ ଅଭିବ୍ୟକ୍ତି ଏବଂ ଆତ୍ମୀୟ ଓ ଆନ୍ତରିକ ନିଷ୍ଠା ସହଜାତ କବିପ୍ରତିଭାର ସହଚର ସେ ସମସ୍ତ ସ୍ରଷ୍ଟାସୁଲଭ ଗୁଣାବଳୀ, ରୂପାୟନର ରୂପସୃଷ୍ଟିରେ ପରିଲକ୍ଷିତ । ଆମ୍ଭର ଆବେଗଧର୍ମୀ

ସୁନ୍ଦର ଉଚ୍ଚାରଣ ହିଁ କବିତା । କବିର ସ୍ୱର ସାଧାରଣର ହୃଦୟକୁ ତେଣୁ କରେ ସ୍ପନ୍ଦିତ ଓ ରସସିକ୍ତ । ଏ ଦୃଷ୍ଟିରୁ କବି କୃଷ୍ଣଚନ୍ଦ୍ର ଜଣେ ନିପୁଣ ସ୍ରଷ୍ଟା ଭାବରେ ଯଥାର୍ଥ 'କବି'-ଗୌରବର ଅଧିକାରୀ ।

ସମସ୍ତ ଦରଦ ଓ ଆଘାତକୁ ଆତ୍ମୀୟକର ଏବଂ 'ସବୁ ଗରଳରୁ ଅତି ଉତ୍କଟତର ମଣିଷ ଗରଳ'କୁ ପାନକରି କବି କୃଷ୍ଣଚନ୍ଦ୍ର ଅମୃତ ମନ୍ତ୍ରର ସାଧକ ଓ କାବ୍ୟ-ଶତଦଳର ସ୍ରଷ୍ଟା ।

ସଂଗ୍ରାମ ଖାଲି ସଂଗ୍ରାମ କରି କରି
କ୍ଷତବିକ୍ଷତ କରି ଏହି ଦେହମନ
ପ୍ରାଣର ବଂଶୀ ବଜାଇବା ପାଇଁ ହେବ
ଦେଖି ଏ ଦୁନିଆ କରି ଯେତେ ହୀନତମ ।

ଅଶ୍ରୁଳ ଓ ଅଭିଶପ୍ତ ଜୀବନରେ ଏହା ହିଁ ସ୍ରଷ୍ଟାର ଆତ୍ମବାଣୀ ଓ ଜୀବନାଦର୍ଶ । ସ୍ମୃତି ସଂବଳୀ କବି ପ୍ରାଣର ଉତ୍ତାପ ଓ ଦହନ ଭିତରେ ଏଇ ଜୀବନଜିଜ୍ଞାସାର ଯେପରି ସାଧକ; ହୃଦୟଜଡ଼ିତ ସହସ୍ର ସୁଖଦୁଃଖର ବିମୋହନ ମୂର୍ତ୍ତିର କବି ଯେପରି ସଂଧାନୀ ଓ ରୂପକାର । ଏଇ ଜୀବନ-ଜିଜ୍ଞାସା ଓ ବ୍ୟଥାସିକ୍ତ ମରମୀପ୍ରାଣର ପରିଚୟ 'ସ୍ମୃତି,' 'ଗ୍ରାମ୍ୟାର ପ୍ରେମ', 'ରାଣୀର ଅଭିଶାପ', ପାହାଡ଼ୀ ବାଳିକା' ଓ 'ଖୋଜୁଥିବି' ପ୍ରଭୃତି କବିତାଗୁଡ଼ିକରେ ଅତି ପ୍ରାଞ୍ଜଳ ଭାବରେ ଲିପିବଦ୍ଧ ।

ହସ ତୁମେ ହସ ହସ ଆହୁରି, ଆହୁରି ହସ
ନାଚଉଠ ଦେହମନ ଅମୃତ ବର୍ଷାରେ
ଯେଉଁଠି ଆନନ୍ଦ ନାହିଁ, ସେଇଠି ଜୀବନ କାହିଁ ?
ଜାନୁପାତି ମାଗେ ଆଜ ଜୀବନର ସେଇ ରସ ଟିକିକ
କୁଣ୍ଠିତ ହେବନାହିଁ ଦବାରେ ।

ଜୀବନର ପବିତ୍ରତମ ଆଶୀର୍ବାଦ ପ୍ରାଣୋଚ୍ଛଳ ଝରସ୍ପର୍ଶ ହାସ୍ୟର ଏକ ରଶ୍ମିରେଖା ପାଇଁ କବିପ୍ରାଣ କିପରି ବ୍ୟାକୁଳ ଏବଂ ଅଶ୍ରୁ-ଅଭି-ଶାପଭରା ଏଇ ଧରଣୀରେ ତାର ବିକାଶ ପାଇ ସ୍ରଷ୍ଟାର ମନ କିପରି ଅଧୀର, ଉପରୋକ୍ତ ପଙ୍‌କ୍ତି ସମୂହହିଁ ତାର ପ୍ରମାଣିକ ସାକ୍ଷୀ ।

ଏହି ଜୀବନଜିଜ୍ଞାସା ଅନ୍ୟ ଦିଗରେ କବି କୃଷ୍ଣଚନ୍ଦ୍ରଙ୍କୁ କରିଇଛି ସମାଜ ଚେତନ ଓ ସଂଗ୍ରାମ ଧର୍ମୀ । ଜୀବନ ପ୍ରତି ଅନ୍ୟାନ୍ୟ ସାଧାରଣ ସହାନୁଭୂତି ଓ ସଂବେଦନଶୀଳତା ଥିବାରୁ ହିଁ ଘନା ସ୍ୱାଇଁ ଓ ମୁଷ୍ଟା-ହାଡ଼ର ସୁଖଦୁଃଖ କବି ପ୍ରାଣରେ ବଙ୍କୃତ ହୋଇ ନେଉଛି ଅଭିବ୍ୟକ୍ତି; ସରୋଜ ବାଳାର ଅଶ୍ରୁ, ହେମ ପ୍ରାଣର ରୁଦ୍ଧ ବାସନାର ବିଳାପ ଓ ନେତର ଛିନ୍ନ ବିଣାର ରାଗିଣୀ ସେଇ ଏକଇ କାରଣରୁ କବି ମନରେ ତୋଳିଛନ୍ତି କାରୁଣ୍ୟର ଝଡ ଓ ତାଳୀରେ ନେଉଛନ୍ତି କାନ୍ତ ପରିପ୍ରକାଶ । ଦାରିଦ୍ର୍ୟର ଅଭିଶାପ ଓ ଶୋଷକର ନିଷ୍ଠୁରରେ ବ୍ୟଥିତ ହୋଇ

କବିର ସମାଜ ଚେତନ ମନ କେବଳ ଅଶ୍ରୁପାତ ମାରଫତରେ କରିନାହିଁ, ବହୁ କ୍ଷେତ୍ରରେ ବିଦ୍ରୋହୀ ମଧ୍ୟ ହୋଇଉଠିଛି ।

ହାଇରେ ହାଇରେ ହାକିମି ମିଞ୍ଜା'ସ
ଏ ମାଟି ଉପରେ ସବୁ ସଇତାନି ମୂଳ !—'ନରପାଳ'କୁ

ଲକ୍ଷ୍ୟ କରି ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଶୋଷକ ଗୋଷ୍ଠୀ ପ୍ରତି ଏକ ନିଷ୍ଠୁର ଓ ନିର୍ମମ ଚେତାବନୀ ।

'ମଣିଷ ମାରି ଯେ ମଣିଷ ହୋଇଚି
ବଞ୍ଚି ରହିଛୁ ଶତ ସୁଖ ସନମାନେ
ଆପେ ଆପେ ସିଏ ଜଳପୋଡ଼ି ଧନେ
ହୋଇଯିବ ଚୂରମାର !
ସାମାନ୍ୟ ନୁହେଁ ସାମାନ୍ୟ ନୁହେଁ
ନିଃସ୍ୱ ଆଖିର ଉଷ୍ମ ଲୋତକ ଧାର ।'

ଶୋଷକ ଗୋଷ୍ଠୀ ତାର ଆତ୍ମିକ ପାପରେ କ୍ରମଶଃ କ୍ଷୟ ଓ ଧ୍ୱଂସ ଆଡ଼କୁ ଗତିକରିବ—ଏ ଦୃଢ଼ ବିଶ୍ୱାସ କବିଙ୍କର ରହିଛି । କବିଙ୍କ ଚକ୍ଷୁରେ—

ଜୀବନର ଶିଖା ଫୁଟାଇ ଫୁଟାଇ,
ଅମୃତଧାରା ଛୁଟାଇ ଛୁଟାଇ
ଖେଳିବାକୁ ଏଇ ମହାଧରଣୀରେ
ଯାରେ ନାଇଁ ଲାଗେ ଭଲ,
ସେ ଜୀବନ ଗୋଟେ ଜୀବନ ବୋଲି ମୁଁ
ସ୍ୱୀକାର କଲେ
ରସନା ମୋହର ହେବ ପଙ୍କିଳତର ।

ତେଣୁ ଦରିଦ୍ର ଓ ପରିଶ୍ରମୀ ଜନତାକୁ ତାର ନ୍ୟାଯ୍ୟ ପ୍ରାପ୍ୟ ଦେବା ପାଇଁ ଶୋଷକ ଓ ଅତ୍ୟାଚାରୀ ଗୋଷ୍ଠୀକୁ ସଚେତନ କରି କାବ୍ୟ ନିର୍ଦ୍ଦେଶ କରି ଦେଇଛନ୍ତି—

ହେ ଜଗତ ! ଏମାନଙ୍କୁ ଦିଅ ଭୁରି ବିପୁଳ ସମ୍ମାନ
ଏମାନଙ୍କ ପାଇଁ ସିନା ପୃଥିବୀରେ ସୁନାର ଫସଲ
ଏମାନଙ୍କ ପାଇଁ ସିନା ପୃଥିବୀର କଣ୍ଠେ ଜାଗେ ଗାନ !

ପୁଣି 'ଅସମାପ୍ତ', 'ଜୀବନ-ନିର୍ଝର' ଓ 'ଜୀବନ୍ତ ବିପ୍ଳବ ତୁମେ' ପ୍ରଭୃତି କେତୋଟି କବିତାରେ କବି-ପ୍ରାଣର ମାଟିପ୍ରୀତି,ଜାତିପ୍ରୀତି ଓ ଦେଶପ୍ରାଣତା ଅତି ମନୋଜ୍ଞ ଭାବରେ ଆତ୍ମପ୍ରକାଶ କରିଛି । ଯେଉଁ ବୀର ସନ୍ତାନଗଣ ଦେଶ ଓ ଜାତି ପାଇଁ ଅକାତରରେ ଜୀବନୋତ୍ସର୍ଗ କରିଛନ୍ତି ଏବଂ ନିଜର ମୃତ୍ୟୁ ଦ୍ୱାରା ମରଣକୁ ମହିମାନ୍ୱିତ ଓ ଅମୃତମୟ କରିପାଇଛନ୍ତି, ସେଇମାନଙ୍କ ଉଦ୍ଦେଶ୍ୟରେ ଏ କବିତାବଳୀ ଶିଳ୍ପୀ-ପ୍ରାଣର ପ୍ରଶସ୍ତି । ଦେଶପ୍ରାଣ,

ଜାତିପ୍ରାଣ କବି ଗୋଦାବରୀଶଙ୍କ ପ୍ରତି ଉଦ୍ଦିଷ୍ଟ ‚ଜୀବନ-ନିର୍ଝରର’ କବିତାଟି ଏ ଦିଗରୁ ଏକ ସାର୍ଥକ ଶିଳ୍ପ ସୃଷ୍ଟି ।

ରୂପାୟନର ରୂପକାର କବି କୃଷ୍ଣଚନ୍ଦ୍ର ମୂଳତଃ ଜୀବନପ୍ରେମୀ ଓ ମାନବବାଦୀ ଶିଳ୍ପୀ ଏବଂ ଯେ କୌଣସି ସର୍ବୋତ୍କୃଷ୍ଟ ଶିଳ୍ପୀ ଭଳି ନିଜର ସୃଷ୍ଟି ପ୍ରତି ଏକାନ୍ତ ବିଶ୍ୱସ୍ତ ରହି ଜୀବନର ସପକ୍ଷରେ ଓ ମୃତ୍ୟୁର ବିପକ୍ଷରେ ସେ ସର୍ବଦା ସଂଗ୍ରାମ କରିଆସିଛନ୍ତି । ତାଙ୍କର କାବ୍ୟସ୍ୱର ରାଜହଂସର କଳକଣ୍ଠର ମୂର୍ଚ୍ଛନା ଭଳି ସୁଲଳିତ ଓ ସୁଦୂର-ପ୍ରସାରୀ ଏବଂ ସେ ଯେପରି ଜୀବନର ସୁଖ-ଦୁଃଖ-ସ୍ପୃଷ୍ଟ ଲୀଳାଚଞ୍ଚଳ ମୁହୂର୍ତ୍ତଗୁଡ଼ିକର ଅମୃତ ରୂପକାର ଏକ ସ୍ୱାଧୀନ ସ୍ୱର୍ଣ୍ଣ । ନିଜର ଜୀବନବୋଧ ଓ ଶିଳ୍ପ ବିଶ୍ୱାସର ପରିଚୟ ଦେଇ ଅସଂଖ୍ୟ ରୂପସୃଷ୍ଟି ମଧ୍ୟରେ James Joyce ଙ୍କ ଭାଷାରେ କବି ଯେପରି ଘୋଷଣା କରିବାକୁ ଚାହାଁନ୍ତି, ‘Welcome, O Life ! I go to encounter for the millionth time the reality of experience and to forge in the smithy of my soul the uncreated conscience of my race’’. କିନ୍ତୁ ରୂପକଳ୍ପର ପ୍ରୟୋଗ ଓ ଐନ୍ଦ୍ରଜାଲିକ ବ୍ୟଞ୍ଜନା ସୃଷ୍ଟି ଯାହାକି ଅଭିବ୍ୟକ୍ତିକୁ ଅଧିକତର ରସାଣିତ, ଇଂଗିତଧର୍ମୀ ଓ ଋଦ୍ଧିମନ୍ତ କରିଥାନ୍ତା, ତାହାର ଅଭାବ କବି କୃଷ୍ଣଚନ୍ଦ୍ରଙ୍କ କବିତାବଳୀରେ ପାଠକ ଅନେକ ସମୟରେ ଲକ୍ଷ୍ୟ କରିଥାଏ । ଭାଷାର ସୃଜନଶୀଳ କ୍ଷମତା ପ୍ରତି କବିପ୍ରାଣରେ ସଚେତନତା ବୃଦ୍ଧି ପାଇବା ସଙ୍ଗେ କବିଙ୍କର କବିତାବଳୀରେ ପରିପକ୍ୱତାର ସ୍ୱାକ୍ଷର ଯେ ଅଧିକ ବଳିଷ୍ଠ ହୋଇ ପ୍ରତିଭାର ଦୀପ୍ତିକୁ ଅଧିକତର ଯାଦୁକରୀ ଓ ଉଜ୍ଜ୍ୱଳ କରିବ, ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ମୁଁ ଅନ୍ତତଃ ଗଭୀର ଆଶାବାଦୀ; କାରଣ ଜୀବନର ମଧ୍ୟାହ୍ନରେ ବି କବି କୃଷ୍ଣଚନ୍ଦ୍ରଙ୍କ ପ୍ରାଣରେ ଆଜି ରହିଛି ଯୁବ-ସାଧକ-ସୁଲଭ ଉଦ୍ଦାମତା ଓ ବିଶ୍ୱକୁ ଆତ୍ମୀୟ କରିବା ଆକାଙ୍କ୍ଷାର ଉଚ୍ଛ୍ୱସିତ ଅଶ୍ରୁଲହରୀ; ଚକ୍ଷୁରେ ସ୍ୱପ୍ନାଞ୍ଜନ ମାଖି ଏବଂ ସରଳ ଶିଶୁ-ସୁଲଭ ସଷ୍ଟାର ଏକ ଉଦାର ହୃଦୟ ଧରି ଏଇ ଧୂସର ଧରିତ୍ରୀରେ କବି ଆଜି ମଧ୍ୟ ରୂପାୟନର ପଥିକ ଓ ଜୀବନରାଗିଣୀର ସ୍ରଷ୍ଟା ।

ଶ୍ରୀ ଚିନ୍ତାମଣି ବେହେରା
ସମ୍ବଲପୁର
ତା ୨୦-୧-୫୯

# କିଏ କେଉଁଠି ଅଛନ୍ତି

ଜୀବନର କେତେ କେତେ ପରିଚିତ ସାଥି
ଏବେ କିଏ କେଉଁଠି ଅଛନ୍ତି !
ସୁଦୂର ବିଦେଶେ କିଏ କରୁଛି ଗୃହକଷ୍ଟ
କିଏ ଗୃହବାସ କରି ଧନ ତାର ନେଉଅଛି ହରି !
ଅଭାବ ଓ ଅନାହାରେ କିଏ କାହିଁ କାଟୁଅଛି କାଳ ।
ଛଟପଟ ହେଉଛନ୍ତି ପାଞ୍ଚ ପ୍ରାଣୀ ତା'ର ପରିବାର !
ହସି ଖେଳି କିଏ କାହିଁ ବିଭବରେ ରହିଅଛି କରି ଘରଦ୍ୱାର
କିଏ କାହିଁ କରୁଛି ନେତୃତ୍ୱ,
ଦେଶ ପାଇଁ ଜାତି ପାଇଁ
କିଏ କାହିଁ ଦେଇ ଆତ୍ମବଳି,
ହୋଇ ଅଛି ଏ ମାଟିର ଗୌରବ ସମ୍ଭାର !

ବ୍ୟର୍ଥତାର ସୀମାହୀନ ପାରାବାରେ
କିଏ କାହିଁ ଯାଇଅଛି ବୁଡ଼ି !
ପାଉନାହିଁ କୂଳ କି କିନାରା
ଅବସାଦ ଗ୍ରସ୍ତ, ରହିଛି ତା' ଦେହମନ ପୂରି !
କାହାଘରେ କଣ୍ଠା ହୋଇଅଛି ଛଟା
ଉଡ଼େହ କାର ଉଠିଚି ଦୁଦୁରା,
କି ଏଥି ଘର କରି ରହିଥିଲା,
ନାଆଁ ତା'ର ଜଣାନାହିଁ ପୂରା,

କାହାର ବୈଭବ ଥିଲା ସମସ୍ତ ଯାଇଚି ଉଡ଼ି
ପଥର ଭିକାରୀ ହୋଇ ବୁଲୁଅଛୁ
ନ ଘରର ନ ଘାଟର ହୋଇ
ଗୃହ ତାର ଦିଶୁଅଛୁ ଶ୍ମଶାନର ପ୍ରାୟ !

କାହା ଭୁଲେ ଦେଖାହୁଏ
ଘଟେ ଘାଟେ କେତେ କେତେ ବେଳେ,
କାହା ସ୍ମୃତି ଜାଗିଉଠେ ବୁକୁତଳେ
ରୂପ ତାର, ବାଣୀ ତାର
ଦିଶି ଦିଶି ଯାଏ ନେତ୍ରତୋଳେ;
କାହା ଭୁଲେ ହସ ଖେଳ
କାହା ଭୁଲେ ଭୁମୁଳ ବିଦ୍ରୋହ,
କାହା ଭୁଲେ ବୁଲିବାର ବିଲ ପଦା ବନେ,
କାହା ଭୁଲେ ବସି ଲେଖିବାର ମୋହନ କବିତା
ଗୋଟି ଗୋଟି ହୋଇ ସବୁ ପଡ଼ିଯାଏ ମନେ !

କିଏ ସେ ବଞ୍ଚିଚି କିଏ ଅବା ନାହିଁ,
ଆମେ ସବୁ ଗୋଟିଏ ସୂତ୍ରରେ ବନ୍ଧା କେତେଦିନ ପାଇଁ !
ଆମେ ସବୁ ପରସ୍ପରେ କରିଚୁ ସାହାଯ୍ୟ,
ପରସ୍ପରେ କରିଅଛୁ କେତେ ଆପଣାର,
କେତେ ଦିନ କେତେ ରାତି
କେତେ ସନ୍ଧ୍ୟା କେତେ ଉଷା ଶରତ ବସନ୍ତ,
କାଟିଚୁ କେଉଁଠି ଆମେ
ପରସ୍ପରେ ବନ୍ଧା ହୋଇ କେତେ କେତେବାର !

ଏଇ କ୍ଷୁଦ୍ର ଜୀବନର
କେତେ କାହା ଭୁଲେ ପରିଚୟ ମଧୁ ଆଳାପନ !
କେତେ କେତେ ନିବିଡ଼ ବନ୍ଧନ !
କେତେ ସ୍ମୃତି କେତେ ମାୟା
କେତେ ଆଶା ଆକାଂକ୍ଷାର ଢେଉ
କେମନ୍ତେ ରଖିଚି ମୋତେ
ସଜୀବ ସୁନ୍ଦର କରି
ନିଖିଳ ଏ ବସୁନ୍ଧରା ପରେ !
ଏ ଯେ ମାଟି ମୋର

ଏ ସବୁ ସମ୍ପଦ ଧନ,
ସୀମାହୀନ ଅଶ୍ରୁ ହାସ୍ୟ ମେଳେ
ମୋରେ କେଡ଼େ ଆପଣାର କରେ !!
କା'ପାଇଁ ମୁଁ ଏଥି ଲୁବ୍ଧ ତାଳେ
କା ପାଇଁ ମୁଁ ହୁଏ ଉଲ୍ଲସିତ,
କା ପାଇଁ ମୁଁ ଗର୍ବ ଆଉ ଗଉରବ
ଏଥି ନିତ କରେ ଅନୁଭବ,
କା ପାଇଁ ମୁଁ ହସି ଉଠେ
କା ପାଇଁ ମୁଁ ଦେଖେ ଏଥି ବିରାଟ ବିପ୍ଲବ !
ମୋର ଏଥି କେତେ ପ୍ରିୟ
ମୋର ଏଥି କେତେ ସାଥି
କା ପାଇଁ ମୁଁ ଚିରଦିନ
ରଖିଅଛୁ ପାତି ମୋର ଗ୍ରୀବା ।
ମୋର ଏ ଜୀବନ
ବିରାଟ ସମୁଦ୍ର ପରି,
ସୀମାହୀନ ଊର୍ମି ଦୋଳ
ଖେଳ ଉଠେ ମହା ସୃଷ୍ଟି ଖିରେ
ଏ ମାଟିର କେଉଁପାରେ
ମୋର କ ସାଇଜ ଅଛୁ
ଜାଣିବାକୁ ଲୋଡ଼େ ନାଇଁ ତିଳେ ।
କେତେ ବନ୍ଧୁ କେତେ ପରିଚୟ
ଚିରଦିନ ଅବ୍ୟୟ ଅକ୍ଷୟ
ଯିଏ ଯହିଁ ଥାଆନ୍ତୁ ବା ରହି
ବୁକୁ ତଳେ ଅଛୁ ମୁହିଁ ସବୁରିଙ୍କି ବହି !
ମୋ ଜୀବନ ଅସରନ୍ତି ଆନନ୍ଦ ନିର୍ଝର
ସେଇ ସଖା ସେଇ ବନ୍ଧୁ ଆତ୍ମୀୟ ସୋଦର
ମୁଁ ସେମାନଙ୍କୁ ଚିରଦିନ ଲୋଡ଼େ
ଚିରଦିନ ଝୁରେ
ଓଃ ଏ ଜୀବନ କେଡ଼େ ରୁକ୍ଷ ପାଣହୀନ ?
ଗୋଟିଏ ନିମେଷ ଯେବେ ସେମାନଙ୍କୁ ଭୁଲେ !.
ଜୀବନର ପରିଚିତ କେତେ ସାଥି,
ଏବେ କିଏ କେଉଁଠି ଅଛନ୍ତି !!!

— — —

# ମୂଷାହାଡ଼

—୧—

ମୂଷାହାଡ଼ ! ମୂଷାହାଡ଼ !!
ଖଲ୍ଲିକୋଟର ରାଜବଗିଚ୍ଛରେ ରହିଅଛୁ ହୋଇ ମାଳୀ !
ସକାଳୁ ସଞ୍ଜ ଯାଏ ସେ କରଇ କାମ
ତା' କାମର କଏ ଦେବ ଅବା ପ୍ରତିଦାନ ?
ମାସକୁ ପାଉଚି ଟଙ୍କା ଛଅଟି ସବୁଚଳ ଯାଏ ଉଡ଼ି,
ଦୁଇଟି ଘରଜା, ଛଅ ଗୁଟି ପିଲା,
ଅଣ୍ଟେ ନାହିଁ ତ ଅଣ୍ଟେ ନାହିଁରେ
ଋଣ କରଜରେ ରହିଚି ନିସ୍ବତ ବୁଡ଼ି !

ବଗିଚ୍ଛ ଭିତରେ ଶ୍ରେଷ୍ଠ ବୁଡ଼ିଆରେ,
ପିଲାଝିଲଙ୍କୁ ଦେଖିଦେଲେ ବାରେ,
କଏସେ ହସୁଚି କଏସେ ଖେଳୁଚି
କଏସେ କରୁଚି ଅଳି
ଅନ୍ତରେ ତା'ର ଆନନ୍ଦ ଉଠେ ଭରି,
କାହାକୁ କାଖାଏ, କାହାକୁ କୋଳାଏ,
କାହା ହାତେ ଦଏ ଗୋଟିଏ ପାଚିଲା ଜାମୁଁ,
ଜହ୍ନ ରାତିରେ କାହାକୁ ଦେଖାଏ ଆକାଶେ ଜହ୍ନମାମୁଁ ।

ତା'ର ହାତ ଗଢ଼ା ବଗିଚ୍ଛ ଭିତରେ
ଏ ପାଖ ସେ ପାଖେ ବୁଲି ବା ଆସିବ ଯିଏ,
ନିଶ୍ଚେ କହିବ ନନ୍ଦନବନ ଗଢ଼ିଅଛୁ ଏଥି କଏ !
କେଉଁଠି ଦେଖିବ ମଲ୍ଲୀ ଗୋଲାପ
କେଉଁଠି ଦେଖିବ ଜାଇ ଯୂଇ ଧାଡ଼ି ଧାଡ଼ି
ଗନ୍ଧେ ଗନ୍ଧେ ସାରା ଉଦ୍ୟାନ ମହକ ପଡ଼ୁଚି ଖାଲି !
କେଉଁଠ ପାଚିଛୁ ଟହ ଟହ ଫଳ
ଝରି ପଡ଼ୁଚି ବା ତଳେ
ସବୁଜ ଘାସର ଗାଲିଚ୍ଛ ଉପରେ
ପୁଷ୍ପ କେଉଁଠି ଝରେ !

ବନସାର ତୁମେ ଯେତେବେଳେ ଦେଖ
ମୃଷାହାଡ଼ ମୃଷାହାଡ଼ !!
କେତେବେଳେ ଅବା ପାଣି ଡେଣ୍ଟୁଚ
କେତେବେଳେ କେଉଁ ଗଛ ଲଗାଉଚ
ବର୍ଷିନ ଜମାରୁ ବର୍ଷିନ ଜମାରୁ
କାମ ନାଇଁ କର ଖାଲି !
ସାଧକ ପରାଏ, କର୍ମୀ ପରାଏ କାମ ଖାଲି କର କର,
ଦେଖିବ, ତାହାର ମୁଖ ମଣ୍ଡଳେ
ଆନନ୍ଦ ହାସ ରହିଚ ନିପୁତ ଭର !

ସେଇ ବଗିଚାର କର୍ମ-କର୍ତ୍ତା ଆସିଲେ ନୂତନ ଜଣେ
ନମ୍ବରର ପ୍ରଭ ଲାଲ୍ ଗୃହାଣୀରେ
ପାଷାଣ ଚମକ ଉଠିବ ବା ପ୍ରତିକ୍ଷଣେ !
ପଞ୍ଚ ବାକ୍ୟରେ ଶଳା ବଦମାସ
ରଚଚ ତାଙ୍କ ପାଟିରେ ଉଆସ,
ଯାହାକୁ ଦେଖିଲେ ତାକୁ ସନ୍ଦେହ
ଯାହାକୁ ଦେଖିଲେ ଡାକୋଇ କହନ୍ତେ
'ତୁ ନୋହୁ କାମିକା ଲୋକ
ତୋହର ନାଆଁରେ ଉପରକୁ ମୁହିଁ
ଲେଖିଦେବି ରୋକ ଠୋକ,
ଗୃହକରୁ ତୁହି ବାହାର ପଡ଼ିବୁ ବାରେ
ଜାଣିଚ୍ ମୋ ନାଆଁ ନରପାଳ ମୁଁ—
କେତେ ଯେ କାହାକୁ ପିଆଇଚ ପାଣି
ଏ ମୋର କଲମ ଗାରେ !

ମୃଷାହାଡ଼ ଠାରୁ ଆରମ୍ଭ କରି
ଯେତେକ କର୍ମଚାରୀ
ପ୍ରମାଦ ଗଣିଲେ ଭାରି !
ବନକେ ଗୃହଳି ଦଣ୍ଡବତ ସେ
ନ ଦେଲା ତାଙ୍କୁ କଏ,
ଗୃହଗଲା ବେଳେ ନୂତନ ହାକମ୍
ପଛରେ ତାଙ୍କ ଖୋସାମତ କରି
ଅଧବାଟ ଯାଏ ନଗଲା ନଗଲା ପିଏ,

ତାଙ୍କ ଆଦେଶ ଭଲ ବା ମନ୍ଦ, ସାର ବା ଅସାର,
ପ୍ରତିବାଦ ଯିଏ କଲା,
ତାଙ୍କରି ଆଗେ ଟପ ଟପ ଯୋତା ମାଡ଼
ଯିଏ ବା ପଳାଇ ଗଲା,
ସେ ହେଲା ତାଙ୍କ ଚରମ ଶତ୍ରୁ
ସେ ହେଲା ଚକ୍ଷୁଶୂଳ
ହାଇରେ ହାଇରେ ହାକିମି ମିଜାସ
ଏ ମାଟି ଉପରେ ସବୁ ସଇତାନି ମୂଳ !

ନୂତନ ହାକିମ ଟେକ୍ରଟଷ୍ଟୁ
ମୂଷାହାଡ଼ ପରେ ପଡ଼ିଲା ପ୍ରଥମ କଣ ।
ଆଣ୍ଠି କରି ସେ ଲେଖିଲେ କଲମ ମୁନେ
'ଏ ଲୋକଟା କିଛି କାମ କରୁନାହିଁ
ବର୍ଗରୁ ଭିତରେ ନବାବ ପରିଏ
ରହୁଚି, କେବଳ ଦାଇଟା ମାଇପ ଧରି,
ଏହାକୁ ବାହାର କର ।
ନୂତନ ଲୋକ ମୁଁ ଠିକ କରିଚି,
କାମ ସେ କରିବ ଏହାଠୁ ଦ୍ୱିଗୁଣତର !'

ପନ୍ଦର ଦିନପରେ
ଆଦେଶ ଆସିଲା—
"ମୂଷାହାଡ଼ଟାକୁ ଅନ୍ତର କର!
ଆଉ ଲୋକ ତୁମେ ରଖି ଦେଇ ପାର
ଆପଣା ଇଚ୍ଛାବଳେ ।"

ମୂଷାହାଡ଼ ଆଗେ ଆଦେଶ ପତ୍ର ପଢ଼ି
ନୂତନ ହାକିମ ଦାନ୍ତକୁ କଡ଼ମଡ଼
ନିଷ୍ଠୁର ଭାବେ କହିଲେ "ଏଠାରୁ
ଚବିଶି ଘଣ୍ଟା ଭିତରେ ପଳାଇଯାଅ;
ନଗଲେ ଏଠାରୁ
ଧକ୍କିଆ ଦେଇ ବାହାର କରିବ ଜାଣିଥାଅ, ଜାଣିଥାଅ !!"
"ଧକ୍କିଆ ଦେଇ କାହିଁକି ହେ ବାବୁ ! ବାହାର କରିବ ମତେ ?
ଚାଲିଯିବ ଇଲେ ଚାଲି ଯିବ ଇଲେ
ମୋର ବାପ ଅଜା ବଗିଚ୍ଛ ଏ ନୁହେ, ରହିଥିବ ସନ୍ତତେ !

କିନ୍ତୁ ମୁଁ ଖାଲି ପଗୁରେ ଗୋଟିଏ କଥା
ଅନ୍ୟାୟ ମୋର କି ଅବା ଦେଖିଲ ?
କାଟି ଦେଲ ମୋର ଗଳା,
ପାଞ୍ଚ ପରାଣୀ କୁଟୁମ୍ବ ମୋର ମରିଯିବେ, ମରିଯିବେ
ଟିକିଏ ତୁମର କରୁଣା ହେଲାନି ପରା !"

ଉତ୍ତର ନାହିଁ ମିଳେ,
ପିଶାଚ ହୃଦୟେ କରୁଣାର ରେଣୁ
ଜାଗି କି ପାରିବ ତଳେ !!
'କୁଡ଼ିଆ ଘରକୁ' ମୃଷାହାଡ଼ ଆଜ ଗୁଲିଚ ଆପଣା ଗାଏଁ
ଥରେ ଗୁହେଁ ସେଇ କୁଡ଼ିଆକୁ ତା'ର
ଥରେ ତା'ର ସେଇ ପ୍ରିୟ ବଗିଚ୍ଛରେ ଗୁହେଁ;
ଝର ଝର ଝର ନୟନଯୁଗଲୁ ଝରିପଡ଼େ ଲୁହଧାର
ଅପରାଧୀ ନୋହି କିଏ ସେ କାହିଁକି ଦେଲ ଏ ବଜ୍ରମାଡ଼ !
ଶେଷଥର ପାଇଁ ବଗିଚ୍ଛର ପ୍ରତିଗଛ ପତ୍ରରେ
ଅଙ୍ଗୁଳି ଗୁଲ ଆଉଁସି ଆଉଁସି ଦେଲେ
ପ୍ରତି ଗଛ ଲତା କାନେ କାନେ ତା'ର କି କଥା କହନ୍ତି
ସିଏ ଏକା ଜାଣିପାରେ !
ଟପ ଟପ ଲୁହ ଝର ଝରି ପଡ଼େ ପ୍ରତି ଫୁଲେ ପ୍ରତି ଫଳେ
ପାଦ ଗୁଲେନାହିଁ ଆଗକୁ ଆଗକୁ
ଚଉତଳେ ତା ଚିନ୍ତା ଉଠଇ ଜାଗି,
ଏଇ ଫୁଲ ଫଳ ଗଛ ପତ୍ରରେ ଗୁହିଁ
ଶେଷଥର ପାଇଁ ନୟନ ବୁଜନ୍ତା
ଏଇ ବଗିଚ୍ଛର ତଳେ !
ସିଏ କାନ୍ଦୁଚ କାନ୍ଦୁଚନ୍ତି ତା' ଦୁଇଟି ଘରଜା
କାନ୍ଦୁଚନ୍ତି ତିନି ଗୁରି ପିଲାଛୁଆ,
କାନ୍ଦୁଚ ସାରା ବଗିଚ୍ଛର ପତ୍ର ଫୁଲ ଫଳ ଲତା
କାନ୍ଦୁଚ ସେଇ କୁଟୀରଟି ଯାହା ଅଦୂରେ ହୋଇଚ ଠିଆ !
ସୀମାହୀନ ଏଇ ଅଶ୍ରୁ ଭିତରେ
କାହାର କରୁଣା ନାହିଁ !
ମୃଧାହାଡ଼ ଦୂରେ ଗୁଲିଯାଇଅଛୁ
ବଗିଚ୍ଛ କିନ୍ତୁ ରହିଚ ତାହାରେ
ମାରିବେ ମଉନେ ଗୁହିଁ !!!

— ୨ —

ମୃଷାହାଡ଼ ! ମୃଷାହାଡ଼ !!
ଅଭାବ ଭିତରେ ଅଶ୍ରୁ ଭିତରେ
ଗୃଳିତ ତାହାର ନିଃସ୍ୱ ଜୀବନ ଗାଡ଼ !
ଯାଉଥିଲି ମୁହିଁ ପଥପ୍ରାନ୍ତରେ
ଦେଖିଲି ଦେଖିଲି ମତେ
ଆଖିରୁ ଦ'ଧାର ଲୁହ ପୋଛି ଦେଇ
କହିଲା କହିଲା 'ପଥର ଭିକାରୀ ହୋଇଗଲି ମୁହିଁ ବାବୁ
ଆଗର ବଭବ ଆଗ ସମ୍ପଦ
ସରିଯାଇଅଛି ସବୁ !!
ସ୍ୱରଜାତି ମୋର ବଣୁଥିଲି ଯିଏ ରାଜଲକ୍ଷ୍ମୀରୁ ବଳ,
ଅଙ୍ଗେ ଅଙ୍ଗେ ମଧୁଯୌବନ
ରହୁଥିଲି ଯାର ଭରି,
ବଳତା ପର ସେ ଯାଇଅଛି ଶୁଖି
ମାଗି ସେ ବୁଲୁଚି ସାଇ ସାଇ ଗାଆଁ ଗାଆଁ,
ହାଡ଼ ବଖଣ୍ଡ ବହରେ ହଲଚି
ଜୀଅଁନ୍ତା ଗଣ୍ଡ ପର ବଞ୍ଚିଚି ଆହା !!

ତରିଷି ଟଙ୍କା ପାଉଥିଲି ଯାହା
ତିନିଶ ଟଙ୍କା ପର ମତେ ଲଗୁଥିଲା
ପିଲଙ୍କ ମୁଖେ ଦେଉଥିଲି ମୁହିଁ ତୋକେ
ଦୁଆରୁ ଦୁଆରେ ସାତ ସ୍ୱାନମାନେ ବୁଲି
ଦିନ ସରୁନାଇଁ ରହିଚ ଉପାସ ଭୋକେ—
ସବୁ ଜାଲାଠାରୁ ପେଟର ଯେ ଜାଲା,
ସହିବାର ନୁହେ, କହିବାର ନୁହେ,
ଘର ଭଡ଼ ! ଘର ଭଡ଼ !
ଏ ସବୁ ଭାଳିଲେ ଦୁହିଁ ହୋଇଯାଏ ଥିର !
କି ଯଶ ପାଇଲି କି ଶିଖ ପାଇଲି
ମତେ ସେ ଅନାଥ କରି ।
ମୁଁ ଯହ୍ୱା ହୋଉଚ
ମୋହ ଚହୁଁ ବଳି ହେବନି ସେ ସାତସରି ?
ତତଲ ଲୁହ ମୋ ବହିଯାଏ ଯାହା,
ଆଠକାଳ ବାରମାସ

ପଡ଼ବନି ବାବୁ ପଡ଼ବନି ତା' ଉପରେ ?
ଏ କି ବଡ଼ଲୋକ କହନ୍ତ କହ ହେ ବାବୁ !
ଆନର ଓଠରୁ ଅନ୍ନ ଛଡ଼ାଇ ନେବା
ଛଳେ ବଳେ କଉଶଳେ !!

ପଡ଼ଯାଇଚ ମୁଁ ପଡ଼ଯାଇଚ ମୁଁ ଉଠିଚ ପାରୁନି ବାରେ
ଗୃହିଁ ରହିଚ ମୁଁ ଗୃହଆଡ଼େ ଖାଲି ସୀମାହୀନ ହାହାକାରେ !
ହସଖେଳ ଆଉ ଆନନ୍ଦ ଦିନ ମରିଯାଇଅଛୁ ମୋର
ଜୀଇ ନ ଜୀଇଲା ପରି ମୁଁ ରହିଚି ହୋଇ ବାର ନାରଖାର !
ବେକରେ ମୋହର ବନ୍ଧା ଏ ଯେଉଁ ତିନି ଚାରି ପିଲା ଛୁଆ
କି ଭଳି କାହାକୁ ବଞ୍ଚାଇବ ମୁଁ
କେଉଁଠୁ କି ଅବା ଆଣି,
ଭୋକ ଉପାସରେ ଶଙ୍ଗୁଡ଼ିମାଛ ପରି,
ହୁଅନ୍ତି ଛଟପଟ,
ଦେଖିଲେ ମୋହର ବୁକୁ ହୋଇଯାଏ ହାଣି !
କଏ କାନ୍ଦଲେ ଚାହିଁ ମୋ ମୁହଁରେ
ବୋଧ ଦେବ କେଉଁଭଳି ?
ବାପ ହୋଇ ଯେବେ ଜନ୍ମ ଦେଇଚି ଅନ୍ନ ନ ଦେଲେ ମୁଖେ
ଏ ଜୀବନ ମୋର ମରିଯିବା ଠାରୁ ବଳି !!'

ମୃଷାହାଡ଼ ! ମଷାହାଡ଼ !
ଏତିକ କହି ସେ ଦୂରେ ଦୂରେ ଗଲା ଚାଲି
ହାତ ପଛେ ତା'ର ଆଖି ପୋଛୁ ପୋଛି
ପଛକୁ ଚାହିଁନି ଫେରି !!!

—୩—

ମୃଷା ହାଡ଼ ! ମୃଷାହାଡ଼ !
ପାଗଳ ପରି ସେ ମହାଧରଣୀରେ
ବୁଲୁଅଛି ଘୂରିଆଡ଼ !
ସାରା ପୃଥିବୀରେ କିଛିନାହିଁ ତା'ର,କେହି ନାହିଁ ତା'ର ଜଣେ,
ଗରଜି ଉଠିଚି ଅନ୍ତର ତା'ର ମହାସମୁଦ୍ର ପରି
କି ନିଧି ଠିକକ ପାଇବାକୁ ପ୍ରତିକ୍ଷଣେ !
ଦଗ୍ଧୁଚି ସିଏ ସାରା ପୃଥିବୀର ପ୍ରତି ଜୀବନରେ ଚାହିଁ

ସିଏ ଯାହା ଏଥି କରି ଗୃଲଗଲା, ମାରି ଗୃଲଗଲା,
ନେଇ ଗୃଲଗଲା ପ୍ରତିକାର ତା'ର ନାହିଁ ?

ଯାହାର ରହିଚି ସୁବିଧା ସୁଯୋଗ
ଚିରଦିନ ସିଏ ଅମୃତଶିଖି ଗୃଲଥିବ ପାଇ ପାଇ,
ଯେ ରହିଚି ତଳେ ପଡ଼ି ରହିଥିବ, ଗୃହିଁ ରହିଥିବ,
ତାହାପାଇଁ କିଛି ନାହିଁ ?
ପଦାଘାତ ପାଇ ପୃଥିବୀ ଅତଳ ତଳେ ଯେ ଯାଉଚି ଦବି,
ଚିରଦିନ ଧରି ନେତ୍ରଯୁଗଳୁ ଉଷ୍ଣଲୋତକ ଯାଉଚି ଯାହାର ସ୍ରବି,
ଓଠରୁ ଯାହାର ହସ ଫୁଟୁନାହିଁ,
କଣ୍ଠୁ ଫୁଟେନି କଥା,
ଚିରଦିନ ଧରି ଅବନତ ହୋଇ
ରହିଚି ଯାହାର ମଥା,
ବିଶ୍ୱ ଧରାରେ ଅନ୍ତରଟିଏ ନାହିଁ
ଟିକିଏ ତାହାକୁ ତଳୁ ତୋଳିନେବା ପାଇଁ ??

ନର ପାଷ ! ତୁ କେଡ଼େ ନିଷ୍ଠୁର
କେଡେ ନିର୍ମମ, କେଡ଼େ ତୁହି ସଇତାନ !
ତୁ ଯେ ଆତତାୟୀ ତୁ ବାଟମାରଣା
ବିଷପାଷ ତୁ
ମହାଧରଣୀର ବିଶ୍ୱ ଅକଲ୍ୟାଣ !
ତୋ' ଦେହର ପ୍ରତି ଶୋଣିତେ ଶୋଣିତେ
ହିଂସା, ହତ୍ୟା ଚିରଦିନ ଲୀଳାୟିତ,
ବକ୍ଷ ଭିତରେ ତୋ'ର
କକ୍ଷ ରଚନ୍ତି ମହାରାକ୍ଷସ
ଲକ୍ଷ୍ୟ କରୁଚି ପ୍ରତିଦିନ, ପ୍ରତିରାତି,
କାହାକୁ କରିବ କଉଳ ଆତ୍ମସାତ୍;
ସବୁ ଅନ୍ୟାୟ ସବୁ ଅମାନ୍ତର, ସକଳ ପାମର
ବିଶ୍ୱ ଦୁର୍ଗ ତୁହି
ଗୃଲଗଲାବେଳେ ପଥ ପ୍ରାନ୍ତରେ
ତୋହରି ଦେହର ପବନ ପରଶ ଛୁଇଁ,
ଝାଉଁଳି ପଡ଼ଇ ବିଷ ବାସ୍ପରେ
ଆଘାତ ପାଇଲା ପରି,

କେତେ ସୁନ୍ଦର କାନ୍ତ-କୁସୁମ-କଳ,
ଏ ମାଟି ଉପରେ ତୋହର ଅବସ୍ଥିତି
କୋଟି ଜୀବନର ମହାଅଭିଶାପ ପର !

ନରପାଷ ତୁ । ନରପାଷ ତୁ !
ସର୍ବସ୍ୱାନ୍ତ କରଦେଇ ମତେ
ଫିଙ୍ଗି ଦେଇଚୁ ଦୂରେ,
ପାଗଳ ପର ମୁଁ ସାରା ପୃଥିବୀରେ
ଏ ପାଖୁ ସେ ପାଖେ ଘୂରେ,
ଯେ' ଡାଳ ଧଇଲେ ସେ ଡାଳ ପଡ଼ୁଚି ଛିଡ଼ି
ଗୃହଆଡ଼େ ତୁହି ଖଞ୍ଜି ଦେଇଚୁ
ତୋ' ମୁନିଆ ହତିଆର
କଭଳ ମୋହର ବଞ୍ଚିତ ହେବ ସବୁ ସମ୍ପଦଶିରୀ;
ଯାଇଚି ମୋହର ଧନ ସମ୍ପଦ, ଯାଇଚି ବଭବ, ମାନ,
ଭାଙ୍ଗି ପଡ଼ିଚି ନିଃସ୍ୱ ମୋହର ସୁନ୍ଦର ପରିବାର
ଶୃଙ୍ଖଳ ଯାହାରେ ପୂରିଉଠୁଥାଏ ପ୍ରାଣ !

ଭାରଜା ମୋହର ଅତି ଆଦରର ଅତି ସେନେହର
ମୋ ପରାଣୁ ବଳି ବଡ଼
ରଜନୀଗନ୍ଧା 'ଖୋସି ତା' କଜଳ କେଶେ
ଜୋଚ୍ଛନା ଗହିରେ ପାଶେ ବସୁଥିଲା
ଓଠେ ତା' ଫୁଟାଇ ହସ କ ମଧୁରତର !!
ଆଖିରେ ଆଖିରେ କହୁଥିଲା କେବା
ଅମୃତଭରା କଥା,
ଢଳ ପଡ଼ୁଥିଲ ତା' ବୁକୁ ଉପରେ
ବସୋର ପ୍ରାଣର ସକଳ ଦୈନ୍ୟ ବ୍ୟଥା !
ନିଜନ ରାତିରେ ମାରୁଆ ପାହାଡ଼ ଚୂଳେ
ମେଘ ତଳେ ତଳେ ଉଜଳ ଜହ୍ନ
ଯାଉଥାଏ ଯେବେ
ବୁଡ଼ି ଦୂରେ ବହୁଦୂରେ !

କଅଁଳ ପବନ ନୀଳ ଚିଲିକାର ପନ୍ତାରୁ ଯେବେ
ଆସୁଥାଏ ଥିର ଥିର
ନାଚଉଠୁଥାଏ ଗୋଲାପ ମଲ୍ଲୀ

ପତ୍ର ଗହଳେ ଦେଖାଇ ତା' ରୂପଶିଖା,
ଚୁମ୍ବନ ଦେଇ ତାହାର ଗୋଲପି ଓଠେ
ତାହାର କଅଁଳ ହାତଟି ସରାଗେ ଧରି,
ତାହାରି ଉଷୁମ ବକ୍ଷ ଉପରେ
ଟିକଏ ଆଉଜପଡ଼ି
ଚିକ୍‌କଣ ଏଇ ଘାସ ପଡ଼ିଆରେ
ବୁଲିଛି ମୁଁ କେତେ ବାର !
ମନେପଡ଼ି ଆଜ
ନେତ୍ରଯୁଗଳୁ ଖସିପଡ଼େ ଦୁଇଧାର !
ସେଇ ଜାମ୍ବୁଗଛର ଗୁପ ଗୁପକଆ ଚନ୍ଦ୍ର କିରଣ ତଳେ
ତାହାରି କୋଡ଼ରେ ରଖି ଏ ମଥାଟି ମୋର
କେତେ ଅମୃତ ପିଇଛି ପରାଣ ଭରି
ସବୁ ସମ୍ପଦ ଗୋଟି ଗୋଟି ହୋଇ
ମନେ ମୋ ଯାଉଛି ପଡ଼ି !
ସେଇଠି ସେଇଠି ସେଇ ଗଛ ମୂଳ ତଳେ
କହିଥିଲି ତାରେ ଗମ୍ଭୀର ସେନେହଭରେ
ବୁକୁପରେ ଯାକ ଧରି,
କି ଲୋଡ଼ା ତୋହର କହନ୍ତେ ଝିଅଟିକା ?
ଯାହା ତୁ କହିବୁ
ଦେବି ତୋହପାଇଁ କରି !

ଲାଜରେ ଲାଜରେ ଟିକଏ ଟିକଏ
ମୁରୁକି ମୁରୁକି ହସି,
'ତୁମେ ଥିଲେ ମୋର ସବୁତ ରହିଛି,'
କହିଥିଲି ମତେ ଏଇ ଗଛତଳେ ବସି !
'ଏତେ ତୁମେ ଯେବେ
ଦେଖିପାରୁଛ ହେ ମତେ
ମୋ'ଠି ଯେବେ ଏତେ
ଲୋଭ ହେ ତୁମରି ସତେ,
ମୋ ପାଇଁ ଗୋଟିଏ
ସୋରିଷିଆ ମାଳି
କରିଦେବ କରିଦେବ !'
ଜୀବନେ ତାହାର ଏତିକି ଥିଲା

ପୂର୍ଣ୍ଣ କରବା
ହେଲନାହିଁ ସମ୍ଭବ !

ସଞ୍ଜେ ସକାଳେ ଆସୁଥାଏ ସେହୁ
ମୋ ପାଇଁ ଘୋଷଣା ନେଇ,
ଏ ସଡ଼କ ବାଟଦେଇ;
ଶୁଆପକ୍ଷିଆ ସେ କସ୍ତା ଗୋଟିଏ
ତା' ଗୋରା ଦେହକୁ ଉଜଳ ଦିଶଇ କେଡ଼େ !
ଚଳ ଚଳ ସେହୁ ଚାଲି ଆସୁଥାଏ
କେଉଁ ରାଜରାଣୀ ତା' ତୁଲ ହୋଇବ ଏଡ଼େ !
ଚାହିଁଥାଏ ମୁହିଁ ସୁଦୂରୁ ଲକ୍ଷ୍ୟ କରି
ଦିଶୁଥାଏ ତା'ର ଓଠ ହସଟିକ ତରାଫୁଟିବାର ପରି !

ବଗଚ୍ଛ ଭିତରେ କାମ କରି କରି
ପ୍ରତି ଅଙ୍ଗରୁ ଝାଳ ଗମ ଗମ
ବୋହିଯାଉଥିଲେ ମୋର,
ଖରାରେ ତରାରେ ବୁଲି ବୁଲି କାହିଁ
ଶୁଖି ଯାଇଥିଲେ ମୁହିଁ
କ ଗୁରୁ ଆଘାତ ମରମେ ମରମେ ପାଏ
ଛଳ ଛଳ ହୋଇ ଆସେ
ଆଖିରେ ତାହାର ଲୁହ !!
ଚାଲି ତା' ପଟର କାନି
ଅଙ୍ଗରୁ ମୋର ପୋଛିଦିଏ ଝାଳ
ସେନେହ ସୋହାଗ ଭରେ
ଏତେ ସମ୍ପଦ ଜୀବନେ କେଉଁଠୁ
ପାଇନି ପାଇନି ଅରେ !

ତାହାର ଦେହର ଟିକଏ ପରଶ
ତାହାର ଓଠର ଟିକଏ ମୋହନ ବାଣୀ
ତାହାର ଆଖିର ଟିକଏ ଉଷୁମ ଲୁହ
ତାହାର ପ୍ରାଣର ଟିକଏ ସେନେହମାୟା
ତାହାର ବୁକୁର ଟିକଏ ସହାନୁଭୂତି,
ତାହାର ମନର ଟିକିଏ ମୁଗ୍‌ଧ ହାସ

ମତେ ରଖିଥିଲା ସଜୀବ ସରସ କରି,
କାଢ଼ିନେଇ ମନୁ ଗମ୍ଭୀର ବେଦନା ତ୍ରାସ !

ସେ ମଧୁଜୀବନ କୁଆଡ଼େ ଯାଇଛି ଚାଲି,
ବାଷ୍ପ ବୁଦ୍‌ବୁଦ ପରି,
କେଉଁ ଅପନ୍ତରରେ ପଡ଼ି,
ଦିନ ଦିନ ଧରି ମୁଁ ଖାଲି ହେଉଛି ଘାରି !!

— ୪ —

ମୃଷାହାଡ଼ ! ମୃଷାହାଡ଼ !
ପଶୁରୁଛି ସେହି ନରି ପାତ୍ରରେ
କି ଆତୁର ରଡ଼ ଗୁଡ଼ !
ନରପାଶ ତୁ ନରପାଶ ତୁ ମତେ କଲବଲ କରି
ତୋହର ଓଠରେ ହସ ଉଠୁଅଛି ଭରି !
ଗର୍ବ ତୋହର ଗଉରବ ତୋର ଚିରକାଙ୍ଗାଳ
କରିଦେଇଅଛୁ ମତେ !
ଟେଟରେଇ ଟେଟରେଇ ଚାରିଆଡ଼େ ଚାହିଁ
ବକ୍ଷ ଫୁଲାଇ ଚାଲିଚୁ ଏ ରାଜପଥେ !
ଦୁର୍ଗ ଗୋଟାଏ ଜୟ କଲପରି ତତେ ଲାଗୁଅଛି କରେ
ମୁଁ ବୁଡ଼ିରହିଛି ଉଷ୍ଣ ଲୋତକ ମାରେ !
ଯେତେ ସହକାରୀ କରାମଅମଲା ଚାକର ବାକର ସବୁ
ଡରାଇ ଥରାଇ ମାରି ଓ ମରାଇ ତାଙ୍କ ଉପରେ,
ସାଜିଚୁ ବିରାଟ ପ୍ରଭୁ !
ଯେତେ ଯା' ପଇସା ପେଟରେ ପକାଇ
ହିସାବ ନ ଦେଇ କାରେ
ଭଦ୍ରଲୋକ ତୁ ସାଜି ଚାଲିଅଛୁ ଗଉରବ ସମ୍ଭାରେ !
ପାଟି ଫିଟାଇ କେ କହିଲେ ତୋହରେ
ତୋର ଯେତେ ଯାହା ଦୋଷ ଓ ଦୁର୍ବଳତା
କଲମ ମୁନରେ ଲେଖିଦେଇ ପଦେ
ତାଙ୍କ କରୁଚୁ ହିନସ୍ତା ହଟହଟା;
କେତେ ଭଲଲୋକ ଦେବତା ପରି ଯେ
ଥିଲେ ଏଇଠାରେ ରହି
କିଏ ଚାଲିଗଲେ କେଉଁ ଦୂର ଦେଶେ

ତୋ ଦାଉ ନ ପାର ସହି;
କେତେ ହଇରାଣେ କି ଏସେ କେଉଁଠି
କାଟୁଚି ମୋ ପର କାଳ
କେତେ ଲୋକଙ୍କୁ ନରଦେଇଅଛୁ
ଭୁହି ବାର ନାରଖାର
ତୋ ଉପରେ ଯେଉଁ ହାକିମ ରହିଚି
ଗୋବର ମଥାରେ ତା'ର
ତାକୁ ପୂଜା କର ଛତ ଉପସ୍ଥରେ
ଚଳିଇଚ୍, ତୋର ଯେତେ ଯାହା ଅନାଗୁର
ନିଜର ଦୁଃଖ ହାଣ ଓ ଗୁହାର କହିବାର ପାଇଁ ଗଲେ
ବାଘ ପରି ସିଏ ଝପଟି ଆସୁଚି କହି 'ବଦମାସ ଶଳେ' ।

ହାକିମ ହେଲେକ ମଣିଷ ଏପରି କୁକ୍କୁର ହୋଇଯାଏ,
ନିଜକୁ ହତ୍ୟା କରି କରି ସେହୁ ଧରଣୀରେ ଚଳିଥାଏ !!
ଜୀବନର ଯେତେ ଶିଖ ସମ୍ମାନ
ଜୀବନର ଯେତେ ଅମୃତ ଗଉରବ
ତାହାତହୁଁ ବଳ ଅଛି କି ବା ବଇଭବ ?
ଜୀବନର ଶିଖ ଫୁଟାଇ ଫୁଟାଇ,
ଅମୃତଧାରା ଛୁଟାଇ ଛୁଟାଇ,
ଚଳିବାକୁ ଏଇ ମହାଧରଣୀରେ
ଯାରେ ନାଇଁ ଲଗେ ଭଲ,
ସେ ଜୀବନ ଗୋଟେ ଜୀବନ ବୋଲି ମୁଁ
ସୀଉକାର କଲେ
ରସନା ମୋହର ହେବ ପଙ୍କିଳତର !

— ୫ —

ମୁଷାହାଡ଼ ! ମୁଷାହାଡ଼
ଜୀବନର ଜାଳା ସମ୍ଭାଳିନାଇଁ ପାରି
କୁଆଡ଼େ ଯାଇଚ ଚଳି !
ପ୍ରତିଦିନ ପରି ସୂର୍ଯ୍ୟ ଆସୁଚ ନୀଳନଭତଳେ ଉଇଁ,
ପାହାଡ଼ ଶ୍ୟାମଳ କାନ୍ଧ ଉପରୁ
ସୁଲୁ ସୁଲୁ ବାଆ

ପ୍ରତିଦିନ ପରି ବହିଆସୁଅଛି ଗଛପତରେ ଛୁଇଁ;
ପ୍ରତିଦିନ ପରି ହସି ଖେଳ କେତେ—
ଯୁବା ଯଉବନା ବାଳକ ବାଳିକା ଦଳ ,
ରାଜପଥ ଧାରେ ଚାଲିଅଛନ୍ତି
ରଚି କଳ କୋଳାହଳ;
ପ୍ରତିଦିନ ପରି ଅସଂଖ୍ୟ ଜନସ୍ରୋତ
କିଏ କେଉଁ କାମେ
କେତେ ଆଶା କେତେ ଆକାଙ୍କ୍ଷା ନେଇ ହୁଅନ୍ତି ଗତାଗତ;
ଏ ସବୁ ଭିତରେ ହସି ଖେଳ ଆଜ ମନ ସନମାନେ
ବୁଲୁ ନାହାନ୍ତି, ମୁଷାହାଡ଼ର ସେ
ଟିକି ଟିକି ପିଲିଛୁଆ
ଅରକ୍ଷ ହୋଇ କେ’ କାହିଁ ପଡ଼ିଛ
ହିସାବ ତାହାର କିଏସେ ରଖିଚି ଆହା !
ମୁଷାହଡ଼ ପାଇଁ ଘୋଷଣା ସ୍କନ୍ଧେ ବହି
ଘରଜା ତାହାର ହସି ହସି ହସି
କଆଫୁଲ ଖୋସି ଶିରେ
ଆସୁନ୍ନି ଆସୁନ୍ନି ଚାଲି,
ଭିଖାରୁଣୀ ପରି କେଉଁ ଅନାସ୍ଥ ହୋଇ
କେଉଁଠି ସେ ଥିବ, କିଭଳି ଜୀବନ ଚାଲ !
ଖଲ୍ଲିକୋଟର ଶତ ଶିଶୁ ମେଳେ
ମୁଷାହାଡ଼ ଆଜ ନାଇଁ,
ବ୍ୟସ୍ତ ହୋଇ ସେ, ବିକଳ ହୋଇ ସେ, ବ୍ୟଥିତ ହୋଇ ସେ
ଚାଲିଯାଇଅଛି କାହିଁ !
ଖଲ୍ଲିକୋଟର ପ୍ରତି ଧୂଳିମାଟି
ତାହାର ଉଷ୍ଣ କେତକେ ଆଦ୍ରତର
ଖଲ୍ଲିକୋଟର ପାହାଡ଼େ ପାହାଡ଼ ବନକନ୍ଦରେ
ଶୁଭୁଚି ତାହାର ବୁକୁର ଆର୍ତ୍ତସ୍ୱର !
କାନ୍ଦି କାନ୍ଦି ତର ବିଦ୍ରୋହୀ ଆତ୍ମା ତାହାର
ଲୁହ ନିଶ୍ୱାସ ଢାଳି,
ଖଲ୍ଲିକୋଟର ବାୟୁମଣ୍ଡଳେ
ଉଡ଼ ସେ ବୁଲୁଚି ଖାଲି;

କହ୍ମ ସେ ବୁଲୁଚ ଗଳିକୋଣରେ —
ପ୍ରତି ଘରେ ଘରେ
ଯୁବା ଯଉବନୀ
ବାଳକ ବାଳିକା
ସକଳର କାନେ କାନେ !
'ମଣିଷ ମାତ୍ର ଯେ ମଣିଷ ହୋଇଚ
ବଞ୍ଚି ରହିଚ ଶତ ଦୁଃଖ ସନମାନେ,
ଆପେ ଆପେ ସିଏ ଜଳପୋଡ଼ି ନିଜେ
ହୋଇଯିବ ଚୁରମାର !
ସାମାନ୍ୟ ନୁହେ ସାମାନ୍ୟ ନୁହେ
ନିଃସ୍ୱ ଆଖିର ଉଷ୍ଣ ଲୋତକ ଧାର !'

—–—

## ସରୋଜବାଳା

ଆମର ଗାଆଁର ସରୋଜବାଳା ସେ ରୂପବନ୍ତୀ ଗୁଣବନ୍ତୀ
ରେଙ୍ଗୁନେ କାହିଁ ଯାଇଅଛୁ ତା'ର ପ୍ରାଣ ପ୍ରିୟତମ ପତି;
ଜୀବନରେ କେବେ ଦେଖିଥିଲି ଥରେ ତା ନବୀନ ଯଉବନେ
ସେଇ ପରିଚୟ ସେଇ ଦେଖାଦେଖି ସବୁଦିନ ପଡ଼େ ମନେ;
ଆଜକୁ ହେଲାଣି ସାତଟି ବରଷ କବା ସାତଯୁଗ ସରି
ଚିଠି ଆସେ ନାଇଁ, ଦୂରେ ଥାଉ ତା'ର ଘରକୁ ଆସିବା ଚଳି;
ଗୁହାଁଚି ସରୋଜବାଳା
କେବେ ଆସିବେ ତା ପ୍ରାଣ ପ୍ରିୟତମ ନୟନୁ ଉଛୁଳେ ଧାରା ।

* * *

ବରଷ ବରଷ ଗୁହାଁ ସେ ରହିଚ ସାଧକ ସାଧନା ପରି
ଅନ୍ତର ତଳେ ଧାପଟିଏ ପରି ପ୍ରିୟ ତାର ଉଠେ ଜଳି;
କେବେ ସେ ଫେରିବେ କୁଟୀରେ ନିବସି ଆଙ୍କଇ ମନେ ମନେ
ପ୍ରିୟ ଭଳି ତା'ର ଏ ମହଲଇକେ ନାଇଁ ଆନ ଯୁବା ଜଣେ;

ମନେପଡ଼େ କେବେ ବିଶାଳ ଉରସ ଜାନୁଲମ୍ବିତ କର
ମନେପଡ଼େ କେବେ କାନର ଝିଲପି କପୋଳ ଉଜ୍ଜ୍ୱଳ;
କହିବାର କେତେ କଥା—
ବାସର ଘରରେ, ମନେପଡ଼ ମନେ ଆଣଇ ଗଭୀର ବ୍ୟଥା ।
କିଏସେ କହିଲା ସରୋଜର ବର ଆଉ ନାହିଁ ଜୀବନରେ;
ଅନେକ କହିଲା 'କମ୍ବଜ' ଠାରେ ଥିଲା ଛଅମାସ ତଳେ;
ରଥିଆଣୀ ବୁଢ଼ୀ ଆଖି ମଳ ମଳ କହିଲା ଶୁଣିଚ ତମେ
ବମ୍ବାରେ ପରା 'ମୁର୍ଗୀ' ସହର ଶୂନ୍ୟ, ନାହାଁଛି ଜଣେ;
ସରୋଜର ବର ଥିଲା ସେ ସହରେ କିସ ହେଲା କେ କହିବ ?
ରାମୀବୋଉ କହେ ସତ କି ମଣୁଚ ଜୀବନରେ ଆଉ ଥିବ ?
ସରୋଜ ସକଳ ଶୁଣି
ବିକଳେ ଅଶ୍ରୁ ଦୁଇଟି ଗଡ଼ାଇ ରହିଥାଏ ହୋଇ ତୁନି !

* * *

ଯଉବନ ଫୁଲ ଦିନୁଦିନ ତା'ର ମଳିନ ଯାଇଚି ପଡ଼ି
ଅଧରେ ଫୁଟୁନି ଆଗପରି ଆଉ କାନ୍ତ ଗୋଲାପ କଳି;
ନୟନେ ନାହିଁ ସେ ମୋହନ ଦୀପ୍ତି, ଅଙ୍ଗେ ନାହିଁ ସେ ରୂପ
ବୁକୁତଳେ ତା'ର ଜଳଇ ନିୟତ ବିରହ-ବେଦନା-ଧୂପ;
ଜୀବନେ ତାହାର ରଙ୍ଗ ଦେବାକୁ ନାହିଁ ତା ଚିତ୍ରକର
ଶୁଷ୍କ, ରୁକ୍ଷ, ଶୀର୍ଣ୍ଣ ଦିଶଇ ଯଉବନ କଳେବର !
ଖୋଜା ହେଲା ଆନ ବର
ସରୋଜ ପୁଣି ଯେ ବିଭା ହେବ ବୋଲି ଲାଗିଲା ଆଡ଼ମ୍ବର !

* * *

ଝିଏ ଯେତେ ଥିଲେ ସାଇ ପଡ଼ିଶାରେ କହିଲେ କି ଅଛି କ୍ଷତି
କେତେ କାଳ ଆଉ ଗୃହେଁ ସେ ରହିବ ବାହା ହେଉ ଆନ ପତି
ଗାଆଁ ଗାଆଁ କେତେ ଖୋଜା ହେଲା ବର, ସରୋଜ ବିକଳ ଅତି
କିଏ ଧନୀ, କିଏ ପଣ୍ଡିତ ଜ୍ଞାନୀ; ଅଛି କାର ହାତୀ ଛତି;
ବାଛି ବାଛି କା'ର ସମ୍ପତ୍ତି ଅଛି, ଦୀର୍ଘାୟୁ ପକ୍ଷ କିଏ,
ଗଜାବୟୁସିଆ ତରୁଣ କିଏ ସେ ପାଶ୍ କରିଛି ବି: ଏ:
ପ୍ରସଙ୍ଗ ବହୁ ଆସେ
ଏ ସବୁରେ ଖାଲି ସରୋଜ ନୟନ ଉଷ୍ଣ ଲୋତକେ ଭାସେ !

*　　　*　　　*

ସରୋଜ କହିଲା, "ମୋହପାଇଁ କାହିଁ ବ୍ୟଥିତ ହଉଚ ତମେ ?
ଯାହାକୁ ପ୍ରଥମେ ବରଣ କରିଛି ସେଇ ମୋର ପ୍ରିୟ ଜଣେ,
ଜୀବନେ ଯାହାକୁ ଆପଣାର କରି ବକ୍ଷ ଶୋଣିତ ଦେଲି
ତାହାକୁ କି ଭଳି ଫିଂଗି ସୁଦୂରେ ନଉକା ମୁଁ ଦେବି ମେଲି ?
ଫେରୁ ସେ ନ ଫେରୁ, ଥାଉ ବା ନଥାଉ, ସେ ଯେ ମୋର ପ୍ରିୟତମ
ତାହାର ପାଶରେ ସମର୍ପିତ ମୋ ସମସ୍ତ ଯଉବନ !
ସେଇ ଖାଲି ଏକା ଜଣେ
ଫୁଟାଇ ପାରିବ ଲକ୍ଷ କୁସୁମ ମୋ ମରୁ ରାଇଜ-କଣେ ।

*　　　*　　　*

"କହନା କହନା ମୋରେ ଆଉ କିଛି କହନା କହନା ତମେ
କାହାର କଥା ମୁଁ ପାରିବିନି ଶୁଣି, ତରଳି ଯିବିନି କ୍ଷଣେ;
ହିମାଦ୍ରି ଯଦି ମଥା ନତ କରେ, ଶୁଖିଯାଏ ପାରାବାର,
ଅସୀମ ଆକାଶ ମସ୍ତକ ପରେ ହୋଇଗଲେ ଚୁରମାର —
ଟଳିବିନି ତଳେ, ପ୍ରତିଜ୍ଞା ମୋର କଠୋରୁ କଠୋରତର
ସେଇ ମୋର ଧ୍ୟାନ, ସେଇ ମୋ ସାଧନା, ଏକାନ୍ତ ସେ ନିଜର;
ତାହାର ନୟନପାତେ
ପ୍ରତି ଅଂଗେ ମୋ ଲାବଣ୍ୟ ଧାରା ଉଚ୍ଛୁଳିବ ସାଥେ ସାଥେ ।

*　　　*　　　*

"ଜନମେ ଜନମେ ପ୍ରିୟତମ ସେହୁ ଜନମେ ଜନମେ ସାଥି
ତାହାର କୋଳେ ମୁଁ କାଟିବଇଁ କେତେ ମଧୁର ଜୋଛନା ରାତି
ମଧୁ କଳ୍ପନା ଅନ୍ତରେ ଯେତେ, ଫୁଟି ଫୁଟି ପାରିନାଇଁ
ଫୁଟିବ ଫୁଟିବ ନିଶ୍ଚୟ ଦିନେ ତାହାର ପରଶ ପାଇ ।
ମହାବିଶ୍ୱର କେଉଁ ଅଞ୍ଚଳେ ଭେଟିବି ଦିନେ ମୁଁ ତାରେ ।
ପଦ-ପଙ୍କଜ ପଖାଳିବି, ମୋର ନୟନ ଅଶ୍ରୁଧାରେ
ସେ'ଦିନ ପୂରିବ ଆଶା
ସେ'ଦିନ ଫୁଟିବ ଅନ୍ତର ତଳୁ ମଞ୍ଜୁ ମଧୁର ଭାଷା ।"

—*—

# ଅନ୍ୱେଷ

ଦରିଦ୍ର ତା'ର କୁଟୀର ଭିତରେ ଦେଖିଛି ହେମକୁ ଥରେ,
ଲାଜେ ଲାଜେ ତାର ଭ୍ରୂଲତା ଲଇଁ ପଡ଼ୁଥିଲା ମହୀତଳେ !
ସ୍ୱର୍ଗର ସୁନା ପାରିଜାତ ପରି ଫୁଟୁଥିଲା ଓଠେ ହାସ
ଚାହାଣୀରୁ ତାର ବାହାରୁଥିଲା କି ଅମୃତ ଉଚ୍ଛ୍ୱାସ !

କନକ ଗଉର ଅଂଗେ ତାହାର ଥିଲା ଲାବଣ୍ୟ ଝଳ
କେଶପାଶ ପିଠେ ଲମ୍ବିଥିଲା ତା' ଯମୁନା ଲହରୀ ଭଳି !
ନବ ଯଉବନ ପରଶେ ତାହାର ହସୁଥିଲା ବୁକୁତଳ
ଅନ୍ତର ତଳୁ କିବା ସଉରଭ ଛୁଟୁଥିଲା ଅବିରଳ !

କେଉଁ ସରଗର ଅପ୍‌ସରୀ ପରି ଦିଶୁଥିଲା ବରବାଳା
ଚାଲିଗଲେ ପଥେ ପଦ୍ମ ଫୁଟି ଉଠୁଥିଲା ନିତି ପରା !
ଦେଖିଛି ହେମକୁ ଦେଖିଅଛି ମୁହିଁ ପଲ୍ଲୀର ଦିନକବ
ତା'ଭଳି କିଶୋରୀ ସୃଷ୍ଟି ପ୍ରଥମୁ ନାଇଁଥିବେ ସମ୍ଭବ ।

ଦେଖିଛି ହେମକୁ ଦେଖିଅଛି ମୁହିଁ ନବ ଯଉବନେ ଥରେ
ପଥର ବୁକୁରେ ପଦ୍ମ ଫୁଟିବ ଚାହାଣୀ ତା' ପଡ଼ିଗଲେ ।
ତା' ଓଠ ବାଣୀରେ ମୁଗ୍ଧ ନ ହେବ କେ ଅଛି କଠୋର ଜନ
ଦେହେ ମନେ କିବା ମଧୁ ସମ୍ପଦ ଢାଳି ଅଛି ଯଉବନ !

ଦେଖିଛି ହେମର ରୂପ ଯଉବନ ଦେଖିଛି ବକ୍ଷତଳ
ଭାଳିଛି ସେ ଯହିଁ ରହିବ ସେଇଠି ସ୍ୱର୍ଗ ଯେ ଢଳଢଳ ।
ଭାଗ୍ୟଲକ୍ଷ୍ମୀ ସବୁ ବଇଭବ ଘେନି ତହିଁ ହେବେ ଠିଆ
ଯାହା ଘରେ ତାର ଚରଣ ପଡ଼ିବ, ହେବ ସେ ଯାହାର ପ୍ରିୟା ।

ଦେଖିଛି ହେମକୁ ଦେଖିଅଛି ମୁହିଁ ଦେଖିଛି ତା'ରୂପଛଇ
ତା ଭଳି ରୂପସୀ ସରଗ ମରତ ପାତାଳେ ନଥିବେ ରହି ।
ଦେଖିଛି ହେମକୁ ଦେଖିଅଛି ମୁହିଁ ନବ ଯଉବନେ ଥରେ
ସେ ଏକା ପ୍ରଥମ ସୁନ୍ଦରୀ ହେବ ସ୍ରଷ୍ଟାର ସୃଷ୍ଟି କରେ !

କେତେ ଦିନ ପରେ ଦେଖିଛି ହେମକୁ ଦେଖିଛି ମୁଁ ପୁଣି ଥରେ;
ପଲ୍ଲୀରେ ନୁହେଁ ସୁଦୂର ନଗରେ କେଉଁ ଅଚିହ୍ନା ଘରେ ।

ନାଇଁ ତାର ସେଇ ପୂର୍ବର ତେଜ ପୂର୍ବର ସଉରଭ,
ନାଇଁ ତାର ନାଇଁ ବିଭ୍ରବନ ଜଣା ଅନ୍ତର ଗଉରବ ।

'କେତେ ଦିନପରେ ଦେଖିଚି ହେମକୁ ଦେଖିଚି ମୁଁ ପୁଣି ଥରେ
ମୋରେ ଚାହିଁ ତା'ର ନୟନୁ ଅଶ୍ରୁ ବହିଗଲା ଝରଝରେ !
କଣ୍ଠୁ ଫୁଟିଲା କୋହ ଘନଘନ ମତେ ଚାହିଁ ମତେ ଚାହିଁ
କ୍ଷୀଣ କଣ୍ଠେ ସେ କହିଲା—ମୁଁ ଆଉ ସେଇ ହେମ ହୋଇନାହିଁ ।

କେତେ ଦିନ ପରେ ଦେଖିଚି ହେମକୁ ଦେଖିଚି ମୁଁ ପୁଣି ଥରେ
ବୁକୁତଳ ତାର ଦୁହୁଁ ହେଉଥିଲା କି ଗୁରୁ ଆଘାତ ଭରେ ।
ଚାହିଁ ମୋରେ ଚାହିଁ ପାରୁ ସେ ନ ଥିଲା ଲୁହ ଛଳ ଛଳ ଆଖେ
କହିଲା ସେ ମୋରେ—କି ମୁହଁ ଦେଖାଇ ଯିବ ଆଉ ଗାଆଁ ପାଖେ ।

ଚିରପରିଚିତ ସାଥି ସଙ୍ଗାତ କଥା ପଚ୍ଚରିବା ବେଳେ
ଫାଟି ତାର ଖନମାଶ ଯାଉଥିଲା ବେଦନାର ଉଦ୍‌ବେଳେ
କୁଳବଧୂ ହୋଇ ବଞ୍ଚି ରହିବା ନାଇଁ ତାର ଅଧିକାର
ଏଇ ବାଣୀ ତାର ପ୍ରତି ଅଶ୍ରୁରୁ ଫୁଟୁଥିଲା ବାର ବାର !

ଶତ ଝଞ୍ଜାବର କଷାଘାତ ସହି ଗରବର ହାତଧରି
ରହିଥିଲେ କାହିଁ ଭାଗ୍ୟବନ୍ତି ମୁଁ ମନରେ ଥାନ୍ତି କରି ।
ଶାଗ ପେଜ ଖାଇ ପୁଣ୍ୟବନ୍ତି ଯେ ତାହା ତହୁଁ ବଡ଼ କାହିଁ ?
ମାତୃତ୍ୱ ମୋ ଭିତରେ କାନ୍ଦେ ସୀମାହୀନ ଯୁଗ ପାଇଁ ।

କେତେ ଦିନ ପରେ ଦେଖିଚି ହେମକୁ ଦେଖିଚି ମୁଁ ପୁଣିଥରେ
ଅଂତର ତାର ମରି ଯାଇଅଛି ସୀମାହୀନ କଲବଲେ
ଉଦର ଜ୍ୱାଳାରେ ଜୀବନର ମଧୁ ସମ୍ପଦ ଅଛି ମାରି,
କାନ୍ଦୁଛି ଆଜି କାନ୍ଦୁଚି ସେ ଯେ ଚିର ଅଭାଗିନୀ ନାରୀ ।

ଫେରି ମୁଁ ଆସିଲି ଯେତେବେଳେ ମତେ କାନ୍ଦିଲା ଚାହିଁ ଚାହିଁ
ଭାଳୁଥିଲା ତା'ର ସେଇ ପଦେ'ମୁହିଁ ସେଇ ହେମ ହୋଇନାହିଁ,
ଫେରି ମୁଁ ଆସିଲି ଯେତେବେଳେ ମତେ କାନ୍ଦିଲା ଚାହିଁ ଚାହିଁ
ଅନ୍ତର ବାଧା ବୁଝିବାକୁ ଅବା ତାର ଆଉ କେହି ନାଇଁ !

ଫେରି ମୁଁ ଆସିଲି ଫେରି ମୁଁ ଆସିଲି ତଥାପି ଚାହିଁଲି ଥରେ
କାନ୍ଦୁଚି ମୋତେ ଚାହିଁ ଚାହିଁ କିବା ଗୁରୁ ଉଦବେଗ ଭରେ ।

ମନେ ତା ପଡ଼ୁଛି ପ୍ରିୟ ପରିଜନ ସମାଜ ସୋଦର ସାଥୀ
ମୋ ଭିତର ଦେଇ ଅଶାନ୍ତ ସ୍ୱପ୍ନ ନେଉଛି ତା ଉଠେ ଭାନ୍ତି ।
ଫେରି ମୁଁ ଆସିଲି ତଥାପି ଗୃହର ଗବାକ୍ଷ ଗୋଟି ଫେଇ
ବିଶାଳ ବସୁଧା ଉପରେ ତାହାର ହୋଇ ଜଣେ ନାହିଁ କେହି ।
ଦେଖିଲି ସୁଦୂରୁ ଅଶ୍ରୁ ପୋଛୁଛି ବସନାଞ୍ଚଳ ପାତି
ବକ୍ଷ ଭିତରେ ଗୁମରି ଉଠୁଛି —କେହି ନାହିଁ ମୋର ସାଥୀ !

ଫେରି ମୁଁ ଆସିଲି ତଥାପି ଗୃହକୁ ଅଶ୍ରୁ ଉଠୁଛି ଭରି—
ନୀଳପଦ୍ମ ତା ନୟନ ଯୁଗଳେ କି ବିରାଟ ବ୍ୟଥା ଧରି ।
ଦେଖିଲି ସେ ସବୁ ଅଶ୍ରୁ ଭିତରେ ଦିଶୁଛି କି ଅଭିନବ
ଦେଖିଲି ଧରାରେ ସବୁ ଗଉରବୁ ବଳି ସେ ଯେ ଗଉରବ !

ଦେଖିଲି ତାହାର ମନ-ମନ୍ଦିର ଚିର ସୁନ୍ଦରତର
ଶୂନ୍ୟ ପଡ଼ିଛି ମିଳି ନାହିଁ ତାର ଜୀବନର ଈଶ୍ୱର ।
ଦେଖିଲି ତାହାର ଅନ୍ତର ଗୋଟି ସବୁ ଅନ୍ତରୁ ବଳି,
ଅଶ୍ରୁ ଭିତରେ ଦିଶୁଛି କି ଅବା ଅମୃତମୟ ପରି !

ଫେରି ମୁଁ ଆସିଲି ଫେରି ମୁଁ ଆସିଲି ତଥାପି ଗୃହକୁ ଥରେ
ବିଶ୍ୱର ପ୍ରତି ଅନ୍ତର ତନ୍ତୁ ତା' ପାଇଁ କରୁଣା ସ୍ୱରେ ।
ଅଶ୍ରୁ ଭିତରେ ଖୋଜୁଛି ସେ ତାର ସ୍ୱପ୍ନର ଚିରସାଥୀ
ପୂର୍ଣ୍ଣ ହୋଇନି ଆକାଂକ୍ଷା ତାର ଶୂନ୍ୟ ପଡ଼ିଛି ଗୃହ ।

———

# ନେତା

ପ୍ରଧାନ ସାଇର ଦାମିଆର ଝିଅ ନେତା
ପ୍ରତିଦିନ ଯାଏ ବିଲ ଜଗିବାକୁ ସେ'ତ;
ପାହାଡ଼ର ତଳେ ଆମ୍ବ ଗଛର ଛାଇ
ସେଠି ବସେ କେବେ, ହିଡ଼ ତଳେ ବସେ ଯାଇ ।

ମୁଗ ଦିନେ ମୁଗ ଧାନ ଦିନେ ଜଗେ ଧାନ,
ସଞ୍ଜବେଳକୁ ଘରେ ଫେରେ ସବୁଦିନ
ଦେଖିବାକୁ ପରା ପିଲାଟି ଉଜଳ ଅତି
ରୂପରେ ଗୁଣରେ ଖୁଣିବାକୁ କିଏ ଅଛି ?

ନିତି ହସୁଥାଏ ସଜ ପଦ୍ମଟି ପରି !
ବୟସ ତାହାକୁ ହୋଇବ ଷୋହଳ ସରି
ତା' ବଦନକାନ୍ତି ଫୁଟି ତା' ଛୁଣ୍ଡାବାସ
ବାହାରକୁ ପରା ହେଉଥାଏ ପରକାଶ ।

ଭଗାରି ହୋଇଲେ ଘଡ଼ିଏ ଚାହିଁବ ତାଳେ
ଗୃହାଣୀରୁ ତାର ମଧୁସ୍ୱ କି ଅବା ଝରେ ?
ଗୋରା ତକ ତକ ଚମ୍ପା କାଠି ପରି
ସବୁର ଆଖିରେ ନେତ ଭସା ସୁନ୍ଦସ୍ତ,

ସେ ପାହାଡ଼ ତଳେ କେବେ ସେ କାହାକୁ କାହିଁ
ଭଲ ପାଇ ଅଛି କିଏ କେବେ ଜାଣିନାହିଁ ।
କିଏ ସେ ଦେଖିନି କା ବୁକୁରେ ବୁକୁ ତାଳି
କରିଅଛି ନେତ ଜୀବନର ସଙ୍ଗୀନି !

କାହା କଥା ପିଏ ଭାବୁଚ କିଏ ସେ ଜାଣେ
ଓଠୁ ତାର ହାସ ନିଭି ତ ଯାଇନି ଧାନେ !
ତା'ମନ ଭିତରେ ସେ କେଉଁ ତରୁଣ ଯୁବା
ଫୁଲ ଫୁଟାଉଛି କେ ଜାଣି ପାରିବ ଅବା ?

କାହାକୁ ସପନ ଦେଖୁଚି ସେ ଦିନ ରାତି,
କି କଥାରେ କିଏ ଭୁଲାଇଚି ତାର ଛାତି,
ପାହାଡ଼କୁ ଚାହିଁ, ଚାହିଁ ଦୂର ବଳମାଳେ
ନାଚି ଉଠୁଥାଏ ବକ୍ଷ ତା' ବହୁବାରେ !

କିଏସେ କହିଚି—ଫେରିବ, ଆସିନି ଅବା
ତାହାକୁ ରହିଚି ଚାହିଁ ସେ କିଶୋରୀ କିବା !
ଗୋରା ତକ ତକ ଯଉବନ ତନୁ ତା'ର
କାହା ଭାବନାରେ ଉଲୁସୁଚି ବାର ବାର !

କା କଥା ପଦକ ଛଣା ପୀୟୂଷରୁ ବଳି
ମନେ ପଡୁଅଛୁ, ଯାଉଚି ସେ ଅବା ସ୍ଫୁର ।
ସେ ବଣ ପାହାଡ଼େ କାହାର ସ୍ୱରୂପ ଗ୍ରୁଇ
ଦିଶି ବା ଯାଉଚ; ରହିଚ ତାହାରେ ଗୃହିଁ ।

ପାହାଡ଼ ପବନେ ଶୁଣୁଚ କାହାର ବାଣୀ
କେ କହିଚ ତାରେ କରିବ ଜୀବନ ରାଣୀ
କେ ଯାଇଚ ଦୂରେ ବହୁଦୂରେ ଅବା ଚାଲି
ଫେରିଲେ, ତା ବୁକେ ଆପଣାକୁ ଦେବ ଢାଳି ।

କାହାକୁ ଦେଇଚି ଅନ୍ତର ଭରି କଥା
କା' ହାସେ ଭୁଲିଚି ସବୁ ଜଞ୍ଜାଳ ବ୍ୟଥା
ନୟନ ଆଗେ ତା ଦିଶିଯାଏ ତଳତଳ
ବିଚାରେ ମୋହର ପ୍ରିୟ କେଡ଼େ ସୁନ୍ଦର !

କେତେ ଦିନ ପରେ ସେ ପାହାଡ଼ ତଳେ ନେତ
ଶୋଇ ଯାଇଅଛୁ, ଆଉ ଉଠିନାଇଁ ସେ'ତ
ଗାଆଁର କେତେ ଯେ ଲୋକଗଲେ ଗୃହିଁ ଚାହିଁ
କହିଲେ "ଆମ ଗାଁ ନେତ ମରିଅଛୁ ହାଇ !"

ମିଳକଇଁ ପରି ତାର ମିଳ ଆଖି ଦୁଇ
କାହାକୁ ଚାହୁଁଛି ଲକ୍ଷି ସୁଦୂର ଭୂଇଁ !
ଓଠରୁ ତାହାର ମରିଯାଇନାଇଁ ହାସ
ଉଜଳ ଉଠ ତ ଶୁଣି କାହା ସଂଭାଷ !

ଉଜଳ କପାଳେ ବୁଲିବ କଜଳଗ୍ରଇ
ଦରପଣ ପରି ଦିଶେ ଜକ ଜକ ହୋଇ !
କେଉଁ ପ୍ରଣୟୀର ମଧୁ ଚୁମ୍ବନ ଲାଗି
ଚିରଦିନ ପାଇଁ ସେ ଅବା ରହିଚ ଜାଗି !

ସପନ ଦେଖୁଚି ସପନ ଦେଖୁଚି ନେତ
'ଅସୀମ ସମୟ' ପାଇଁ ଶୋଇ ରହି ସେ'ତ ।
ଅନ୍ତର ମନ ସକଳ ଅଙ୍ଗ ତାର
ତନ୍ମୟ ହୋଇ ପାଉଚ କ ସମ୍ଭାର !

ସୀମାହୀନ ସ୍ନେହ ସୀମାହୀନ ଆଶ୍ଳେଷ
ତା ପାଇଁ କେଉଁଠୁ ଆସେ ନୋହି ନିଃଶେଷ !
ଅସୀମ ଛନ୍ଦେ ବାଜୁଛି ତା' ବୀଣା ତାନ
ଶୁଣିରେ ପାହାଡ଼ ବିଲ ମାଳ ଡେରି କାନ !



# ଖୋଜୁଥିବ

ମୁଁ ଚାଲି ଆସିଲି ବରଜ ସୁଦୂର ଭୂଇଁ ।
ଚାଲି ଆସିବାର ଜଣା ତ ନଥିଲା ମତେ ।
ତୁମେ ଖୋଜୁଥିବ ନିତି ଚାରିଆଡ଼େ ଚାହିଁ ।
ଦେଖୁ ତ ନଥିବ ବୁଲି ବୁଲି ପଥେ ପଥେ ।

ଗୋସାଣୀ ଗାଆଁର ଦୁର୍ଗା ଶିଖରୀ ଶିଖେ
କେତେ ଖୋଜୁଥିବ ବୁଲି ରାଜପଥ ଧାରେ ।
କେତେ ବିଲ ବନ ନଦୀ ପ୍ରାନ୍ତର ଦେଖି,
କହୁଥିବ—'ଆମେ ବୁଲି ଆସୁ ଏହି ଆଡ଼େ ।'

କେଉଁ ଗଛତଳ ଶାନ୍ତ, ଶୀତଳ ଛାଏ
ଠିଆ ହୋଇଥିବ ଏକାକୀ ଉଦାସ ମନେ;
ଭାବୁଥିବ ଅବା ଅନ୍ତର ତଳେ ତଳେ—
'ଆମେ କଥା ହେଉ ଏଥି ପରି ବହୁକ୍ଷଣେ ।'

ଦୂର ନଭତଟ ଜଳଦ ପଟଳେ ଚାହିଁ,
ଲୁହ ଯାଉଥିବ ନୟନ ପ୍ରାନ୍ତୁ ବୋହି ।
'ଏ କୁଟୀରେ ଆଉ ଆସିଲେ ନାହିଁତ ସିଏ ।
ସୁଖେ ଓ ଦୁଃଖେ ଆମେ ଥିଲୁ ସାଥି ହୋଇ ।'

କେଉଁ ଝରଣାର କଳତାନେ ତାଳି ମନ,
ଚଇତ ସଞ୍ଜେ କେଉଁ ଘାସ ପଡ଼ିଆରେ,

ବସିଥିବ ଏକା ଅନୁଭବ କରି କରି—
'ରହିଲେ ସେ ଯାଇ କେତେ ଦୂରେ କେଉଁଆଡ଼େ ?

ନିଜନ ରାତିରେ ଘନ ଅନ୍ଧାର ତଳେ
ପରାଣ ବେଦନା ଘନାଇ ଆସିଲେ ତବ
ଲୁହ ଟପ ଟପ ତଳେ ଯାଉଥିଲେ ପଡ଼ି,
ମନେ କରୁଥିବ ବୁଦ୍ଧୁଙ୍କର ଅନୁଭବ ।

ହୃଦୟ ତଳର ବିରାଟ ବିପୁଳ ଆଶା
ଯାଉଥିବ ଯେବେ ଅଜ୍ଞାତେ ମରିମରି,
ପାଉଡି ନଥିବ କାହାକୁ କହିବ ବ୍ୟଥା
ସେତେବେଳେ ମନେ ଯାଉଥିବ ଅବା ସ୍ମରି ।

ବିପୁଳ ବିଜୟେ ଉଲ୍ଲସି ଉଠିଲେ ବୁଦ୍ଧୁ,
ଓଠ ତଳେ ଟିକେ ଜାଗିଲେ ମୋହନ ହାସ,
ଧାଇଁ ଆସୁଥିବ କାହାକୁ କହିବ ବୋଲି;
ଫେରି ଯାଉଥିବ ମରମେ ନିବନ୍ଧି ପ୍ରାସ ।

"ଗଲେ ଯେବେ ଗଲେ ଏଇଠୁ ଥାଆନ୍ତେ ଯାଇ
ସବୁରି ଦେଖାରେ ସବୁରି ଜଣାରେ ହେଲେ;
ବିଦାୟ ବେଳର ଗୋଟିଏ ଅଶ୍ରୁ ଦେଇ
ପୂଜିଥାନ୍ତି ମୁଁ ଗୃଲିଯିବା ଶେଷ ବେଳେ" ।

କହିଥାନ୍ତି ମୁଁ ଲୁହରେ ପଖାଳି ଆଖି —
"ଜୀବନରେ ମୋରେ ପାଶୋରି ଦେବନି ତଳେ
ଦୁଃଖୀ ଜନ ମୁଁ ଜନମରୁ ଆଜଯାଏଁ
ତୁମରି ଚରଣେ ମୋତେ ଅମୃତ ମିଳେ" ।

ତୁମେ ଖାଲି ତୁମେ ମୋହରି ବିହୁନେ ତୁମେ
ଆନ୍ଦୋଳୁଥିବ କ୍ଷୁବ୍‌ଧ ସାଗର ପରି ।
ମନ କଥାଟିକ ମନ ତଳେ ଥିବ ରହି
ଜୀବନ ବଂଶୀ ଉଠୁଡି ନଥିବ ଥରି !!

ଥିଲି ମୁଁ ତୁମର ଏତେ ପ୍ରିୟ ଆପଣାର
ମୋ ପରାଣେ ତବ ପରାଣ ଟିକକ ତାଳ

ଦେଖିଥିଲ ତୁମେ କି ମଧୁମୋହନ ଛବି
କିଏ କାହିଁ ଗଲେ ଜଣେ ସେ ଜଣକୁ ଛାଡ଼ି

ସାରା ପୃଥିବୀର କୋଟି ହତାଦର ପାଇ
ଜୀବନେ ଟିକିଏ ହସିତ ନ ଥିଲ ପାରି,
ଶୁଖି ତ ନଥିଲ ଜୀବନର ମିଠା ଟିକି
ଅଶ୍ରୁ ଅଭାବ ଭିତରେ ନିଜକୁ ଜାଳି ।

ନିଜରୁ ନିଜର କରି ଏ ଧରଣୀ ପରେ
କେହି ତ ତୁମକୁ ଗୋଟିଏ ନିମେଷ ହେଲେ
ତୁମରି ଆଖିରୁ ଅଶ୍ରୁ ଦିଓଟି ପୋଛି
କହିନାହିଁ କଥା ମମତାର ଉଦ୍‌ବେଳେ ।

ଦୁର୍ଗମ କେଉଁ ବଣ ଜଙ୍ଗଲ ତଳେ
ଦୁବଘାସ ମେଳେ ଘାସଫୁଲଟିଏ ପରି,
ଫୁଟି ଉଠିଥିଲ ସବୁରି ଚରଣ ପାତେ
ଯାଉଥିଲ ତୁମେ ମଉନେ ବିକଳେ ମରି ।

ତୁମରି ଗନ୍ଧ ତୁମରି ଆଲୋକ ରେଣୁ
ଏ ମାଟି ଉପରେ ଖେଳାଇ ଦେବାର ଲାଗି
ବୁଦ୍‌ବୁଦ୍ ପରି ପ୍ରତି ମୁହୂର୍ତ୍ତ ଧରି
କେତେ ମଧୁ ଆଶା ମରି ମରି ଥିଲ ଜାଗି ।

କି ମଧୁ ନିମିଷେ ତୁମରି ମୋହରି ଦେଖା
(ତୁମେ) ଟିକିଏ ଫୁଟିଲେ ଆଶା ଉତ୍ସାହ ଧରି
କୋଟିନିଧି ମୋରେ ପାଇବାର ପରି ଲାଗେ ।
ତା' ତହୁଁ ନଥିଲ ଜାଣି କିଛୁ ବଡ଼ କରି ।

ଋଷିକୁଲ୍ୟାର କନକ ସିକତା ମାଡ଼ି
ଝାଉ ବନ ତଳେ ବୁଲି ଯାଉଥିବା ବେଳେ,
ତୁମେ କାହିଁ ପାଇଁ ବେଶୀ ବେଶୀ ମନେପଡ଼
ଏତେ ସଖା ସାଥି ଶିଷ୍ୟ ସୋଦର ମେଳେ ?

ଯେଉଁ ସୀମାହୀନ ଅଭାବ ଓ ଅବହେଳା
ଏ ଜାତିର ମେରୁଦଣ୍ଡ ଯାଇଛି ଭାଜି;

ଟଙ୍କା ପଇସା କ୍ଷମତା ରହିବ ପଛେ
ସେ ଏକା ଗୃହଲକ୍ଷ୍ମୀ କୋଟି ଗଉରବେ ମାଜ ।

ତୁମେ ତ ଗରବ ଆଜନମ୍ମ ଆଜଯାଏ,
ତୁମର ଭିତରେ ଯେଉଁ ଜ୍ୟୋତିଟିକ ଜଳେ,
କିଏ ସେ ଦେଖୁଛି କିଏ ସେ ବୁଝୁଛି ଅବା ?
ଝଡ଼ଝଞ୍ଜାରେ ଧକ୍‌ଧକ୍‌ ହୋଇ ଥରେ !

ଟିକିଏ ସେନେହ ଟିକିଏ ମମତା ପାଇଁ
କେତେ ଘୂରୁଥିବ ଚତୁର୍ଦ୍ଦିଗରେ ତମେ;
ଧକ୍‌କା ଉପରେ ଧକ୍‌କା ଆସିଲେ ପଡ଼ି
ବସି ରହିଥିବ ନିଆଶା ମଳିନ ମନେ ।

ତୁମର ଲୁହରେ ମିଶାଇ ମୋ ଲୁହଟିକ
ଆସିବାର ବେଳେ କହିଥାନ୍ତି ମୁଁ ପଦେ,
ବନ୍ଧୁର ଯେତେ ହେଉ ହେ ଆମରି ପଥ
ଗ୍ରହଲବାକୁ ହେବ ଗାର ବନ୍ଧମ ମଦେ ।

ସଂଗ୍ରାମ ଖାଲି ସଂଗ୍ରାମ କରି କରି
କ୍ଷତ ବିକ୍ଷତ କରି ଏହି ଦେହ ମନ,
ପ୍ରାଣର ବଂଶୀ ବଜାଇବା ପାଇଁ ହେବ
ଦେଖୁ ଏ ଦୁନିଆ କରି ଯେତେ ହୀନତମ ।

ଆମରି ମଳିନ ଓଠ ତଳେ ତଳେ ସଖୀ
ବଳିଷ୍ଠ ହସ ଆମେଇ ତ ଫୁଟାଇବା;
ପଡ଼ି ରହିଥିଲେ ଚିରଦିନ ପଡ଼ି ପଡ଼ି
ପଙ୍ଗୁ ପରିଏ ଏ ଧରଣୀ ଗୁଡ଼ିଯିବା

କେତେ ବନ ବିଲ ନଦୀ ପ୍ରାନ୍ତର ପାରେ
ରହିଲି ରହିଲି ତୁମକୁ ବିରହ ଦେଇ,
ଏଇ ହାତେ ପୋଛୁ ତୁମର ଆଖିର ଲୁହ
ଆସି ମୁଁ ଥାନ୍ତି ନିଠୁର ବିଦାୟ ନେଇ ।

କେତୋଟି ଦିନରେ ପ୍ରାଣର ଯେ ଘେନାଘେନ,
କେତୋଟି ଦିନରେ ଏତେ ଯେ ମମତା ମାୟା,

ବର୍ଷୋର ପାରୁନି ବର୍ଷୋର ପାରୁନି ମୁହିଁ,
ଲୁହ ଛଳଛଳ ହୋଇ ଆସେ ଆଖି ଆହା !

ତୁମର ଲୁହରେ ଆର୍ଦ୍ର ମୋ ଦେହ ମନ ।
ତୁମର ବୀଣାରେ ସ୍ପନ୍ଦିତ ମୋର ହୃଦୟ ।
ମୁଁ ଯହିଁ ବୁଲିଚି ତୁମେ ରହିଥିବ ତହିଁ,
ଖୋଜୁଥିବ ମତେ ପାଉ ତ ନଥିବ ଆହା !

—*—

# ଜୀବନ-ନିର୍ଝର

—୧—

ତୁମେ ଯଦି ହୋଇଥାନ୍ତ ଏକଛତ୍ର ସମ୍ରାଟ ଗୋଟିଏ,
ବସିଥାନ୍ତ ଗଜଦନ୍ତ ସିଂହାସନ ପରେ,
ତମେ ଯଦି ହୋଇଥାନ୍ତ କୋଟିପତି ବ୍ୟବସାୟୀ ଜଣେ,
ତୋଳିଥାନ୍ତ ହେମ ହର୍ମ୍ୟ,
ରହିଥାନ୍ତ ସବୁବେଳେ ସବୁକାଳେ
ଟଙ୍କା ଆଉ ପଇସାର ପ୍ରାଚୁର୍ଯ୍ୟ ଭିତରେ;
ତୁମେ ଯଦି ହୋଇଥାନ୍ତ ହାଇଦ୍ରାବାଦ ନିଜାମଙ୍କ ପରି
ଭୋଗ ଆଡ଼ମ୍ବର ଆଉ ଅହଙ୍କାର ପ୍ରିୟ,
ତୁମେ ଯଦି ହୋଇଥାନ୍ତ ଅର୍ଥଗୃଧ୍ନୁ ଓକିଲ ମୁକ୍ତାର,
ମିଥ୍ୟା ଆଉ ଅନ୍ୟାୟ ଭିତରୁ
କରୁଥାନ୍ତ ନିସୃତ ବାହାର କୋଟି ମିଥ୍ୟା ଖିଅ,
ତୁମର ଜୀବନ୍ତ ସମାଧି ହୋଇଥାନ୍ତା ବହୁଦିନୁ ବହୁକାଳୁ
ତୁମର ଯେ ନିଜ ରୂପ
ଯାଇଥାନ୍ତା ମରି;
ପୃଥିବୀର ସୀମାହୀନ ପ୍ରଲୋଭନ ଶିରେ ହର୍ଯ୍ୟକ୍ଷ ବିକ୍ରମେ
କରି ପଦାଘାତ

ଫୁଟିଅଛ ଛୁଟିଅଛ ତୁମେ
ଦେଶପ୍ରାଣ ଜାତିପ୍ରାଣ
କବି ଗୋଦାବରୀଶ !!

—୨—

ସୀମାହୀନ ଦୁଃଖ ଦୈନ୍ୟ ଅଭାବ ଓ ଅନାଟନ
ଜୀବନର ପ୍ରଥମରୁ ଜୀବନର ଶେଷ ଯାଏ
କରିବାକୁ ରୁଦ୍ଧ ତବ ଜୀବନର ପଥ
ଆସିଛି ଆସିଛି ବହୁବାର,
କିନ୍ତୁ ତୁମକୁ ସେ ପାରିନାହିଁ କରି ପଙ୍ଗୁ ପାଦନତ,
ତୁମକୁ ସେ ପାରିନାହିଁ ଛୁଇଁ,
ତୁମେ କିନ୍ତୁ ନିରଳସ ଅନାହତ,
ଚାଲିଅଛ ବୀର ଦର୍ପେ
ସୀମାହୀନ ଉତ୍ସାହ ଓ ଜିଦ୍ଧୀପଣା ଧରି ।
ମନୁଷ୍ୟର ମହାଶକ୍ତି ପାଶେ ଅଛି କିବା ବାଧା ବା ବନ୍ଧନ ?
ସମସ୍ତ ରହିବ ଦୂରେ ପରାଜିତ ଶତ୍ରୁ ପରି
ହୋଇ ନତଜାନୁ ।
ତୁମେ ତା'ର ବରିଷ୍ଠ ନମୁନା,
ଦେଇଛ ଦେଇଛ ଖୋଲି ପ୍ରାଣର ଯମୁନା,
ଡେଇଁ ଭୃଗୁ ଉପତ୍ୟକା, ଅଧିତ୍ୟକା ବିଶାଳ ଉପଳଖଣ୍ଡ,
ଚାଲିଅଛ ମାଡ଼ି
ଯୋଜନ ଯୋଜନ ବ୍ୟାପୀ ରୁକ୍ଷ ମରୁଶିରେ
ଅମୃତର ରସଧାର ନିସୃତ ଅଜାଡ଼ି !

—୩—

ଆମ ଗାଆଁ ଆମ ସାଇ ଆମ ପଡ଼ିଶାର—
ସୀମାହୀନ ଅଶ୍ରୁ ହାହାକାର,
ଦୁଃସହ ଦୁର୍ବହ ଯେ ବେଦନାର ଭାର,
ଦେଖିପିଏ ଦେଖେ ନାଇଁ, ବୁଝିଁ ଯିଏ ବୁଝେଁ ନାଇଁ,
ଚାଲିଯାଏ ପଥେ ପଥେ
ସିଏ କି ପୁରୁଷ ସିଂହ ?
ତା' ଯେଉଁକି ପରଚାର ଦୁର୍ବଳପୁଣି ଛାରୁ

ହସି ହସି ନାଚ ନାଚ ଉଇଁ ଆସେ ପାଟଳ ତପନ
ଫେଇ ଘନ କୃଷ୍ଣ ରାତ୍ରି !
ପୁରୁଷ ସିଂହ ହେ ଗୋଦାବରୀଶ !
ଶିରେ ତବ ବାଜୁଅଛି କଠୋର ଅଙ୍କୁଶ,
ପଥେ ପଥେ ପଡ଼ୁଅଛି ତବ ସହସ୍ର କୁଳିଶ,
କାହାରେ ଖାତିର ନାହିଁ କର,
ଗଢ଼ିଅଛ ଏଇ ମାଟି ଏଇ ଦେଶ
ପତିତ ଦଳିତ ନିଷ୍ପେଷିତ ବୁକୁତଳେ
ଜୀବନର ରସଧାରା ସୋହାଗେ ସଞ୍ଚାରି !
ତୁମେ ତୁମ ଲାଗି ନ ଥିଲ ତ ଆସି
ଆସିଥିଲ ସହସର ଲାଗି
ସହସ୍ରରେ ନିଜଟିକ ଢାଳି
ହୋଇଅଛ ସହସ୍ରର ପରାଣ ସଙ୍ଗୀନି !

—୪—

ହେ, ଗୋଦାବରୀଶ !
ତୁମେତ୍ତ ଗୋଟିକଯାକ କବି !
ଜୀବନରୁ ବଡ଼କରି ଯାଉଥିଲ ଦେଶଟାକୁ ତୁମେ ଅନୁଭବି;
ଏ ଦେଶର ସୀମାହୀନ ଅରକ୍ଷ ଜନତା
ଏ ଦେଶର ବନ ବଳ ପାହାଡ଼ ପ୍ରାନ୍ତର,
ଏ ଦେଶର ନଦୀ, ହ୍ରଦ ପାଟ ସରୋବର,
ଏ ଦେଶର ପୁରପଲ୍ଲୀ, ଏ ଦେଶର ଚନ୍ଦ୍ର ସୂର୍ଯ୍ୟ,
ଏ ଦେଶର ପୁଣ୍ୟ ସମୀରଣ,
ଏ ଦେଶର କମ୍ବଦନ୍ତୀ, ଏ ଦେଶର ଇତିହାସ,
ଏ ଦେଶର କାହାଣୀ ଅଗଣ୍ୟ,
ଏ ଦେଶର ରାଜା ମହାରାଜା, ଏ ଦେଶର ସେନା, ସେନାପତି,
ଏ ଦେଶର ଦାନ ଧର୍ମ, ଏ ଦେଶର ଅକ୍ଷୟ କୀରତି,
ଏ ଦେଶର ଦୈନନ୍ଦିନ ସୁଖ ଦୁଃଖ ସହସ୍ର ଘଟଣା,
ଏ ଦେଶର ଯେତେ ଯାହା ସାର ବା ଅସାର
ଯେତେ କୁସଂସ୍କାର ଆବର୍ଜନା,
ସମସ୍ତକୁ ରୂପ ଦେଇ ସମସ୍ତକୁ ପ୍ରାଣ ଦେଇ

ରଚିଗଲ ଯେ ସୃଷ୍ଟି ନୂତନ
ତା’ର କ୍ଷୟ ନାହିଁ କଦାଚନ !
ଏ ଭଳି ଜୀବନ୍ତ କରି, ଏ ଭଳି ଅନ୍ତର ଭରି
ଦେଇଗଲ ଯେଉଁ ମଧୁ ତାନ
ଯୁଗେ ଯୁଗେ ରହିବ ଅମ୍ଳାନ ।
ଏ ମାଟିକୁ ପ୍ରାଣଭରି ନପାଇଲେ ଭଲ
ଫୁଟି ଫୁଟି ଆସେ କେବେ ଏଇଭଳି ପ୍ରାଣବନ୍ତ !

—୫—

ମୃତ୍ୟୁ ଓ ଜୀବନ ମେଳେ ଯେ ଟିକକ ବ୍ୟବଧାନ ରେଖା
ତୁମ ପାଖେ କାହିଁ ତାର ସ୍ଥିତି ?
ଜୀବନ ଜୀବନ ତୁମେ କେବଳ ଜୀବନ ।
ଅନନ୍ତର ଅସୀମର କୂଳେ ଯାଇଅଛ—
ରଚି ଯେଉଁ ପ୍ରାଣର ବନ୍ଧନ
ଜୀବନ୍ତ ସେ ସୁନ୍ଦର ସେ, ଅକ୍ଷୟ ସେ ଅବ୍ୟୟ ସେ,
କାଳଦନ୍ତ କାଟି,
ରହିଥିବ, ଥିବାଯାଏ ଏ ଧରଣୀ ଏ ଆକାଶ
ଏ ମାନବ ଜାତି !
‘ଆଲେଖିକା’, ‘କଳକା’ ଓ ‘କଣଳୟ’
ବା ‘ମୁକୁନ୍ଦ’ ଓ ‘ପୁରୁଷୋତ୍ତମ ଦେବ’
ଏ ସବୁରୁ ବଳି
ଆଉ କି ଜୀବନ୍ତ ସ୍ମୃତି
ଗଢ଼ିବା ସମ୍ଭବ
ତମ ପାଇଁ
ଜାଣିପାରେ ନାହିଁ ।
ହେ, ମୋର ଓଡ଼ିଆ ଜାତି !
ବୀର ପୂଜା ପ୍ରତିଭାର ପୂଜା
କରିବାକୁ ଯେବେ ତୁମେ ଚାହିଁ
ତାର ସେ ପ୍ରାଣର ବାଣୀ
ଥରେ ପଢ଼ିଯାଅ !
ଦେଖିବ କିଭଳି ତୁମେ

ଆକାଶ ଅବନୀ ଭରି ଉଠ'ବ ପ୍ରସର
ଗୃହେ ଯାହା ଦେଶପ୍ରାଣ ଜାତିପ୍ରାଣ—
ପୁରୁଷ-ପୁଂଗବ
କବି ଗୋଦାବରୀ !!

—— –

## ସ୍ମୃତି
### ୩୦

ସେଇ ସ୍ୱର୍ଯ୍ୟ ଢଳଢ଼ଳ ଆସେ
ଏଇ ନୀଳକାନ୍ତ ନଭେ;
ସେଇଭଳି ଆସେ ସନ୍ଧ୍ୟା ଶର୍ବରୀ ସକାଳ;
ସେଇ ଭଳି ଫୁଲ ଫୁଟେ, ବାଆ ବହେ;
ସେଇଭଳି ବନେବନେ ତରୁପନେ
ଖେଳିଉଠେ ଶ୍ୟାମଳ ସମ୍ପଦ;
ସେଇଭଳି ତଟିନୀଟି ବହିଯାଏ
ଅବୋଧ୍ୟ ଗୀତିକା ଗାଇ ଦୂରେ ବହୁଦୂରେ;
ଫେରନ୍ତି ଗୋଧନ ପଲ;
ସନ୍ଧ୍ୟାତାରା ଉଇଁ ଆସେ, ଦିଗନ୍ତ ପାହାଡ଼ ଚୂଳେ
ପଡ଼େ ଜ୍ୟୋସ୍ନା, ଶସ୍ୟ ଗନ୍ଧ ପବନେ ପବନେ ଆସେ—
ସୁଦୂରୁ ସଞ୍ଚର,
ଦୂରସ୍ଥିତ ପଥିକର ମୋହନ ସଙ୍ଗୀତ
ଭାସି ଆସେ ବହୁଦୂର
ପରାଣେ ପରାଣେ ବାଡ଼ି
ଅଜାତର ମୋହନ ଉନ୍ମେଷ ।
କିଏ କାନ୍ଦେ, କିଏ ହସେ,
ଭବିଷ୍ୟର ସୁନେଲି କଳ୍ପନା କିଏ ଦେଖେ ବସି,
କିଏ କାହିଁ ଜୀବନର ଅନ୍ତିମ ଶୟନେ
ସୁଦୂରର ସ୍ୱପ୍ନ ଦେଖେ;

ଅନନ୍ତ ଘଟଣା ସ୍ରୋତ ବକ୍ଷତଳେ ବହି
ଚାଲିଚି ଏ ବିଶାଳ ଧରଣୀ;
ଏ ସବୁ ଭିତରେ ମୋର କିଏ ଆଜି ପଡ଼ୁଯାଏ ମନେ ?
ତାହାରେ ଖୋଜେ ମୁଁ ଆଜି—
ହୋଇ ଆତ୍ମହରା ;
ନ ଆସିବ, ନ ଫେରିବ ଯିଏ
ତାହାପାଇ ଏତେ କମ୍ପା
ଆକୁଳତା ବ୍ୟାକୁଳତା,
ତାହାପାଇଁ ଏତେ କମ୍ପା
ଅନ୍ୱେଷଣ ମୋର

ଏଇ ପଥ ଘାଟ
ଏଇ ବିଲ ବନ ଶଇଳ ପ୍ରାନ୍ତର
ସକଳରେ ପଶୁରେ ମୁଁ
ଥର ଥର କରି,
ଆଉକି ଆସିବ ନାଇଁ
ଚିରଦିନ ଚିରକାଳ ଧରି
ସେ କି ଆଉ ଫେରିବନି ?
ଯାହା ଯାଏ ସେ କି ଯାଏ ଅନନ୍ତ ସମୟ ପାଇଁ
ଦୂରେ ଦୂରେ ବହୁଦୂରେ ମିଶିବେ ଉଭାଇ
ଚିହ୍ନବର୍ତ୍ତି ମିଳେ ନାଇଁ ତାର ?
ତେବେ କମ୍ପା ଗଭୀର ପ୍ରତୀକ୍ଷା ମୋର ?
ଏତେ ଭଲ ପାଇବାର
କରିବାର ଏତେ ଆପଣାର
ସବୁ କଣ ବ୍ୟର୍ଥତାର ଅନନ୍ତ ସମୁଦ୍ର ମିରେ
ବୁଡ଼ିଯିବା ପାଇଁ
ଏତେ ଯେ ବନ୍ଧନ ମାୟା
ଜୀବନର ଏତେ ଏତେ—
ପ୍ରାଣ ଢଆଦେଇ
ତାର କଣ ଅର୍ଥ କିଛି ନାଇଁ ?
ସବୁ ସତେ କ୍ଷଣିକ ଭଙ୍ଗୁର ?
ସବୁ ବ୍ୟର୍ଥ ? ସବୁ ତୁଚ୍ଛ ?

ସବୁ ଖାଲି ମୋହ ଇନ୍ଦ୍ରଜାଲ ?
ସୀମାହୀନ ପ୍ରହେଳିକା ଭିତରେ କି ଖାଲି
ଛନ୍ଦହୋଇ ବୁଲିଅଛୁ ନର ?
ନିଜରେ ବିସ୍ମିତ ଏତେ ବିଜ୍ଞ ଓ ବିବେକୀ
ଆସୁନି ବିଶ୍ୱାସ ମୋର
ଜୀବନର ବିଶାଳ ସାଧନା—
ବର୍ଷ ବର୍ଷ ଯୁଗ ଯୁଗ ଧରି
ଗୋଟିଏ ନିମେଷେ ଯିବ
ସ୍ୱପ୍ନ ସମ ସୁଦୁରେ ଉଭାଇ ?

ଜୀବନ ଅଖଣ୍ଡ ସ୍ୱପ୍ନ, ମହା ବିଧାତାର
ନାହିଁ ତାର ଧ୍ୱଂସ ନାହିଁ ଲୟ କାଳେ କାଳେ
ଛନ୍ଦତୋଳି ଏ ସୃଷ୍ଟିର ବୀଣା ତାରେ ତାରେ
ବାଜି ବାଜି ଉଠେ ସେହୁ ଅନନ୍ତ ସମୟ ଧରି ।
ଆଜି ମୁଁ ଏ ମହାବିଶ୍ୱେ ଭଲପାଏ ଯାରେ
ତା'ର ଯଦି ସତ୍ତା ଆଜି ନାହିଁ ଏଥି
ତା'ରେ କପାଁ ଭଲପାଏ ମୁହିଁ ?
ତା' ପାଇଁ ମୋ ମମତା ବନ୍ଧନ
ଛୁଟି ଛୁଟି ଆସେ ନାହିଁ,
ବରଂ ବଢ଼େ ଅଧିକୁ ଅଧିକ ହୋଇ ।
ଶାଶ୍ୱତ ଅନ୍ତର ତା'ର
ଏ ବିଶ୍ୱର ପ୍ରତି ରେଣୁ କଣିକାରେ
ମିଶି, ଦାଉ ଦାଉ ହସେ ନି କି ମତେ ?
ଖେଳିଚି ବୁଲିଚି ଯହିଁ
ଯହିଁ ସେ ଦେଖିଚି କେତେ ସ୍ୱପ୍ନ ମଧୁମୟ
ତା'ଅନ୍ତର ସେଠି ଆଜି କରେନି କି ବିଚରଣ ?
ନାହିଁ ଥିଲେ ତା ଅନ୍ତର ତହିଁ
ମୋରେ କିମ୍ପା ସେ ଥାନର ପ୍ରତିଟିକ
ଏତେ ଆଜି ଲାଗୁଥାନ୍ତା ଭଲ ?
ଏଇ ଗଛ ତଳେ
ମତେ କେତେ କହିଚି ସେ କଥା ।
ଆଜି ଯେବେ ସେଇ ଥାନେ

କରେ ମୁହିଁ ବିଚରଣ
ମୋର ଆଜ ହୁଏନା କି ଇଚ୍ଛା
ଭୁଲୁଥାନ୍ତି ସେଥି ମୁହିଁ
ସ୍ମରି ତାରି କାଳ କାଳ ଯୁଗ ଯୁଗ ଧରି
ମୋର ଯେତ୍କେ ହୁଏ ମନେ
ଦେଖୁଚି ସେ ମତେ
ବୁଝୁଚି ସେ ମୋ ଅନ୍ତର ଅନୁଭୂତି
ତା' ମୋ' ଭିତରେ ଯେଉଁ—
ଟିକିକ ବନ୍ଧନ
ସେ ଆଜ ନିବିଡ଼, ନିବିଡ଼ ଲାଗେ;
ବୁକୁତଳେ
ସେ ଯେ ଆଜ
ମୁହୂର୍ମୁହୁ ଜାଗେ !
ମୁ ଯାରେ ପାଇଚି ଭଲ,
ବକ୍ଷ ଚିରି ଯାରେ
ଜୀବନ ସର୍ବସ୍ୱ ମୋର
ଦେଇଚି ଅରପି,
ଅନ୍ତରେ ଅନ୍ତରେ ଯାରେ
ଜୀବନର ଗଣ୍ଠିଧନ କରି
ରଖିଚି ସାଇତି
ଏ ସକଳ
ଏ ମହା-ସୃଷ୍ଟିର ପ୍ରତି ତନ୍ତ୍ରୀରେ ତନ୍ତ୍ରୀରେ
ବାଜୁଥିବ
ସଙ୍ଗୀତର ମୋହନ ମୂର୍ଚ୍ଛନା ପରି,
ଲଭି ସେ ଯିବନି କେବେ !

ତେବେ ମୁଁ କେମନ୍ତେ କହ
ତାହା ପାଇଁ ହେବନାହିଁ ଭଲ ?
ମୋ ଭଲବା ମିଥ୍ୟା ନୁହେଁ,
ନୁହେଁ ଇନ୍ଦ୍ରଜାଲ;
ତାହାପାଇଁ କାନ୍ଦ କାନ୍ଦ
ଧରଣୀରେ ଯିବ ଯେବେ ଗଡ଼ି

ଉଚ୍ଚାର ତାହାର ନାଆଁ,
ତାରେ ଯେବେ ଚିତ୍ରନ—
ହେଉଥିବ ଭଲ,
ଅଖାତର ଯେତେ ଯେତେ
ସୁଖ ଦୁଃଖ ଅନନ୍ତ ଘଟଣା
ତା'ଭିତରେ ଆଙ୍କୁଥିବ,
ତାର ଯେବେ ମୂର୍ତ୍ତି ବିମୋହନ
ଏ ସବୁରେ ପ୍ରାଣ ଅଛୁ, ସତ୍ୟ ଅଛୁ,
ଅଛୁ ସାର୍ଥକତା !
କୌଣସିଟି ମିଥ୍ୟା ନୁହେ
ନୁହେ ଅସାର ପ୍ରଳାପ !

ସତ୍ୟରୁ ଜନମ ମୁହିଁ
ସତ୍ୟରୁ ଜନମ ମୋର—
ଅନ୍ତରର ସକଳ ମମତା,
ମୋର ଏ ଯେ ଅନ୍ୱେଷଣ
ତାରେ ପାଇବାକୁ
ଏ' ଯେ ଗଭୀର ଆବେଗ,
ଏ କି ନୁହେ ସତ୍ୟ ତେବେ ?
ଯାହା ସତ୍ୟ ତାହାହିଁ ଆନନ୍ଦ
ଯାହା ଆନନ୍ଦ—
ତାହାହିଁ ଏ ସୃଷ୍ଟିର ପ୍ରକାଶ !
ତା ପାଇଁ ମୁଁ କରୁଚି—;
ଯେ ଅନ୍ୱେଷଣ
ନୁହେଁ ଅନ୍ଧ
ନୁହେ ଭ୍ରାନ୍ତ ମୁହିଁ !

———

# ଜୀବନ୍ତ ବିପ୍ଳବ ତମେ

ତୁମେ ଏକା ଏ ମାଟିକି ବକ୍ଷଭରି ପାଇଅଛ ଭଲ
ତୁମେ ଏକା ଚିହ୍ନିଅଛ ଏ ମାଟିର ଅନ୍ତର ବାହାର !
ତୁମେ ଏକା ପାଇଅଛ ଏ ମାଟିର ପୂର୍ଣ୍ଣ ପରିଚୟ
ତୁମେ ଏକା ଏ ମାଟିର ଖୋଜିଅଛ ଶାଶ୍ୱତ ବିଜୟ !
ତୁମେ ଏକା ଏ ମାଟିକି କରିଅଛ ଅନୁଭବ
ହୃତ୍‌ପିଣ୍ଡର ସକଳ ସ୍ପନ୍ଦନେ
ତୁମେ ଏକା ଏ ମାଟିର ତୁଲେ ଆପଣାକୁ ବାନ୍ଧିଅଛ
ମୋହନ ବନ୍ଧନେ !
ତୁମେ ଏକା ଏ ମାଟିର ବିଜୟ ଗୌରବେ
ହସିଅଛ ପ୍ରାଣପୂର୍ଣ୍ଣ ହାସ !
ତୁମେ ଏକା ଏ ମାଟିର ଅତୁଳ ଐଶ୍ୱର୍ଯ୍ୟେ
ପାଇଅଛ ପରମ ଉଲ୍ଲାସ !

ଏ ମାଟିର ଦୁଃଖେ ତୁମେ କାନ୍ଦିଅଛ
ନୟନର ପ୍ରତି ଅଶ୍ରୁଧାରେ
ବିପ୍ଳବର ନିଆଁ ହୁଳା ଦଗ୍‌ଦଗ୍‌ ଗେ ଜାଳି !
ଏ ମାଟିର ସୀମାହୀନ ବିପଦରେ
ଏ ମାଟି କାନ୍ଦିବ ଯେବେ ଅସହାୟ ଶିଶୁପରି
ପାରିନ ପାରିନ ରହି ହାରି ରୁଦ୍ଧକରି ତମେ
ନିଜର ସମସ୍ତଟିକ ଦେଇଅଛ ଅକାତରେ
ସଂଗ୍ରାମର ଅଗ୍ନିକୁଣ୍ଡେ ଢାଳି !!
ତୁମେ ସେହି ସୁନ୍ଦର ଶହୀଦ୍‌
ତୁମେ ସେହି ବୀର ଅରିନ୍ଦମ
ଜୀବନରୁ ବଳି ଆହୁରି ଜୀବନ୍ତ ତମେ
ଏଇ ପୃଥିବୀରେ ନାହିଁ କେହି ତୁମ ସରିସମ !

ହେ ବୀର ଶହୀଦ୍‌ !
ସତ୍ୟଲାଗି ମୁକ୍ତିଲାଗି ପୃଥିବୀର ଜୀବନ୍ତ ବିପ୍ଳବ ତମେ !
ତୁମେ ହେ ରହିତ ବଞ୍ଚି
ସୂର୍ଯ୍ୟଠାରୁ ବଳି ହୋଇ ଆଜି ତେଜୋସ୍ଥାନ

ଝଡ଼ପରି ଚତୁର୍ଦ୍ଦିଗେ ଯାଇଚ ସଞ୍ଚରି
ଅଗ୍ନି ପରି ଦେଇଅଛ ବୁଣି
ଜୀବନର ସ୍ୱର୍ଣ୍ଣ କଣା ଦଶି ଦଶି ଭରି !
ପ୍ରଳୟ ସମୁଦ୍ର ପରି ଅଥୟ ଚଞ୍ଚଳ ତୁମେ
ରଚିବାକୁ ଧ୍ୱଂସ ଯହିଁ ଅତ୍ୟାଚାର ଅନାଚାର ଯାଇଚ ପ୍ରସରି ।
ତୁମ ମାଂସ ରକ୍ତ ହାଡ଼ ଆତ୍ମା
ଏ ମାଟିର ସକଳରେ ଯାଇଚ ସଞ୍ଚରି
ହେ ଜୀବନ୍ତ ବିପ୍ଳବ ! ବିଦ୍ରୋହ ! ତୁମର ଯେ ଶେଷ
ତୁମକୁ କରିଚି ଆଜି ଅନନ୍ତ ଅଶେଷ !
ତୁମେ ଆଜି ନୁହ କେଉଁ କ୍ଷୁଦ୍ର କୁଟୀରର ଧନ
ତୁମେ ଆଜି ବିରାଟ ବିଶ୍ୱର ଅସୀମ ଓ ଅପୂର୍ବ ଉନ୍ମେଷ !
ହେ ଶହୀଦ ! ହେ ଜୀବନ୍ତ ସନାତନ ବିପ୍ଳବ ! ବିଦ୍ରୋହ !
ଏଇ ମହା ବସୁଧାର

ମତେ ଆଜି କର ହେ କଲ୍ୟାଣ
ଚାଲେ କାଟି ଧରଣୀର ଘନ ଅନ୍ଧକାର
ଶେଷ ମୋର ହୋଇଯାଉ ଅଶେଷ ଭିତରେ
ଚିରଦିନ ଏ କାମନା କରେ ।

---

## ଅସମାପ୍ତ

ସତ୍ୟାଗ୍ରହର ସଂଗ୍ରାମେ ଥିଲା ସୈନିକ ସିଏ ଜଣେ
ଜନମିଥିଲା ସେ କେଉଁ ପଲ୍ଲୀର ନିଃସ୍ୱ କୁଟୀର କଣେ ।
ବଦନେ ତାହାର ସତ୍ୟର ଆଭା ପ୍ରାଚୀ-ସିନ୍ଦୂର ପରି
ପ୍ରତି ଧମନୀରେ ଉଷ୍ଣ ଶୋଣିତ ନାଚୁଥିଲା କେତେ ଭଳି;

ମୁମୂର୍ଷୁ ଏଇ ଜାତିର ବକ୍ଷେ ଦେବାକୁ ସଞ୍ଜୀବନୀ
ସବୁ ଗୌରବୁ ବଡ଼ ଗୌରବ ହେବାଜାଣି ଥିଲା ମଣି

ପାଠ ପଢ଼ୁଥିଲା ଗୁଡ଼ିଦେଲା ପାଠ, ସଂଗ୍ରାମେ ଗଲା ମିଶି
କି ମହାଆଲୋକ ନୟନେ ତାହାର ନିମିଷକେ ଗଲା ପଶି !

ଯେ ପାଠ ପଢ଼ିଲେ ଗୋଲାମ ହେବାକୁ ବକ୍ଷେ ବାସନା ଜାଗେ,
ଯେ ପାଠ ପଢ଼ିଲେ ଜାତିର ଦୁଃଖ ଦଶନା ନୟନ ଆଗେ,
ଯେ ପାଠ ପଢ଼ିଲେ କୋଟି ଦୁଃସ୍ଥର ଶିରେ କର ପଦାଘାତ,
ବଡ଼ ହେବା ପାଇଁ ଦୁର୍ବାର ତେଜ ଆଶା ହୁଏ ସଂଜାତ,—

ସେ ପାଠ ନପଢ଼ି ମୂର୍ଖ ରହିବା ସତଗୁଣେ ନାହିଁ ଭଲ ?
ସେଇ ପାଠ, ପାଠ; ଯହିଁରେ ହୃଦୟ ବିକଶଇ ମଣିଷର !
ଗାନ୍ଧିର ବାଣୀ ଶୁଣି ବୁଦ୍ଧୁଛଳ ହେଲା କିବା ଉନ୍ମନ
ଖଦଡ଼ ପିନ୍ଧେ ସୂତା କାଟେ ବହି ନିତ୍ୟ ଖୁସିମନ

ସପ୍ତାହେ ଥରେ ଗାଆଁ ସଫା କରେ ଧରିତ ତରୁଣଦଳ,
ସତ୍ୟାଗ୍ରହୀର ସକଳ ନିୟମ ମାନିଥାଏ ବରାବର ।
ସତ୍ୟାଗ୍ରହର ସଂଗ୍ରାମେ ଥିଲା ସୈନିକ ସିଏ ଜଣେ,
ଜନମି ଥିଲା ସେ କେଉଁ ପଲ୍ଲୀର ନିସ୍ୱ କୁଟୀର କଣେ !

କେତେ ଯେ ଦୁଃଖ ଅଭାବ କଷ୍ଟ ଭୋଗିଚି ଜୀବନେ ତା'ର
ପଥର ଶୁଣିଲେ କାନ୍ଦଉଠିବ ବହିବ ଅଶ୍ରୁଧାର !
କେବେ ଖାଏ କେବେ ଉପାସ ଭୋକରେ କରଇ ଜାତିର ସେବା
ହିମାଚଳ ସମ ଅସୀମ ଧୈର୍ଯ୍ୟ ଦେଖିଚି ତାହାର କେ'ବା;

ମନେପଡ଼େ ଯେବେ ସ୍ୱରାଜ ଭବନ ପୁଲିସ ଜବତ କଲା
ଗୁଡ଼ିଲା ନି ସେହୁ ଜାତୀୟ ପତାକା ଜାତି ଗୌରବ ଭରା ।
ଲାଠି ପରେ ଲାଠି ପିଟିରେ ତାହାର ନିର୍ମମେ ହେଲା ମାଡ଼,
ବନ୍ଧୁକ ଉଦେ ଛତିଅଙ୍ଗୁ ତା' ବହିଲା ଶୋଣିତ ଧାର ।

ଜାତିର ପତାକା ବୁକେ ଯାକିଧରି ତଳେ ଯାଇଥାଏ ପଡ଼ି
ମାଆ ମାଆ ମାଆ ଡାକୁଥାଏ ଖାଲି ଆଭୁଟେ ଘଡ଼ିକି ଘଡ଼ି;
ଯୋତା ଗୋଡ଼େ ତା'ରେ ପୁଲିସ୍ କେଉଁକ ଦେଉଥାଏ ଆହା ଦଳି,
ଗୃହିଁ କେ' ପାରିବ ରକ୍ତ ମାଉଁସ ଦେହ ଏ ଧରାରେ ଧରି ?

ମୂର୍ଚ୍ଛିତ ହେଲା ଉପରେ ଆକାଶ ନମ୍ରେ ବ ନ୍ଦିରା
ସୋରି ସୋରି ନୋଳା ଫାଟି ଯାଇଅଛି ଗୃହିଁ ହେଉ ନାହିଁ ପରା !

ଜାଣିପୃ ପଚାକା କରେ ଧର ଧର ଦରମବ ହୋଇ ସିଏ,
ସେ'ଦିନ ଗୃଲଲ୍ କଏଶି ଖାନାକୁ ନ ଦେଖିଚ କହ କଏ ?

'ମାରଦିଅ ମରେ ଦଳଦିଅ ମରେ ନିଃଶେଷ ମରେ କର
ସହୁ ପାରବନ ଜାଣର ବୁକୁରେ ବାଜଲେ ବଜ୍ର-ଶର',
କହି ଗୃଲଥାଏ ବନ୍ଦୀଶାଳାରେ ସୈନିକ ସିଏ ଜଣେ
ଥପ ଥପ ଥପ ଶୋଣିତ ଅଙ୍ଗୁ ଝରୁଥାଏ ପ୍ରତିକ୍ଷଣେ ;

ସୁଦୂର ପାଟନା ଶିବର କାରରୁ ଯେ ଦିନ ଆସିଲ୍ ଫେର
ଶୀର୍ଣ୍ଣ ତାହାର ପ୍ରତ ଅବୟବ, ମୁହଁ ପଡ଼ିଅଛ୍ଛ ନେଳ !
ଦୁଇମାସ ଧର ଭୋଗି ଭୋଗି ଖାଲ ରକ୍ତର ଆମାଶୟୁ
କଣ୍ଠା ଖାଲ ତା' ଦେହେ ଦୋହଲୁଚ, ଦେଖେ ନାହିଁ ମନେ ଭୟୁ,

ଦରିଦ୍ର ତାର କୁଟୀରେ ଦେଖିଲ୍ ପତ୍ନୀ ତା' ରୋଗ-ଶେଯେ
ଖାଦ୍ୟ ମିଳନ, ଔଷଧ ମିଳନ ଯନ୍ତ୍ରଣା ପାଏ ସେ' ଯେ;
ଦୁଇଟି ଅଶ୍ରୁ ପତ୍ନୀର ଗଲ୍ ନୟୁନ ଯୁଗଳୁ ଝର
'ନୟୁନେ ଯାହା ମୁଁ ଦେଖିଲ ଟିକିଏ ନିମିଷକେ ଯିବ ମର';

ଏତକି କହି ତା ଦୁର୍ବଳ ଦେହେ ଆଉଜ ପଡ଼ଲ୍ ବାରେ
ସେତକିରେ ତା'ର ଅନ୍ତିମ ବାୟୁ ଉଡ଼ିଗଲ୍ ପରପାରେ !
ବୀର ସୈନିକ ବୀର ପର ତାରେ ଗୃହିଁଲ୍ ଟିକଏ ଥରେ
ଗରଜ କହିଲ ପତ୍ନୀ ମୃତ୍ୟୁ-ଶେଯେ କି ଦମ୍ଭଭରେ;

"ଦୀନ ଦୁଃଖୀର ଯାତନା ବୁଝେନା ଯେ ଦେଶର ସରକାର
ସରକାର ନୁହେଁ ସେକି ଜୀବନ୍ତ ଭୀଷଣ ଅତ୍ୟାଗ୍ଚର ?
ଜାଉ, କାଞ୍ଜି ବା ଖ ଦୁପିଚା ଖାଇ ଜୀବନ୍ମୃତ ଯେ ଜାତି
ମଣିଷ ବକ୍ଷ ବହି ତରଳୁନ କି ଭଳି ଶାସକ ଗୁତି ?

କୋଟି ପରଜାର ଲୁହ ନିଃଶ୍ୱାସ ଉଷ୍ଣ ଶୋଣିତ ଧାର
ସମ୍ଭାଳି ନେବ କେଉଁ ସରକାର କେଉଁ ହତିଆର ?
ସମୟୁ ଆସିବ ସମୟୁ ଆସିବ ହେବ ଯୁଗର ଅବସାନ
ବେଶୀଦିନ ନାହିଁ ରହେ ଅନ୍ୟାୟୁ ମାଡ଼ ତାର ଆସ୍ଥାନ ।"

ଘଟନାଇ ଆସିଲ୍ ବିପ୍ଳବ ଯେବେ ଆଇନ ଭଙ୍ଗ ଲାଗି
ବୀର ବକ୍ରମ ବୀର ସୈନିକ ଉଠିଲ୍ ଦମ୍ଭେ ଯାଗି,

ହଜାର ହଜାର ଜନତା ଆଗରେ ଦେଖାଇ ସିଂହଠାଣି
ଆଗ୍ନେୟ ଗିରି ଅଗ୍ନି ପରାଏ ବର୍ଷିଲି ବୀରବାଣୀ

'ହିମାଦ୍ରି ଠାରୁ କୁମାରିକା ଯାଏ ସମଗ୍ର ଭାରତର
ଯେତେ ଯହିଁ ଅଛ ପୁରୁଷ ଓ ନାରୀ ଭାରତୀୟ ଶୋଣିତର
ବ୍ରିଟିଶ ଶାସନ ପାଦତଳେ ଦଳି କରହେ ଅଗ୍ରଗତି
ନୂତନ ଶାସନ ପ୍ରତିଷ୍ଠା କରି ଚାଲ ଅବିଚଳ ମତି

ତୋପ ବନ୍ଧୁକ ଗୁଳି ଗୋଳା ବୋମା ସ୍ତବ୍ଧ ରହିବ ଚାହିଁ
ଅତ୍ୟାଚାରିତ ଜାତି ଯେତେବେଳେ ଚେଇଁବ ତା' ଦାବି ପାଇଁ,
କମ୍ପିତ ହେବ ନିଖିଳ ମେଦିନୀ ସ୍ତମ୍ଭିତ ହେବ ନଭ
ଫେରି ନ ପାଇବା ଯାଏ ଜାତି ତା'ର ଜୀବନର ଗଉରବ;

ଆମେ ନୁହଁ ଦାସ—ମଡ଼ା ମୁର୍ଦ୍ଦାର, ବଞ୍ଚିଛୁ ଆମ ବଳେ
ଏ ମହାଜାତିର ବିରାଟ ଜୀବନ କୋଟି ସଂପଦ ଭରେ,
ତାହାରି ବିରାଟ ବିକାଶ ପାଇଁ କି ସକଳ ଭ୍ରାନ୍ତି ଛାଡ଼ି
ଯୁଝିବାକୁ ହେବ, ହିମାଦ୍ରି ସମ ବନ୍ଧନ ଆସୁ ମାଡ଼ି ।'

ସେ ଦିନ ପୁଲିସ ନିଠୁରେ ବାନ୍ଧି ନେଲା ଯେ ବନ୍ଦୀଶାଳେ
ସେଇ ବୀର ହିୟା ଭିତରୁ ଅଗ୍ନି ଉଠିଲା ଅସମ୍ଭାଳେ;
'ବାନ୍ଧିହେ ମତେ ଟିକି ଟିକି କରି କାଟିଦିଅ ମତେ ଭାଇ
ମୋ ଭିତରେ ଯେଉଁ ଜୀବନ ଜଳୁଛି ନିଭାଇ ପାଇବ ନାହିଁ !'

ଜାତି ସୈନିକ ଜାତି ପାଇଁ ତାର ଜୀବନ ସାରାଟି ଲଢ଼ି
ନିଃସ୍ୱ ତାହାର ଭଙ୍ଗା ଚାଳରେ ମୃତ୍ୟୁ-ଶଯ୍ୟାରେ ପଡ଼ି;
ଊର୍ଦ୍ଧ୍ୱେ ଚାହିଁଛି, ଖର ନିଶ୍ୱାସ ଛାଡ଼ୁଅଛି ଘନ ଘନ
ପାଖେ ନାହିଁ ତାର ଜୀବନର ପ୍ରିୟା—କେହି ଆପଣାର ଜନ ।

କେତେ ଲାଠି ମାଡ଼ ବନ୍ଧୁକ ଡହ କେତେ କାରାବାସ ସହି
ଶେଷ ନିଶ୍ୱାସ ଛାଡ଼ୁ ଅଛି ଏଇ ଦୂର ପଲ୍ଲୀରେ ରହି,
କେହି ଜାଣିନାହିଁ ଦୂର ପଲ୍ଲୀରେ ମରିବ ବୁଜିଚି ଆଖି
ଶେଷ ବେଳେ କିବା ଗଭୀର ବାସନା ବକ୍ଷେ ତା ଅଛି ଜାଗି !

ଜନନୀ ମରିଚି, ପତ୍ନୀ ମରିଚି, ଅଭାବ ଘେରିଚି ତାରେ,
ରୋଗର ଦାଉରେ ବଞ୍ଚିବା ଆଶା ରଖିନାହିଁ ହେଲେ ଗାରେ;

ସମସ୍ତ ଦେଇ, ଗୃହିଁଚ ସେ ତାର ନିଃସ୍ୱ ଜୀବନ ଶେଷେ,
ଦେଖନ୍ତା ଠିକେ ତା' ପ୍ରିୟ ମାଟିରେ ସ୍ୱାଧୀନ ଶୁଭ୍ର ବେଶେ;

ଦେଖନ୍ତା ତାର ସବୁ ବଞ୍ଚିତ କଷ୍ଟ ଯାଇନାଇଁ ମରି
ଲକ୍ଷ ଜୀବନ କଅଁଳ ଉଠୁଚି କବା ବସନ୍ତ କଳି !
ପାହାଡ ହସୁଚି ଆକାଶ ହସୁଚି, ହସୁଚି ପକ୍ଷୀଗତ
ହସୁଚି ତାହାର ଅନ୍ତର ଭରି ସବୁ ବେଦନାର କ୍ଷତ !!

ମୃତ୍ୟୁ ହସୁଚି ଅମୃତ ହାସ କୋଳକୁ ନେଉଚି ଟାଣି
ମୃତ୍ୟୁ ଭିତରେ ଶୁଣୁଚି ତା' ଜାତି ଅମୃତଭରା ବାଣୀ;
ଅସୀମ ଶୂନ୍ୟେ ନିଭି ଯେ ଯାଉଚି ରକ୍ତ-ବଉଦ ପରି,
ଜାତିର ଉଜଳ ସପନ ଦେଖୁଚି ସୀମାହୀନ ଯୁଗ ଧରି;

———

# ଗୋଟିଏ ପଉଷ ସନ୍ଧ୍ୟା

ଆମ ଗାଁ ଘନ ସୁଇଁ ଲଇଁ ଲଇଁ କାନ୍ଦୁଅଛି ଧାନ,
ବେଳେ ବେଳେ ହାଡ଼ମୁଣ୍ଡେ ବସୁଅଛି କ୍ଳାନ୍ତ ଯେବେ ଆସେ,
ମୁଣ୍ଡରେ ବାନ୍ଧିଚି ଟେକା ହାତେ ତାର ଧରିଅଛି ଦାଆ
ବଦନେ ଆନନ୍ଦରେଖା ବେଳେ ବେଳେ ଉଠୁଅଛି ଫୁଟି;
ବୁକୁର ଶୋଣିତ ଦେଇ କରିଚି ଯେ ଏ ଫସଲ ଗୋଟି
କେମନ୍ତେ ନାଚିବ ନାହିଁ ମନ ତା'ର ମୋହନ ଉଲ୍ଲାସେ ?
ଘରଜାଟି ତାର ଘୃତ ଧରି ଆସେ ତାହା ପାଇଁ
ଖଣ୍ଡାହଣା ଗିରି ଚୂଳେ ବୁଡ଼ିଯାଏ ଦିନାନ୍ତ ତପନ
ଗୁଚିଆଡ଼େ ଖେଳିଯାଏ ଡାଆଣିଆ ଖରା,
ସୁନାର ରାଇଜ କିଏ ଗଢ଼ି ଦେଲା ପରି
ଦିଶେ ଏଇ ବିଲ ବନ ପାହାଡ଼ ପ୍ରାନ୍ତର !!
ଗାଇଜଗା ପିଲାମାନେ ନେଉଛନ୍ତି ଗୋଠ ଗାଆଁକୁ ଫେରାଇ
କଅଁଳା ବାଛୁରୀଟିଏ

ବଣ ବୁଦା ଲଟା ତଳେ କାହିଁ
ଅସଜରେ ଚହିଅଛୁ ପାଉ ନାଇଁ
ଆସିବାକୁ ବାଟ,
ଦୁ'ଜଣ ଗଉଡ଼ ପିଲ
ଲଟା ଘାଙ୍କି ବାଟ କରି କରି
ହାତେ ଧରି ଆଣୁଛନ୍ତି
କଅଁଳା ବାଛୁରି ;
ବାହାରକୁ ଆସି ସେତୁ
ଫକ୍ ଫକ୍ ଡେଇଁ
ଯାଏ ତାର ମା ସଙ୍ଗେ
ମେଁ ମେଁ କରି,
ମୁକୁଳା ଜୀବନ ଯହିଁ
ଛନ୍ଦି ସିନା ଐଶ୍ୱର୍ଯ୍ୟର
ଅନନ୍ତ ସଂପଦ !!

ମୁଣ୍ଡେ ବହି କାଠଗୋଛ ଦୁଇଟି ମାଇପି
ଯାଉଚନ୍ତି ଗୃହେ ଫେରି, ଝାଳ ଗମଗମ
ସର୍ବାଂଗୁ ଯାଉଚି ଝରି । କେଉଁ ଗଛ ମୂଳେ
କାଠ ଗୋଛ ଥୋଇଦେଇ ନିଅନ୍ତି ବିଶ୍ରାମ ।
ସକାଳୁ ସେ ଖୁଦ ଯାଉ ଖାଉଥିଲେ କଣ
ଏବେ ଜଳୁଥିବ ପେଟ । ଘରେ ଗଲେ ଯାଇ
ରାନ୍ଧିବାଢ଼ି ଖାଇବେ ସେ । ଗାଆଁ ମୁହଁ ହେଉ
ଟିକିଏ ସାନ୍ତ୍ୱନା ଆସେ । ହାଡ଼ଭଂଗା କାମ କରି କରି
ଦିନମାନ ବିତିଯାଏ । ଏମାନଙ୍କ ପରି —
ମଣିଷର ମୂଲ୍ୟ ନାହିଁ ଏ ଧରଣୀ ତଳେ ।
ଚୁହାଁରେ ଜଗତ ଚୁହାଁ
ଏ ଶ୍ରମିକ ଜୀବନର ପ୍ରତିବିନ୍ଦୁ ଘର୍ମ ତଳେ ତଳେ—
ପୃଥିବୀର ସମସ୍ତ ଐଶ୍ୱର୍ଯ୍ୟ ଯେତେକ ରହିଚି ସଞ୍ଚିତ !
ହେ ଜଗତ ! ଏମାନଙ୍କୁ ଦିଅ ତୁହି ବିପୁଳ ସମ୍ମାନ
ଏମାନଙ୍କ ପାଇଁ ସିନା ପୃଥିବୀରେ ସୁନାର ଫସଲ
ଏମାନଙ୍କ ପାଇଁ ସିନା ପୃଥିବୀର କଣ୍ଠେ ଜାଗେ ଗାନ !

ଆସ୍ତେ ଆସ୍ତେ ମାଡ଼ି ଆସେ ତରଳ ତମିର,
ଦିଶୁଥାଏ କ୍ଷୀଣ ଚନ୍ଦ୍ରରେଖା
ଉଜଳୁ ଉଜଳତର ହସି ହସି ଆସେ ।
ଦୂରେ କେଉଁ ଧାନ କଅାରରେ
କୃଷକ ବାଳକ ଜଣେ ଗାଉଅଛି ଗୀତ,
ବସି ତାର ଘଡ଼ି ତଳେ ।
ଠାଏଁ ଠାଏଁ ନିଆଁ ଜାଳ
ଗୃହୀ ପାଞ୍ଚଜଣ ବସି ହେଉଛନ୍ତି କଥା;
ଜୀବନର ସୁଖ ଦୁଃଖ ଭଲ ମନ୍ଦ ଆହ୍ଲାଦ;
ଧ୍ୟାନମଗ୍ନ ଋଷିପରି ପାହାଡ଼ଟି ହୋଇଅଛି ଠିଆ ।
ଏସବୁ ଭିତରେ ବୁଲି ଏବେ ମୁହିଁ ଫେରୁଛି କୁଟୀରେ ।

ଇଚ୍ଛାହୁଏ ପ୍ରତି ମୁହୂର୍ତ୍ତରେ
ଏ ଗାଉଁଗଳେ ବୁଲୁଥାନ୍ତି
ଦେଖୁଥାନ୍ତି ଜୀବନର ଅହମିକା ଆଡ଼ମ୍ବର
ନାହିଁ ଏଥି—
ନାହିଁ ଏଥି ହେବାପାଇଁ ବଡ଼
ସଭିଙ୍କୁ ସଂସାରେ ମଣି ନୀଚ କ୍ଷୁଦ୍ରତର !
କର୍ମ ଆଉ ଆନନ୍ଦର ଏ' ଯେ ଲୀଳାଭୂଇଁ
ଏହାରି ଭିତରେ ମୋର ଜୀବନର
ପ୍ରତିଦଣ୍ଡ, ଲତା ହେଲେ ଯାଉଥାନ୍ତା ବହି !!
କୃଷକ ବାଳକପରି ଦିନ ଶେଷେ ଗୀତ ଗାଇ ଗାଇ
ଗୋଟିଏ ନିମେଷ ମୋର ବିତନ୍ତା ତ ନାହିଁ !!

———

# ଛାୟାର ପ୍ରେମ

ତୁମେ ତ କହିଥିଲ ସେନେହ ଦେଇ ମତେ ସୋହାଗେ କରିବାକୁ ବରଣ
ତୁମେ ତ କହିଥିଲ ତୁମକୁ ନ ପାଇଲେ ଜୀବନେ ବରିନେବ ମରଣ
ତୁମେ ତ କହିଥିଲ ତୁମକୁ ଦୂରେ ରଖି
ଗୋଟିଏ ନିମେଷ ମୁଁ ବଞ୍ଚିପାରିବ କି ?

ତୁମର ବିନୁ ମୋର ନିଃସ୍ୱ ଜୀବନରେ କି ଅବା ଅଛି ଆଉ କାରଣ ?
ତୁମେ ତ କହିଥିଲ ସେନେହ ଦେଲ ମତେ ସୋହାଗେ କରିବାକୁ ବରଣ ।

ତୁମେ ତ ଦେଇଥିଲ ପ୍ରାଣର ପ୍ରତିଶ୍ରୁତି ଓଠରେ ହସଟିଏ ଖେଳାଇ
ତୁମେ ତ କହିଥିଲ ଯିବନି କେବେ ଭୁଲି ଖଞ୍ଜରୀଟ ଆଖି ବୁଲାଇ;
ସବୁ କି ଭୁଲିଗଲ ଦୂରରୁ ବହୁଦୂରେ ?
ରହିଲ ତୁମେ ଯତେ ଅଜଣା କେଉଁ ପୁରେ ?
ତୁମର ପାଇଁ କିଆଁ ବସିଛି ମୋ କୁଟୀରେ ନିପୁଛ ମଥାଟି ମୋ ଘୁରାଇ ?
ତୁମେ ତ ଦେଇଥିଲ ପ୍ରାଣର ପ୍ରତିଶ୍ରୁତି ଓଠରେ ହସଟିଏ ଖେଳାଇ;

ପାଶୋରିଦେଇ ମତେ ଭୁଲିଲ କେଉଁ ପଥେ ଅଥବା ରହିଚ ମୋ ପାଇଁକି ?
ମୋହର ପାଇଁ ତୁମ ନୟନୁ ଝରି ଝରି ଲୋତକ ନିତି ଝରୁଥାଇ କି ?
କିଏ ସେ ଦେଲା ବାଧା ତୁମର ପଥେ ପଥେ
ଏଡ଼ାଇ ପାରୁ ନାହିଁ ଚେଷ୍ଟା କରି ସତେ ?
ଧରଣୀ ପଥ ପରେ ଏଡ଼େକ ସହଜରେ କିଏସେ ପାରେ ଭୁଲି ଯାଇକି ?
ପାଶୋରିଦେଇ ମତେ ଭୁଲିଲ କେଉଁ ପଥେ ଅଥବା ରହିଚ ମୋ ପାଇଁକି ?

ତୁମର ଓଠର ସେ ମୋହନ ବାଣୀଟିକି ମିଥ୍ୟା ହୋଇ ନାହିଁ ପାରିବ
ମୁଁ ଜାଣେ ତୁମେ ଯାହା ଦେଇଚ ଥରେ କହି ତାହାହିଁ କରିବ ତ କରିବ
ମୁଁ ଜାଣେ ତୁମେ କେବେ ହେବନି ବିଚଳିତ
ବିରାଟ ଉପାଦାନେ ତୁମେ ଯେ ବିରଚିତ,
ମୋ ପାଇଁ ତୁମେ ଫୁଟିରହିଚ ସେ କେଉଁଠି; ଗନ୍ଧକେବେ ଆସି ଡାକିବ ?
ତୁମର ଓଠର ସେ ମୋହନ ବାଣୀଟିକି ମିଥ୍ୟା ହୋଇନାହିଁ ପାରିବ;

ଜାଣିଚି ଜାଣିଚି ମୁଁ କରିଚି ଅନୁଭବ ତୁମରି ଅନ୍ତର ଗୋଟିକି
କେଭଳି ସୁନ୍ଦର କେଭଳି ନିର୍ମଳ କି ଅବା ସ୍ୱଚ୍ଛ ସ୍ଫଟିକ !
ତହିଁରେ ଆବିଳତା ନାହିଁ ତ ହେଲେ ଧାନେ
କି ଭଳି ବିଶ୍ୱାସ ଯିବନି ପ୍ରାଣେ ପ୍ରାଣେ ?
ତୁମର ଅନ୍ତର ମୋହର ଅନ୍ତରେ ଯୁକ୍ତ ହେବ ଦିନେ ସଠିକ;
ଜାଣିଚି ଜାଣିଚି ମୁଁ କରିଚି ଅନୁଭବ ତୁମର ଅନ୍ତର ଗୋଟିକି;

ଯେ ଦିନ ସଂଗ୍ରାମେ ହୋଇ ମୁଁ ନତଜାନୁ ମରିବେ ଏକା ପଡ଼ି ରହିଲା
ଚାହିଁବନାହିଁ ଉଠି, ଜୀବନ ଶେଷ ଏଠି, ବିକଳ କଣ୍ଠରେ କହିଲି;
ତୁମେ ଗୋ ସାହସିନୀ ତୁମେ ଗୋ ବୀରବାଳା
ଅଗ୍ନି ଜାଳି ଦେଲ ଯିଏଁ ମୋର ଛବି

ତାହାର ତେଜେ ତେଜେ ଉଠି ମୁଁ ଠିଆହେଲି ସେ କଥା ମନେପଡ଼େ-
ଛଇଲ ।
ଯେ ଦିନ ସଂଗ୍ରାମେ ହୋଇ ମୁଁ ନତଜାନୁ ନୀରବେ ଏକାପଡ଼ି ରହିଲି ।

ମୁଁ ଯେବେ ଠିଆ ହୋଇ ପାରଚ ଧରଣୀରେ କାହାରେ ନାଇଁକରି ପରୁଆ
ମୁଁ ଯେବେ ପାରିଅଛି ଫୁଟାଇ ଜୀବନରେ ମଲ୍ଲୀ ମାଧବୀ ବା ମରୁଆ,
ତୁମରି ହାତର ସେ ଟିକକ ତୂଳୀ ଲାଗି
ମୋହରି ଭିତରେ ଯେ ଜୀବନ ଅଛି ଜାଗି;
ମାନବନାଇଁ ଯେବେ ଜନମଯାକେ ହେବ ତୁମରି ପାଖେ ଋଣ ଧାରୁଆ !
ମୁଁ ଯେବେ ଠିଆ ହୋଇ ପାରଚ ଧରଣୀରେ କାହାରେ ନାଇଁକରି ପରୁଆ;

ସେ ଦିନୁ କେତେ ଦିନ ହେଲାଣି ଏବେ ଆସି ଜୀବନେ କେତେ ବାଧା
ପାଇଚ,
ସବୁକୁ ଆଡ଼େଇ ମୁଁ ଅସୀମ ଦର୍ପରେ ମୋହରି ପଥେ ପଥେ ଯାଇଚ;
ଆସିନି ହଟି ଆଉ ଚାଲିଚ ଆଗେ ଆଗେ
ଯେ ଦୀପ ଜାଳିଦେଲ ପୁଣ୍ୟ ଅନୁରାଗେ,
ଲିଭିନି ଲିଭିନି ସେ ମୋ ପଥ ଉଜଳାଇ ମୋହର ପାଖେ ପାଖେ ରହିଚ
ସେ ଦିନୁ କେତେ ଦିନ ହେଲାଣି ଏବେ ଆସି ଜୀବନେ କେତେ ବାଧା
ପାଇଚ

ତୁମେ ତ କହିଥିଲ କାହିଁକି ଆସୁନାହଁ ? ତୁମରେ ରହିଚ ମୁଁ ଚାହିଁ ତ,
ତୁମେ ଗୋ ଆସିଗଲେ ଚାଲିବ ଜଳଧିରେ ଆମର ଯୁଗଳ ଏ ବୋଇତ;
ସେନେହ ଦବାନଳ ହୃଦୟେ ହୃଦ ତାନ,
ଜଣକୁ ଜଣେ ନାଇଁ ପାରିବା ହେଲେ ଛାଡ଼ି,
ଏ ଟିକକରେ କିବା ପ୍ରାଣର ମଧୁଶିଖା ଫୁଟିଇ ନୁହେ କେବେ କହି ତ
ତୁମେ ତ କହିଥିଲ କାହିଁକି ଆସୁନାହଁ ତୁମରେ ରହିଚ ମୁଁ ଚାହିଁ ତ;

ଜୀବନେ ସାଥୀକର କାହାରେ ନେଇନାହିଁ, କାହାରେ ନେଇନାହିଁ ପାରବ
ତୁମକୁ ଚାହିଁ ଚାହିଁ ଜୀବନ ଚାଲିଯାଉ ଦୁଃଖ ତିଳେ ନାହିଁ କରବ !
ସଂପି ମୋହଠାରେ ହୃଦୟ ଦେହମନ
ମୋ ପାଇଁ ସପନ ଯେ ଦେଖୁଚି ଅନୁକ୍ଷଣ,
ତାହାକୁ ନିଷ୍ଠୁରେ ତିଆଗି କିବା ଶିଖା ଅଧିକ ଏ ଧରଣୀ ଭରିବ ?
ଜୀବନେ ସାଥୀକର କାହାରେ ନେଇନାହିଁ, କାହାରେ ନେଇନାହିଁ ପାରବ;

କେତେ ଯେ ବର-ବଧୂ ନାହାନ୍ତି ଧରଣୀରେ ଅଧିକ କିଏ ମତେ ଦିଶୁନି;
କାହାର ବୁକୁତଳ ମୋ ପାଇଁ ଉତ୍ତଥଳ ହୋଇବ ମନେ ଲବେ ଆସୁନି;
ମୋ ପ୍ରାଣ-ତନ୍ତ୍ରୀରେ କାହାର ଅଙ୍ଗୁଳି —
ପରଶେ ସଙ୍ଗୀତ ଉଠିବ ଉଚ୍ଛୁଳି;
ତୁମରିବିନୁ କିଏ ପାରିବ ନାହିଁ ବୋଲି କେତେ ମୁଁ କାରେ କହି ବସୁନି
କେତେ ଯେ ବର-ବଧୂ ନାହାନ୍ତି ଧରଣୀରେ ଅଧିକ କିଏ ମତେ ଦିଶୁନି;

କୁସୁମ ଫୁଟାଇ କେ' ମୋହର ପଥେ ପଥେ ମୋହର ଭୁଲେ ନିତି ଗୁଳିବ
ନିଜର କରି କିଏ ମୋହନ ଗଉରବ ନିଃସ୍ୱ ଏ ଜୀବନେ ଭରିବ;
ଜୀବନେ ଲଗିଥିଲେ ବ୍ୟଥା ଓ ଅପମାନ
କିଏସେ ପୋଛିଦେବ ପକାଇ କୋଟି ଋଣ ?
କା'ଓଠ ପଦେ କଥା ଏ ମରୁସଇକତେ ସବୁଜ ସୁନ୍ଦର ଝରିବ;
କୁସୁମ ଫୁଟାଇ କେ' ମୋହର ପଥେ ପଥେ ମୋହର ଭୁଲେ ନିତି ଗୁଳିବ ?

ତୁମକୁ ଡ଼ାକିବନି ? ତୁମକୁ ଖୋଜିବନି ତୁମକୁ ରହିବନି ଚକାଇ ?
ମୋହର ହୋଇ ଅଛି କି ମଧୁ ସଂପଦ ତୁମକୁ ଟଳେ ଦେଲେ ପକାଇ;
ଅମୀର ହୋଇ ମୁହିଁ ଧଇରେ କାଟେ କାଳ,
ଫକୀର ପରି ବୁଲେ ପଛେ ଗୋ ଗୃହଆଡ଼;
ମୁଁ ଚିରହତଭାଗା ନିଖିଳ ଧରଣୀରେ ନାହିଁ ପାଇଲେ ତୁମ ଦେଖାହିଁ;
ତୁମକୁ ଡ଼ାକିବନି ତୁମକୁ ଖୋଜିବନି ତୁମକୁ ରହିବନି ଚକାଇ ?

ବହୁତ ଦିନ ପରେ ଦିନେକ ସଂଧ୍ୟାରେ ଗୃହିଁଚ ଅଙ୍ଗନେ ମୋହର
ନିବିଡ଼ ଅନ୍ଧାରେ ମୁହିଁକୁ ମୁହିଁ ନାହିଁ ଦିଶୁଚ ହେଲେ ପରା କାହାର;
କୃଷ୍ଣ ବାଦଲରେ ଛନ୍ନ ଯେ ଆକାଶ
ପିଟୁଚି ଗୃହଆଡ଼ୁ ପ୍ରଳୟ ଯେ'ବତାଶ;
ବସିଁଚ ଏକା ଏକା ଥଣ୍ଡା ପବନରେ ଯାଉଚ ଦିହଟି ମୋ ଶିହରି,
ବହୁତ ଦିନପରେ ଦିନେକ ସଂଧ୍ୟାରେ ଗୃହିଁଚ ଅଙ୍ଗନେ ମୋହର ।

କିଏ ସେ ଛୁପ୍ୱାପରି ପଛୁ ମୋ ବୁଲିପଡ଼ି, କରୁଣ କଣ୍ଠରେ କହିଲ,
ଯାହା ମୁଁ କହିଥିଲି ଶେଷକୁ ସେୟା ଏକା ଏମୋର ଜୀବନରେ ହୋଇଲା;
ବଞ୍ଚି ପାରିବନି ତୁମକୁ ନ ପାଇଲେ
ବଞ୍ଚି ରହିନି ମୁଁ ଏ ମହା ଧରଣୀରେ;

ଏତକ କହୁଚ ସେ, ତାହାର ଆଖିତକୁ ଦ'ଟୋପା ଲୁହ ଅବା ବୋହିଲା;
କିଏସେ ସ୍ୱପ୍ନାପର ପଛୁ ମୋ ଭୁଲପଡ଼, କରୁଣ କଣ୍ଠରେ କହିଲା—

ଦେଖିଲ ସେ' ଯେ ମୋର ପରାଣ ଇପ୍‌ସିତା ସ୍ୱର୍ଣ୍ଣପ୍ରଭା ଠିଆ ହୋଇଚ,
ସ୍ୱର୍ଣ୍ଣଶିଖା ତା'ର ସକଳ ଦେହମନ୍‌ ବକଳେ ଝାଉଳା ତ ଯାଇଚ,
ଝରୁଚ ଥପ ଥପ ଲୋଚନ୍‌ ଲୁହ ଧାର,
ବୋହୁଚ ବୁକୁ ତଳେ ଗଭୀର ବ୍ୟଥା ଭାର,
ହୃଦୟ ମନ୍ଦିରେ ଅର୍ଘ୍ୟ ଦେଇ କିବା ନିଜର କଣ ମୋରେ ଥୋଇଚ,
ଦେଖିଲ ସେ ଯେ ମୋର ପରାଣ ଇପ୍‌ସିତା ସ୍ୱର୍ଣ୍ଣପ୍ରଭା ଠିଆହୋଇଚ;

ହେ ମୋର ପ୍ରିୟତମ ମୋ ପାଇଁ କିଆଁ ତୁମ ଜୀବନ ସାରା ପୋଡ଼ିଜଳିବ
ମତେ ତ ଗୃହିଁ ଗୃହିଁ କିଛୁ ତ ଲଭ ନାହିଁ ମୋ ପାଇ କିଆଁ ତୁମେ ସଡ଼ିବ ?
ଆନେକ ସଙ୍ଗିନୀ ଜୀବନେ ନିଅ ବରି
ପରାଣେ ପାତ୍ରରେ ଯେ ମଧୁ ଦେବ ଭରି,
ସେତିକି ଭାଗ୍ୟ ମୋ ଯେବେ ଏ ହତଭାଗୀ ଟିକିଏ ମନେ କେବେ ପଡ଼ିବ ।
ହେ ମୋର ପ୍ରିୟତମ ମୋ ପାଇଁ କିଆଁ ତୁମ ଜୀବନସାରା ପୋଡ଼ି ଜଳିବ;

ବିଜୟୀ ହୁଅ ତୁମେ ଜୀବନ ସଂଗ୍ରାମେ ନ ପଡ଼ୁ ବନ୍ଧନ ତୁମର,
ମୁଁ କାହିଁ ହଜିଯାଏ ଅସୀମ ଶୂନ୍ୟରେ ତୁମର ସୁଖଶିଖା ସୁମର,
ମୋ ପାଇଁ ହୁଅନାହିଁ ବ୍ୟସ୍ତ କେବେ ବାରେ,
ସେ କେଉଁ ଜନମରେ ମିଳନ ହୋଇପାରେ;
ଲୋତକ ଆସେ ବହି ପାରୁନି ଆଉ କହି ବୁକୁରେ ଯାହା ଉଠେ ଗୁମର;
ବିଜୟୀ ହୁଅ ତମେ ଜୀବନ ସଂଗ୍ରାମେ ନ ପଡ଼ୁ ବନ୍ଧନ ତୁମର;

କହିଲ ମୋହ ପାଇଁ ଜୀବନ ଗୋଟି ଦେଇ ମତେ ବ ଲବେ ଛାଡ଼ିପାରିନ,
ସକଳ ସୁଖ ପାଇ ଥାନ୍ତ ରାଣୀ ହୋଇ, ମୋ ଘେନି କାହାକୁ ତ ବରିନ !
କେମନେ ଧରଣୀରେ ମୁଁ କାରେ ନେବ ବରି,
ମୋର କେ' ଆପଣାର ତୁମଠୁ ଅଛୁ ବଳ ?
ଜୀବନେ ହସି ହସି ମୋହର ପାଇଁ ତୁମେ କି ମହାତ୍ୟାଗ ସତେ କରିନ ?
କହିଲ ମୋହ ପାଇଁ ଜୀବନ ଗୋଟି ଦେଇ ମତେ ବ ଲବେ ଛାଡ଼ିପାରିନ;

ମତେଗୋ ନିଅ ସହି ଯେଉଁଠି ଅଛ ରହି ନିୟତ ଏଇ ଛାଇ ରୂପରେ !
କି ସୁଖଶିଖା ମୋର ବଞ୍ଚି ରହିବାର ଅନ୍ଧ ଏ ଧରଣୀ କୂପରେ !

ତୁମେ ମୁଁ ଦୁଇଜଣ ଜଣକୁ ଜଣେ ଚାହିଁ
ତରଣୀ ଆମର ଗୋ ସୋହାଗେ ନେବା ବାହି,
ବୁଲିବା ବନବନ-ପାହାଡ଼-ପରବତ ତଟିନୀ ସଇକତ ସ୍ତୂପରେ
ମତେ ଗୋ ନିଅ ସହି ଯେଉଁଠି ଅଛ ରହି ନିଭୃତ ଏଇ ଛାଇରୂପରେ

ରହିବ ନାହିଁ ମୁହିଁ ଗୋଟିଏ କ୍ଷଣ ପାଇଁ ତ୍ୟକ୍ତ ଏ ଧରଣୀ ବୁକୁରେ
ମତେ ଗୋ ନେଇଯାଅ ଛାଡ଼ି ମୁଁ ଏଇ ଦେହ ମିଶେଗୋ ତମ ମନମୁକୁରେ;
ମୋ ପାଇଁ ଧରାରେ ଯେ ଜୀବନ ଦେଇପାରେ,
ମରିବେ ବୁଡ଼ିଯାଇ ତପ୍ତ ଲୁହ ଧାରେ,
ତାହାର ଲୁହେଲୁହେ ସୋହାଗେ ମିଶିଯାଏ ତାହାର ଭିତରେ ମୁଁ ମୁକୁଳେ
ରହିବ ନାହିଁ ମୁହିଁ ଗୋଟିଏ କ୍ଷଣ ପାଇଁ ତ୍ୟକ୍ତ ଏ ଧରଣୀ ବୁକୁରେ

ସ୍ୱର୍ଣ୍ଣପ୍ରଭା ମୋର ସ୍ୱର୍ଣ୍ଣପ୍ରଭା ପର ଆତୁର ଉଠିଲି ଯେ ଝଟକ
ମୋ'ପରେ ଏତେ ଲୋଭ ମୋର ଏ ଗଉରବ, ନଥିଲି ଜାଣି ଏହାସତ କି ?
ଛାଡ଼ିନି ଏ ଧରଣୀ ତୁମକୁ ମୋହ ରଣେ
ତୁମରି ପାଶେ ପାଶେ ମୁଁ ଥିବ ଅନୁକ୍ଷଣେ
ଖୋଜିଲେ ତୁମେ ମତେ ଡ଼ାକିଲେ ତୁମେ ମତେ ଆସିବ କାହିଁ ନାହିଁ
ଅଟକ ।
ସ୍ୱର୍ଣ୍ଣପ୍ରଭା ସ୍ୱର୍ଣ୍ଣପ୍ରଭା ପର ଆତୁର ଉଠିଲି ଯେ ଝଟକ !

ସେଦିନୁ ତାରେ ମୁହିଁ ନିଭୃତ ଅଛି ଚାହିଁ ସେ ମୋରେ ରହିଅଛି ଚାହିଁ ତ;
ସୁଖ ଓ ଦୁଃଖରେ ବିପଦ ଆପଦରେ ମୋ ପାଇଁ ମେଲିଚି ତା' ବୋଇତ,
ମୋହର ପାଶେ ପାଶେ ଠିକକ ଛାଇ ତା'ର
ମତେ କି ଅମୃତ ଦେଉଚି ଅନିବାର !
ଦିନେ ମୁଁ ତା ଛାଇରେ ମିଶିବ ଛାଇ ହୋଇ ଏ ମଧୁ ଆଶା ଅଛି ରହିତ
ସେଦିନୁ ତାରେ ମୁହିଁ ନିଭୃତ ଅଛି ଚାହିଁ ସେ ମୋରେ ରହିଅଛି ଚାହିଁତ ।



# ଆଘାତ

— ୧ —

ହସିଖେଳି ପାରୁନାହଁ ଗ୍ଲକ ଏଇ ଅସୁଖେ
 ବନ୍ଦୀ ପରାଏ ବସି ରହିଅଛ କୁଟୀରେ
  କିଛି ସୁଖ ଲଗୁନାହିଁ ସପନେ କି ଶୟନେ;
   ଜୀବନଟା ଲଗୁଅଛି ଖାଲି ଖାଲି ତୁମର
    ଜୀବନର କେତେ କଥା ଦିନରାତି ସୁମର;

— ୨ —

କେତେ ଦୂରୁ ଆସି ଆଜ କେତେ ଦୂରେ ରହିଛ;
 ତିଳ ତିଳ କରି ତୁମ ନିଃସ୍ୱ ଜୀବନଟିକି,
  ଜାତି ପାଇଁ ଦେଶ ପାଇଁ ଦେଇଛ
   ସାଧୁ ଓ ସଚ୍ଚେଷ୍ଟ ରୂପେ ଚଳି ଚଳି ଜୀବନରେ
     ସହି ସବୁ ଧକ୍‌କା
    ଜୀବନର ରାଜପଥେ ଗ୍ଲକି ଗ୍ଲକି ଆସିଛ
     ଆଜ ତୁମେ ପ୍ରାଣହୀନ ପରି ଖାଲି ବସିଛ !

— ୩ —

କିଏ କେତେ ସଖା ସାଥୀ
 ଆସୁଥିଲେ ବସୁଥିଲେ ନିତି ତୁମ ପାରୁଶେ
  ଗ୍ଲକୁଥିଲ ତୁମେ ପରା ସକଳଙ୍କୁ
      ଆପଣାର କରି ହେ
   ଏ କୁଟୀରୁ ବାଟ ଦେଇ ଯାନ୍ତି ସଭିଏ ଗ୍ଲକି,
    ପ୍ରତିନିତି ହସି ଖେଳି ରାତିଗୋଟି ଗାଇଲେ
     ଜଣେ କିଏ ତୁମଙ୍କୁ କି
        ଆଉ ଆସି ଡାକି ଲବେ ଗ୍ଲହିଁଲେ ?

— ୪ —

କେତେ ହୀନମାନ ଆଜ ଜୀବନଟା ଲଗଇ
 କୃଷ୍ଣ ବାରଦ ପରି ଅନ୍ତର ତଳେ ତଳେ
  ସୀମାହୀନ ଶତବାଧା ଜାଗଇ,
   ବୋହିଯାଏ ଆଖିଜଳୁ ଧାର ଧାର ଲୁହ ଯେ,
    କୋହପରେ ଆସେ ଖାଲି କୋହ ଯେ;

— ୫ —

ଜୀବନର ଏତେ ବାଧା ସଙ୍କଟ ବିଷମ
ସହିତ ପାରୁନି ତୁମ ନିଃସ୍ୱ ନିଖାଦ ବୁକୁତଳ ହେ
ପରାଣୁ ପାଉଛି ଲୁଟି ଦନ୍ତ ମାହାସ ତେଜ ବଳ ହେ;
ବିକଳ୍ପ ବିକଳ ହୋଇ
ଚାରିଆଡ଼େ ଚାହିଁ ଚାହିଁ
ପାଇ ତ ପାରୁନ କୂଳ ଥଳ ହେ !

— ୬ —

କୁଟୀରେ କୁଟୀର ରାଣୀ
ଚାହିଁ ଚାହିଁ ତୁମରି ଏ ଦୁର୍ଦ୍ଦଶା ଦଇନି;
କଣ୍ଠା ଗଲେଣି ହୋଇ ମାଂସ ପଲେକ ଦେହେ ରହିନି,
ଦିନ ଯାଇ ରାତି ଆସେ
ହାତ ପଡ଼େ ଲୁହ ପୋଛୁ
କିଛି ଜଣା ପଡ଼ୁନି
କେତେ ସେ କୁଟୀରେ ଏକା ସତୁନି ?

— ୭ —

ପାଟି ଖନିମାରଯାଏ, ଶିଶୁପରି ପଚାରୁଚ ମତେ ହେ
'ଆଉକି ହେବନି ଭଲ ସତେ ହେ;
ଆଉକି ତୁମରି ଭୁଲେ
ଚାଲି ଚାଲି ପଥଧାରେ ଯିବନି
ଛୁଇଁ ଗହଣେ ମୋର ଯା' ଦେବାର ଦେବନି ?
ଢଙ୍ଗୁ ପରାଏ ମୁହିଁ ରହିଥିବି କାଳକାଳ ଧରି ହେ
ନିଃସ୍ୱ ମୋ ଜୀବନକୁ ଜୀଅନ୍ତା-
କଲବଲ କର ହେ ?'

— ୮ —

ଏ ପଦକ ବାହାରିଲି ବେଳେ ତୁମ ଓଠରୁ
ଓଠ ଥରି ଯାଉଥିଲା
ଦେଖିଚି ମୁଁ ଦେଖିଚି
ଉଷ୍ଣ ଲୋତକଟିଏ
ତଳେ ଝରି ପଡ଼ିଲା
ଅଞ୍ଚଳ ଫେଇ ମୋର

ପୋଛି ଦେଲ ଲୁହଟିକ
ନିଜ ହାତେ ନିଜେ ମୁଁ
ତଥାପି ତ
ଶ୍ରାବଣେର ଧାରା ପରି;
ଝରିଲ ସେ ଝରିଲ !!

—୯—

ସୀମାହୀନ ବେଦନାର ଲୁହ ସେ
କେଡ଼େ ତପ୍ତ ବା କହ ସେ !
ବୁକୁ ଚିରି ଗଡ଼ୁଥିବ ସେ ଲୁହରେ
ଦେବ କିଏ ମୁହିଁ ହେ
ଏ ଦେହମନର ପ୍ରତି ସ୍ପନ୍ଦ ସେ କୋଷେ କୋଷେ
ଯାଏ କି ଗଣ୍ଡିରେ ଛୁଇଁ ଛୁଇଁ ହେ !

—୧୦—

ଏ ଗଛପତର ଏଇ ଫୁଲଫଳ ସମୀରଣ,
ଏଇ ପଥ ପ୍ରାନ୍ତର ଏଇ ନଈ ନାଳ ହେ !
ସବୁଠି ବୁଲିଚ ଖେଳିଚ କାଳ କାଳ ହେ !
ଏଇ ଗାଆଁ ଏଇ ମାଟି
କେତେ ପ୍ରିୟ କେତେ ସାଥି
କାହା ଭୁଲେ କେତେ ଦେଖା ହେବାର
ସବୁ ଆଜ ରହିଗଲା ବହୁଦୂରେ କାହିଁ ଯେ,
ତୁମ ପାଇଁ ଏ ସବୁରେ
ସଂପଦ ଆଉ କିଛି ନାହିଁ ଯେ !

—୧୧—

ବିଜନ-କୁଟୀର କଣେ ରହି ସାଡ଼ ହୀନମାନେ
କେଉଁକ ଜୀବନ କାଳ କାଟିବ ?
ଅଭାବ ଓ ଅନାହାରେ ସୀମାହୀନ ହାହାକାରେ
ବୁକୁତଳ କି ବିକଳେ ଫାଟିବ !
ଭିତରଟା ଅନ୍ଧାର ବାହାରଟା ଅନ୍ଧାର
ଘରଆଡ଼ ଅନ୍ଦାର ଖାଲି ହେ
ଏ ବିରାଟ ଅନ୍ଧାରେ ଅନ୍ଧ ଜୀବନ ତବ
କରୁଥିବ କି ବିରାଟ ରହି ହେ;

'ଆଲୋକ ! ଆଲୋକ ଆସ
କାଢ଼ି ନିଅ ମୋର ପ୍ରାସ' !
ଗଗ୍ଧିର ମରମତଳ ଗୁଡ଼ୁଥିବ ଡାକ ହେ
କେହି ତ ନଥିବେ ତୁମ ପାଖ ହେ;

—୧୨—

ଧନହୀନ, ମାନହୀନ, ସଖାହୀନ, ସାଥିହୀନ
ପ୍ରାଣହୀନ ପରି ଜୀଇ ରହିଲେ
କି ସୁଖ ସରଗ ଅଛୁ ମହୀରେ !!
ନିମେଷ ନିମେଷ ଧରି
ପ୍ରାଣ ଉଠୁଥିବ ଥରି
ବଞ୍ଚିତ ଜୀବନର
ହେବାପାଇଁ ସହଚର
କୁଣ୍ଠିତ ଏ ଧରଣୀ
ସବୁଦିନ ପାଇଁକି
କପାଳ ଆଦରି ତୁମେ
ରହିଥିବ ନାଇଁ କି ?

— —

# ରାଣୀର ଅଭିଶାପ

## ଦଳବେହେରା

"ରାଜାର ହୁକୁମ ମୁଁ ପାଳିବ
ଲକ୍ଷେ କଲେ ତୁମେ କାକୁତି ଓ ମିନତି
ରାଜାର ହୁକୁମ ନାଇଁ ଘୁଞ୍ଚିବ;
ମୁଁ ଦଳବେହେରା ଯେ
ଲକ୍ଷ ପାଇକରେ ମଉଡ଼ମଣି
ନିମକ ସଚ୍ଚା ମୁଁ
ରାଜାର ଦୟାଦାନେ ଧନୀରୁ ଧନୀ;
ଜୀବନେ ହେଲି ଆସି
ଷାଠିଏ ବରଷରୁ ବୃଆଣ ଊଣା

ମୋହର କାମେ ମୁହିଁ କରଇ ତତ୍ପରି
 ଦେଇନା ମତେ ତିଳେ କେ' ଉଲୁଗୁଣା;
ଏ ପାଖ ସେ ପାଖ ମୁଁ ହୋଇନା
 କେବେ ହେଲେ,
  ପାରେନା ହୋଇ;
ରାଜାର ହୁକୁମ ମୁଁ ପାଳିବା ଲାଗି
 ଜୀବନ ଗୋଟି ମୋର
  ପାରିବି ଦେଇ;
ରାଜାର ହୁକୁମ ମୁଁ ପାଳିବି
ଲକ୍ଷେ କଲେ ତୁମେ କାକୁତି ଓ ମିନତି
 ରାଜାର ହୁକୁମ ନାହିଁ ଛାଡ଼ିବି ।"

ରାଣୀ

"ରାଜାର ହୁକୁମ ତୁମେ ପାଳିଛ ପାଳିଛ ତ
 କିପରି ଆଉ ତୁମେ ପାଳିବ ?
ସବୁ ତ କରିଅଛ
 କଅଣ ଅଧିକ ବା କରିବ ?
 ରାଜ୍ୟ ଜିଣିଅଛ
 ନେଇଛ ରାଜବାଟୀ
ରାଜାର ମସ୍ତକ ନିଠୁରେ ଦେଇ କାଟି,
ବିଧବା କରି ମତେ ଏ ନବ ଯଉବନେ,
 ଠିଆ ତ କରାଇଛ ଏ ମହା ଧରଣୀରେ
 ବୁଡ଼ି ମୁଁ ରହିଅଛି ଚିନ୍ତାଲୁହ ମାରେ,
 କାଲିର ରାଣୀ ମୁହିଁ,
 କାଲିର ଲକ୍ଷ୍ମୀ ମୁଁ,
ଆଜି ମୁଁ ଭିକାରିଣୀ,
ଆଜି ମୁଁ ମାନହୀନା,
ମୋ ଭଳି କିଏ ଥିବ
ଏଡ଼େକ ଦୁଃଖିନୀ ଗରିବ !
ସବୁ ତ କରିଅଛ ଅଧିକ କଣ ବା କରିବ ?"

## ଦଳବେହେରା

"ଆଜ ତ ଆସିଅଛି ରାଜାର କଡ଼ା ଏକ ହୁକୁମ୍
ନାଇଁ ପାଳଲେ ମୁହିଁ,
ହେବ ରାଜାର ଦରବାରେ ବେକୁମ୍;
ତୁମରି କୋଳର ଏ ଗୋଟିକ ସନ୍ତାନ
ମୁଣ୍ଡ କାଟି ତା'ର ଏ ମୋର ଖଣ୍ଡାରେ
ରାଜାର ଦରବାରେ ଭେଟିବି,
ଟିକିଏ ଦେବ ନାଇଁ ତୁମକୁ ଫୁରସତ
ଏଇଲେ ତାହାରେ ମୁଁ କାଟିବି;
ଖଣ୍ଡା ପଜାଉତ ଦାନ୍ତୁଆ ଗଲେ ହୋଇ
ତା'ଟିକି ମୁଣ୍ଡରେ ମାରବେ ଦେବ ଥୋଇ
କରନ୍ନା ବେଶୀ କଥା ବାରତା
ରାଜାର ଖାଇଛ ମୁଁ ରାଜାର ହୁକୁମ ଯେ ପାଳବ,
ନଇଲେ ହେବ ତ'ର ଧାର୍‌ତା !"

## ରାଣୀ

"ରାଜାର ମିଜାସ ଜାଣିଛ ଜାଣିଛ ମୁଁ
ତହିଁରେ ଓଜନ କି ଥାଏ ହେ ?
ତହିଁରେ ନାଇଁ ଥାଏ ଆଗ ଓ ପଛ କିଛି ବଗ୍ଭର
ଯେବେ ସେ ଯାହା ହୋଇଯାଏ ହେ !
ଦୁଗ୍‌ଧ ପୋଷ୍ୟ ଏ କ୍ଷୁଦ୍ର ଶିଶୁଟିଏ
ରାଜାର କ୍ଷତି କିବା କରବ ?
ହସୁଛ ଖେଳୁଛ ସେ ହଲାଇ ହାତ ପାଦ
କେ' ଜାଣେ ମାଇବ କି ମରବ !
ରାଜ୍ୟ ନାଇଁ ତାର ନାଇଁ ତା' ରାଜବାଟୀ
ଭିକାରୀ ପିଲା ପରି ସେ ପଡ଼ି ରହିଅଛି
କାହାର ଶତ୍ରୁ ବା ହୋଇବ ?
ରାଜାରେ କହ ତମେ
ତୁମରି ପ୍ରଜା ସିଏ
ତୁମରି ପୁଅ ପରି
ତୁମରି ରାଇଜରେ—
ସେ କେଉଁ କଣେ ହେଲେ ରହିବ;"

## ଦଳବେହେରା

"ହେ ରାଣୀ ! ତୁମେ ମତେ ଦେଉଚ ଉପଦେଶ,
ତୁମରି ପୁଅ ପାଇଁ ଜୀବନ ଭିକ୍ଷା ମୁଁ କରିବ,
ତା' ମାନେ ମତେ ମୁଣ୍ଡ
ହତ୍ୟା କରି ଖାଲି ଫେରିବ;
ଆସିନ ଶୁଣିବାକୁ ତମ୍ପ କିଛୁ କଥା,
ପୁଅରେ ଦିଅ ଛାଡ଼
ପାଶୋର ଏ ମମତା,
ହତ୍ୟା କରିବଇଁ କରିବ,
ରାଜାର ହୁକୁମ ମୁଁ ପାଳବ ।"

## ରାଣୀ

"ହେ ଦଳବେହେରା ! ମୁଁ କହୁଚ ହାତ ଧରି,
କହୁଚ ଓଠ ଧରି,
ଏକଇ ମାତ୍ର ମୋ କନକ ପିତୁଳିରେ
ହତ୍ୟା କର କିବା ମାଇବ ଅବମରେ ?
ତାହାକୁ ଛାଡ଼ ଦିଅ,
ରାଜାରେ ଦିଅ ସବୁ ବୁଝାଇ,
କାହିଁକି ଜିଦ୍ ଧର
ବସିଚ ଚଳୁଆର ପଜାଇ ?
ତମରି ହାତେ ଯା'ର ଜୀବନ ନାଚିକାନ୍ଦି
ରଖିଲେ ରଖିପାର, ଅଥବା ପାର କାଟି
କାହିଁକି ଅନ୍ୟାସ କାରଣେ ନିରାହ ଏ—
ନିଃସ୍ୱ ଶିଶୁଟିରେ ମାରିବ ?
କାହାର କଅଣ ସେ କରବ ?
ମୋହର ଆଖି ଏଇ ନିଧନ ସଙ୍ଗାଳ
ଯାକୋଇ ଗୁହିଁ ଗୁହିଁ ପାରବ ପଥ ଗୁଲ,
ଯାକୋଇ ଦେଖିଦେଲେ
ଭଲବ ସବୁ ମୋର ରହୁଚ,
ଦଇନ ଯିବ ଭୁଲ,
ଯେତେ ଯା' ଏ ବୁକୁରେ ବହୁଚ,
ହେ ଦଳବେହେରା ହେ !

ଘରର ତୁମେ ପୁଅ
ଜାଣିବା ଲୋକ ହୋଇ
ଅବୁଝା କାହିଁ ହୁଅ ?
ତୁମର ବୁକୁତଳେ ଟିକିଏ ଦୟା ନାହିଁ !
ଛୋଟ ଏ ଶିଶୁଟିର ଜୀବନ ନେବାପାଇଁ,
ଲଗାଇଅଛ ଯିଦ୍ କାହିଁ ହେ ?
କାଠ୍ର ଉପାଦାନେ
ନୁହେ ତ ଗଢ଼ା ବୀର ହିଆ ହେ !!

**ଦଳବେହେରା**

'ହେ ରାଣୀ ! ଦୂରେ ରହ ଶିଶୁଟି ରଖି ଦେଇ,
ମୋ ତୁଲେ ବେଶୀ କଥା ହୁଅନା,
ଆଖିରୁ ଲୁହ ଢାଳ
ମୋ ହାତ ଓଠ ଏବେ ଛୁଅଁ ନା;
ହତ୍ୟା କରିବହିଁ କରିବ,
ରାଜାର ହୁକୁମ ମୁଁ ପାଳିବ !''

**ରାଣୀ**

''ହେ ଦଳ ବେହେରା ହେ ଦଳ ବେହେରା !
ଏ ଭଳ ଉକତ ପିଣ୍ଡୁଳଟିଏ
ବୟସ ଛ ମାସର ହବ,
ତାକୁ ମାରି କିବା ପାଇବ ହେ ଗଉରବ ?
ଓଠରେ ତାହାର ଫୁଟିତ ନ ଥିଲା ଭାଷା
କାହାର କରନ୍ତା କ୍ଷତି ବା ଅମଙ୍ଗଳ
ଜାଗିତ ନଥିଲା ବୁକୁତଳେ କିଛି ଆଶା;
ଏ ମହା ପୃଥିବୀ ପରେ
ହସି ଖେଳି ସେତ ଛୋଟ ଝରଣାଟି ପରି
ଝରି ଯାଉଥିଲା ବଣବୁଦା ତଳେ ତଳେ;
ମୂନିବର ଏଇ ଘୃଣ୍ୟ ହୁକୁମ ମାନି
କିବା ବଡ଼ଲୋକ ଦେଖାଇ ହଉଛ ତମେ ?
ଟଙ୍କା ପଇସା ଶତ କୋଠା ବାଡ଼ି କରି,

ବଞ୍ଚି ରହିଚ ଶତ ସୁଖ ସନମାନେ;
ଏତେ ଗୋଲାମିର ନର୍କ ଭିତରେ ବୁଡ଼ି,
ପାଲଟି ଯାଇଚ ନିର୍ମମ କୃମୀ କୀଟ,
ତୁମକୁ ଲାଗୁଚି ମିଠା ସେ ନର୍କ ପାଣି,
ତୁମ ପାଖେ ଯାହା ଅମୃତ ଖାଲି ପିଚ୍ଛ !
ହେ ଦଳ ବେହେରା ! ମନେରଖ ! ମନେରଖ !
ମୋ ଭିତର ଆଜି କାନ୍ଦି ଉଠୁଚି
ମୋ ଧନମାଳୀରେ ଖୁହାଁ,
କଉକି ମାରିବା ପାଇଁ ଉଠାଇଲ ହାତ ?
ସେଇ ହାତେ କେଉଁ କମ୍ର ଶିଶୁର—
ପରଶ କି ଲଗିନାଇଁ ?
ନିଜେ ଭୁସି ହୋଇ ନିଜ ଦେହେ ତଳୁ ଆର
ମୋ ଧନମାଳୀର କଣ୍ଠା ମୁଣ୍ଡଟି
ମୋ ବୁକୁ ଉପରେ ଥୋଇ,
ଶରଧନ ପାଇଁ ବୁଜିବ ନୟନ ଡୋଳା!,
ମହା ଦୁଃଖିନୀ ଜୀବନରେ ମୋର
ଏତେ ବଳବଳ ପାଇବ ନାଇଁ ତ ବୋଲୁ !
ହେ ଦଳବେହେରା ! ମନେରଖ ମନେରଖ !
କୋଳୁ ଛଡ଼ାଇ ମୋ ଧନରେ ଦେଇଚ ହାଣି,
କେତେ ନିର୍ମାଖି ହୋଇ କହିଲ ତ ଧରି ହାତ
ନିର୍ମମେ ପକାଇଦେଲ ମୋ ବାଣୀ;
ଜନମେ ଜନମେ ଯୁଗେ ଯୁଗେ ତୁମ ପୁରେ
ତୁମର ବଂଶ ଥିବାଯାଏ ମଣ୍ଡି ତଳେ,
ପୁଅର ମୁଖ କେହି ଦେଖିବନି ଜଣେ
ଯେତେ ପୂଜି ତୁମେ ଯାଗ ଯଜ୍ଞ ବା କଲେ ।
ମୋ ଭିତରେ ଆଜି କୁହୁଳୁଚି ଯେଉଁ ନିଆଁ,
ମୋ ଆଖିରୁ ଯେଉଁ ରକ୍ତ ପଡ଼ୁଚି ଝରି
ନିଭି ସେ ଯିବନି ନିଭି ପାରିବନି କେବେଁ,
ସୀମାହୀନ ଯୁଗ କାଳର କପାଳେ
ଯାଉ ପଚ୍ଛେ ଅପସରି;
ଖୁଲିଲି ଖୁଲିଲି ମୋ ଧନମାଳୀରେ ଖୁହାଁ,
ଟିକିଏ ଆଉଁସି ତାହାର କଅଁଳ ଦେହ

ରକ୍ତରେ ଯାହା ହୋଇଅଛୁ ସଳବଳ,
ମୋହର ପରଶ ପାରିବ ସେ ଅନୁଭବ ?
ମୋହ ଭଲ ପୋଡ଼ା କପାଳୀର ସ୍ନେହପେଟୁ
ଜନ୍ମ କାହିଁକି ହେଲ ଧନମାଳୀ ମୋର !
ବାଞ୍ଛଣୀ ହୋଇ ଅଲ୍ପଣୀ ହୋଇ ଯାଇଥାନ୍ତି ମୁଁ ମର;
ତୁ ପଚ୍ଛକେ କେଉଁ କାଙ୍ଗାଳ ଘରେ ଫୁଟି,
ଖେଳୁଥାନ୍ତୁ ତା' କୁଟୀର ଆଲୋକ କରି;
ଖୁଦଭଜା ଖାଇ, ଖାଇ ମାଣ୍ଡିଆ ଜାଉ
ଦିନୁ ଦିନ ତୁହ ଉଦାସ ପୁଲକେ
ଉଠୁଥାନ୍ତୁରେ ବଢ଼ି !
ଗୃଜଲ ଗୃଜଲ, ଗୁଡ଼ଏ ଧରଣୀ ମାଟି,
ରହିବାକୁ ଯହିଁ ଏକ ମୁହୂର୍ତ୍ତ
ଗୃହିଁବାକୁ ଯାରେ ଗୋଟିଏ ପଲକ,
ଭଲ ମୋରେ ନାହିଁ ଲାଗେ,
କଏ ମୋର ଅଛୁ ବଲ ବଣ ଗାଆଁ ଆକାଶ ବତାଶ ଧରି
ମୋ ପାଇଁ ଯା'ବୁକେ ଟିକଏ
ବେଦନା ଜାଗେ !
କହି ଯାଉଚ ମୁଁ ଏଇ ମୋର ଶେଷ ବାଣୀ
ମୋର କଲଜା ଫଟାଇ
ବାହାରି ଆସୁଚ ଯାହା—
ହେ ଦଳବେହେଉ ମନେରଖ ମନେରଖ
ଜନମେ ଜନମେ ଯୁଗେ ଯୁଗେ ତୁମ ବଂଶରେ
କେହି ଜଣେ
ଦେଖି ପାରିବନ ତନୟ-ସ୍ୱର୍ଣ୍ଣ-ମୁଖ"

—o—

## ପାହାଡ଼ ବାଳିକା

ଦୁର୍ବହ ଜୀବନର ଦୁର୍ବହ ବେଦନା
ବୁଝିକି ପାରିବ ତୁମେ ପାହାଡ଼ର ବାଳିକା !
ହସି ହସି ଲୋଟିଯାଅ ଅନ୍ତର ପୁଲକେ,
ଫୁଟି ଶୋହୁଅଛ କିବା ବନ ଫୁଲ କଳିକା !

ନିଃସ୍ୱ ମୁଁ କବ ଜନ ଜଗତର ସଗ୍ରାମେ
ବନ୍ଧା ହୋଇଚ ପର ନିଯୂତ,
ବୁକୁ ତଳେ ତଳେ ମୋର
ଜାଗେ ନାଇଁ ଜାଗେ ନାଇଁ
ସ୍ୱଚ୍ଛ ସୋହାଗ ପର କେଯୂତ;
ଲୁହରେ ଲୁହରେ ମୋର ଦିନମାନ ଗୃଳଇ,
ବହୁ ବାଧା ବିନଘ୍ନ ହିନ୍ଦସନ୍ତ ମତେ କରଇ,
ନାଇଁ ସୁଖ ସମ୍ପଦ ଘରେ ଆଉ ବାହାରେ
ନାଚ ନାଚ ହସି ହସି
ମୋ ଜୀବନ ତରୀ ଆଉ,
ଏ ମହାସାଗରେ ନାଇଁ ବୁଲଇ !
ଏକଇ ନିମେଷ ଏଇ ସଂସାରେ ଗୃଳିବା
ଏତେ ଏତେ କଷ୍ଟ ମୁଁ ନାଇଁ ଜାଣିଥିଲି ତ,
ବ୍ୟର୍ଥ ବିଫଳ ହୋଇ ଏ ଜୀବନ ଗୃଲିଲ,
କାହାକୁ କହିବ କହ,
କେବଳ ରହିଚ ଯାହା
ନୟନେ ନୟନେ ଲୁହ ଭରି ତ !
ତ୍ୟକ୍ତ ମୁଁ ତିକ୍ତ ମୁଁ ପୃଥିବୀରେ ସବୁଠି,
କାହା ପାଖ ମାଗିନାଇଁ
ମାଗି ନାଇଁ ପାରେ ତ,
ମୋର ନାଇଁ ଧନଜନ ସମ୍ପଦ ବିଭବ,
ମୋତରେ କେହି ଲେଖା ନାହିଁ କରେ ତ !'
ଏ ହତଭାଗାର ତୁଳେ କିଏ ସାଥି ହୋଇବ,
କିଏ ତାକୁ ଅନ୍ତର ଭରି ଭଲ ପାଇବ,
କିଏ ତା ମରମ ତଳେ
ଫୁଟାଇବ ଫୁଲ ଗୋ
ରହିଚ ଯା ଶୁଷ୍କ ମରୁଭୂମି ପଡିକା ?
ଏତେ ଏତେ କଥାମାନ କହିଯାଏ ତୁମରେ,
ବୁଝି କି ପାରିବ ତୁମେ
ପାହାଡ଼ର ବାଳିକା !
ସୁନ୍ଦର ସୁମହତ ସରଳ ଓ ସ୍ୱଚ୍ଛ
ତୁମରି ଏ ଅନ୍ତର ଟିକକ
ମତେ ଗୋ ଲଗଇ ଆଜି ଅଧିକରୁ ଅଧିକ !

ତମକୁ କହିବ ନାଇଁ,
ମା ଜୀବନ କାହାଣୀ,
ବାଧିବ ତୁମରେ କାଳେ ସହି ଗୋ !
ଏ ବନ ବିପିନମାଳେ, ହସି ହସି ନାଚ ନାଚ
ମନ୍ଦ-ମଳୟ ପରି,
ଚିରଦିନ ଥାଅ ତୁମେ ରହିଗୋ !
ଏଇ ବନ-ବିପିନର ଶୁଆ ସାରି ପରି ଜା
ଗୀତ ଗାଇ ଗାଇ ତୁମେ କାଟିନିଅ —
ବନମାନ ହେ ପାହାଡ଼ ବାଳିକା !
ହସ ତୁମେ ହସ ହସ ଆହୁରି, ଆହୁରି ହସ
ନାଚଉଠୁ ଦେହମନ
ଅମୃତ ବର୍ଷରେ,
ଯେଉଁଠି ଆନନ୍ଦ ନାଇଁ, ସେଇଠି ଜୀବନ କାହିଁ ?
ଜାନୁପାତ ମାଗେ ଆଜି
ଜୀବନର ସେଇ ରସ ଟିକିକ,
କୁଣ୍ଠିତ ହେବ ନାଇଁ ଦବାରେ !

—*—

# ଟିପ୍ପଣୀ

## ଖୋଜୁଥିବ

କବି 'ଗ୍ରବର୍ଣ୍ଣି' ହାଇସ୍କୁଲରୁ ଆସି ଆସିକା ହାଇସ୍କୁଲରେ ଶିକ୍ଷକତା କରୁଥିବାର ଅଳ୍ପ ଦିନ ଭିତରେ କବିତାଟି ଲେଖା—ଗ୍ରବର୍ଣ୍ଣି ହାଇସ୍କୁଲରେ କବିଙ୍କର ଜଣେ ଶିକ୍ଷକ ବନ୍ଧୁ ଥିଲେ । ସେ କବିଭାବାପନ୍ନ ଲୋକ । ଗ୍ରବର୍ଣ୍ଣି ଛାଡ଼ି ଆସିବା ସମୟରେ ତାଙ୍କ ସହିତ କବିଙ୍କର ଦେଖା ହୋଇପାରିନି; କବି ତାଙ୍କ ସହିତ ଗ୍ରବର୍ଣ୍ଣି ଅଞ୍ଚଳର ବହୁ ପ୍ରାକୃତିକ ଦୃଶ୍ୟ ବହୁଳ ସ୍ଥାନରେ ବୁଲିଥିଲେ । ଦୁର୍ଗା ପର୍ବତ ଗ୍ରବର୍ଣ୍ଣି ନିକଟସ୍ଥ ଗୋଟିଏ ସୁନାମଧନ୍ୟ ପାହାଡ଼ । କବିଙ୍କର ବନ୍ଧୁ ଗରିବ ହେଲେ ବି ପ୍ରତିଭା ସମ୍ପନ୍ନ. ଆସିକା ନିକଟରେ ଋଷିକୁଲ୍ୟା ନଦୀ ବହିଯାଇଛି ।

## ଜୀବନ୍ତ ବିପ୍ଳବ ତମେ

ସୀମା ଆନ୍ଦୋଳନରେ ବେଙ୍ଗପାଣିଆ ଇତ୍ୟାଦି ଯେଉଁମାନେ ଦେଶ ପାଇଁ ଜୀବନ ଦେଇଥିଲେ, ସେହି ଅମର-ଶହୀଦମାନଙ୍କ ପାଇଁ କବିତାଟି ଲେଖାଯାଇଛି ।

## ଜୀବନ-ନିର୍ଝର

ପଣ୍ଡିତ ଗୋଦାବରୀଶଙ୍କ ଦ୍ୱିତୀୟ ବାର୍ଷିକ ଶ୍ରାଦ୍ଧୋତ୍ସବରେ କବିତାଟି ଲିଖିତ । ପଣ୍ଡିତ ଗୋଦାବରୀଶ ଓଡ଼ିଶାର ସୁନାମଧନ୍ୟ କବି ଓ ବରେଣ୍ୟ ନେତୃପୁରୁଷ । ତାଙ୍କର କବିତା ପୁସ୍ତକ 'ଆଲେଖିକା', 'କଳିକା', 'କିଶଳୟ', ନାଟକ ପୁସ୍ତକ 'ପୁରୁଷୋତ୍ତମଦେବ' ଓ 'ମୁକୁନ୍ଦଦେବ' ଓଡ଼ିଆ ସାହିତ୍ୟରେ ଅମର ସୃଷ୍ଟି ।

## ଆଘାତ

ଆସିକା ଉଚ୍ଚ ଇଂରାଜୀ ବିଦ୍ୟାଳୟରେ କବିଙ୍କର ଜଣେ ବନ୍ଧୁ ଶ୍ରୀମାନ୍ ଉଦୟନାଥ ଜେନା ଶିକ୍ଷକତା କରନ୍ତି । ସେ ଏମ୍. ଏ., ବି. ଏଲ୍, ଓ ଡ଼ି. ଇଡ୍., ଉପାଧିଗୁଡ଼ିକ ଗୌରବରେ ପାଶ୍ କରିଛନ୍ତି । ସେ ବଡ଼ ନିରାଡ଼ମ୍ବର, ଶାନ୍ତ, ନିରୀହ ଓ ସାଧୁ ପ୍ରକୃତିର ଲୋକ । ହଠାତ୍ ତାଙ୍କର ଦୃଷ୍ଟିଶକ୍ତି ପ୍ରାୟ ନଷ୍ଟ ହୋଇଆସିବାରୁ ସେ ଶିକ୍ଷକତା କରି ନପାରିବାରୁ ଘରେ ବସିଛନ୍ତି । ମାତ୍ର ବଡ଼ ଅଭାବ ଓ ଦୈନ୍ୟ ଭିତରେ ଅଛନ୍ତି । କବି

ତାଙ୍କୁ ଥରେ ଦେଖିବାକୁ ଯାଇଥିଲେ । ତାଙ୍କ ଘର ଆସିକାଠୁ ବହୁ ଦୂରରେ ଅନୁଗୋଳ ଅଞ୍ଚଳରେ ।

## ରାଣୀର ଅଭିଶାପ

ବାଣପୁର ଅଞ୍ଚଳର ଗୋଟିଏ ଖଣ୍ଡାୟତ ପଲ୍ଲୀରେ ଜଣେ ଦଳବେହେରା ଥିଲେ । ସେ ଖୋର୍ଦ୍ଧା ରାଜାଙ୍କ ଆଦେଶରେ କୌଣସି ଗୋଟିଏ ରାଜ୍ୟ ଜୟ କରିଥିଲେ । ସେ ରାଜ୍ୟର ରାଣୀଙ୍କର ଗୋଟିଏ ଗୃର ଛ'-ମାସର ପୁଅ ଥିଲା । ଦଳବେହେରା ରାଜାଙ୍କ ଆଦେଶରେ ସେହି ଶିଶୁ ପୁତ୍ରଟିକୁ ହତ୍ୟା କରିବାକୁ ଗଲବେଳେ ରାଣୀ ବହୁ ଅନୁନୟ କରି କହିଲେ ପିଲାଟିକୁ ନ ମାରିବାକୁ । ଦଳବେହେରା ରାଣୀଙ୍କ ଅନୁନୟକୁ ନ ମାନି ଶିଶୁଟିକୁ ନିର୍ମମ ଭାବରେ ହତ୍ୟା କଲେ । ରାଣୀ ଅଭିଶାପ ଦେଲେ—"ତୁମର ବଂଶ ଥବାଯାଏ କେହି ପୁତ୍ର ସନ୍ତାନ ତୁମ ବଂଶରେ ଜନ୍ମିବେ ନାହିଁ ।" ରାଣୀ ଏହି ଅଭିଶାପ ଦେଇ ଖଣ୍ଡା ଭୁସିହୋଇ ମରିଗଲେ । ତାଙ୍କ ଅଭିଶାପ ଫଳରେ ଏ ପର୍ଯ୍ୟନ୍ତ ବି ସେ ଦଳବେହେରାଙ୍କ ବଂଶରେ କେହି ପୁତ୍ର ସନ୍ତାନ ଜନ୍ମ ହେଉନାହାନ୍ତି ।





କବିପତ୍ନୀ—ଶ୍ରୀମତୀ ରେବତୀ ଦେବୀ

# ଉତ୍ସର୍ଗ

ମୋର ପାଇଁ ଯେ ଜୀବନ ସାରା
ବହୁ ଦୁଃଖ କଷ୍ଟ ସହ୍ୟ କରି
ମୋର ସାଧନାର ପଥକୁ
ଚିରଦିନ ଉଜ୍ଜ୍ୱଳ ଓ ନିଷ୍କଣ୍ଟକ
କରି ଆସିଛନ୍ତି,
ମୋର ସେଇ ପ୍ରାଣପ୍ରିୟା
ସହଧର୍ମିଣୀ
ଶ୍ରୀମତୀ ରେବତୀ ଦେବୀଙ୍କ ହାତରେ
ମୋର ଏଇ ଗରିବ କବି ଜୀବନର
ଗୋଟିଏ ସ୍ୱପ୍ନ 'ଆହୁତି'
ମମତାର ଚୂଡ଼ାନ୍ତ ଚିହ୍ନ ସ୍ୱରୂପ
ଅର୍ପଣ କଲି—

—କୃଷ୍ଣଚନ୍ଦ୍ର ତ୍ରିପାଠୀ

# ବିଜ୍ଞପ୍ତି

ଇଂରେଜମାନେ ଖୋର୍ଦ୍ଧା ଅଧିକାର କଲାବେଳେ ଖୋର୍ଦ୍ଧାର ବୀର ଖଣ୍ଡାୟତମାନେ ମାତୃଭୂମିର ସ୍ୱାଧୀନତା ପାଇଁ ଯେଉଁ ତୁମୁଳ ସଂଗ୍ରାମ କରିଥିଲେ ତାର ପୂର୍ଣ୍ଣାଙ୍ଗ ଇତିହାସ ଏପର୍ଯ୍ୟନ୍ତ ଲେଖାଯାଇନି । ଖୋର୍ଦ୍ଧା ପାଇକ ବିଦ୍ରୋହ ଏବଂ ରାଜବିଦ୍ରୋହର ଐତିହାସିକ ଏବଂ କେତେକ କିମ୍ବଦନ୍ତୀମୂଳକ ଘଟଣାର ଭିତ୍ତି ଉପରେ 'ଆହ୍ୱାନ'ରେ ପ୍ରକାଶିତ କବିତାଗୁଡ଼ିକ ପ୍ରତିଷ୍ଠିତ ।

ଖୋର୍ଦ୍ଧା ଗଜପତି ରାଜାଙ୍କ ପ୍ରଧାନ ସଚିବ ଜୟୀ ରାଜଗୁରୁ ଏବଂ ପ୍ରଧାନ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ କେତେ ଯେ ପାଇକ ସେନା ଦେଶର ଗୌରବ ପାଇଁ ଆତ୍ମବଳି ଦେଇଛନ୍ତି. ତାର ସୀମା ନାହିଁ । ସେମାନଙ୍କ ମଧ୍ୟରୁ ସମସ୍ତଙ୍କ ନାଁ ଇତିହାସରେ ନଥିଲେ ମଧ୍ୟ ସେମାନେ ସମସ୍ତେ ବାସ୍ତବିକ ଆମର ନମସ୍ୟ । ଜାତି ଦେଶ ସମାଜର ପ୍ରାଣକୁ ବଞ୍ଚାଇ ରଖିବାହିଁ ମାନବର ଧର୍ମ । ବର୍ଷ ବର୍ଷ ଧରି ଓଡ଼ିଶାର ଏକମାତ୍ର ସାମରିକ ଜାତି ପାଇକ ଖଣ୍ଡାୟତମାନେ ଏ ଦେଶର ଜାତୀୟତା ଓ ସ୍ୱାଧୀନତା ରକ୍ଷା କରି ଆସିଛନ୍ତି ।

ଖୋର୍ଦ୍ଧାର ପାଇକ ଯୁଦ୍ଧହିଁ ଖଣ୍ଡାୟତ ନାଇକମାନଙ୍କର ଶେଷ ଯୁଦ୍ଧ, ଯହିଁରେ ସେମାନେ ଇଂରେଜମାନଙ୍କ ସହିତ ପ୍ରାଣମୂର୍ଚ୍ଛି ଯୁଦ୍ଧ କରିଛନ୍ତି । ସେମାନଙ୍କର ରଣକୌଶଳ ସେମାନଙ୍କର ସମରଲିପ୍ସା ଦେଖି ଇଂରେଜ ସୈନ୍ୟମାନେ ସେ ସମୟରେ ଖୋର୍ଦ୍ଧା ଭିତରେ ପଶିବାକୁ ଆତଙ୍କିତ ହୋଇଛନ୍ତି, ଏକଥା ଇତିହାସ ସାକ୍ଷ୍ୟ ଦିଏ !

ଖୋର୍ଦ୍ଧା ଇଂରେଜମାନଙ୍କର ହସ୍ତଗତ ହେଲେ ମଧ୍ୟ ବୀର ଖଣ୍ଡାୟତମାନଙ୍କର ଆତ୍ମୋତ୍ସର୍ଗର ଚିହ୍ନ ଲିଭିଯିବ ନାହିଁ । କବିର କବିତାରେ, ଶିଳ୍ପୀର ତୂଳିକାରେ ସେମାନେ ଅମର ହୋଇ ରହିଥିବେ ଏବଂ ଜାତିର ଜଡ଼ ପିଣ୍ଡରେ ପ୍ରାଣର ସଞ୍ଚାର କରୁଥିବେ ।

ମୋର ଏଇ କବିତାଗୁଡ଼ିକ ଓଡ଼ିଶାର ବିଭିନ୍ନ ସାହିତ୍ୟ ପତ୍ରିକାରେ ବହୁଦିନ ତଳେ ଆତ୍ମପ୍ରକାଶ କରିଥିଲା । ମୋର ଦେଶବାସୀ ବହୁ ସାହିତ୍ୟିକ କବିପ୍ରାଣ ବନ୍ଧୁ ମୋର ସେ ପାଇକ କବିତାଗୁଡ଼ିକ ପଢ଼ି

ସେଗୁଡ଼ିକର ଉଚ୍ଚ ପ୍ରଶଂସା କରି ସେଗୁଡ଼ିକ ବହି ଆକାରରେ ପ୍ରକାଶ କରିବାକୁ ମତେ ବହୁଥର ଚିଠି ଲେଖିଥିଲେ ।

ଆଜ 'ଆହୂତି' ନାଁରେ ସେଇ କବିତାଗୁଡ଼ିକ ପ୍ରକାଶ ପାଉଚି । ଦେଶବାସୀ ବନ୍ଧୁମାନେ ଆଗେ ମୋର ଏଇ ସାମାନ୍ୟ ଲେଖାଗୁଡ଼ିକୁ ଯେପରି ଆଦର କରି ଆସିଚନ୍ତି, ଆଶାକରେ ସେମାନଙ୍କର ସେଇ ଆଦର ମମତା 'ଆହୂତି' ପ୍ରତି ରହିବ । ଜୟହିନ୍ଦ୍ !

ବାଣପୁର
ତା ୧୦-୭-୫୫

କୃଷ୍ଣଚନ୍ଦ୍ର ତ୍ରିପାଠୀ

# କଷ୍ଟିପଥର

ଡକ୍ଟର ମାୟାଧର ମାନସିଂହ

"ଆହୂତି"

କବିତା ପୁସ୍ତକ: ମୂଲ୍ୟ-ବାରଅଣା ଲେଖକ ଶ୍ରୀକୃଷ୍ଣଚନ୍ଦ୍ର ତ୍ରିପାଠୀ
ପ୍ରକାଶକ—କବିକୁଟୀର, ଖିମପୁର, ବାଣପୁର, ପୁରୀ:

ଆହୂତିର କବି ଶ୍ରୀକୃଷ୍ଣଚନ୍ଦ୍ର ତ୍ରିପାଠୀ ଉତ୍କଳ ସାହିତ୍ୟରେ ସୁପରିଚିତ କବି । ଗତ ଅନେକ ବର୍ଷ ଧରି ଉତ୍କଳର ସମସ୍ତ ପତ୍ର ପତ୍ରିକାରେ ତାଙ୍କର କବିତାର ସାକ୍ଷାତ ମିଳେ । ତାଙ୍କର ନୀରବ ସାରସ୍ୱତ ସାଧନା ପ୍ରକୃତରେ ପ୍ରଶଂସନୀୟ । କବି ପଲ୍ଲୀବାସୀ । ତାଙ୍କ କବିତାବଳୀରେ ଆମ୍ଭେମାନେ ବରାବର ସେହି ପଲ୍ଲୀର ସରଳ, ନିର୍ମଳ ରୂପ ଓ ସହଜ, ସ୍ୱଚ୍ଛନ୍ଦ ଅଥଚ ଅଗର୍ବିତ ପ୍ରକାଶର କାନ୍ତ ମାଧୁର୍ଯ୍ୟ ଦେଖିବାକୁ ପାଉ । ତ୍ରିପାଠୀଙ୍କ କବିତା ସଙ୍ଗେ ଆମ୍ଭେମାନେ ବହୁଦିନରୁ ପରିଚିତ । ଆମ୍ଭେମାନେ ତାଙ୍କ ରଚନାର ଉତ୍ତରୋତ୍ତର ଶ୍ରୀବୃଦ୍ଧିରେ ଆନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ କବିଙ୍କୁ ଆମର ଆନ୍ତରିକ ସମ୍ବର୍ଦ୍ଧନା ଜଣାଉଅଛୁ । ତାଙ୍କର ପଦ୍ୟ ଯାହା ଦିନେ କେବଳ ଅଭ୍ୟାସର ଦ୍ୟୋତକ ମାତ୍ର ଥିଲା, ଆଜି ତାହା ଏକ ପରିପୂର୍ଣ୍ଣ ହୃଦୟବାନ୍ ଆତ୍ମାର ଉଦ୍‌ବେଳିତ ଭାବ-ରାଶିର ସୁନ୍ଦର ବାହନ ହୋଇ ପାରିଛି । ଏହି କବିତା ପୁସ୍ତକ 'ଆହୂତି' ତାହାର ଏକ ସୁନ୍ଦର ନିଦର୍ଶନ ।

ବାଣପୁର ଓ ଖୋର୍ଦ୍ଧା ନିଜ ଗୁଣରେ କବିପ୍ରିୟ ଭୂମି । ସେଇ ଶୋଭନ ପ୍ରକୃତି ସଙ୍ଗେ ଇତିହାସର ଗାରିମା ମିଶି, ଏଇ ମାଟି ଉତ୍କଳର ମର୍ମ ସ୍ଥାନରେ ପରିଣତ ହୋଇଛି କହିଲେ ଚଳେ । ଏଇ ମାଟିରେ ୧୮୧୮ରେ ପାଇକର ରକ୍ତରେ ସୁପ୍ତ ବିଦ୍ୟୁତ୍ କଣା ହଠାତ୍ ଜାଗି ଉଠି, ନିର୍ବାପିତ ହୋଇଗଲା । ଜୟୀ ରାଜଗୁରୁଙ୍କ ରକ୍ତ ଏଇ ମାଟିକୁ ରଞ୍ଜିତ କରିଛି । ଇଂରେଜ ଗୋଳାର କଳାଦାଗ ଏ ପର୍ଯ୍ୟନ୍ତ ଜଜାରସିଂ ମଠର କାନ୍ଥମାନଙ୍କରେ ଦେଖିବାକୁ ମିଳିବ ।

ଏଇ ମାଟିର କବିମାନେ ଯେ ଓଡ଼ିଆ ଜାତିର ଗୌରବଜନକ ହେବେ ଏଥିରେ ବିସ୍ମିତ ହେବାର କି ଅଛି ? ଗୋଦାବରୀଶ ମିଶ୍ର ଓ ମହାପାତ୍ରଙ୍କ ବାଣୀରେ ଯେଉଁ ଗମ୍ଭୀର ଉତ୍କଳାତ୍ମବୋଧର ଧ୍ୱନି ଭୂଷ୍ଟି ହୋଇ ଆସିଥିଲା, ବାଣପୁରର ତରୁଣକବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଲେଖନୀରେ ତାହା ପୁଣି ମୁହୁର୍ମୁହୁ କମ୍ପିତ ହୋଇଥିବାର ଦେଖୁ । (ଅବଶ୍ୟ ପାଠକେ ଧରିନେବେ ନାହିଁ ଯେ ଉତ୍କଳର ଗୌରଣକବି ବାଣପୁର ଖୋର୍ଦ୍ଧା ଛଡ଼ା ଅନ୍ୟତ୍ର ନାହାନ୍ତି । ବା ଏଇ ସ୍ଥାନର କବିମାନେ ଏଇ ପଂକ୍ତିରେ ଶ୍ରେଷ୍ଠ । ଆଲୋଚ୍ୟ ପୁସ୍ତକଟି ଏଇ ସ୍ଥାନ ସାଙ୍ଗେ ଗଭୀର ଭାବରେ ସଂପୃକ୍ତ ଥିବାରୁ, ସ୍ଥାନର ମାହାତ୍ମ୍ୟ ଓ ସ୍ଥାନର ସ୍ଥାନଜ କବିମାନଙ୍କ ଉପରେ ପ୍ରଭାବ ଏଠାରେ ସ୍ପଷ୍ଟଇ ଦିଆଗଲା) ଆହୁତି ଏକାନ୍ତ ଭାବରେ ଖୋର୍ଦ୍ଧା-ବାଣପୁରର କାବ୍ୟ । ବାଣପୁରର କବି ପକ୍ଷରେ ଏହା ସ୍ୱାଭାବିକ । କିନ୍ତୁ ଯେହେତୁ ଖୋର୍ଦ୍ଧା-ବାଣପୁରର ପ୍ରତ୍ୟେକ ମାଟିକଣା ସମଗ୍ର ଓଡ଼ିଆ ଜାତିର ସ୍ମୃତିର କେନ୍ଦ୍ର ହୋଇ ଉଠିଛି, ଏ କବିତାଗୁଡ଼ିକ ପ୍ରତ୍ୟେକ ଓଡ଼ିଆ ପ୍ରାଣକୁ ଗଭୀର ଭାବରେ ସ୍ପର୍ଶ କରିବ । ପ୍ରତ୍ୟେକଟି କବିତା ଉଚାଙ୍ଗ ବୀରରସରେ ଜର୍ଜର । ପ୍ରତ୍ୟେକ କବିତାରେ ଇତିହାସ ଜୀବନ୍ତ ହୋଇ ଉଠିଛି, କିମ୍ବଦନ୍ତୀ ଜାଗି ଉଠିଛି ରକ୍ତମାଂସ ଦେହଧରି । କବିତା-ଗୁଡ଼ିକ ପଢ଼ିଲେ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଆହୁତି ଜଳି ଉଠିବ । ନିକଟରେ ପ୍ରକାଶିତ ଏଇ ଧରଣର ଅନେକ କବିତା ଆମ୍ଭେମାନେ ପାଠ କରିଛୁ । କିନ୍ତୁ ସେ ସମସ୍ତ ମଧ୍ୟରେ ଏଇ ତ୍ରିପାଠୀଙ୍କର ସୃଷ୍ଟିଗୁଡ଼ିକହିଁ ପ୍ରକୃତ କବିତାର ମର୍ଯ୍ୟାଦାଭୋଗୀ ।

ଆଜି ମହାଭାରତୀୟ ଭାବର ପ୍ରଚୁର ଚଳିଛି । ସେଥିପାଇଁ ଓଡ଼ିଶାରେ କେତେକ ଓଡ଼ିଆଙ୍କୁ ପ୍ରଗ୍ରହରଟାକୁ ମିଥ୍ୟାଟ କଥା ବୋଲି ନାକ ଟେକିଥାନ୍ତି । କିନ୍ତୁ ଆମେ ଦେଖୁଛୁ ଯେ ଅନ୍ୟ ପ୍ରଦେଶମାନଙ୍କରେ ଯେଉଁମାନେ ମହାଭାରତୀୟ ଭାବର ପଣ୍ଡାରୂପେ କଥା କହନ୍ତି, କାର୍ଯ୍ୟରେ

ବେଶ୍ ପ୍ରାଦେଶିକ । କେବଳ ଓଡ଼ିଆ ନିଜକୁ ଓଡ଼ିଆ ବୋଲି ପରିଚୟ ଦେବାକୁ ଡରୁଛି ଓ ତାକୁ ଡର ହେଉଛି—ଅନ୍ୟମାନଙ୍କ ସ୍ୱାର୍ଥରୁ ।

ପ୍ରାଦେଶିକ ଆତ୍ମବୋଧ ମହାଭାରତୀୟ ପରିପ୍ରେକ୍ଷିତରେ ଅପରାଧ ହେବାର ଆମ୍ଭେମାନେ କୌଣସି କାରଣ ଦେଖୁନାହୁଁ । ଯେ ପର୍ଯ୍ୟନ୍ତ ଲୋକ ନିଜ ଗାଁକୁ, ନିଜ ଘର, ନିଜ ବାପମାକୁ ନେଇ ଗର୍ବ କରିବା ଅପରାଧରେ ନ ହୋଇଛି, ନିଜ ଭାଷାଭାଷୀ ଭୂଖଣ୍ଡକୁ ନେଇ ଗର୍ବ କରିବା କପରି ଅନ୍ୟାୟ ହେବ, ଆମ୍ଭେମାନେ ବୁଝିପାରୁନାହୁଁ ।

ବର୍ତ୍ତମାନ ପରିସ୍ଥିତି ଯାହା ଆମର ମନେହୁଏ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଉତ୍କଳାତ୍ମବୋଧ ନୂତନ କରି ଗଭୀର ଭାବରେ ଜାଗ୍ରତ କରିବାର ପୁଣି ଦରକାର ହେଉଛି । ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଆହ୍ୱାନର କବିତାଗୁଡ଼ିକ ତେଣୁ କେବଳ ନିଜଗୁଣରେ ଆଦରଣୀୟ ନୁହେଁ, କାଳଗୁଣରେ ମଧ୍ୟ ଅତ୍ୟନ୍ତ ସ୍ୱାଗତ ମନେ ହୁଅନ୍ତି । ଏ କବିତାଗୁଡ଼ିକ ଓଡ଼ିଶାର ପ୍ରତ୍ୟେକ ସ୍କୁଲରେ ପଢ଼ାହେବା ଉଚିତ ।

ଅବଶ୍ୟ କହିରଖୁଁ ଯେ ଏ କବିତାଗୁଡ଼ିକରେ ସଂକୀର୍ଣ୍ଣ ପ୍ରାଦେଶିକତାର ଗନ୍ଧମାତ୍ରହିଁ ନାହିଁ, ଯେପରି ଦେଖାଯାଏ 'ବିଶ୍ୱ-କବି' 'ଆନ୍ତର୍ଜାତିକ' କବି, ମହାଭାରତୀୟ କବି ରବି ଠାକୁରଙ୍କ—

"ବାଂଲାର ମାଟି ବାଂଲାର ଜଲ୍, ବାଂଲାର ବାୟୁ, ବାଂଲାର ଫଲ
ପୁଣ୍ୟ ହଉକ, ପୁଣ୍ୟ ହଉକ, ପୁଣ୍ୟ ହଉକ, ହେ ଭଗବାନ ।"

ପ୍ରଭୃତି ପଙ୍କ୍ତି ଗୁଡ଼ିକରେ ।

କିନ୍ତୁ ତ୍ରିପାଠୀଙ୍କ ପୁସ୍ତକରେ କୁତ୍ରାପି ଏ ପ୍ରକାର ଏକଦେଶଦର୍ଶିତା ନାହିଁ । ସେ କେଉଁଠି ଓଡ଼ିଆମାନଙ୍କୁ କେବଳ ଓଡ଼ିଶା କଥା ଭାବିବାକୁ କହି ନାହାନ୍ତି । ସେ କେବଳ ଏ କାଳର ଓଡ଼ିଆମାନଙ୍କ ଆଗରେ ସେମାନଙ୍କ ବିସ୍ମୃତପ୍ରାୟ ଅତୀତ ଗୌରବର କେତୋଟି ପୃଷ୍ଠା ମେଲି ଧରିବାକୁ ଚେଷ୍ଟା କରିଛନ୍ତି ମାତ୍ର । ତାଙ୍କର କବିତାଗୁଡ଼ିକ ବୀରତ୍ୱର, ଦେଶପାଇଁ, ଜାତିପାଇଁ ଅକୁଣ୍ଠ ପ୍ରାଣଦାନର ମର୍ମସ୍ପର୍ଶୀ କାହାଣୀମାନ । କେଉଁଥିରେ ସେହି ମହିମାମୟ ଅତୀତ ଆଉ ଫେରି ଆସିବନି ବୋଲି କବି ଶୋକାଭିଭୂତ । ଆମ୍ଭେମାନେ ସେଇପରି ଏକ କବିତାର କେତେକ ଅଂଶ ନିମ୍ନରେ ଉଦ୍ଧାର କରି ଦେଉଛୁଁ, କାରଣ ସେହି ଅନୁଭବ ଆଜିର ଅଧିକାଂଶ ଦେଶପ୍ରାଣ ଓଡ଼ିଆଙ୍କର ଅତ୍ୟନ୍ତ ପରିଚିତ ।

କହକଥା ହେ ବନପ୍ରାନ୍ତର
କହ କଥା ସମର ପ୍ରାଙ୍ଗଣ
କହ କଥା ଭଗ୍ନ ଦୁର୍ଗଶିଳା
କହ କଥା ଶଇଳ କାନନ ।
କେମନ୍ତେ ସେ ଖଣ୍ଡାଏତ ବଧୂ
ରଣ ଶିଙ୍ଗା ବଜାଇ ବଜାଇ
ବୀରବେଶେ ସମର ପ୍ରାଙ୍ଗଣେ
ଆଣିଲା ତା ସ୍ୱାମୀରେ ସଜାଇ ।
କରେ ଦେଲା ତୀକ୍ଷ୍ଣ ତରବାର
ଭାଲେ ଦେଲା ବିଜୟ ସିନ୍ଦୂର
ରେମୁଣା ବାନ୍ଧିଲା ଚରମେ
ଆର କରେ ଦୀପ୍ତ ଧନୁଶର ।
କେମନ୍ତେ ସେ ବୀର୍ଯ୍ୟବନ୍ତୀ ବାଳା
କଣ୍ଠତଟୁ ଦେଲା ହୁଳହୁଳି
ବନ୍ଦାଇଲା ସ୍ୱାମୀରେ ସୋହାଗେ
'ଯାଅ ଦର୍ପେ, ଯୁଦ୍ଧକର ବୋଲି' ।
ମନ୍ଦାରର ମାଳା ବକ୍ଷ ପଟେ
ଲମ୍ବାଇଲା ଆଦର ଯତନେ
ଗାଇଲା ସେ ସମର ସଙ୍ଗୀତ
ମେଘ ମନ୍ଦ୍ରେ କୁଟୀର ପ୍ରାଙ୍ଗଣେ ।

× × ×

ତରୁଣୀବକ୍ଷ ଲାଗି ପ୍ରିୟତମ
ଜନ୍ମ ନୁହଇ ତବ
ଜ ଭୂଇଁର ମଙ୍ଗଳ ଲାଗି
ଜୀବନ ଦେବାକୁ ହବ ।
ଶତେକ ସୈନ୍ୟ ସାଥେ ଧରି
ବିଜୟ ଲକ୍ଷ୍ମୀ ବରି
ଆସିବ ଯେଦିନ କୋଟି ଗଉରବେ
ନେବି ମୁଁ ଆଦର କରି ।

ଆଗେ ବାଜୁଥିବ ସଂଗ୍ରାମ ବାଜା
ପଛେ ଆସୁଥିବ ତମେ
ଭଜପୁ କେତନ ହାତେ ଧରିଥିବ
ଦେଖିବ ନୟନ କଣେ ।

× × ×

କାହିଁ ତାର ସେହି ବାଣୀ ?
କାହିଁ ତାର ଅଗ୍ନିବୋଲା ଦୃପ୍ତ ଉଦ୍‌ବୋଧନା ?
କାହିଁ ସେଇ ଖଣ୍ଡାଯୁତ ବଧୂ ?

କବି ଯେଉଁ ବୀରପାଇକ ଓ ବୀରପାଇକପତ୍ନୀର କଳ୍ପନା ଏଠାରେ କରିଛନ୍ତି, ସେହି ଆଦର୍ଶ ଉତ୍କଳର ପ୍ରତ୍ୟେକ ଯୁବକ ଯୁବତୀର ପ୍ରାଣରେ ସଂସ୍କୃରିତ ଓ ସଂଜୀବିତ ହେଉ । ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଓଡ଼ିଶା ପାଇଁ ହେଲେ (ଭାରତପାଇଁ ହେଲେତ ବଡ଼ କଥା) ଅଗ୍ନିମୟ ଆତ୍ମବୋଧ ଜାଗ୍ରତ ହୋଇ ରହୁ ।

ଆହୁତର କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ଆମ୍ଭେମାନେ ଅନ୍ତର ସମ୍ବର୍ଦ୍ଧନା ଜଣାଉଅଛୁ । ତାଙ୍କର ଲେଖନୀ ଉତ୍ତରୋତ୍ତର ସିଦ୍ଧକାମ ହେଉ, ଏହାହିଁ ପ୍ରାର୍ଥନା ।

———

# ଜୟୀ ରାଜଗୁରୁଙ୍କ ଉତ୍ସାହବାଣୀ

—୧—

"ହେ ମୋର ଖୋର୍ଦ୍ଧାର ଶତ ଖଣ୍ଡାୟତ ବୀର !
ଜାତିର ଆହ୍ୱାନ-ବାଣୀ
ଶୁଣି, ତମେ ରହିନାହଁ ନୀରବ ନିଶ୍ଚଳ;
ଛାଡ଼ି ପ୍ରିୟ ପୁରପଲ୍ଲୀ ଛାଡ଼ି ପ୍ରିୟ ଦରିଦ୍ର କୁଟୀର
ସକଳ ବନ୍ଧନ ମାୟା
ଥିଲା ଯାହା
ପରିବାରେ ତବ
କାଟି ଦେଇ ନିର୍ବିଘ୍ନରେ,
ଆସିଅଛ ବୀରବେଶେ
ଢାଲ ଖଣ୍ଡା ଧରି
ସମର ପ୍ରାଙ୍ଗଣେ
ଏଇ ବରୁଣେଇ ତଳେ;
ସୁଦୂର ପଲ୍ଲୀର ସେଇ ଶ୍ୟାମଳ ଉତ୍ସଙ୍ଗେ
ରହିଥିବେ କନକ ପିତୁଳୀ ପରି
ପୁଅ ଝିଅ ତବ,
ସେ ଲୋଳ ଲଳିତ ଓଠେ
ଫୁଟୁଥିବ ହାସ
ଶାରଦ ଚନ୍ଦ୍ରିକା ପରି;

ସରଳ ତରଳ ବାଣୀ
ଫୁଟୁଥିବ
ବଦନରୁ ତାଙ୍କର;
ପଚ୍ଚରୁ ଥିବ କେ ବୋଉ !
ବାପା ପରା ଯାଇଛନ୍ତି
ଯୁଦ୍ଧ କରି କାହିଁ
ଆସିବେ କି ନାହିଁ ?
କୁଟୀରୁ ବାହାରି ଯେବେ—
ଆସିଥିବ ଯୁଦ୍ଧ କରି
ଝମ୍ ଝମ୍ ଶୁଣି ଏଇ ଝମକ ବାଜଣା
ଧାଇ କା'ରି ଦେଇଥିବ ଧାଇରେ ବଦାସ୍ତ
ଆସିଥିବ ଗାଆଁ ମୁଣ୍ଡ ବରଗଛ ଯାଏ
କହୁଥିବ କାନେ କାନେ,
ଦେଶର ଗୌରବ ପାଇଁ,
ଜାତିର ସ୍ୱଧର୍ମ ପାଇଁ,
ଦେବୁନାହିଁ ପଛଘୁଞ୍ଚା କେବେ !
ତୂଣୀରୁ ବାହାରି କରି
ତୀକ୍ଷ୍ଣ ଶରମାଳା
ଦେଇଥିବ ଖଞ୍ଜି ତାରି—
ତୂଣୀର ଭିତରେ
ମନେ ରଖ ମନେ ରଖ
କହୁଥିବ ପୁଣି,
ଆମ ବାପ ଗୋସେଁ ବାପା
ଥିଲେ ଯେତୁ ଏଘରର
ମୁରବି ପ୍ରଧାନ
କେତେ ଯୁଦ୍ଧେ ଯୁଦ୍ଧ କରି
ଆସିଛନ୍ତି ଉଡ଼ାଇଣ
ଗୌରବ ପତାକା
ଖୋରଧାର ଦୁର୍ଗଦ୍ୱାରୁ
ପାଇଛନ୍ତି
ଶାଢ଼ୀ ଓ ଶିରୁପା,
ସେ ଜାତିର ସେ ବଂଶର
ନିର୍ଦ୍ଧିକ ସନ୍ତାନ ତୁହି

କ୍ଷୁଦ୍ର ଏହି ଜୀବନରେ
ନ ରଖି ମମତା
ରଖିବୁ ମମତା ମାୟା
ବିଶାଳ ଏ ଦେଶ ପରେ ତୋର !
ଦେଶ ଯଦି ବଞ୍ଚି ପାରେ
ତୋହର ମରଣେ,
ଦେଶ ଯଦି ତୋଳିପାରେ
ବିଜୟ କେତନ
ତୋ ଶୋଣିତ ପ୍ରତିବିନ୍ଦୁ ଦାନେ,
ଦେଶ ଯଦି ସ୍ୱାଧୀନ ସମ୍ପଦେ ନାଚି
ବାଇପାରେ ସ୍ୱାଧୀନତା ବେଣୁ,
ଦେଶ ଯଦି ବିଶ୍ୱ ଦରବାରେ କହିପାରେ କଥା
ସ୍ୱାଧୀନ ରସନା ଖୋଲି,—
ଦେଶର ଏ ବିଶାଳ ଗୌରବ
ତୋ' ଶୋଣିତ ପ୍ରତିବିନ୍ଦୁ ନେଇ
ଦିଶୁଥିବନି କି ଅଭିନବ ?
ଦେଶର ଏ ପୁଣ୍ୟପୂତ ଧୂଳି ମାଟି ସହି
ଜନ୍ମ ଜନ୍ମାନ୍ତର ଧରି
ବଞ୍ଚିଥିବୁ ଚୁମ୍ବି ଅଧରହି ।

—୨—

ତରୁଣୀ କିଶୋରୀ ବଧୂ
ତରୁଣ ପ୍ରିୟରେ ଚାହିଁ
କହୁଥିବ—'ପ୍ରିୟତମ ମୋର !
ସଂଗ୍ରାମେ ଢାଳ ଏ ତନୁ
ଆପଣାକୁ କର ତୁମେ ଗଉରବମୟ !
ଦେଶ ଲାଗି ଜନ୍ମ ତବ
ଜନ୍ମ ନୁହେଁ
ମୋର ଏଇ ଯୌବନର
କ୍ଷଣିକ ମାଧୁରୀ ଖାଲି
ଉପଭୋଗ ଲାଗି,

ସ୍ବେହେ ମୁହିଁ ବୀର ସ୍ବାମୀ
ସମର ପ୍ରାଙ୍ଗଣେ ଯେହୁ
ନାଚି ନାଚି ହସି ହସି କରିବ ସଂଗ୍ରାମ ।
ଦେଶର ସମ୍ମାନ ଆଉ ଦେଶର କଲ୍ୟାଣ
ଅକ୍ଷୁର୍ଣ୍ଣ ଓ ଅନାହତ—
ରଖି ପାରେ ଯେ ବୀର ତରୁଣ
ଶୋଣିତରେ ପ୍ରତିବିନ୍ଦୁ ଦେଇ,
ସେଇ ମୋର ପ୍ରିୟତମ, ନମସ୍ୟ ବି ସେଇ;
ସେଇ ମୋର ଅନ୍ତରର ଉପାସ୍ୟ ଦେବତା,
ଯା ବାହୁର ଅସୀମ ବିକ୍ରମ,
ଯା ଅନ୍ତର ଉଚ୍ଛ୍ୱାସ ପରମ,
ଜାତିର ମଙ୍ଗଳ ଲଗି
ସମର ପ୍ରାଙ୍ଗଣେ, କହିପାରେ କଥା !
ଯାଅ ମୋର ପ୍ରିୟତମ !
ଯାଅ ଆଜ ସମର ପ୍ରାଙ୍ଗଣେ
ନିଅ ଏ ଶୋଣିତ ବିନ୍ଦୁ
ପିନ୍ଧ ଏ ସମର ସାଜ
କଷ ହେ କମର କଷ
ମରଣ ଭିତରେ ଦେଖ ଜୀବନର ମଧୁର ସପନ !!
ହସି ହସି ଦେଉଛି ମୁଁ ସମରେ ମେଲାଣି
ହସ ହସି ଦେବି ମୁହିଁ
ସୁଧା ଆଲିଙ୍ଗନ
ଯେ' ଦିନ ଦେଖିବି ମୁହିଁ
ନିର୍ଭୀକ ସଇନ ପରି
ଯୁଝି ଯୁଝି
ଫେରିଅଛ ମୋର ପ୍ରିୟତମ ।''

—୩—

ଏହିଭଳି ସନ୍ତାନ କିଏ
ତା' ଦରିଦ୍ର ଜନମାର
ଆସିଥିବ ଏଥି ଯୁଦ୍ଧ କରି,
ଜନନୀ ନିବସି ତା'ର

ଦରିଦ୍ର କୁଟୀରେ
ଭାଳୁଥିବ ନିଜ ମନେ ମନେ
ବୟସରେ ସାନ ପୁଣି
ଜାଣିନାଇଁ
ଯୁଦ୍ଧର କୌଶଳ
କେମନ୍ତେ କରିବ ଯୁଦ୍ଧ ?
ବିପକ୍ଷ ଦଳର ଯେବେ
ଘନ ଘନ ଗୁଳିଗୋଳ
ଆସୁଥିବ
କରି ମେଘ ଗରଜନ
ଧନ ମୋର ଜୀବନ ବିକଳେ
ପଛଘୁଞ୍ଚା ଦେଇ ଯେବେ
ଆସିବ କୁଟୀରେ ଫେରି
କେମନ୍ତେ କହିବ—
ସେହୁ ପୁଅ ମୋର, ପ୍ରାଣ ମୋର
ମୋହରି ସ୍ତନ୍ୟରେ ଗଢ଼
ତାର ପ୍ରତି ରକ୍ତ ମାଂସ ?
ମୋ କ୍ଷୀରର ସକଳ ଗରିମା
ରକତେ ରକତେ ତା'ର
ରହିଅଛି ବୋଲି ।

—୪—

ହେ ମୋର ଖୋର୍ଦ୍ଧାର ପ୍ରିୟ
ଖଣ୍ଡାୟତ ବୀର ।
ନିଜ ପାଇଁ ଆସି ନାହଁ ।
ମରଣ ବରଣ କରି
ଆସିଛ ଏ ଜାତି ପାଇଁ
ବୁକୁ କାଟି ରକ୍ତ ଦେବ
ଦେବ ମାଂସ ହାଡ଼
ଦେଖିବ ଏ ବନ୍ଧୁରେ ଶ୍ୟାମଳ ଶିଖରି
ଦେଖିବ ଏ ଆକାଶର—
ଗ୍ରହ, ଚନ୍ଦ୍ର, ତାରା

ଦେଖିବ ଏ ଫଳବନ ଶ୍ୟାମଳ ପ୍ରାନ୍ତର
ଦେଖିବ ଦେଖିବ କେତେ ଖୋର୍ଦ୍ଧାର ପାଇକ
ସମସ୍ତ ଜୀବନ ତା'ର
ଏଇ ଶେଷ ରଣ ସଙ୍ଗେ
ବଳି ଦେଇ ଅକୁଣ୍ଠିତେ,
ଜାତିର ସମ୍ମାନ ଟେକ
ରଖିଛ ଗରବେ !
ହଟିପାର ଏ ସଂଗ୍ରାମେ ତମେ
କଟିପାର ବଇରୀର ଗୁଳି ଗୋଳାଘାତେ
ବିଦେଶୀ ବଇରୀ ହାତେ
ରହିପାରେ ଏ ଦେଶର ଭାଗ୍ୟ ଡୋରି ଦିନେ
କିନ୍ତୁ ମୋର ରାଜଭକ୍ତ, ଦେଶଭକ୍ତ
ଖୋରଧାର ଖଣ୍ଡାୟତ ବୀର ।
ତୁମରି ଅକ୍ଷୟ କୀର୍ତ୍ତି
ଅନନ୍ତ ସମୟ ଧରି
ରହିଥିବ ଏ ମାଟିର—
ପ୍ରତି ଧୂଳି କଣିକାରେ ମିଶି;
ଝଲନଅ ଥରେ ମୋର ପ୍ରିୟତମ ପାଇକ ସର୍ଦ୍ଦାର !
ବିଶାଳ ଏ ଉତ୍କଳର କୀର୍ତ୍ତିକଳା ।
ଧନ ଜନ ସ୍ୱାଧୀନତା ସମ୍ମାନ ଗୌରବ
ବର୍ଷ ବର୍ଷ ଧରି ତମେ ରଖିଛ ବଞ୍ଚାଇ !
ରଣୋନ୍ମତ୍ତ ଜାତି ମୋର ।
ଖୋରଧାର ଶତ ଶତ ପାଇକ ସର୍ଦ୍ଦାର !
ତୁମରି ମୋହନମନ୍ତ୍ରେ
କଥା କହେ ପ୍ରାଣହୀନ
ଯେ ଆଜ ମୃର୍ଦ୍ଧାର ।
ବୁକୁରେ ବିପୁଳ ବହ୍ନି
ଜଳଇ ତୁମରି
ହୁତୁ ହୁତୁ ସ୍ୱର୍ଣ୍ଣଶିଖା ମେଳି
ଓଠରେ ବଜ୍ରର ବାଣୀ
ମୋହନ ଗୌରବେ
ପ୍ରତି ନୀତି ଯାଏ ଖେଳି ଖେଳି,

ଶିରେ ଶିରେ ତବ
ଶୋଣିତ ପ୍ରବାହ
ଆଜନମ୍
କହେ ସେହ୍ନେ କଥା
ଦେଶ ଜନନୀର ମୁହିଁ
ପ୍ରିୟର ସନ୍ତାନ
ଦେଶ ପାଇଁ
ଲୋଡ଼ା ହେଲେ
ଦେବ ମୋର ମଥା ।
ଦେଶର ମଂଗଳେ ମୋର ମଂଗଳର ବୀଣା
ବାଜ ଉଠେ ମୃଦୁ ମନ୍ଦ୍ର ତାନେ,
ଦେଶ ପାଇଁ ବାପ ମା
ଭଗିନୀର ମାୟା
ଏ ଧରଣୀ ପରେ ନାହିଁ ଜାଣେ ।
ଉପରେ ଆକାଶ
ତଳେ ମୋର ପୁଣ୍ୟ ଦେଶ
ଜଳ ବଣ ପରବତ ଘେରି
ସ୍ୱାଧୀନ କେତନ ମୁହିଁ ଉଡ଼ାଇ ଉଡ଼ାଇ
କରୁଥିବ ଚିରନ୍ତନ ଖେଳା;
ତୁମର ଦେଶର ଆଜ ତୁମର ଜାତିର
ଆସିଅଛୁ ଭୀଷଣ ସଙ୍କଟ
ପ୍ରଳୟ ତାଣ୍ଡବ ଲୀଳା
ସରଜ ତହିଁରେ
ଆପଣାକୁ ଆପେ ହେ ପ୍ରକଟ !
ଦେଖାଅ ଦେଖାଅ ତୁମେ
ହୃତପିଣ୍ଡ ଏ ବିଶାଳ ଜାତିର
ଏଇ ଖଣ୍ଡା ଏଇ ତଲୁଆରେ
ଗଳ କାଟି ଶତ୍ରୁ ବୈରୀଶିର,
ଏ ଖୋରଧା ଜନନୀର
ନେଇ ମିର ଧାରା
ସେ ଛୁଟଅ ପୋଛିଦିଅ ତୁମେ
ଦେଶର କ୍ରନ୍ଦନ ବାଣୀ

ପାରବ କ ସହ୍ବ ?
ଦେଶର ଶୋଣିତ ବହ୍ନ
ତୁମ ବୁକୁ ତଳେ !

————

# ପୁରସ୍କାର

ସେନାପତି ! ତୁମେ ଦୁର୍ଗ ଜଣିତ ଅଗ୍ନି ଭିତରେ ପଶିଛ ଦମ୍ଭ ଧରି
ଜାତି ସମ୍ମାନ ବଢ଼ାଇଛ ତମେ
ନିଜ ଜୀବନରେ ମମତା ନ ରଖି କରି ।
ବକ୍ଷ ତମର ଅଚଳ ଅଟଳ ଜୀବନର ପଣ ଖିଣ୍ଡ ଖିଣ୍ଡ ଖିଣ୍ଡିତର
ଦେଶର ଗର୍ବ, ଗର୍ବ ତୁମର, ଦେଶହିଁ ତମର ଜୀବନର ପ୍ରିୟ ଘର !
ପରାଜୟେ ତୁମେ ଥରି ଯାଇଁ ନାହିଁ !
ବିପଦ ଭିତରେ ନିଜକୁ ଫୁଟାଅ ତମେ
ନିଅ ଏ ଗାଆଁଟି ନିଅ ସେନାପତି !
ଭୋଗୁଥିବ ଯାହା ବଂଶର ଅନୁକ୍ରମେ
'ନାହିଁ ହେ ମଣିମା ! ଥାଉ,
ଜାତିର ସେବା ମୁଁ କରି ମୋ କ୍ଷୁଦ୍ର ଜୀବନଟି ବିତିଯାଉ ।'

ସେନାପତି, ମୋର ପ୍ରିୟ ସେନାପତି,
ଜଣିତ ଦୁର୍ଗ ବାହୁବଳମେ ଏକା,
ତମ ଭଳି ଜଣେ ବଳୀୟାର ଯୁବା
ହୋଇ ନାହିଁ ମୋର ଏ ସାରା ଜୀବନେ ଦେଖା !
ବରଷ ବରଷ ଧରି ସେ ଦୁର୍ଗେ ଚାଲିଅଛି ଖାଲି ଅଭିଯାନ ଅଭିଯାନ,
ବ୍ୟର୍ଥ ହୋଇଛି ସକଳ ସାଧନା,
ସାର୍ଥ ହୋଇଛି ପାଇବାର ଅପମାନ !
ଅଜେୟ ଦୁର୍ଗେ ବିଜୟ କେତନ
ଉଡ଼ାଇ ଆସିଛ ବାହୁବଳମେ ତମେ

ନଅ ଏ ଗାଆଁଟି ନଅ ସେନାପତି,
ଭଗୀରଥିବ ଯାହା ବଂଶର ଅନୁକ୍ରମେ ।
'ନାହିଁ ହେ ମଣିମା ! ଥାଉ,
ଦେଶ ସେନାପତି ଦେଶର ପତାକା ଉଡ଼ାଇ ମୋ ଜିବନ ଯାଉ ।'

ସେନାପତି, ମୋର ପ୍ରିୟ ସେନାପତି !
ଏ ବୀର ମାଟିର ବୀର ସନ୍ତାନ ତମେ,
ନିଖିଳ ଏ ଦେଶ ତୁମ ତଳୁଆରେ
ଗଉରବ ଦିଏ, ନତଜାନୁ ହୋଇ ନମେ ।
ଫେର ଆସିଛନ୍ତି ସକଳ ସାଧନା
ଏ ଜାତି ମୁକୁଟ ନଇଁଛି ଯା' ପାଦତଳେ,
ସେଇ ଦୁର୍ଗର ଗର୍ବ ଘୋଷୁଛି—ତୁମ ତଲୁଆର ପୂଜ୍ୟ ଧରଣୀ ପରେ !
କି ଅବା ବିଭବ ପାରିବି ମୁଁ ଦେଇ ?
ତୁମରି ଗୁଳକ ପାଳକ ରାଜା ମୁଁ ଜଣେ,
ନଅ ଏ ଗାଆଁଟି ନଅ ସେନାପତି,
ଭୋଗୁଥିବ ଯାହା ବଂଶର ଅନୁକ୍ରମେ !
'ନାହିଁ ହେ ମଣିମା ! ଥାଉ,

ଦେଶ ସେନାପତି ଦେଶର ହୁକୁମ ପାଳି ମୋ ଜୀବନ ଯାଉ ।'
ସେନାପତି, ମୋର ପ୍ରିୟ ସେନାପତି !
ଏ ସାରା ଦେଶର ଏକଇ ବର୍ମ ତମେ,
ନିଜ ଜୀବନର ଗ୍ଭଇ ଦେଖ ପରା
ଦେଶ ଓ ଜାତିର ସୁବିପୁଳ ଦରପଣେ ।
ଏ ମାଟିର ପ୍ରତି ଅଣୁ ପରମାଣେ
ସତ୍ତା ହରାଇ ନିଜରେ ଭୁଲିଚ ବୀର,
ଏ ମାଟି ହସଲେ ତୁମେ ହସ ବୀର,
ଏ ମାଟି ଦୁଃଖେ ଝରାଅ ଅଶ୍ରୁନୀର !
କିବା ସମ୍ପଦ ଅରପିବି କରେ ?
ତୁମରି ସମାନ କିଛି ନାହିଁ ଏ ଭୁବନେ
ନଅ ଏ ଶିରୁପା ନଅ ସେନାପତି, ପିନ୍ଧିବ ଯାହା ବଂଶର ଅନୁକ୍ରମେ ।
'ଦିଅ ହେ ମଣିମା ! ଦିଅ,
ଜାତିର ସେବା ମୁଁ କରି କରି ହୁଏ, ମୋ ଜାତିର ଚିର ପ୍ରିୟ ।'

———

# କଜଳାଗଣ୍ଡ

—୧—

କଜଳାଗଣ୍ଡ ! କଜଳାଗଣ୍ଡ ! ସେଇଦିନୁ ତମେ ରହୁଚ ପଡ଼ି
ବଣବୁଦା ଲଟା ପାହାଡ଼ କାନେ କି କଥା କହୁଚ ଜୀବନସାରି ?
ଦୁର୍ଗ ତୁମର ପଡ଼ିଚ ଟଳି, ଗର୍ବ ତୁମର ଯାଇଚ ଜଳି,
ରଣସଙ୍ଗୀତ ପାହାଡ଼ ତଳୁ ସାନ୍ଧ୍ୟ ସମୀରେ ନ ଉଠେ ଭରି,

ଝମ୍ ଝମ୍ ଝମ୍ ହଲଇ ବାହା ପଟା ଆଖଡ଼ାର ପାଇକ ଦଳ,
ଏକ ଆନେ ଖେଳ ଦର୍ପଭରେ କଷାକଷି ନାହିଁ ହୁଅନ୍ତ ବଳ ।
ପାଇକବାଳାର ପ୍ରବାଳ ଓଠ ଯୁଦ୍ଧ ଫେରନ୍ତା ସ୍ୱାମୀରେ ତାର,
ଜଣାଏ ନାହିଁ ତା' ସ୍ୱାଗତବାଣୀ କଉଳ ଜଗିଲା ଦୁର୍ଗଦ୍ୱାର ।

ତୁମର ପାହାଡ଼ ଟାଙ୍ଗି ଆଜ ଯୁଦ୍ଧ ବାଇଦ ଶୁଣେନା କାନେ
ତୁମର ଗହନ ବିପିନ କୋଳେ ସମର ତୂର୍ଯ୍ୟ ବାଜେ ନା ଟାଣେ ।
ତୁମର ଆକାଶ, ଚନ୍ଦ୍ର, ତାରି ଉଲ୍ଲସି ନାହିଁ ଉଠଇ ପରି
ପାଇକ ବଧୂର ଖଣ୍ଡାଖେଳ ନୟନେ ନିରେଖି ଦର୍ପଭରି ।

ଟପ୍ ଟପ୍ ଟପ୍ ଘୋଡ଼ାର ଟାପୁ ଟମ୍ ଟମ୍ ଟମ୍ ଟମକ ବଜା
ସକଳ ସ୍ୱପ୍ନ ତୁମର ଦେଶେ ନାହିଁ ସେ ରାଜ୍ୟ ନାହିଁ ସେ ରଜା ।
କଜଳାଗଣ୍ଡ ! କଜଳାଗଣ୍ଡ ! ସେହିଦିନୁ ତୁମେ ରହୁଚ ପଡ଼ି
ବଣ ବୁଦାଲଟା ପାହାଡ଼ କାନେ କି କଥା କହୁଚ ଜୀବନ ସାରି ?

—୨—

କଜଳାଗଣ୍ଡ ! କଜଳାଗଣ୍ଡ ! ତୁମର ଗଭୀର କଜଳ ଜଳେ
ଖସ୍ କରି କିଏ ପଡ଼ିଲା ଡେଇଁ ବୀର ସଂଗୀତ ବକ୍ଷ ତଳେ !
କାହାର କଣ୍ଠ ବକୁଳମାଳା ଭାସିଲା ତୁମର କଜଳ ବୁକେ ?
କାହାର ଚରଣ ଲାକ୍ଷାରାଗ ବୁଲିଲା ତୁମର ଲହରୀ ମୁଖେ ?

କାହାର ହାତର ସ୍ୱର୍ଣ୍ଣକାଚ, ପଦମଞ୍ଜିର ବାଜିଲା ଟାଣେ
ଲୁଚିଗଲା କେଉଁ ଅତଳ ତଳେ ଶୁଣିଥିବ ତୁମେ ନୀରବ ଧ୍ୟାନେ ।
କାହାର ସ୍ୱର୍ଣ୍ଣ ଅଂଗରେଖା ନ ଦିଶିଲା ଆଉ କାଳ କାଳ ହେ
ତୁମର ଗରଭେ ଲୁଚିଲା କାର କାନ୍ତ କରର କରବାଳ ହେ ?

କାହାର ଦୁଇଟି ଅଗ୍ନି ଆଖି ଦେଶର ଜାତିର ଗଉରବ ହେ
ନିଭିଲା ତୁମର କଜଳ ବୁକେ, ଲୁଟିଲା ସକଳ ସଉରଭ ହେ !
କାହାର ଅଟଳ ବକ୍ଷଟିଏ ସମାଧି ଭଜିଲା ତୁମର ପ୍ରାଣେ,
ଯୁଝୁଥିଲା ଯିଏ କମାଣ ଆଗେ, ଜାତି ପାଇଁ ଶତ ସିଂହ ଟାଣେ ।

କାହାର ସାଧନା ସଫଳେ ତବ ବୁଡ଼ିଲା ତୃପ୍ତି ନ ପାଇ ଲବେ ?
କହିବ କ ପାରିବ କଉଳ ପ୍ରାଣ ଥିଲା ସେ ବାଲା ଏ ନିଖିଳ ଭବେ ?
କଜଳାଗଣ୍ଡ ! କଜଳାଗଣ୍ଡ ! ତୁମର ଗର୍ଭର କଜଳ ଜଳେ
ଖପ୍‌କିନା କି ଏ ପଡ଼ିଲା ଡେଇଁ ବୀରସଂଗୀତ ବକ୍ଷତଳେ !

— ୩ —

କଜଳାଗଣ୍ଡ ! କଜଳଗଣ୍ଡ ! ଦୁରୁ ଦୁରୁ ଦୁରୁ ଜଳିଲା ନିଆଁ
ଦୁର୍ଗ ପାଚେରି ଫାଟିଲା ପରି ପାଇକ ବଧିର ନ ସହେ ହିଆ ।
ଶିରେ ଶିରେ ଶୋଣିତ ତାର ଟକ୍‌ମକ୍ ହୋଇ ଫୁଟିଲା ପରି !
କଳାବଣ୍ଡ କଳା ନୟନ ତଳୁ ଫୁଟିଲା ଦୁଇଟି ଅଗ୍ନି ତରି ।

କଳାବଣ୍ଡ କଳା ଅଶ୍ୱ ଚଢ଼ି ଟପ୍ ଟପ୍ ଟପ୍ ଚାଲିଲା ଆଗେ
ଜନ୍ମଭୂମିର କୀର୍ତ୍ତିଗାଥା ବୁକୁତଳେ ତା'ର ଗର୍ଭରେ ଜାଗେ ।
ଶିଁ ଶିଁ ଶିଁ ମାଇଲା ଶର, ଟପ୍ ଟପ୍ ଟପ୍ ଚାଲିଲା ଘୋଡ଼ା
ଦୁର୍ଗ ପଥର କବାଟେ ବାଜେ ଦୁମ୍ ଦୁମ୍ ଦୁମ୍ ଶତ୍ରୁ ଗୋଳା ।

ଦୁର୍ଗ କବାଟ ପଡ଼ିଲା ଟଳି, ଶତ୍ରୁ ପଶିଲା ଦୁର୍ଗଭେଦି ।
କଳାବଣ୍ଡ କଳା ଅଶ୍ୱ ଚଢ଼ି ଶତ୍ରୁ ସଇନ ପକାଏ ଛେଦି ।
ବିଶାଳ ଦୁର୍ଗ ପାଉଁଶ ହେଲା ରକ୍ତ ଲହରୀ ଖେଳିଲା ଭୂଇଁ
କଳାବଣ୍ଡ ଋହିଁ ପାରିଲା ନାହିଁ ଟେକି ତାର କଳା ନୟନ ଦୁଇ ।

କଳାବଣ୍ଡ ଚାଲେ ଅଶ୍ୱପିଠି ଶତ୍ରୁ ସଇନ ଚାଲିଚ ପଛେ
ବିଶାଳ ଦୁର୍ଗ ପାଉଁଶ ହେଲା କଳାବଣ୍ଡ ସହି ପାରେନା ମଝେ ।
କଜଳାଗଣ୍ଡ ! କଜଳାଗଣ୍ଡ ! ଦୁରୁ ଦୁରୁ ଦୁରୁ ଜଳିଲା ନିଆଁ
ବିଶାଳ ଦୁର୍ଗ ପାଉଁଶ ହେଲା ପାଇକ-ବଧିର ନ ସହେ ହିଆ ।

— ୪ —

କଜଳାଗଣ୍ଡ ! କଜଳାଗଣ୍ଡ ! କଳାବଣ୍ଡ ଗୀତ ଗାଇଲି ପରି
ଶତ୍ରୁ ଆସଇ ବଜାଇ ଜାଇ ପରି ଶତ୍ରୁ ହାତେ ମୁଁ ଦେବ କି ଧରି ?

ପାଇକଝିଅ ମୁଁ ପାଇକ ବୋହୂ, ପାଇକ ରକ୍ତ ଛାତିରେ ବହେ
ପାଇକ ଆଖିର ବହ୍ନି ମୋର ନୟନେ ନୟନେ କଥା ଯେ କହେ ।

ପାଇକ ଓଠର ମୃତ୍ୟୁ ଜଣା ସ୍ୱର୍ଣ୍ଣହାସ ମୋ ଅଧରେ ଫୁଟେ
ବୁକୁତଳେ ମୋର ପାଇକ ଗାଥା ସ୍ପନ୍ଦନ ଢୋଲ ଗର୍ଜ୍ଜରେ ଉଠେ ।
ଜନ୍ମଭୂମିର ଜାଅନ୍ତା ପ୍ରାଣ ପାଇକ ବୋହୂ ମୁଁ କାହାଁରେ ଭୟ
ପାଇକବାଳା କେ ଅଛ ଲୋ ଆସ ଶତ୍ରୁର ହାତେ ନ ଭଜ ଲୟ ।

ପାଇକ ରକ୍ତ ଶିଥିଳ ନୁହେ, ଗାଆଲୋ ଗାଆଲୋ ପାଇକବାଳା
ହାତରେ ଧର ଲୋ ମୁକ୍ତ ଅସି, ବକ୍ଷେ ଶୋହୁ ଲୋ ବକୁଳମାଳା ।
ବାଦକ ଗର୍ଜ୍ଜରେ ବାଦ୍ୟବଜା, ଦୁମ୍ ଦୁମ୍ ଦୁମ୍ ବଜାରେ ବାଜା
ପାହାଡ଼ ଝାଙ୍ଗୀ ପବଣ ତଳ ଗୁରୁଗଡ଼ରବେ ତେଜାରେ ତେଜା ।

କଜଳାଗଣ୍ଡ ! କଜଳାଗଣ୍ଡ ! ତୁମର ବକ୍ଷେ ହଅହେ ସ୍ଥାନ
କହିବ ମୋ ଭାଇ ଭଉଣୀ କାନେ, କଳାବଣ୍ଠ କେବେ ହାରନି ମାନ
କଜଳାଗଣ୍ଡ ! କଜଳାଗଣ୍ଡ ! କଳାବଣ୍ଠ ଗୀତ ଗାଇଲ ପରା
ପାଇକଝିଅ ମୁଁ ପାଇକ ବୋହୂ, ଶତ୍ରୁ ହାତେ ମୁଁ ଦେବକି ଧରା ?

—୫—

କଜଳାଗଣ୍ଡ ! କଜଳାଗଣ୍ଡ ! ଦୁର୍ଗ ତୁମର ପାଉଁଶ ହେଲା
କଳାବଣ୍ଠର ଯେ କୀର୍ତ୍ତି-କଳା ଘୋଷେ ଆଜ ତୁମ ଶଯନ-ବେଳା ।
କଳାବଣ୍ଠ ଆଜ ନାହିଁରେ ନାହିଁ ବଣ ପର୍ବତ ପାହାଡ଼ତଳେ
କଳାବଣ୍ଠ କଳା ଅଶ୍ୱଚଢ଼ି, ଯୁଦ୍ଧ କରୁନି ଶତ୍ରୁ ଭୁଲେ ।

କଳାବଣ୍ଠ ବୁକୁ ଶୋଣିତ ଧାର ଦେଶପାଇଁ ଆଉ ଉଠୁନି ତାତି
କଳାବଣ୍ଠ ଆଉ ଖୋଜୁନି ତାର ପାଇକ-ଭଉଣୀ ସମର ସାଥି ।
କଳାବଣ୍ଠ ଆଉ କଜଳାଗଣ୍ଡେ ସର୍ଜ୍ଜି ମା ଭୁଲେ ଦେଉନି ଶ୍ୱାସ
କଳାବଣ୍ଠ ଆଉ ସମର ଗୀତ ଗାଉନି ପିନ୍ଧି ବୀରର ବେଶ ।

କଳାବଣ୍ଠ ଛୁଟ ପାଉଁଶ-ଦୁର୍ଗ ଦେଖି ଦେଖି ନାଇଁ ଉଦାସ ହୁଏ
କଳାବଣ୍ଠ ଆଜ ନାଇଁରେ ନାଇଁ କଜଳାଗଣ୍ଡ ମରିବେ ବହେ ।
କଜଳାଗଣ୍ଡ ! କଜଳାଗଣ୍ଡ ! କଳାବଣ୍ଠ ଆଜ ନାଇଁରେ ନାଇଁ
ଏକା କଥା ଖାଲି ବକ୍ଷେ ଜାଗେ ତୁମ ନାଁରେ କେବେ ବୁଲିଲେ ଯାଇ ।

କଳଲାଗଣ୍ଡ ! କଳଲାଗଣ୍ଡ ! ତୁମର ଗମ୍ଭୀର କଳଲ ଜଳେ
ଖପ୍‌କନ କଏ ପଡ଼ିଲା ତେଜିଁ ବୀର ସଙ୍ଗୀତ ବକ୍ଷତଳେ ।
କଳଲାଗଣ୍ଡ ! ସତେ କି ହେ ସତ ଦୁର୍ଗ ତୁମର ପାଉଁଶ ହେଲା
କଳାବନ୍ଧର ଯେ କୀର୍ତ୍ତିକଳା ଘୋଷେ ଆଜ ତୁମ ବଜନ ବେଳା ।

———

# ସୈନିକ ସମାଧି

— ୧ —

ଏଇଠି ତାହାର ସମାଧି ହେଲା !
ଏଇଠି ଏଇଠି ଦେଶ ପାଇଁ ତା'ର ଜୀବନ ଦେଲା !
ବୀର ବେଶେ ସେ ଯେ ଏଇଠି ଏଇଠି ଯୁଦ୍ଧ କଲା,
ବୀର ଗୌରବେ କମ୍ପିତ କରି ଆକାଶ ପବନ ନିଖିଳ ଧରା,
ଖଣ୍ଡା ଗୋଟିଏ ହାତରେ ଧରିଚି ପଡ଼ିଲା ଶୋଇ
କୋଟିଏ ଶତ୍ରୁ ସଇନ ମାରିଚି ଆଗୁଆ ହୋଇ ।
ଝର ଝର ଝର ରକ୍ତ ବୋହିଚି ବୁକୁରୁ ତା'ର,
କପାଳେ ଜଳୁଚି ଦାଉ ଦାଉ ସନ୍ଦୂର ଗାର ।
ଦମ୍ ଦମ୍ ଦମ୍ ସମ୍ମୁଖୁ ଆସେ ଶତ୍ରୁ ଗୋଳା—
ଏ ବୀର ମାଟିର ବୀର ସନ୍ତାନ
ବୀର ଗଉରବେ ବୁଜିଚି ଡୋଳା ।
ଦେଖିଚି ପାହାଡ଼, ଦେଖିଚି ନଈ
ଦେଖିଚି ଆକାଶ ଊର୍ଦ୍ଧ୍ୱେ ରହି
ଖଣ୍ଡା ଗୋଟିଏ ହାତରେ ଧରିଚି ପଡ଼ିଲା ଶୋଇ
ତୁମର ମାଆ ଜନମ ଭୂଇଁ ।
ସେତିକ ସେତିକ କହିଚି
ଆଉ କହିନି କଥା,
ମାଆ ପାଇଁ ତାର ଦେଇଚି ମଥା ।
ଓଠରେ ଫୁଟାଇ ସ୍ୱର୍ଗିହାସ,

ଅଙ୍ଗେ ନଭାଇ ସକଳ ବେଦନା ଗଭୀର ପ୍ରାସ ।
ପାଇକ ଘରର ଯୁବା ବଇସି ଆ ଗୋଟିଏ ପିଲ
ବକ୍ସୁପର ତା' ଜୀବନ ଥିଲ ।
ମଣିଷ ପାଇଁକ ମରବା ପାଇ
ଆସିଥିଲ ସେ ଏତେ ଦୂରରେ,
ଢାଲ ଓ ଖଣ୍ଡା ହାତରେ ଧର
ଜାଳ ବୁକୁ ଚଳେ ନିଆଁ ଝୁଲରେ ।
ଜାଣି ନାଇଁ ସେ ଜାଣି ନାଇଁରେ
ପରକ ଆପଣା ବଡ଼ ସାନରେ,
ଜନମ ଭୂଇଁର ସ୍ୱାର୍ଥ ଲଗି
ଜୀବନଟି ଢାଳ କଲା ଦାନରେ ।
ବୁକୁ ଚିର ତା'ର ଜୀବନ ଦେଲା ଜୀବନ ଦେଲା
ଏଇଠି ତାହାର ସମାଧି ହେଲା ! ସମାଧି ହେଲା !

—: —

ଏକୋଇର କଳା ବଣିକେଶନ
ବଢ଼ିଥିଲା ବଡ଼ ଅଳଅଳରେ
ଗୋଟିଏ ବୋଲ ସେ ସଙ୍ଗାଳି ସେ
ସବୁର ସେ ଆଖି ମାଗ୍ ଘରରେ ।
ବାନ୍ଧିଲା ଯେବେ କଟିରେ ଫର
ସମର ଭୂଇଁରେ ଆସିବ ଚଳି,
ହାତରେ ଧାଇଲା ଖଣ୍ଡା ଢାଲ
କଟିରେ ଭିଡ଼ିଲା ଘାଘୁଡ଼ି ମାଳ,
ବନ୍ଦି ଜନନୀ ଚରଣପଦ୍ମ କହିଲ ପର—
ଯାଉଚ ଯାଉଚ ଯୁଦ୍ଧ କର
ନୟନେ ଫୁଟିଲ ଅଗ୍ନି-ଡର ! !

ଜନନୀ କହିଲ ଆବେଗ ଭରେ
ଧନମାଳିରେ !
ଅନ୍ଧୁଣୀ ହୋଇ ରହିଲ ତୋତେ
ଭଲ ଭଲରେ !

ଏଇ ଡାଲ ଏଇ ଖଣ୍ଡା ଧର
ଫେରିବୁ ସତରେ ଫେରିବୁ ସତେ,
ଦେଖିବ ଏ ଦୁଇ ନୟନ ଭରି ?
କେତେ ଦୂରେ କେଉଁ ଘାଇଲେ କାହିଁ
ଯୁଝିବୁ ଯାଇ—
ସେ କେଉଁ କଣ୍ଟକ ଖୁରୁଧା ପୁରୀ
ଘରେ ବସି ହେଉଁଥିବ ମୁଁ ଝୁରି ।
ଆଗକୁ ନାହିଁକି ପଛକୁ ନାହିଁ
କେହି ତ କାହିଁ,
ରହିଲି ରହିଲି ରହିଲି ପିନା
ତୋ ବାଟ ଗୁହିଁ !

ଜନମରେ ଗୁହିଁ କହିଲା ପିଏ ପକାଇ ରଣ
ଶିକଳ ଅଥୟ ହୁଅନା ବୋଉ,
ମୁଁ ନୁହଇ ଖାଲି ତୋହରି ଧନ—
ଦେଶର ପ୍ରାଣ ମୁଁ ଜାତିର ତ୍ରାଣ !
ଜନମ ଦେଇଚୁ କରିବାକୁ ଖାଲି ଦେଶର କାମ
ବାଜୁଥିବ ଯହିଁ ଯୁଦ୍ଧ ବାଜା
ଫୁଟୁଥିବ ଯହିଁ କମାଣ ତୋପ,
ଲକ୍ଷ ପାଇକ ସୋଦର ସଖା
ଲଢ଼ୁଥିବେ ଯହିଁ ଦେଖାଇ କୋପ ।
ତାହାରି ଭିତରେ ଖଣ୍ଡା ଧରି
ଶାର୍ଦ୍ଦୂଳ ପରି ଲଢ଼େଇ କରି
ମରିଯାଏ ବୋଉ ମରିଯାଏ ଲୋ !
ରହିବ ମୋହର ମାଟିର ଟେକ,
ଜନମ ମାଟିର ଜୀବନ ରହୁ
କଟିଯାଉ ପଛେ ମୋହର ବେକ ।

ମରିଗଲେ ମୁହିଁ କ ଯାଏ ଆସେ
ମୋ' ମରଣେ ଯେବେ ଫୁଟିବ ଫୁଲ,
ଗନ୍ଧେ ଉଠିବ ମହକ ଧଗ

ସେତକ ତୋହର ଅସଲ ମୂଲ !
ପାଦଧୂଳି ମୋର ମଥାରେ ଦେଇ
ପୁଅ ବୋଲି ଥରେ ଚୁମ୍ବି ସେନେହେ
କୋଳକୁ ନେଇ !
ଯୁଦ୍ଧ କରି, ପଡ଼େ ମୁଁ ଚଳି,
ଫେରିଲେ ଭଲ,
ନ ଫେରିଲେ ବୋଉ ! କାନ୍ଦିବୁନି
ଏତିକି ଅନୁରୋଧ ଲୋ ମୋର !
ଏତିକି କହିଚି, କହିନି ଆଉ
ଚାଲି ସେ ଗଲା
ଦପ୍ ଦପ୍ ଦପ୍ ଚରଣ ଚାଳି
ସମରେ ପରା !
ଏଇ ଯେ ପଡ଼ିଛି ସମର ଭୂଇଁ
ଏଇଠି ଏଇଠି ଯୁଦ୍ଧ କଲା,
କମ୍ପିତ କରି ଆକାଶ ପବନ ନିଖିଳ ଧରା ।
ବୁକୁ ଚିରି ତା'ର ଜୀବନ ଦେଲା ! ଜୀବନ ଦେଲା !
ଏଇଠି ତାହାର ସମାଧି ହେଲା । ସମାଧି ହେଲା !

— ୩ —

ଏଭଳି ବିରାଟ ଅଗ୍ନି ଥାଏ ମଣିଷ ପ୍ରାଣେ
ବଜ୍ର କଟାଇ ପଥର ଫଟାଇ ଜୀବନ ଆଣେ !
ମଣିଷ ସବୁ କରି ପାରେରେ
କିଏ ସେ କହିବ କି ମହାଶକ୍ତି
ରହିଚି, ମଣିଷ ଲହୁ ଧାରେରେ !
କଣ ନ କଲା ?
ବୟସ ତାହାର ଅଠର କୋଡ଼ିଏ ହୋଇବ ପରା !
ମାଇଲା ଶର, ଫିଁ ଫିଁ ଫିଁ ଚାଲିଲା ପରା
ଛୁଟିଲା ଶତ ବଇରି ମଡ଼ା
ଦ୍ୱିଗୁଣ ସାହସେ ଖଣ୍ଡା ଚାଳି
କେତେଶ ସଇନି ଦେଲା ସେ ଟାଳି ।
ଶତ୍ରୁ ଦଳର ସେନାପତି, ସେନାପତି ସେ କାହିଁ ?

ଏଇ କେତେ ଦୂରେ ପାହାଡ଼ ଠାଇଁ;
ମାଇଲା ଘୋଡ଼ା
ବିଜୁଳି ପରି ସେ ଗୁଳିଲା ଦଳ
ହଜାର ହଜାର ବଇରୀ ମଡ଼ା ।
ସମର ଭୂଇଁରେ ପଡ଼ିଲା ଡାକ
ଗୁଳରେ ଗୁଳରେ ପାଇକ ପୁଅ—
ବିଜୟୀ ହୁଅରେ ବିଜୟୀ ହୁଅ
ଭୟ ନାଇଁ ଆଜ ଭୟ ନାଇଁରେ
ଶିରେ ତୋ' ଶିରୂପା-ବନ୍ଧା ହେବ
ନାଆଁ ଥିବ କାଳ କାଳ ପାଇଁରେ !

ଖଣ୍ଡାରେ ଯେବେ ସେନାପତି ଶିର
ଦେଇଛି ଛେଇ
ବିଜୟ କେତନ ବୀର ଓଡ଼ିଶାର
ଦେଲେ ଉଡ଼ାଇ,
ଓଡ଼ିଆ ସଇନ ଓଡ଼ିଆ ବୀର,
ଯହିଁ ଶୁଣ ଖାଲି ଜୟ କଲ୍ଲୋଳ
ହୁଙ୍କାର ।

ଧନ୍ୟ ଧନ୍ୟ ପାଇକ-ପୁଅ
ବିଜୟୀ ବେଶେ ଫେରଇରେ
ତୂର୍ଯ୍ୟ ବାଜେ ରଣ ପ୍ରାଂଗଣେ,
ଓଠେ ତା' ହାସ ଖେଳଇରେ
ସାର୍ଥ ଆଜ ଜୀବନ ତା'ର
ସାର୍ଥ ତାର ଯୁଦ୍ଧ
ଜୟ ଉଲ୍ଲାସେ ବକ୍ଷ ତାର
ହୋଇ ଉଠେ ଉଦ୍‌ବୁଦ୍ଧ !
ଏତିକବେଳେ ବଇରୀ ଶଇନ ପାହାଡ଼ ତଳୁ
ଲୁଚି ଲୁଚି ଲୁଚି ମାଇଲା ଶର
ତଳି ସେ ପଡ଼ିଲା ଧରଣୀ ତଳ
ଉଚାର ମାଆ ଜନମ ଭୂଇଁ
ହାତରେ ଧରିଛି ଝଣ୍ଡା ଟିଏ ପଡ଼ିଲା ଶୋଇ !

ଜୟ ଉଲ୍ଲାସେ ଅଧର ଶେରେ, ସେ ହାସ ଅଛୁ
ସେଭଳି ରହି,
ବିଜୟୀ ପାଇକ ଏଇଠି ଏଇଠି ଦେଶ ପାଇଁ
ତାର ଜୀବନ ଦେଲା !
ଏଇଠି ତାହାର ସମାଧି ହେଲା । ସମାଧି ହେଲା ।!!

—୪—

କେତେ କାଳ ଏବେ ହେଲାଣି ପରା
ସମାଧି ତାର ହୋଇଛି ଠିଆ
ଏପାଖେ ପାହାଡ଼ ସେ ପାଖେ ନଈ
ଚଉଦିଗେ ଖାଲି ବେତସ-କିଆ ।
ବାଟର ବାଟୋଇ ସେ ପାଖେ ଫେରେ
ଉଦାସ ପରାଣେ ଗୀତଟି ଗାଇ
ଗୋଠାଳ ବାଳକ ଚରାଏ ଧେନୁ
ସାନ୍ଧ୍ୟ ସମୀରେ ବଂଇଶୀ ବାଇ ।
ସକାଳ ପରେ ସନ୍ଧ୍ୟା ଆସେ
ସୂର୍ଯ୍ୟ ଆସି ସୂର୍ଯ୍ୟ ଫେରେ
କାଳର କପାଳେ ଘଟଣା ଶତ
ସୁଖ ଓ ଦୁଃଖ ମାରବେ ଖେଳେ !
ପାଇକ ଯୁବାର ସମାଧି ଏ'ଯେ
କାଲ କାଳ ପାଇଁ ରହିଛି ଚୁହିଁ
ଏଇଠି ସେ ଯେ ଯୁଦ୍ଧ କଲା
ରକ୍ତ ଦେଲା ଏ ଦେଶ ପାଇଁ ।
ସମାଧି ପଥର ଥାଆରେ ଥାଆ ।
ଅସୀମ କାଳର ଜନତା ଆଗେ
କହିବୁ କି ଭଲ ପାଇକ ପୁଅ
ଜୀବନ ଦେଲା ଯୁଦ୍ଧ ଯାଗେ ।
ତୁହାଇ ତୁହାଇ କହିବୁ ପରା
ଗରଜି ଗରଜି ଡାକିବୁ ପରା
ଏଇଠି ଏଇଠି ଦେଶପାଇଁ ତାର ଜୀବନ ଦେଲା !
ଏଇଠି ତାହାର ସମାଧି ହେଲା ! ସମାଧି ହେଲା !!

—ଃଠଃ—

# ଏ ମାଟିର ଅମର ସହୀଦ

— ୧ —

ତା' ଦେହ ଅସ୍ଥି ମାଂସର ଅବଶେଷ
ରହିଥିବ ଏଇ ଧୂଳି କଣିକାରେ ପଡ଼ି,
ଆକାଶ ପବନ କମ୍ପାଇ ଯାହାଠାରୁ
ଫୁଟିଥିଲା ଦିନେ ଶତ ସିଂହର ରଡ଼ି ।

କହିଥିଲା ଦିନେ ବ୍ରିଟିଶ ଜାତିକୁ ସିଏ
ବଜ୍ର ପରିଏ ଦମ୍ଭକରି ତା' ଗୁଣ୍ଡି,
ଜୀବନ ଭିକ୍ଷା କରିବ ତୁମରି ଆଗେ
ମୃତ୍ୟୁର ଭୟ ଦେଖାଉଛ ଦିବାରାତି ?

ଏ ଦେଶ ଜାତିର ସମ୍ପଦ ଗଉରବ
ସଂପିଦେବି ମୁଁ ତୁମ କରେ ଡରି ଡରି,
ଏ ମୋର ସ୍ୱାଧୀନ କଣ୍ଠେ ମୁଁ ପରି ନିଜେ
ପରାଧୀନତାର ଶୃଙ୍ଖଳ ନେବି ବରି !

ସ୍ୱାଧୀନ ଜୀବନ ଅଗ୍ନି ବୁକୁରେ ଧରି
ମରିଯିବା ଭଲ ସିଂହ ପରିପ୍ରାୟ ଲଢ଼ି,
ବଞ୍ଚିବା ପାଇଁ ନିର୍ଲଜ ଦେହ ଧରି,
ଶତ୍ରୁ ଶରଣ ଯିବନି ଭିକ୍ଷା କରି !

ଏମୋର ଜୀବନ ମୋହର ନୁହେଁତ ଖାଲି
ମୋ ସାରା ଦେଶର ଏ ଯେ ନିଶ୍ୱାସ ନଳୀ,
ମୋ ଦେହର ପ୍ରତି ରେଣୁରେ ରେଣୁରେ ପରି
ମୋ ଦେଶ ଜାତିର ଗର୍ବ ଉଠଇ ଥରି ।

ମଥା ନତକରି ତୁମରି ଚରଣ ତଳେ
ଆଜ ମୁଁ ଯେବେ ମୋ ଜୀବନ ଭିକ୍ଷା କରେ;
ମୋ ଜାତି ଭିତରୁ ବହ୍ନି ନିଭାଇଦେଇ
ରଖିବ ସିନା ମୁଁ ନେଇ କେଉଁ ରସାତଳେ ।

ତା' ଦେହ ଅସ୍ଥି ମାଂସର ଅବଶେଷ
ରହିଥିବ ଏଇ ଧୂଳି କଣିକାରେ ପଡ଼ି,
ଆକାଶ ପବନ କମ୍ପାଇ ଯାହା ତନ୍ତୁ
ଘୁଞ୍ଚିଥିଲା ଦିନେ ଶତସିଂହର ରଡ଼ି !

—୨—

ସେଦିନ ନୁହେଁତ ବହୁତ ଦିନର କଥା,
ଏଇ ଯେ ଦେଖୁଚ ଦୁର୍ଗମ ଗିରିଗଡ଼,
ଫାଶିଦିଆ ବର ଏଇଠି ଯେ ଠିକ୍ କଲା
ସେଇ ଯେ ବ୍ରିଟିଶ ଜାତି ନିର୍ମମତର ।

ଚଉର୍ଦ୍ଦିଗରେ ଫଉଜ ରହିଲେ ଘେରି,
ଯମ ଦୂତ ପରି ଭୀଷଣୁ ଭୀଷଣତର,
ଫାସିପ୍ରାନ୍ତର କଣି କଣି ଦେଲା ଡାକ
ମଣିଷ ରହିଁରେ ପଶିବା କଷ୍ଟକର ।

ପିଠିରେ ଗୁଳିକ, ହାତେ ହାତକଡ଼ା ଦେଇ
ଏ ଜାତିର ମେରୁଦଣ୍ଡକୁ କିଏ ଆଣେ ?
ନିର୍ମମତାର ସକଳ ଅସ୍ତ୍ର କିଏ ଭୂଷି ଭୂଷି ଦିଏ
ତାହାର ସ୍ୱାଧୀନ ପ୍ରାଣେ !

ମୃତ୍ୟୁର ସୁଧା ଏଇଭଳି ମିଠା କରେ,
ମୃତ୍ୟୁ ସଜନ ଏ ଭଳି ମଧୁରତର !
ଯା ପାଇଁ ମଣିଷ ସକଳ ନିର୍ମମତା
ସହିବା ପାଇଁକି ହୁଅଇ ଅଗ୍ରସର ।

ସମ୍ମୁଖେ ତାର ଫାସିର ବୃକ୍ଷ ଦିଶେ
ଦିଶଇ ଦୁର୍ଗ ବିଲ ବନ ପ୍ରାନ୍ତର,
ସମ୍ମୁଖେ ଖାଲି ଗୁଳିଚୁନ କହି ବାଣୀ
ଏ ବୀର ଜାତିର ଗଉରବ ଅନ୍ତର ।

ରହରେ ସିପାହୀ ରହରେ ଫଉଜ ରହ
ଏତେ କମ୍ପାଇ ନିର୍ମମ ତାହାପରେ,

ଆକାଶ ପବନ ଚତୁର୍ଦ୍ଦିଗରୁ ଅବା
ଭାସି ଆସେ ବାଣୀ ଗିରି ଗଡ଼ ତଳେ ତଳେ ।

ସେ ଦିନ ଲୁଚିଛି ବହୁତ ଦିନର କଥା,
ଏଇ ଯେ ଦେଖୁଛ ଦୁର୍ଗମ ଗିରି ଗଡ଼,
ଫାସିଦିଆବର ଏଇଠି ଯେ ଠିକ କଲ
ସେଇ ଯେ ବୃଟିଶ ଜାତ ନିର୍ମମତର ।

— ୩ —

ଏ ମହା ଜାତିର ସନ୍ତାନ ହେଲ ଠିଆ
ବରଗଛ ତଳେ ଫାଶିରେ ଲଗାଇ ମଥା,
ଅନ୍ତର ତାର କହୁଥିଲ ଅବା କଥା;
ମୃତ୍ୟୁ ଭିତରେ ମରେ ନାହିଁ ସ୍ୱାଧୀନତା ।

କେହିତ ନ ଥିଲେ କେହି ତ ନ ଥିଲେ ତହିଁ
ଦେଖିବାକୁ ତାର ଗୁରୁଗମ୍ଭୀର ମୂର୍ତ୍ତି,
ଦେଖୁଥିଲ ଦୂରୁ ନଗର ଓ ଜନପଦ
ଦେଖୁଥିଲ ବନ ପର୍ବତ ଝର ସୁଅ ।

ଆଣିଲ ଭୁଲ ଲ-ନିର୍ଘ୍ୟ'କ ଆଖି ଡୋଳା,
ଚତୁର୍ଦ୍ଦିଗେ ତା ଜନମ ମାଟିର ପରେ,
ସେ' ଯେ ଆଖି ବୀରଦର୍ପ-ଶୋଣିତେ ଗଢ଼ା
ନିଶ୍ଚିତ ଯହିଁରୁ ଉନ୍ମାଦନା ଯେ ଝରେ ।

ସେ ଆଖି ଭିତରୁ ଫୁଟିଥିବ ବୀରବାଣୀ
ବର୍ଷ ଶୂନ୍ୟେ ଲେଖା ହୋଇଥିବ ରହି,
ଆଜର ଯାତ୍ରୀ । ବର୍ଷ ଶୂନ୍ୟ ଭିତରେ
ନୟନ ପକାରେ ଅଗ୍ନି ଆସୁଛି ବହି !

ପ୍ରଳୟଙ୍କର ଝଡ଼ ମାଡ଼ ମାଡ଼ ଆସୁ,
ଆକାଶ ଭାଙ୍ଗୁ ପଡ଼ୁ ମସ୍ତକ ପରେ;
ଭୁଲିବାକୁ ହେବ ପ୍ରତି ମଣିଷକୁ ଏଥି
ସ୍ୱାଧୀନ ପ୍ରାଣର ନିଆଁ ଜାଳି ବୁକୁତଳେ !

ବଞ୍ଚିଲ ପରି ପାରିବ ବଞ୍ଚି ସିଏ,
ନ ରେତ୍ ଧରାରେ ମଡ଼ା ମୂର୍ଦ୍ଧାର ପରି,
ତା'ର ଜୀବନରେ କିବା ସମ୍ପଦ ଥାଏ ?
ହଜାରେ ବରଷ ରହିଲେ ଜୀବନ ଧରି ।

ଏ ମହା ଜାତିର ସନ୍ତାନ ହେଲ ଠିଆ
ବରଗଛ ତଳେ ଫାଶିରେ ଲଗାଇ ମଥା,
ଅନ୍ତର ତା'ର କହୁଥିଲ ଅବା କଥା
ମୃତ୍ୟୁ ଭିତରେ ମରେ ନାହିଁ ସ୍ୱାଧୀନତା ।

—୪—

ଦୁର୍ଗମ ଗିରି ତୁଙ୍ଗ ଚୂଡ଼ାରେ ଗୁହିଁ
ପଥରେ ଭଗ୍ନ ଦୁର୍ଗର ପ୍ରତି ଶିଳା,
କେଉଁ କର୍ମମେ ପାଇଲ ସେ ଏଥି ଫାଶୀ,
ଏ ମାଟିର ସେ ଯେ ପୁଅ ପରି ପୁଅ ଥିଲ ।

ଗଡ଼ ପ୍ରାନ୍ତର ଅସୀମ ଶୂନେ ଗୁହିଁ,
ନିଜନ ରାତିରେ ପଚରଇ ବେଳେବେଳେ,
ଏଭଳି ନେତାର କଣ୍ଠେ ଦେବାକୁ ଫାଶି
ଶତ୍ରୁର ହାତ କେଉଁଭଳି ଗଲ ହେଲେ ?

ଶାନ୍ତ ଶୀତଳ ସମୀରଣ ଦୂରୁ ଆସି
ଘନ ବନ ଦେହେ ଛୁଇଁ ଛୁଇଁ ଧାଏ କହି,
ଜୟୀ ରାଜଗୁରୁ ଏଠି ପାଇଲ ଫାସି,
ନ ଥିଲେ ତାହାର ସୈନ୍ୟ ପଦାତି ରହି ?

ଦୂର ଧେନୁପଲ ଗୁରୁ ଗୁରୁ ଟିପା ନଦେ
ମନ୍ଦ୍ର ଉଠଇ ଯେଉଁ ଏ ବୀର ବାଣୀ,
ଜୟୀ ରାଜଗୁରୁ ଡାକିବାର ବେଳେ ଫାସି,
ମରଣ ତାହାର ବୁଦ୍ଧୁର ସିଂହଠାଣି ।

ପ୍ରତି ଜନପଦ ଜନପଦେ ଗୁହିଁ କହେ
ଜୟୀ ରାଜଗୁରୁ ପାଇଲ ପଛକେ ଫାସି,

ନିଜକୁ କିନ୍ତୁ ଶତ୍ରୁର ପାଦ ତଳେ
ବିକନ୍ତି ବିକନ୍ତି ପ୍ରଲୋଭନରେ ଭାସି ।

ଅସୀମ ଶୂନ୍ୟ ଏ ମାଟିର ପ୍ରତିକାନେ
କହୁଛି କହୁଛି କହୁଥିବ କାଳ କାଳ,
ଜୟୀ ରାଜଗୁରୁ ଅନ୍ତିମ ଆଖି ଢୋଳା
କହିଥିଲ ଯେଉଁ ବାଣୀ ଚିର ବଳସ୍ଥାର

"ପ୍ରଳୟଙ୍କର ଝଡ଼ ମାଡ଼ ମାଡ଼ ଆସୁ
ଆକାଶ ଭାଙ୍ଗୁ ପଛେ ମସ୍ତକ ପରେ,
ଗ୍ଭଲିବାକୁ ହେବ ପ୍ରତି ମଣିଷକୁ ଏଥି
ସ୍ୱାଧୀନ ପ୍ରାଣର ନିଆଁ ଜାଳି ବୁକୁତଳେ ।"

— ——

## ଜାତିର ଡାକ

ମନେ କି ପଡ଼ଇ ଆଜ ଉତ୍କଳର ସେନାପତି !
ବୀରଗର୍ବେ ତୋଳିବାର ସ୍ୱାଧୀନ ବିଜୟ ଛତି
ଓଡ଼ିଶା ଜନନୀ ଶିରେ, ମନେ କହେ ପଡ଼େ ତବ
କେମନ୍ତେ ଜାତିର କୀର୍ତ୍ତି ରଖିଥିଲ ଅଭିନବ,
କେମନ୍ତେ ସଇନ୍ୟ ଗ୍ଭଲି କେଶରୀ ବିକ୍ରମେ ବୀର
ଗ୍ଭଲିଥିଲ ଖଣ୍ଡା ଧରି, ଧରି ତଲୁଆର ଫାର
ସଂଗ୍ରାମ କବିତା କେତେ ଗାଉଥିଲେ ବୀରଦଳ
ଯାର ଅଗ୍ନି ବୋଳା ତାନ ପରାଣେ ପରାଣେ ବଳ-
ଆଣୁଥିଲ, ଲଙ୍ଘି ବଳ ପ୍ରାନ୍ତର ପାହାଡ଼ ପଥ
ଗ୍ଭଲିଥିଲ ସିଂହପରି କୋଟି ଲବେ ଅବନତ ।
ଜାତିର ପତାକା କେତେ ଉଡ଼ୁଥିଲ ଫର ଫର
ସ୍ୱାଧୀନ ଜୀବନ ଯେନି ବସୁଥିଲ ଉର୍ଜସ୍ୱଳ ।

ଜାତିର ଜୀବନ-ତନ୍ତ୍ରେ ଗୌରବର ହୋମାନଳ
କେମନ୍ତେ ସେ ଜାଳିଥିଲା ଘେନି ଯୁଗ ଯୁଗାନ୍ତର;
ହିମାଦ୍ରିର ପାଦ ତଳୁ ସୁଦୂର ନର୍ମଦା ଯାଏ,
କେତେ ରାଜା ମହାରାଜା ସାମନ୍ତ ରାଉତରାଏ,
ସସଂଭ୍ରମେ ନୋଇଁ ଶିର ଏ ଜାତି ପତାକା ତଳେ
ସମ୍ମାନ ଓ ଗଉରବ ଦେଉଥିଲେ ବଳେ ବଳେ ।
ଓଡ଼ିଆର ଗର୍ବଦମ୍ଭ ଓଡ଼ିଆର ସ୍ୱାଧୀନତା-
ପାଶେ ନଇଁ ପଡ଼ୁଥିଲା ସବୁରି ତେଜସ୍ୱୀ ମଥା !

ଗଜପତି ରାଜା ପାଇଁ ଏ ଦେଶ ପାଇକ ପିଲା
ସର୍ବସ୍ୱ ସମର୍ପିବା ପାଇଁ କେବେ କୁଣ୍ଠିତ ଥିଲା ?
'ଜୟ ଗଜପତି ଜୟ' ରସନାର ପ୍ରତିସ୍ନାୟୁ
ଗାଉଥିଲା, ଥିବା ଯାଏ ଶେଷ ବିନ୍ଦୁ ପରମାୟୁ ?
ଓଡ଼ିଶାର ଗଜପତି ଓଡ଼ିଶା ନିଖିଳଦେଶ
ଗୌରବର ସିଂହାସନେ ସ୍ୱାଧୀନ ସୁନ୍ଦର ବେଶ-
ପିନ୍ଧି ଆହା ରହିଥିଲା କେଉଁ ଧରି କାଳ କାଳ
ଜୀବନ ନାଡ଼ିରେ ବହି ଶୋଣିତର ଉଷ୍ଣଧାର ?
ବିଶ୍ୱ ଆଗେ ବଡ଼ ଯେବେ ଥିଲା ଏ ବିଶାଳ ଜାତି
ମୂଳେ ତା ପାଇକ ରକ୍ତ, ପାଇକ ଇସ୍ପାତ ଛାତି !
ଉଠ ଉଠ ସେନାପତି ! ଏ ବୀର ପାଇକ ଜାତି
ଏ ମାଟିରେ ଥିବାଯାଏଁ ପତାଇବେ ବୀରଛାତି-
ଗୁଳି ଓ କମାଣ ଆଗେ । ଏ ଜାତି ଶୋଣିତ ଧାର
ଏ ଦେଶର ମୁକ୍ତି ଲାଗି ହେବ ନିଶ୍ଚେ ବଳିଆର ।
ଏ ଦେଶ ବଞ୍ଚିଛି ଯେବେ ବଞ୍ଚିଛି ପାଇକ ଲାଗି
ଯୁଗେ ଯୁଗେ ଏଇକଥା ଉଠିବ ଏ ବିଶ୍ୱେ ଜାଗି ।
ନୀଚ ସ୍ୱାର୍ଥ ବାସନାର ଯହିଁ ନାମଗନ୍ଧ ନାହିଁ
କେମନ୍ତେ ରହିବା ଥିର କେଶରୀ ଜୀବନ ପାଇ
ଉଠ ଉଠ ସେନାପତି ! ଆଉ କ୍ଷମା କର ଡେରି,
କଷ ହେ କମର କଷ ବଜାଅ ସଂଗ୍ରାମ ଭେରୀ !

ମହେନ୍ଦ୍ର ଅଚଳ ଡାକେ, ଡାକେ ତୁଙ୍ଗ ମେଘାସନ
ଡାକେ ଗିରି ବରୁଣେଇ-ପ୍ରତିଶିଳା, ତରୁଗଣ

ଶୋଇଲଣି ଘାଲଣି ଡାକେ ଡାକେ ପ୍ରତି ଗୋଡ଼ମାଟି
ଆସ ସେନାପତି ଆସ ବୀରଭୂ ଗରବେ ଘୃତି !
ଚିଲକାର ନୀଳକାନ୍ତ ପ୍ରତିଉର୍ମି ଥର ଥର
ଡାକେ ଆସ ସେନାପତି ଆସ ତଲୁଆର ଧରି ।
ମହାନଦୀ କହେ ଆଜି କାଠଯୋଡ଼ୀ କାନେ କାନେ
ସେଇ ସେନାପତି ଏକା କରଇ ସଂଗ୍ରାମ ଠାଣେ
ଅଖିଳ ଦେଶର ପ୍ରତି ରେଣୁ ରେଣୁରେ ତବ
ନିମନ୍ତ୍ରଣ ଖେଳ ବୁଲେ ଡାକ ପୁଣ୍ୟ ଗଉରବ;
ବାନ୍ଧହେ ପଗଡ଼ି ଶିରେ ବାନ୍ଧ ବୀର ସେନାପତି,
ତୁମର ଶୋଣିତେ ନାଇ ଶହୂଦ ଚଲେ ନିତି;
ତୁମର ଶୋଣିତେ ନାଇଁ ହାହାକାର ନୈରାଶ୍ୟର
ତୁମେ ଥିଲେ ଏ ଜାତିର ଅଛି ଶତ ସିଂହବଳ;
କରେ ତଲବାର ଧରି ଖାଲି ହୋଇଥିଲେ ଠିଆ
ସବୁରି ପରାଣେ ଜଳି ଉଠିବ ସଘନେ ନିଆଁ ।
ବୃଦ୍ଧ ବୀର ସେନାପତି ! ତୁମର ଇସ୍ପାତ ଦେହେ
ଯେତେଯେତେ ଖଣ୍ଡାଘାତ ଗୋଟି ଗୋଟି ହୋଇ ଶୋହେ
ଦେଖ ଏଇ ସୈନ୍ୟଦଳ, ଶତ ସିଂହ ପରାକ୍ରମ
ବୁକୁତଳେ ଖେଳୁ, ତୋଳୁ ମଥା ହିମାଚଳ ସମ ।

ଜାଣିଚକି ସେନାପତି ଜାଣିଚକି କିଏ ତମେ ?
ଏ ଜାତି ନିଶ୍ୱାସ ଧାରା ତୁମେ ହେ ବଞ୍ଚିଚ ଜଣେ !
ଏ ଜାତିର ମେରୁଦଣ୍ଡ ତୁମେ ବୀର ଅରିନ୍ଦମ
ତୁମର ବାହୁରେ ଫୁଟେ ଏ ଜାତିର ପରାକ୍ରମ
ତୁମେ ବୀର ଏ ମାଟିରେ ମାଟି ହୋଇ ମରିପାର
ତୁମର ସମାଧି ତଳୁ ଅମର ବୀର ଝଙ୍କାର—
ଫୁଟୁଥିବ, କାଳ ଦନ୍ତ ହାଣି ଯୁଗ ଯୁଗ ଧରି
ସେ ମାଟି କପାଳେ ବୋଳ ଏ ଜାତି ଜୀବନ ଭରି—
ଏ ଧରଣୀ ଚିହ୍ନ ଛାତେ ବୀର ଦର୍ପେ ଗୃଜିଥିବ
ତୁମର ଏକଇ ପ୍ରାଣ କୋଟି ପ୍ରାଣେ ଖେଳିଯିବ ।
ବୁଝିଚକି ସେନାପତି ! ତୁମର ଏ ଜୀର୍ଣ୍ଣପ୍ରାଣ
ସଂଗ୍ରାମେ ପାରିବ ନାହିଁ ଦେଖାଇ ଗର୍ବର ଠାଣ ?
ଜନତାରେ ପ୍ରତ୍ୟୟ କି ଜନ୍ମେ ପାରୁ ନାହିଁ କରି

ଦେଶର ଦୈନ୍ୟରେ କେବେ ଯିବ କ ଶୋଣିତ ମର ?
ମିଥ୍ୟ ମିଥ୍ୟା ମହାଭ୍ରମ ଗ୍ରସ୍ତ ସେ ଦୁର୍ବଳ ଆଶା
ଧର କରେ ତଲୁଆର ଫୁଟାଅ ଅନଳ ଭାଷା ?
ଜୀର୍ଣ୍ଣ ଅଙ୍ଗେ ତଡ଼ିତର କମ୍ପନ ଉଠିବ ଖେଳ
ଯୁବକର ବଳବୀର୍ଯ୍ୟ ଶିରାରେ ଶିରାରେ ଫେର
ଦେବ ନବ ଉନ୍ମାଦନା, ଉନ୍ମତ୍ତ କେଶରୀ ସମ
ଆସ ବୀର ସେନାପତି ! ତୁମେ ଏ ଜାତିର ବର୍ମ ।

ବାଜଇ ସମର ବାଦ୍ୟ ଅସୀମ ଆକାଶ ଚର
ବାଜ ଉଠୁ ବୁକେ ତବ ଏ ଜାତି ଗୌରବ · ଶିଖା !
ଚାଲ ସେନାପତି ଚାଲ ଚାହିଁଛନ୍ତି ସୈନ୍ୟଦଳ
ଧର ଏ ପତାକା କରେ ଏଇ ରଣ ଅଶ୍ୱେ ଚଢ଼ ।
ଚାଲ ଏଇ ଦୁର୍ଗ ପଥେ ଚାଲ ହେ ଜାତିର ବୀର
ହ୍ରମାଦ୍ରୁ ପରାଏ କର ସମୁନ୍ନତ ନିଜ ଶିର ।
କଟୀ ତଟେ ଖଣ୍ଡା ଝୁଲୁ ପୃଷ୍ଠେ ଶୋଭୁ ଶରମୁଣା
ବୁକୁରେ ଅନଳ ଜଳୁ ତାଳ ନବ ଉନ୍ମାଦନା ।
ଜାତି ପାଇଁ ଗ୍ରତ ଯେତୁ ଅକୁଣ୍ଠିତେ ପାରେ ପାତି
ତାକୁ ଏକା ସମାଦର କରେ ଏ ଧରଣୀ ମାଟି ।
ବୋଲ ଗଜପତି ଜୟ ! ଉତ୍କଳ ଜନନୀ ଜୟ !
ଚାଲ ସେନାପତି ଚାଲ ଦେଇ ଦେଇ ବରାଭୟ ।
ଦାଅ ନାଗ ହୁଲୁହୁଳ, ଚାଲେ ବୃଦ୍ଧ ସେନାପତି
ଜାତିର ପତାକା ତଳେ, ଦେଶ ଜନନୀର କ୍ଷତି
ପାରେନା ପାରେନା ସହି, ଚାଲେ ଦୃପ୍ତ ସିଂହ ପରି
ସବୁର ପରାଣ ତଳେ ବିଜୟର ଆଶା ଭରି—
ଆସଇ ସୋହାଗ ଭରେ । ବଜାଇ ସଂଗ୍ରାମ ଭେରୀ
ଚାଲନ୍ତି ପାଇକ ଦଳ ଖଣ୍ଡା କରେ ଖେଳ ଖେଳି
ଅଶୀତି ବର୍ଷୀୟ ବୃଦ୍ଧ ଚାଲେ ଆଜ ରଣାଙ୍ଗନେ
ଜାତିର କ୍ରନ୍ଦନ ବାଣୀ ସହି ପାରିଲାନି କ୍ଷଣେ ।

— — —

# ସୈନିକର ଅନ୍ତିମ ମାଗୁଣୀ

ବାଜିଲା ଶିଙ୍ଗା ବାଜିଲା ତୁରୀ ବରୁଣୀ ପାହାଡ଼ କହିବ ତୁମେ
ଶତ୍ରୁ ସଇନ ଦେବାକୁ ତଡ଼ି ଆସିଲି ମୁଁ ଏଇ ଯୁଦ୍ଧ ଭୂମେ ।
ସୁଦୂର ସେ କେଉଁ ପଲ୍ଲୀ କଣେ ଅଜଣା ମୋହର କୁଟୀରଟିଏ
ବରୁଣୀ ପାହାଡ଼ କହିବ ତମେ ମୋ ବିନୁ ମୋହର ନ ଥିଲା କିଏ ।
ବିଦେଶେ ଖାଲି ହେ ଯୁଦ୍ଧ କରି ଜନ୍ମ ଭୂଇଁର କୀର୍ତ୍ତି ଲାଗି
ବାପା ମୋର ଯାଇ ଥିଲେଟି ମରି ବୋଉଥିଲା ମୋର କୁଟୀର ଜଗି
ପିଲାଟି ଦିନରୁ ଜନନୀ ମୋରେ ଶିଖାଇଛି ପରା ଝଣ୍ଡାର ଖେଳ
ଶିଖାଇଛି ଶର ମାରିବା ପୁଣି ନିତ ନିତ ହେଲେ ସନ୍ଧ୍ୟାବେଳ !

କେତେଦିନ ଏବେ ହେଲାଣି ପରା, ଏଇତ ଲାଗୁଛି ସପନ ପରି
ଅନ୍ତିମ ଥରେ ମାଟିବେ ଶୋଇ କହିଥିଲା ବୋଉ ଗର୍ବ କରି,
'ଜାତିର ପୁଅରୁ ଦେଶର ପୁଅ ପାଇକ ଜାତିର ରକ୍ତ ପରା
ଶିରାରେ ଶିରାରେ ବହଇ ତୋ'ର ଦେଶପାଇଁ ତୋ'ର ଜୀବନଗଢ଼ା !
ଦେଶପାଇଁ ଯେବେ ଡାକରା ଆସେ ହସି ହସି ଆଗେ ହୋଇବୁ ଠିଆ
ଯୁଦ୍ଧ କରିବୁ କମାଣ ଆଗେ ପଛାଇ ଦେଇ ତୋ ବଜ୍ର ହିୟା ।'
ମରଣ ଶୟନେ କହିଛି ମୋରେ ତାପରେ ବୁଜିଲା ନୟନ ଡୋଳା
ସେ ଦିନୁ ତା'ର ସେ ଅନଳବାଣୀ ବକ୍ଷେ ମୋ ଅଛି ହୋଇଣ ଖୋଳା ।

ବାଜିଲା ଶିଙ୍ଗା ବାଜିଲା ତୁରୀ ବରୁଣୀ ପାହାଡ଼ କହିବ ତମେ
ଯୁଦ୍ଧେ ଆସିଲି ଯୁଦ୍ଧ କରି କେହି ମୋର ନାହିଁ ନିଜର ଜଣେ,
ହସିଆର ହସିଆର ହୋ ! ସେନାପତି ପରା ଡାକିଲା ଦୂରେ
ଚାଲିଆର ଚାଲିଆର ହୋ ! ଗୁଳି ନିଅ ଏ ଯେ ଶତ୍ରୁ ପୁରେ
ଗୁଳି ହାତିଆର ବନ୍ଧା ହୋ ଡେଇଁ ପଡ଼େ ଯେତେ ସୈନ୍ୟ ଏଥି
ଯୁଦ୍ଧକର ମୁଁ ଗୁଳିଲି ହୋ ଡେଇଁ ଡେଇଁ ଗାଇ ଯୁଦ୍ଧ ଗୀତି ;
ବରୁଣୀ ପାହାଡ଼ କହିବ ତମେ ଦୂର ପଲ୍ଲୀର ପାଇକ ପିଲା
ଶର ମୁନ ବାଜି ପଡ଼ୁଛି ଏଥି ସରିବ ଏବେ ତା ଜୀବନ ଲୀଳା ।
ବରୁଣୀ ପାହାଡ଼ କହିବ ତମେ କହିବ ମୋ ଦେଶ ସବୁରି କାନେ
କେସନେ ଉତ୍ତ୍ର ଭୂଇଁରେ ମୋର ଭଲ ପାଉଛି ମୁଁ ଜୀବନଦାନେ ।

ବଣ ପର୍ବତ ପରିଖା ଘେରା
ଜାତିର-ବିଶାଳ ଗର୍ବ ପରି
ଆକାଶ ଚୁମ୍ବୀ ଦେଉଳ ଶିର
ପଲ୍ଲୀ ନଗର ସୋଦର ସଖା
ଓଡ଼୍ର ମାଟିର ପବନ ପାଣି
ସକଳ ମୋହର ପରାଣ ପ୍ରିୟ

ଓଡ଼୍ର ମାଟିର ଦୁର୍ଗମାଳା
ଜାତି ଇତିହାସେ ଜୀବନ ଧାରା !
ଫର ଫର ସର୍ବେ ପତାକା ଉଡ଼େ
ଚନ୍ଦ୍ରମୁଖ ମୁଁ କେସନେ ଭୁଲେ ?
ଆକାଶର ଗ୍ରହ ଚନ୍ଦ୍ର ତାରା
ମୋହର ନାଡ଼ିର ରକ୍ତ ଧାରା !

ବରୁଣୀ ପାହାଡ଼ କନ୍ଦର ତଳେ
ଏଇ ଗଛତଳେ ବୁଜିଲି ଆଖି
ବୁଜିଲି ବୁଜିଲି ନୟନ ପରା
ଶୁଭୁଛି ଯୁଦ୍ଧ ବାଇଦ ମତେ

ଯୁଗ ଯୁଗ ଧରି କନ୍ଦର ପରା
ଗୃହିଁ ମୋ ଜନନୀ ଓଡ଼୍ର ଧରା;
ଏଇ ଏଇ ଶେଷ ବିଦାୟ ଦିଅ
ବରୁଣୀ ପାହାଡ଼ କୋଳକୁ ନିଅ ।

—୦—

# ଲାଲ୍ ମାଟିର ଖୋର୍ଦ୍ଧାଗଡ଼

—୧—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼,
ଏ ବୀର ମାଟିର ଉଷ୍ମ ରକତେ ଯୁଗ ଯୁଗ ଧରି ଉଷ୍ମତର
ଆସ କଳ୍ପନା ସୁଦୂର ଅତୀତୁ ଆସ ହେ ଆସ ।
କାନେ କାନେ ମୋର କହିଦିଅ ତାର ଗଉରବଭରା ସେ ଇତିହାସ,
ଦେଖାଇ ଦିଅହେ କଳ୍ପନାରାଣି ! ଏ ଗଡ଼ବୁରୁଜରେ ଶୁଭିଲା ଯେ ବାଣୀ
ବାଜିଲା ଯେ ଦିନ ସମର ବାଦ୍ୟ,
ବୋହିଲା ଯେ ଦିନ ଶୋଣିତ ଆଦ୍ୟ,
କହିଲା ଏ ଜାତି ସ୍ୱାଧୀନତା ପାଇଁ ଯୁଦ୍ଧ କରିଛି ଖିପ୍ରତର,
ଏଇ ଯେ ଦିଶୁଛି ଲାଲ ମାଟିର ଖୋର୍ଦ୍ଧା ଗଡ଼ ।

—୨—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ବରୁଣୀ ପାହାଡ଼ ତଳେ ତଳେ ତଳେ ରହିଛି କେବଳ ପଡ଼ିଆବଡ଼ ।
ଆସ କଳ୍ପନା ସୁଦୂର ଅତୀତରୁ ଆସ ହେ ଆସ,
ଜାତି ନିଶ୍ୱାସ ବହୁଥିଲା ଏଥି ବୀରଗଉରବେ ବରଷ ମାସ ।
ସେଦିନ ଏଜାତି ଥିଲା କେଉଁଭଳି ଗ୍ରୀବାରେ ବିରାଟ ଆକାଙ୍‌କ୍ଷା ଭରି,
ବିଜୟ ତୂର୍ଯ୍ୟ ବଜାଇ ବଜାଇ,
ସ୍ୱାଧୀନ ସପନେ ଜୀବନ ମଜାଇ ।
ସିଂହ ପରାଣ ବୀରବକ୍ଷମେ ଦିଶୁଥିଲା କିବା ଉର୍ଜସ୍ୱଳ ।
ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

—୩—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼,
ପାଇକ ଜାତିର ହୃତ୍‌ପିଣ୍ଡକି ସ୍ପନ୍ଦିତ ହୁଏ ଥରକୁ ଥର ?
ମନେ ପଡ଼େ ଯେବେ ବାଜିଲା ଶିଙ୍ଗା ବାଜିଲା ତୁରୀ,
ଲକ୍ଷ ଲକ୍ଷ ତରୁଣ ପାଇକ ଧଇଲେ ଖଣ୍ଡା ଧଇଲେ ଛୁରୀ ।
ସିଂହ ପରାଏ ଗରଜି ଗରଜି ଜୀବନ ସକଳ ମମତା ବରଜି ।
ସ୍ପର୍ଦ୍ଧା ପାଇକ ଖୋର୍ଦ୍ଧା ଭୂଇଁର
ବଳି ଦେଇ ନିଜ ଉନ୍ନତ ଶିର
ଜାତିର କୀର୍ତ୍ତି ବୁକୁର ରକ୍ତେ ରଖିଦେଇ ଗଲେ ଅନଶ୍ୱର !
ଏଇ ଯେ ଦିଶୁଛି ଲାଲ୍‌ମାଟିର ଖୋର୍ଦ୍ଧାଗଡ଼

—୪—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼,
ଏ ମାଟି ଉପରେ ଜୟୀରାଜଗୁରୁ ଫାଶୀ ପାଇଅଛି କରୁଣତର,
ଗଜପତି ରାଜା ମନ୍ତ୍ରୀ ସେଇରେ ମନ୍ତ୍ରୀ ସେଇ,
ଯୁଗ ଯୁଗ ପାଇଁ ଅମର ହୋଇଚି ଜାତି ପାଇଁ ଛାତି ପତାଇ ଦେଇ
ଏଇ ବରୁଣେଇ ଶିଳା ଗଡ଼ ତଳେ ଦର୍ପେ କହିଲା ଗଉରବ ଭରେ
'ମରିବି ମୁଁ ଚଢ଼ି ଫାସୀ ଖମ୍ବରେ
ଶୋଣିତେ ମୋ' ଅଛି ସେଇ ଦମ୍ଭରେ
ଯୁଦ୍ଧ ମୁଁ ଗୃହେଁ ସନ୍ଧି ଗୃହେନା ଘୃଣିତ ଶତ୍ରୁ ଚରଣ ତଳ'
ଏଇ ଯେ ଦିଶୁଛି ଲାଲ୍‌ମାଟିର ଖୋର୍ଦ୍ଧାଗଡ଼ ।

—୫—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।
ବୀର ବକ୍ସିର ଅସିଝଙ୍କାର ଦେଲା ଏ ଜାତିରେ ନବୀନ ବଳ ।
ଲକ୍ଷ ଲକ୍ଷ ପାଇକ ଟହାକାରେ ପାଇକ ଚୋକା
ନାଗଫୋଡ଼ଦେଇ ବୀରହୁଙ୍କାରେ ତଲବାର କରେ ଦେଲେ ରେ ଦେଖା
ଗରମ ରକ୍ତ ଶିରେ ଶିରେ ନାଚ ଉଠିଲା କି ଅମର ଲୀଳାରେ
ଶାଣିତ ଶାୟକ ବାଜେ ଘନ ଘନ
କମ୍ପି ଉଠିଲା ଏ ଗଡ଼ କାନନ
ବରୁଣୀ ପାହାଡ଼ ସ୍ତମ୍ଭିତ ହେଲା, ସ୍ତମ୍ଭିତ ହେଲେ ବଇରୀଦଳ !!
ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

—୬—

ଏଇ ଯେ ଦିଶୁଛି ଲାଲମାଟିର ଖୋର୍ଦ୍ଧାଗଡ଼
ଯେ ଦିନ ବାଜିଲା ଗୁଳି ବନ୍ଧୁକ ବୁକୁପରେ ତାର ଭୀଷଣତର
ଗଡ଼ର ପାଚେରି ଛିଣ୍ଡି ପଡ଼ିଲା ଧରଣୀ ତଳେ
ଦୁର୍ଗଶିଖରୁ ପତାକା ଖସିଲା ବଇରୀ ଗୋଳାର ଚମକ ବଳେ
ଗୃଜିଲେ ସୈନ୍ୟ ଆହୁରି ସୈନ୍ୟ କି ଅବା ଦୃପ୍ତ କେଶରୀ ବନ୍ୟ
ବର୍ଚ୍ଛାରେ କରି ବଇରୀ ଚର୍ଚ୍ଚା
ଦେଖାଇ ଦେଲେରେ ପାଇକବଚ୍ଚା
ଜନମ ମାଟିର ଅପମାନ ଆଗେ ଜୀବନ ଆମର ନୁହେଁରେ ବଡ଼ !
ଏଇ ଯେ ଦିଶୁଛି ଲାଲମାଟିର ଖୋର୍ଦ୍ଧାଗଡ଼ ।

—୭—

ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ବୀର ବକ୍ସିର ସମରସଜ୍ଜା ଦେଖିଥିବ କେଡ଼େ ଭୀଷଣତର !
ଟମ୍ ଟମ୍ ଟମ୍ ଟମକ ବାଜିଲା ପାହାଡ଼ ତଳେ
ଦଳ ଦଳ ଦଳ ସୈନ୍ୟ ସକଳ ଠିଆହେଲେ ଧନୁବର୍ଚ୍ଛା କରେ,
ବକ୍ସି କହିଲେ ବହ୍ନି ଜଳାଇ ଉଠିବାରେ ଆମେ ଦେଶ ଜାତିପାଇଁ
ପରପଦାନତ ଖୋର୍ଦ୍ଧାମାଟିର
ଆମେରେ ପାଇକ କାଟି ନିଜ ଶିର
ଏ ବୀରମାଟିର ମୁକ୍ତିକେତନ ଉଡ଼ାଇବା ଆମେ ପାଇକ ଦଳ;
ଏଇ ଯେ ଦିଶୁଛି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

— ୮ —

ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ବୀର ବୀର୍ଯ୍ୟର ବିରାଟ ସାଧନା ଦେଖିଅଛି ଯହିଁ ବହୁତ ଥର,
ସେ ଦିନ ଯାଇଛି ଅଶାନ୍ତ ଗରବେ ମାରବେ ମିଶି
ଦେଖିଚି ଏ ବନ କାନନ ପାହାଡ଼ ଆକାଶ ପବନ ଦିବସ ନିଶି
ଦୁର୍ଗ ପଡ଼ିଚି ଭୂଇଁରେ ଟଳି, ସେ ବୀରଦର୍ପ ଯାଇଛି ଜଳି,
ବରୁଣେଇ ଖାଲି ଟେକିଛି ମଥା ।
ଅଶାନ୍ତ କାହାଣୀ ଗରବ କଥା
କାନେ କାନେ ଆଜ ସାରା ଓଡ଼ିଶାର କହିଯାଏ କିବା ଲକ୍ଷଥର
ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

— ୯ —

ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ମାନହାନ ହୋଇ ଗଜପତି ରାଜା ଗଲେ ସେ କେଉଁ ବନ୍ଦୀଘର ।
ନ ଶୁଭିଲା ଆଉ କନକ କାହାଳୀ ସେ ଗଡ଼ ପୁରେ
ନ ପଡ଼ିଲା ଆଉ ରୂପାର ଆଳଟ, ନ ଜଳିଲା ଯୋଡ଼ା ମଶାଲ ବାରେ
ନ ଫୁଟିଲା ବାଣ ଦୁର୍ଗ ଦୁଆରେ ଆଉ ରାଜନ ସାତ୍ତ୍ୱିପଟ୍ଟଆରେ
ଗଲେ ଏଥି ଏ ଗଡ଼ ଦୁଆର
ହଳ ପଦା ହେଲା କାଳ କାଳ କାଳ
କୃଷକ ବାପୁଡ଼ା ହଳକରି ଗଲେ କହେ “ଏଥି ଥିଲା ନଅର ବଡ଼ ।”
ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

— ୧୦ —

ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ହଜାର ହଜାର ବରଷ ପରେ ବି ଜାତିର ଏ ଥିବ ତୀର୍ଥସ୍ଥଳ !
ଶତ ଶହୀଦର ପୁଣ୍ୟ ଶୋଣିତ ବୋଳା ଏ ମାଟି
ଶତ ସର୍ଦ୍ଦାର ବୀର ଖୋର୍ଦ୍ଧାର ଏଇଠି ଦେଇଚି ବକ୍ଷ କାଟି
ପାଇକ କିଶୋରୀ ନବ ଯଉବନା ସଂଗ୍ରାମେ ଏଥି ସାଜିଛି ସଇନ
ପ୍ରିୟରେ କହିଚି ଭଲ ରଣେ ଭଲ
ନିଅ ଏ ଖଣ୍ଡା, ନିଅ ଏଇ ଢାଲ
ଯୁଗ ଯୁଗ ଧରି ଏ ମାଟି ଆମର ନିଶାଣ ତୋଳିଛି ଶୁଦ୍ଧତର !
ଏଇ ଯେ ଦିଶୁଚି ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

୧୧

ଏଇ ଯେ ଦଣ୍ଟା ଲାଲ୍ ମାଟିର ଖୋର୍ଦ୍ଧାଗଡ଼
ବରୁଣୀ ପାହାଡ଼ ତଳେ ଗୁଲ ଗୁଲ ଯାଆନା ଯାଜ୍ଞୀ କୁଟୀରେ ତୋର
ଗୁହାଁ ଗୁହାଁ ଥରେ ନୟନ ମେଲାଇ ଗୁହାଁରେ ଗୁହାଁ
ଏଇ ମାଟି ଗୋଡ଼ ଏଇ ବଣ ବୁଦା ଭଗ୍ନ ଏ ବଡ଼ ଦେଉଳ ଗାଆଁ
ରକ୍ତ କ ତୋର ଉଠୁନାହିଁ ତାତି ଫୁଲ ଉଠୁନି କ ଗଉରବେ ଗୁଞ୍ଜ ?
ଉଠେନି କାନ୍ଦ ଅନ୍ତର ତୋର
ଦେଖି ଶ୍ମଶାନ ବୀର ଅଞ୍ଚଳର ?
ଜାଣିଛି ଏ ଭୂଇଁ ଗର୍ଭରେ କ କ୍ଷୁଇଁ ଯାଉନି ତୋହର ମରମ ତଳ ?
ଏଇ ଯେ ଦଣ୍ଟା ଲାଲ୍ ମାଟିର ଖୋର୍ଦ୍ଧାଗଡ଼ ।

— — —

## ପାଇକ-ଟୋକା

ଦମ ଦମ ଗୁଲେ ପାଇକ-ଟୋକା ଦୂରେ ବୀରବାଜା ବାଜଇରେ
ସିନ୍ଦୂର ଶିଖ କପାଳେ ତା'ର ବାଘଚମ ଦେହେ ସାଜଇରେ ।
ଦମ ଦମ ଗୁଲେ ପାଇକ-ଟୋକା କଟୀରେ ଖଣ୍ଡା ଝୁଲଇରେ
ସିଂହ କେଶର ପରି ତା' ଜଣ ବେଢୁ ବେଳ ପରି ଫୁଲଇରେ ।
ଦମ୍ ଦମ୍ ଗୁଲେ ପାଇକ-ଟୋକା ଜମ୍ ଜମ୍ ଆଖି ଦିଶଇରେ
ହୁଳହୁଳି ଦିଏ ପାଇକ ଝିଅ ରଣ ସଙ୍ଗୀତେ ମିଶଇରେ ।

ଯୁଦ୍ଧ କରୁଚି ପାଇକ-ଟୋକା, ଜାତିର ପତାକା ଉଡ଼ଇରେ
ମଶା ପରି ସବୁ ଶତ୍ରୁ ସଇନି ଦୂରକୁ ଦୂରକୁ ତଡ଼ଇରେ ।
ଯୁଦ୍ଧ କରୁଚି ପାଇକ ଟୋକା ଶିରେ ଶୋହେ ସୁନ-ପଗଡ଼ିରେ
ଶତ୍ରୁ ପରାଣେ ଖାଁଷଣ ଖାତି ଶୁଣି ତା କଣ୍ଠ ରଗଡ଼ିରେ ।
ପେଁ ପେଁ ବୀର କାହାଳି ବାଜେ 'ଜୟ ଗଜପତି' ଶୁଭଇରେ
ନାଚଇ ପାଇକ ଦ୍ୱିଗୁଣ ଟାଣେ ସମର ପଡ଼ିଆ ଦବଇରେ !

ମନ୍ଦାର ମାଳା କଣ୍ଠେ ତା'ର ମାଆ ବରୁଣୀର ଭଜଇରେ
ଶୋଣିତେ ଶୋଣିତେ ଜନ୍ମଭୂମି—କାନ୍ତି କଲାପ ବାଜଇରେ
ଦୂରେ ବୀର ବାଜା ଗମ୍ଭୀରେ ବାଜେ ଝାଟେ ନାଚଯାଏ ପାଇକରେ
ଶାଣିତ ଖଡ୍‌ଗ ଦ୍ୱ' ହାତେ ଘୂରେ ନ ମାନି ଶତ୍ରୁ ସାୟକରେ ।
ଶତ୍ରୁର ଅସି ବାହୁରେ ବାଜି ବାହୁ ତା' ଭୂଇଁରେ ଲୋଟଇରେ
ଆସମାନ ପର ଅନଳ କଣା ତା' ଆଖି ଦୁଇରୁ ଫୁଟଇରେ ।

ଯୁଦ୍ଧ କରୁଚି ପାଇକ-ଟୋକା ଦୁର୍ଗ ପାହାଡ଼ ଗୁହଁଇରେ
ଖାତିର ନାଇଁରେ ଶୋଚନା ନାଇଁ ବାହୁର୍ ରକ୍ତ ବୁହଇରେ ।
ଯୁଦ୍ଧ କରୁଚି ପାଇକ-ଟୋକା ସ୍ତବ୍ଧ ଆକାଶ ଧରଣୀରେ
ଦୂରେ ବୀର ବାଜା ଗମ୍ଭୀର ବାଜେ ଦେଖି ଆଖି ବୁଜା କରଣୀରେ ।
ଯୁଦ୍ଧ କରୁଚି ପାଇକ-ଟୋକା ଜାତିର ମୁକ୍ତି ପାଇଁ କରେ
ନିଅନା ନିଅନା ଶିବରେ ତା'ର ବୁକେ ତା' ଦମ୍ଭ ନାଇଁକିରେ ?

ଯୁଦ୍ଧ କରୁଚି ପାଇକ-ଟୋକା ଶିବିରେ ସେ ଫେରି ଯାଉନିରେ
ଥର ଥର କରି ଡାକରା ଆସେ କେତେ ଲହୁ ଦେହୁ ବୋହୁନିରେ !
ଅତ୍ୟାଚାରୀର ଅତ୍ୟାଚାରେ ଦେଶର ଜୀବନ ସରିବରେ
ସମର ଭୂଇଁରୁ କେମନେ କହ ବୁକେ ଲହୁ ଥାଇ ଫେରିବରେ ।
ରାଇଜ ରକ୍ତ ଶୋଷିବା ପାଇଁ ଆସିଛି ଶତ୍ରୁ ସଇନରେ
କେମନେ ଯିବ ସେ କୁଆଡ଼େ ଯିବ ଦେଶରେ ଖେଳାଇ ଦଇନରେ ।

ଯୁଦ୍ଧ କରୁଚି ପାଇକ-ଟୋକା ଘଣ୍ଟି ଧାଗୁଡ଼ ବଜାଇରେ
ଦୂରେ ବୀର ବାଜା ଗମ୍ଭୀରେ ବାଜେ ସମର ପଡ଼ିଆ ତେଜାଇରେ.
ଜାନୁରେ ବାଜିଲା ଶତ୍ରୁ ଅସି ଯୁଅପରି ବନି ବହିଲାରେ ।
ପରୁଆ ନାଇଁରେ ଖାତିର ନାଇଁ ତା' ବୀର ବକ୍ଷ କମ୍ପିଲାରେ ।
ଦପ୍ ଦପ୍ ନିଆଁ ନୟନେ ତ ର' ଖପ୍ ଖପ୍ ଡେଇଁ ଯୁଝଇରେ
ଜନ୍ମଭୂଇଁର ଚରଣ-ପଦ୍ମ ଆପଣା ରକ୍ତେ ପୂଜଇରେ !

ଯୁଦ୍ଧ କରୁଚି ପାଇକ-ଟୋକା ବଇରୀ ବକ୍ଷ ଥରାଇରେ
ଜନ୍ମଭୂଇଁର ମୁକ୍ତି ଲାଗି ଜୀବନକୁ ପାଣି ଛଡ଼ାଇରେ ।
ବକ୍ଷେ ବାଜିଲା ଶତ୍ରୁ ଅସି ଖଣ୍ଡା ଘୂରନା ସରିନିରେ
ଭୂଇଁରେ ନିମିଷେ ପଡ଼ିଲା ଟଳି ଆତୁରେ ପରାଣ ଥରିନିରେ ।

ଶିବରୁ ଆସିଲା ଡାକରା କେତେ ପଛକୁ ସେ ଫେରେ ଗୃହିଁନିରେ
ରକତ-ସିନାନେ ବୁଡ଼ତ ବଧୂ ଓଠ ଫେଇ କାରେ କହନିରେ ।

ଯୁଦ୍ଧ ଭୂଇଁରେ ନପୂନ ବୃନ୍ଦ କାଳ କାଳ ପାଇଁ ଶୋଇଛରେ
କଟୀରେ ଘଣ୍ଟି ପଗଡ଼ ଶିରେ କରେ କରବାଳ ରହିଛରେ ।
ଚପକୃଟର ପାହାଡ଼ ତଳେ 'ମନ୍ଦାକମା'ଟି ବହଇରେ
ରଜତ-ଉର୍ମି ଗରବେ ଛୋଳ ଲଟାବୁଦା କାନନ କହଇରେ—
"ଶିବରୁ ଆସିଲା ଡାକରା କେତେ ପଛକୁ ସେ ଫେର ଗୃହିଁନରେ
ରକତ ସିନାନେ ବୁଡ଼ିଚ ବଧୂ ଓଠଫେଇ ବାରେ କହନିରେ ।"

———

# ପାଇକ-ବଧୂର ଉଦ୍‌ବୋଧନ

ଏଇ ଦୁର୍ଗ ଏଇ ବନ ଏ ଶାଳ ପ୍ରାନ୍ତର
ପଡ଼ିଅଛୁ ଶମଶାନ ପରି,
ନାଇଁ ସେ ପାଇକ ବାଦ୍ୟ-ରଣ-ଶିଙ୍ଗା
ନାହାନ୍ତ ସେ ଯୋଦ୍ଧୃବେଶ ଧରି—
ଖଣ୍ଡାସ୍ତୃତ ବୀର
ଫୁଟେ ନାଇ ତୋପ ଓ ବନ୍ଧୁକ
ଛୁଟେ ନାଇଁ ଲକ୍ଷ ଲକ୍ଷ ଶର,
ଟପ୍ ଟପ୍ ଗୃଲେ ନାଇଁ ଘୋଡ଼ା
ସମୀରଣ ବୋହିଯାଏ ମରନେ ଗୁଞ୍ଜର
ବୁଲନ୍ତ ଶ୍ୱାପଦକୁଳ ହୋଇ ଯୋଡ଼ା ଯୋଡ଼ା ।
ଏଇ ବୀର ମାଟି !
ଗୃହିଁଲେ ନିମେଷେ ଯାରେ
ରକ୍ତ ଯାଏ ଫାଟି,—
ଲେଖିଅଛି ପଢ଼
ଅଶାତର ଲକ୍ଷବୀର ଗାଥା
ବୁକୁତଳେ ଧରି !

କହ କଥା ହେ ବନ ପ୍ରାନ୍ତର !
କହ କଥା ସମର ପ୍ରାଙ୍ଗଣ !
କହ କଥା ଭଗ୍ନ ଦୁର୍ଗଶିଳା
କହ କଥା ଶଇଳ କାନନ !
କେମନ୍ତେ ସେ ଖଣ୍ଡାଯୁତ ବଧୂ
ରଣ ଶିଙ୍ଗା ବଜାଇ ବଜାଇ
ବୀରବେଶେ ସମର ପ୍ରାଙ୍ଗଣେ
ଆଣିଲା ତା ସ୍ୱାମୀରେ ସଜାଇ,
କରେ ଦେଲା ତୀକ୍ଷ୍ଣ ତଲବାର
ଭାଲେ ଦେଲା ବିଜୟ ସିନ୍ଦୂର
ଶରମୁଣା ବାନ୍ଧିଲା ତରମେ
ଆଉ କରେ ଦୀପ୍ତ ଧନୁଶର,
କେମନ୍ତେ ସେ ବୀର୍ଯ୍ୟବତୀ ବାଳା
କଣ୍ଠରୁ ଦେଲା ହୁଳହୁଳି
ବନ୍ଦାଇଲା ସ୍ୱାମୀରେ ସୋହାଗେ
ଯାଅ ଦର୍ପେ ଯୁଦ୍ଧ କର ବୋଲି,
ମନ୍ଦାରର ମାଳା ବକ୍ଷପଟେ
ଲମ୍ବାଇଲା ଆଦର ଯତନେ
ଗାଇଲା ସେ ସମର ସଙ୍ଗୀତ
ମେଘମନ୍ଦ୍ରେ କୁଟୀର ପ୍ରାଙ୍ଗଣେ

ଯିବାପାଇଁ ହବ ରଣ ପ୍ରାଙ୍ଗଣେ ଯିବାପାଇଁ ହବ ବୀର
ମାରିବାକୁ ହେବ ଲକ୍ଷ ସଇନ ଫୋପାଡ଼ ଲକ୍ଷ ତୀର ।
ତରୁଣୀ ବକ୍ଷଲାଗି ପ୍ରିୟତମ ଜନ୍ମ ନୁହଇ ତବ
ଜନ୍ମଭୂଇଁର ମଙ୍ଗଳ ଲାଗି ଜୀବନ ଦେବାକୁ ହବ ।
ଶତେକ ସୈନ୍ୟ ସାଥେ ରଣ କରି ବିଜୟ-ଲକ୍ଷ୍ମୀ ବରି,
ଆସିବ ଯେ ଦିନ କୋଟି ଗଉରବେ ନେବି ମୁଁ ଆଦର କରି ।
ଆଗେ ବାଜୁଥିବ ସଂଗ୍ରାମ ବାଜା ପଛେ ଆସୁଥିବ ତମେ
ବିଜୟ କେତନ ହାତେ ଧରିଥିବ ଦେଖିବି ନୟନ କଣେ ।
ବନ୍ଦାଇ ନେବି କୁଟୀରେ ସୋହାଗେ ପଦ ବନ୍ଦନା କରି
ଚାଲ ପ୍ରିୟତମ ସମର କ୍ଷେତ୍ରେ ବକ୍ଷେ ଅନଳ ଭରି ।

* * * * *

କାହିଁ ତାର ସେହ୍ବ ବାଣୀ ?
କାହିଁ ତାର ଅଗ୍ନିବୋଲା ଦୃପ୍ତ ଉଦ୍‌ବୋଧନା !
କାହିଁ ସେଇ ଖଣ୍ଡାଯୂତ ବଧୂ ?
ଏ ଭଗ୍ନପ୍ରାଚୀର ପ୍ରତ୍ତଧୂଳ ମାଟି ଗୋଡ଼
—ମେଳେ ଯେଉ୍ଣେ ରହ୍ବଥିବ ସେଇ ଅଗ୍ନିବାଣୀ !
ଏ ବନ ପ୍ରାନ୍ତର ପଥେ ସମୀରଣ ଗୁଞ୍ଜରଣେ
ସେଇ ବାଣୀ ଥିବନ କ ? ମିଶି ହବା ଯାମୀ ?
ଏଇ ପଥ ତରୁ ତୃଣ ଶୁଣିଥିବ ହାକ ?
ସେ ବାଣୀର ଅଗ୍ନି ଉତ୍ତେଜନା ;
କେମନ୍ତେ ସେ ବୀରବାଳା ଦେଶଲାଗି ତାର
ସ୍ୱାମୀରେ ତା ଦେଇଥିଲା
ସିଂହ ଉଦ୍‌ବୋଧନା ?
ମରନ ମରନ ଭୂମେ ଏ ମାଟିର ପ୍ରତ୍ତରେଣୁ ତଳେ
ଭୂମର ସେ ଅଗ୍ନିଶଙ୍ଖ ବାଜେ ଅବିରଳେ,
ଭୂମର ସେ ପ୍ରସାରିତ ବିରାଟ ଅନ୍ତର,
ଏଇ ଝାଙ୍ଗି ଲଟାବୁଦା ଦୁର୍ଗଶିଳା ମେଳେ
ଲ୍ଲାୟିତ ଯୁଗ ଯୁଗାନ୍ତର !

ଆସ ପାନ୍ଥ !
ଆସ ଏଥି ଆସ
ଆସ ପୌର ! ଆସ ଜାନପଦ !
ବସ ଏଇ ଶିଳା-ଆସ୍ତରଣେ
ଗୃହଁ ବକ୍ଷଭରି !
ବିରାଟ ଅନ୍ତର କା'ର ଏ ଭୂମିର ପ୍ରତ୍ତରେଣୁ ତଳୁ
ଅଗ୍ନିବାଣ ସମ
କହ୍ବଯାଏ ବିରାଟ ବାରତା ବିଶ୍ୱ ଅନୁପମ ;
କର ନମସ୍କାର !
ଶୋଣିତେ ଶୋଣିତେ ତବ ଖେଳ ଉଠୁ ଜାତିର ଝଙ୍କାର
ଏ ବିଜନ ଭଗ୍ନଦୁର୍ଗ, ଏ ବନ-ପ୍ରାନ୍ତର,
ଯୁଗ ଯୁଗ ସଜୀବ ସୁନ୍ଦର ! ! !

———

# ଛାଡ଼ ଫୁଲଯାଏ

କି ଲାଗି ତରୁଣି ! ଏତେ ସ୍ୱପ୍ନମାନେ କାନ୍ଦୁଚ ଜୀବନ ସାରା,
ଯଉବନ ତନୁ କ୍ଷୀଣ ଦିଶିଯାଏ ବହଇ ଅଶ୍ରୁ ଧାରା ।
ଏ ତରୁଣୀ କାଳେ କି ଅବା ଯାତନା ବକ୍ଷେ ରହିଛି ଭରି ?
ଫୁଟଇ ଯୂଥିକା, ଛୁଟଇ ମଳୟ, ଜୋଛନା ଯେ ଅଛି ପଡ଼ି,
ହସି ଖେଳି ଗଲି ଅମର ସୋହାଗେ ସଜ ସୁମନଟି ପରି
ଏ ମଳିନ ବେଶ କାହାର ବିରହେ କାହା ହାତ ଅଛି ଧରି?

କି ଲାଗି ତରୁଣି ଏତେ ସ୍ୱପ୍ନମାନେ ରହିଚ ଜୀବନ ସାରା ?
ବୁକୁତଳେ କିବା ଗୁମରି ଉଠଇ ଗୋପନ ବେଦନ ଭାରା !
ରକ୍ତିମ ଫୁଲ ମାଳ ବେଣୀପରେ ଖୋସି ଗଲି ନାହିଁ ପଥେ,
ମାଣିକ୍ୟ ଓଠେ ଫୁଟେ ନାହିଁ ହସ କାହିଁତେ ଅବିରତେ ।
କାହାରେ କରିଚ ପ୍ରାଣ ପ୍ରିୟତମ ବକ୍ଷ-ସେନେହ ଢାଳି,
କି ଲାଗି କିଶୋରି ! ଫୁଟିଉଠେ ତୁମ କନକ କପାଳେ କାଳି ?

"ପ୍ରିୟତମ ମୋର ଏ ବୀର ମାଟିର ବୀର ସନ୍ତାନ ଜଣେ
ସମର ଭୂଇଁରେ ସଂଗ୍ରାମ କରି ଯାଇଚି ଉଦାର ମନେ,
ପ୍ରିୟତମ ମୋର ମହା ବିଳୟୀର ଯୁବା ଗଜା ବୟସିଆ
କପାଳେ ଖେଳଇ କନକ ଦୀପ୍ତି ନୟନେ ଭୀଷଣ ନିଆଁ
ପ୍ରିୟତମ ମୋର ଏ ବୀର ମାଟିର ବୀର ସନ୍ତାନ ଜଣେ
ସମ୍ମୁଖ-ରଣେ ଯୁଦ୍ଧ କରିବା ଗୁରୁ ଗଉରବ ମଣେ !

ପ୍ରିୟତମ ମୋର ନିର୍ଭୀକ ବୀର କାହାରେ ସେ ନାହିଁ ମାନେ,
ସଂଗ୍ରାମ ଭେରୀ ଶୁଣି ତା'ବକ୍ଷେ ରକ୍ତ ନାଚଇ ଟାଣେ ।
ସମର ଭୂଇଁରେ ନାଚି ଯାଉଥିବ ଶତ୍ରୁ ସଇନ ଚୂରି;
ଉନ୍ମାଦନାର ବିପୁଳ ବହ୍ନି ବୁକେ ଉଠୁଥିବ ପୂରି ;
ପ୍ରିୟତମ ମୋର ଦେଶ ଓ ଜାତିର ଗଉରବମୟ ପ୍ରାଣ
ଦେଶ ପାଇଁ ଯେତେ ଶିରୀ ବଇଭବ ଅକାତରେ କରେ ଦାନ !

ପ୍ରିୟତମ ମୋର ବିଦାୟ ନିମେଷେ ହସି ହସି ଗଲା କହି
କେ'କହିବ ଏଇ ଦେଖା ଶେଷଦେଖା ନ ହେବ ପରାଣ ସହି ?
କପାଳେ କନକ ଅଙ୍ଗୁଳି ଗୁଳି କହିଗଲା ପ୍ରିୟତମ,
ଜନମ ଭୂଇଁର ବେଦନା କିଭଳି ସହିବ ପରାଣ ମମ ?

ଏଇ ତଲ୍‌ଆରେ କାଟିବ ବଇରୀ କଟି ଯାଉ ପଛେ ମଥା
ରକ୍ତ କି ଭଳି ସହିବ ନ ଦେଖି ଦେଶଜନନୀର ବ୍ୟଥା ।

ଚାଲିଲା ଚାଲିଲା ପ୍ରିୟତମ ମୋର, ଚାହିଁଛି ଚାହିଁଛି ମୁହିଁ
ବିଦ୍ୟୁତସମ କି ମହା ଚମକ ଗଲା ତା' ଶରୀରେ ଛୁଇଁ ।
'ବମ୍ ଶଙ୍କର' ଗର୍ଜନ ପରେ ବାଜିଲା ସମର ଭେରୀ,
ତରୁଣ ପାଇକ ରଣ ପ୍ରାଙ୍ଗଣେ ଗୋଟି ଗୋଟି ଗଲେ ଖେଳି
ଗାଇଲା ଗାଇଲା ପ୍ରିୟତମ ମୋର ସଂଗ୍ରାମ ବେଶ ସାଜି
'ଦେଶ ଜନନୀର ସ୍ୱର୍ଣ୍ଣମୁକୁଟ ଅକ୍ଷୁର୍ଣ୍ଣ ରଖ ଆଜି ।'

ପ୍ରିୟତମ ମୋର ଗାଇଲା ସେ'ଦିନ ରକ୍ତ ପତାକା କରେ
ଉତ୍କଳ ମାଟି ପାଇକ ତରୁଣ ପୃଥିବୀକୁ ନାହିଁ ଡରେ,
ଏ ପଥର ଗଡ଼ ଭାଙ୍ଗି ପଡ଼ିବ ବଇରୀର ଗୁଳା ବାଜି
ଏ ବୀର ରକ୍ତ ବକ୍ଷେ ବହିତ ଉଠ ଗଉରବେ ସାଜି,
ବକ୍ଷ ରକତେ ରଞ୍ଜିତ କର ଜାତି ଇତିହାସ ତବ
ଜାତିର ଜୀବନେ ଦିଶିବ ତୁମେ ରେ ସୁନ୍ଦର ଅଭିନବ ।"

ପ୍ରିୟତମ ମୋର ଗରଜି କହିଲା, ବାଜିଲା ଯୁଦ୍ଧ ବାଜା
"ଉଠରେ ଉଠରେ ପାଇକ ସୈନ୍ୟ ଉଡାଅ ରକ୍ତ ଧ୍ୱଜା,
ଉଠ ଚମ୍ପୂପତି, ଉଠ ରଣସିଂହ ନକର ନକର ଡେରି
ଦୁର୍ଗ ଦୁଆର ପଥର କବାଟ ପଡ଼ିବ ନିମିଷେ ଛିଡ଼ି
ଦେଶ ଯେ ଆମର ଜୀବନ ଗର୍ବ ସବୁ ସମ୍ପଦ ଶିରୀ
ଟୋପା ଟୋପା କରି ରକ୍ତ ଦେବାରେ ଆପଣା ବକ୍ଷ ଚିରି ।"

କମ୍ପି ଉଠିଲା ବରୁଣୀ ପାହାଡ଼ ନାଚିଲା ଖୋର୍ଦ୍ଧା ଗଡ଼
ଅସୀଝଙ୍କାରେ ବୀର ହୁଙ୍କାରେ ବଇରୀ ଭଜିଲା ଜଡ଼ ।
ବଂ ବଂ ବଂ ଧବଳେଶ୍ୱର ! ସାହାହୁଅ ବରୁଣେଈ
ପାଇକର ମେଳେ ଶତ୍ରୁ ସଇନ୍ୟ ପଶି ପାରିଲେନି କେହି,
ଫିଁ ଫିଁ ଚାଲେ ଶାଣିତ ଶାୟକ ଦମ୍ ଦମ୍ ପଡ଼େ ଗୋଳା
କଂପି ଉଠିଲା ବରୁଣୀ ପାହାଡ଼ ଛିଡ଼ିଲା ବଇରୀ ମଡ଼ା ।

ଯୁଦ୍ଧ ଲାଗିଲା ଯୁଦ୍ଧ ଲାଗିଲା ପୃଥିବୀ ଉଠିଲା ଥରି
ହଜାର ହଜାର ପାଇକ ସୈନ୍ୟ ସମରେ ପଡ଼ିଲେ ଢଳି ।
କିଏ ସେ ବୃଦ୍ଧ, କିଏ ସେ ତରୁଣ ଗଜୁରି ଉଠଇ ନାଶ
ଖଣ୍ଡା, ପରଶୁ, ଧନୁ, ଧନୁଶରେ ଝଲମଲ ଦଶଦିଶ ।

କପାଳେ କାହାର ସିନ୍ଦୂର ଶିଖା ଦାଉ ଦାଉ ଦାଉ ଜଳେ ।
ପ୍ରିୟତମ ମୋର ତାହାର ଭିତରେ ଅଗ୍ନି ମୂରତି କି ସେ ?

ଯୁଦ୍ଧ ଲଗିଲା ଯୁଦ୍ଧ ଲଗିଲା ଦଶଦିନ ଦଶରାତି
ପ୍ରିୟତମ ମୋର ଜୀବନ ନମେଷେ ଇସ୍ପାତ୍ ପରି ଛାତି !
ଯୁଦ୍ଧ ଭୂଇଁର ଏ ପାଖୁ ସେ ପାଖ ଯାଇଛି ଗରବେ ଘୁରି
ଦେଶ ଯେ ଆମର ଜୀବନ ଗବ ଯାଅନା ଯାଅନା ଭୁଲି,
ଯୁଦ୍ଧ ଲଗିଛି, ଦମ୍ ଦମ୍ ଦମ୍ ବାଜୁଛି ଯୁଦ୍ଧ ବାଜା
ପ୍ରିୟତମ ମୋର ବନ୍ଦୀ, ଶୁଭିଲା, ବନ୍ଦୀ ଖୋର୍ଦ୍ଧା ରାଜା !

ସତେକି ଫେରିବେ ପ୍ରିୟତମ ମୋର ଫେରିବେ କୁଟୀର ପୁରେ ?
ଯୁଦ୍ଧ କରିଛି ଦେଶ ପାଇଁ ବୋଲି ଗର୍ବେ ମୋ ଛାତି ଫୁଲେ ।
ଆଉ ଆସିବେନି ଆଉ ଦେଖିବନି ଅଶ୍ରୁ ମୋ ଉଠେ ଝରି,
ସେଥିଲାଗି ଏଇ ମଳିନ ବେଶଟି ମରିବେ ଅଛଇ ଧରି ।
ଦୂରରୁ ଦେଖିଲେ ହେଲେ, ସେ ଶଇଳ ଭଗ୍ନ ସେ ଗଡ଼ ଶିଳା
ଛାତି ଫୁଲିଯାଏ । ସେଇ ବୀରବେଶ ଯୁଦ୍ଧ ସେ କରୁଥିଲା ! !"

---

# ଆହୁତି

ବୀର ଓଡ଼ିଆର ଶେଷ ସ୍ୱାଧୀନତା ସେ' ଦିନ ପାଇଲା ଲୋପ
ଗିରିକନ୍ଦରୁ ବିଦେଶୀ ଯେ ଦିନ ମାଇଲା ବାରୁଦ ତୋପ,
ସେ ଦିନ ଏ ଜାତି ମୂକ ପଶୁଭଳି ନ ଥିଲା ନୀରବ ରହି
ଦେଖିଛି ସେ ଦିନ ବରୁଣୀ ଶଇଳ ବନ ପ୍ରାନ୍ତର ନଈ,

ଦେଖିଛି ସେ'ଦିନ ଆକାଶ ପବନ ଦେଖିଛି ଚନ୍ଦ୍ର ତାରା
ଦୁର୍ଗେ ଦୁର୍ଗେ ଦୁର୍ଗପତିର ସୈନ୍ୟ ଡାକିବା ପରା,
ସେ ଦିନ ପାଇକ ଦଳ ଦଳ ଦଳ ବାନ୍ଧି କଟୀରେ ଫରି,
କୁଟୀର ବରଜ ବାହାରି ପଡ଼ିଲେ ଖଣ୍ଡା ପରଶୁ ଧରି ।

ସେ' ଦିନ ଏ ଦେଶ ପୁରପଲ୍ଲୀରେ ଖେଳିଗଲା ଜାଗରଣ
ବାଜିଲା ତୂର୍ଯ୍ୟ ବାଜିଲା ଶିଙ୍ଗା ଘନ ଘନ ଘନ ଘନ,
ପଥେ ପଥେ ସନ୍ଧି ବୃଷ୍ଟି ପଡ଼ଇ ଖାଲରେ ଖଣ୍ଡାୟୁତ
ଗାଆଁ ଗାଆଁ ମେଳି ସଭା ବଇଠକ ଲଗିଅଛି ଅବିରତ,

ବଇଶ୍ୱର ସାଥେ ଯୁଦ୍ଧ କରରେ ଖୋର୍ଦ୍ଧାର ରଖ ମାନ,
ବନ୍ଦୀ ଏ ଜାତି ଗଜପତି ରଜା ପରଜା ଯେ ହଇରାଣ,
ଆମ ବଳ ବଣ ଆମ ନଈ ନାଳ ଆମ ପ୍ରାନ୍ତର ପଥ
କାହାର ଉପରେ ହାତ ନାହିଁ ଆମେ ପଙ୍ଗୁ ଓ ପଦାନତ,

ସପ୍ତ ପୁରୁଷ ଏଇମାଟି ପରେ ନ ଥିଲେ ଭୋଗି ଏ ଦଶା
ବୀରର ଶୁଦ୍ଧ ଶୋଣିତୁ ଜନମି ରହିବାକ ହୋଇ ମଶା ?
ବରଷ ବରଷ ତିନଶ ବରଷ ଧରି ଏ ପାଇକ ଜାତି
ଯବନ ସଙ୍ଗେ ଯୁଦ୍ଧ କରିଚି ଇସ୍ପାତ ଛାତି ପାତି,

ଧମନୀ ଶୋଣିତେ ସ୍ୱାଧୀନ ଜୀବନ ସପନ ଦେଖେ ଯେ ଜାତି
ମରଣ ବୁକୁରେ ଠିଆହୋଇ ଯେହୁ ଗୃଳେ ତଲୁଆର କାତି,
ମଣିଷ ଦେଶରେ ମଣିଷ ପରିଏ ମଣିଷର ମାନ ଧରି
ଚଳିବା ଯାହାର ଜୀବନର ନୀତି ଜନମ ଜନମ ଭରି,

ପରର ଗୋଲାମି, ପର ନୌକରି ରକ୍ତେ ଯା ନାହିଁ ଲେଖା,
ପରର ପଦଏ ଆଣ୍ଠ ବଚନ ସହି ପାରେନ ଯା'ଠୋକା,
ଅନ୍ୟାୟ ଆଉ ଅନୀତି ଦେଖିଲେ ଚରଣେ ଯେ ଦିଏ ଦଳି,
ଦେଶ ମଙ୍ଗଳ ଲାଗି ଯେ ପାଗଳ ପରି ଦିଏ ଶିର ବଳି ।

ଆମେ ସେଇ ବୀର ଖଣ୍ଡାୟତରେ ଆମେରେ ପାଇକ ଜାତି
ନିର୍ବଳ ନୁହେ, ନଷ୍ଟପ୍ରଭ ନୁହେ ଆମ ନିର୍ଭୀକ ଛାତି
ଜନମ ନ ହୋଇ ମାଆ ପେଟେ ରହି ଆମରି ପାଇକ ପିଲେ
ଦେଶପାଇଁ ପରା ଜୀବନ ଦେବାକୁ ଶପଥ ଯେ କରୁଥିଲେ ।

ଖୋର୍ଦ୍ଧାଭୂଇଁର ବୀର ସେନାପତି ବକ୍ସି ବିଦ୍ୟାଧର
ବୁକୁରେ ଯାହାର ଅମିତ ସାହସ ଦେହରେ ଅମିତ ବଳ,
ଖୋର୍ଦ୍ଧା ମାଟିର ଏକଇ ଯୋଦ୍ଧା ମୁକୁଟ ବନ୍ଧା ଶିରେ
ଗୃଳ ଯାଉଥିଲେ ସେନାପତି ସାଜ କା ମଥା ଲଏଁନ ତଳେ ।

ଜାତିର ଦେଶର ଖଣ୍ଡାୟତର ଗର୍ବ ସେ ବୀରମଣି
ଲଇଁନାଇଁ କାହା ପାଦତଳେ ଶିର, ବୀର ବଇଭବ ଖଣି
ନୟନେ ଜଳଇ ଅଗ୍ନି ତାହାର ବିପ୍ଳବ ଶିଖା ତୋଳି
ବାହୁ ବନ୍ଧନେ ସକଳ ବଶ୍ୟ ରହିବ ଯେ କରଯୋଡ଼ି ।

ସ୍ୱାଧୀନ ଶୋଣିତେ ଜନ୍ମ ତାହାର ମାନେନା କାହାରେ ମୂଳେ
ପରାଧୀନତାର ଶୃଙ୍ଖଳ ତାର ଜୀବନର ବହୁ ଦୂରେ ।
ଖୋର୍ଦ୍ଧାରେ ଯେତେ ବନ କାନ୍ତାର ଶ୍ୟାମ ପ୍ରାନ୍ତର ପଥ,
ପଲ୍ଲୀନଗର ବିଲ ପଦା ଭୂଇଁ ଦୃଶ୍ୟ ଯେ ଶତ ଶତ,

ତାର ପରିଚୟ ସକଳର ସହ ଖୋର୍ଦ୍ଧା ତା ପ୍ରିୟ ମାଟି
ଖୋର୍ଦ୍ଧା ପାଇଁକ ସମସ୍ତେ ସେହ୍ନ ଦେଇପାରେ ବୁକୁ କାଟି
ବୀରମାଟି ଏଇ ଖୋର୍ଦ୍ଧା ଭୂଇଁର ସେଇ ବୀର ସେନାପତି
ସବୁ ସମ୍ପତ୍ତି ସବୁ ବଇଭବ ଆଜ ଯେ ହରାଇଚନ୍ତି,

ଜୀର୍ଣ୍ଣ ବସନ ଦେହେ ପରିଧାନ ଅନ୍ନ ନ ମିଳେ ମୁଠେ
ଗଭୀର ଦୈନ୍ୟ ଯାତନା ଭିତରେ ତଥାପି ସାହସ ଫୁଟେ,
ବୁକୁତଳେ ସେଇ ଧୈର୍ଯ୍ୟ ରହିଚି, ରହିଚି ମନର ବଳ
ନିଃସ୍ୱ ହେଲେବି ନିଃସ୍ୱ ହୋଇନି ଶୋଣିତ ଉଷ୍ମତର,

ଶତ ଶତ ବୀର ଖଣ୍ଡାୟତର ଅଗ୍ରଣୀ ସେଇ ବୀର
ବିଦେଶୀ ବଇରୀ ଅନାଗ୍ରହେ ବଳେ ଲଇଁ ଯାଇନାଇଁ ଶିର
ଅଭିଳାଷ ଯାର ହିମାଳୟ ପରି ଲକ୍ଷ୍ୟ ଯା ସୀମାହୀନ
ତରି ଯିବନି ସେ ଥରି ଯିବନି ସେ ହେଲେ କାଙ୍ଗାଳ ଦୀନ ।

ବିଶାଳ ପାଇକ ସେନାଏ ଦେଶର ରହିଚି ଯା ପଛପଟେ
ଦୁଃଖ ଦୈନ୍ୟ ନିଆଶା ଭିତରେ ସେ କି କେବେ କାହିଁ ହଟେ ?
ବିଜ୍ର ପରି ସେ ଗର୍ଜିଚି ନିଜକୁ ବିପଦ ଭିତର ଦେଇ
ସହି ପାରିଲନି ବକ୍ଷ ତାହାର ବଇରୀ ଅମିତ ନେଇ ।

ରକ୍ତ ତାହାର କାନ୍ଦ ଉଠିଲା, ବକ୍ଷ ଉଠିଲା ଥରି
ସିଂହ ଜାଗିଲା ବୁକୁତଳେ ତାର ପ୍ରଳୟ ରଚନା କରି ।
ଗର୍ଜିଲ ଯେ ଦେଶ ଧମନୀରୁ ତାଳ ଶତେକ ଉନ୍ମାଦନା
ସେଇ ଦେଶ ମୋର ନାରଖାର ଆଜ । କି ଗଭୀର ଯନ୍ତ୍ରଣା ।

ବକ୍ସି ବୁକୁରେ ଅଗ୍ନି ଜଳିଲା ଚମକାଇ ଦଶଦିଶ
ବାହାରି ପଡ଼ିଲେ ଭେଣ୍ଡା ପାଇକ ଗରଜିବେ ମୋଡ଼ି ନିଶ
ବକ୍ସି କହିଲେ ଗାଁଆ ଗାଁଆ ଗାଁଆ ବାଇଜ ବାଇଜ ବୁଲି
ଆମରି ଦେଶ ଏ ଆମରି ମାଟି ଏ ଯାଅନି ଯାଅନି ଭୁଲି ।

ଜନମ ମାଟି ଯେ ଜନମ ଦେଇଛି ଆଣିଛି ସୋହାଗେ ପାଳି,
ବଣ ପରବତ ବିଲ ପ୍ରାନ୍ତରେ ଲକ୍ଷ ସୁଷମା ବାଢ଼ି,
ତାରି ସନ୍ତାନ ଆମେରେ ଓଡ଼ିଆ, ଆମେରେ ପାଇକ ଜାତି,
ତାରି ମଙ୍ଗଳ ଲାଗି ଗୁଳି ଆଗେ ପତାଇ ଦେବାରେ ଛାତି,

ଆଜି ତ ମରିବା କାଲି ତ ମରିବା, ମରିବା ତ ଦିନେ ହେଲେ
ଜାତି ସମ୍ମାନ ଲାଗି ନ ମରିବା କହ କାହିଁ ଏତେବେଳେ ?
ଯେ ପାଇକ ଦିନେ ଜିଣିଥିଲେ ଏ ଦେଶ ଗଙ୍ଗାରୁ ଗୋଦାବରୀ
ଯେ ପାଇକ ଦିନେ ଏ ସାରା ଦେଶରେ ଗର୍ବ ଦେଇଛି ଭରି,

ସକଳ ସ୍ୱଇଜ ଶିର ଲଇଁଅଛି ଯାହା ତରବାରୀ ମୁନେ,
ଯୁଦ୍ଧ ପାଇଁକ ଗଢ଼ା ଯା ଶୋଣିତ ଆଜନମୁ କୋଟି ଗୁଣେ
ମୃତ୍ୟୁକୁ ଯେହୁ ମାରି ଦେଇ ପାରେ ସ୍ୱାଧୀନ ଜୀବନ ପାଇଁ
ଧରଣୀ ଉପରେ ଦୁଃଖ ଅଭାବ ଭୟ ବା ତାହାର କାହିଁ ?

ସେଇ ସେଇ ଆମେ ପାଇକ ଜାତିରେ ଉଠହେ ଉଠହେ ଉଠ !
ଏ ଦେଶ ବୁକୁରେ ଫୁଟିବାକୁ ହେଲେ ଫୁଟିବାର ପରି ଫୁଟ,
ପର ପାଦ ତଳେ ମସ୍ତକ ବିକି, ବିକି ଧନ ଯଶ ମାନ
ମରିଯିବା ଠାରୁ ବଞ୍ଚି ରହିବା ନୁହେ ଘୋର ଅପମାନ ?

ଯେ ଶାସନେ ନାହିଁ ନ୍ୟାୟ ଓ ଧର୍ମ ଖାଲି ଅନାଚାର ବୋଳା
କଥା କହିଲେରେ ଉତ୍ତର ଯହିଁ ମିଳେ ନାଲି ଆଖି ଡୋଳା
ବୁଭୁକ୍ଷୁ ଯହି ଅନ୍ନ ପାଏନା; ଯହିଁ ଶେଠ ସାଉକାର;
ଧନ ସମ୍ପଦ ବଢ଼ାଇ ବଢ଼ାଇ ହୁଅନ୍ତି ବଳୀୟାର;

ସେଇ ଶାସନର ଆସନ ଧୂଳିରେ ଚୂର୍ଣ୍ଣ କରିବା ପାଇଁ
ଜାଗ୍ରତ ହୁଅ ଜାଗ୍ରତ ହୁଅ ହେ ମୋର ଭଉଣୀ ଭାଇ ।”
ବିଲ ପ୍ରାନ୍ତର ଝାଙ୍ଗି ପଡିଆ ସବୁଠି ଖଣ୍ଡାୟତ
କେଉଁଠି ଚାଲିଛି ଅସ୍ତ୍ରଚାଳନା, କୁସ୍ତି ଓ କସରତ;

ଗିରି ଖୋଲି ବନ କାନ୍ତାର ଭରି କାହିଁ ମନ୍ତ୍ରଣା ଚାଲେ
ଦିନରାତି ବୁଲି ଜଗତବନ୍ଧୁ ଉନ୍ମାଦନା ଯେ ତାଳେ,
"ତେଜୀୟାର କର, ରକ୍ତ ତମର ତେଜୀୟାନ କର ବୀର
ଖୋର୍ଦ୍ଧା ଭୂଇଁର ମୂର୍ଦ୍ଧା ରଖ ହେ ବଳି ଦେଇ ନିଜ ଶିର ।

ମୁକ୍ତ କେତନ ଉଡ଼ାଅ, ବତାଅ ଗଜପତି ରାଜା ମାନ
ଯାଇଛ ଯେ ଦେଶ, ଆସିବ ସେ ଦେଶ କର କର ଅଭିଯାନ
ଶ୍ମଶାନ ଯାହା ଯାଇଛ ପାଲଟି ନନ୍ଦନଭୂଇଁ ଗଢ଼
ତୁମର ରକ୍ତେ ସିକ୍ତ ସବୁଜ ହସୁ ଏ ଧରଣୀ ଜଡ଼,

ତୁମର ମାଟିରେ ତୁମର ମାଟିର ଜୀବନ ହରଚୁ ଖେଳ
ହସି ଉଠୁ ତୁମ ମାଟିଖଣ୍ଡିକ ନବହ୍ନ ମମତା ମେଳ,
ତେଜୀୟାନ କର ରକ୍ତ ତମର ତେଜୀୟାନ କର ଶିର
ଖୋର୍ଦ୍ଧା ମାଟିର ସ୍ପର୍ଦ୍ଧା ରଖହେ ବଳି ଦେଇ ନିଜ ଶିର !

ଗାଆଁରୁ ଗାଆଁକୁ ବଣ ପରବତ ନଦୀ କାନ୍ତାର ଦେଇ
ଜଗନ୍ବନ୍ଧୁ ଯାଏ ବୁଲି ବୁଲି ଅଗ୍ନି ମନ୍ତ୍ର ଦେଇ;
ସେଇଁ ମନ୍ତ୍ରରେ ମନ୍ତ୍ରିତ ହେଲା ଦଳିତ ଜାତିର ହୃଦ୍ଧା
ରକ୍ତେ ରକ୍ତେ ଜଳି ଉଠିଲାରେ ଖାଲି ବିପ୍ଳବ ନିଆଁ ।

ସୁପ୍ତ ଜାତିର ସପନ ଭାଙ୍ଗିଲା ଗୁପ୍ତ ଶକତି ତାର
ଆଗ୍ନେୟ ଗିରି ଅଗ୍ନି ପରାଏ ଛୁଟିଲାରେ ବାରବାର
ନାଚିଲା ନାଚିଲା ଖୋର୍ଦ୍ଧା ମୁଲକ ପ୍ରତି ଗାଆଁ ପ୍ରତି ସାଇ
ରାଇଜେ ରାଇଜେ ସମ୍ବାଦ ନୂଆ ଶାସନ ରହିବ ନାଇଁ;

ମଲେରେ ମରିବା ଜୀଇଲେ ଜୀଇବା ଉଠିବା ଉଠିବା ଆମେ ।
ସ୍ୱାଧୀନ ହେବାକୁ ଯୁଦ୍ଧ କରିବା ବଇରୀର ସାଥେ ଠାଣେ
ଜୀବନ ଆସିବ ଯିବ ପରାଏ ରହିଥିବ କାଳ କାଳ
ଘୃଣା ଅପମାନ ଲାଞ୍ଛନା କରି କପାଳେ ତିଳକ ଗାର ।

ମୁକ୍ତ ଆକାଶ ତଳେ ଏ ଜୀବନ ମୁକ୍ତ ଧରଣୀ କୋଳେ,
ମୁକ୍ତିର ଗୀତ ଗାଇ ଚାଲିଥିବ ମୁକ୍ତ ମୟୂର ଡୋଳେ
ସେ ସୁଧା ଜୀବନ ଲକ୍ଷ ଆମର ବକ୍ଷ ଆମର ରହେ,
ରୁଦ୍ଧ କରିବ ଅନ୍ୟାୟ ଯହିଁ ବନ୍ୟା ପରାଏ ବହେ;

ଠମ୍ ଠମ୍ ଠମ୍ ବାଜିଲା ଠମକ ଟପ୍ ଟପ୍ ଚାଲେ ଘୋଡ଼ା
ଗାଆଁ ଗାଆଁ ଗାଆଁ ଚାଲିଲେ ପାଇକ ବନ୍ଧି ବନ୍ଧୁକ ଗୋଲା
ରାଜ୍ୟ ଆମର ଶାସନ ଆମର ଆମ ଗଜପତି ରଜା
ଆମ ଅଧିକାର ରକ୍ଷା ପାଇଁକି ଉଡ଼ାଅ ରକ୍ତ ଧ୍ୱଜା ;

ସ୍ୱାଧୀନତା ଆମ ଜୀବନ ଧର୍ମ ଆମ ଦେଶ ଆମ ଘର
ତାହା ପାଇଁ ଆଜ ମରିବାକୁ ହେଲେ ମୃତ୍ୟୁ ବରଣ କର
ଉଠାଅ ଉଠାଅ ନିଶାଣ ଆମର ବିଷାଣ ବଜାଅ ଭାଇ
ଦଳ ପରେ ଦଳ ପାଇକ ସୈନ୍ୟ ଯୁଦ୍ଧ କର ହେ ଯାଇ;

ଚାଲିଲା ଚାଲିଲା ଭୀଷଣ ଯୁଦ୍ଧ ବୁଜି ହୋଇଯାଏ ଆଖି
ଚିଲିକା କୂଳରୁ ବିରୁଣେଇ ଯାଏ ନାହିଁ କିଛି ଥାନ ବାକି।
ବିଲ ବଣ ତୋଟା ଟାଙ୍ଗି ପଡ଼ିଆ ରକ୍ତେ ହୋଇଛି ଓଦା
ପାଇକ ସୈନ୍ୟ ଜୀବନ ମୂର୍ଚ୍ଛି ଗୋଟି ଗୋଟି ହେଲେ ଗଦା।

ପର ପଦତଳେ ରହିବ ଜନନୀ ସହିବ ଶୋଣିତ କାହିଁ
ସୈନ୍ୟ ଉପରେ ସୈନ୍ୟ ଚାଲିଲେ କୁହୁକ ପରିଏ ଆଉ
ଜାତି ଇତିହାସ ପ୍ରତି ପତ୍ରରୁ ସେ ଦିନ ଯାଇନି ମରି
ଦେଖିଛି ସୋଲରୀ, ଦେଖିଛି ଭାଲେରୀ, ଦେଖିଛି ନୟନ ଭରି।

ବିରୁଣେଇ ଗିରି ଶ୍ୟାମଳ ଶୃଙ୍ଗ ଅଙ୍ଗେ ନଭେଇ ଅଛି
ପାଇକ ସୈନ୍ୟ ସମର ଯଜ୍ଞ କଭିକି ପାରିଛି ରଚି।
ଚିଲିକାର ନୀଳ ନିର୍ମଳ ବୁକୁ ଫେନିଳ ଊର୍ମି ତୋଳି
ଦେଖିଛି ଏ ଦେଶ ସାଥେ ପାଇକର ଅମର ସେନେହ ଡୋରି;

ଜୀବନର ଯେତେ ମଧୁ ବନ୍ଧନ, ପୁଅ ଭାରିଯାର ମୋହ,
ସକଳ ବରଜି ଜାତି ପାଇଁ ସେହୁ ସରଜିଛି ବିଦ୍ରୋହ,
ତା ହାଡ଼ ମାଂସ ଏ ମାଟି ଉପରେ ମାଟି ହୋଇ ଥିବ ରହି,
ଆଖିବୁଜି କଏ କଭିକି ଭାବରେ ଗୁଡ଼ିଥିବ ଏଇ ମହୀ।

ପ୍ରିୟ ପରିଜନ ଆତ୍ମୀୟଗଣ ପଡ଼ିଥିବେ କାର ମନେ,
ଦେଶ ପାଇଁ କଏ ରକ୍ତ ଦେଇଛି କେଉଁ ଜଙ୍ଗଲ କଣେ
ସେଦିନ ଯାଇଛି ସେ କାଳ ଯାଇଛି ନାହିଁ ସେ ଯୁଦ୍ଧ ସତ
ସେ ବୀର ହୃଦୟ ତଳେ ଏ ଜାତିର ମଥା ହୋଇ ଯାଏ ନତ।

ନାହିଁ ସେ ଦୁର୍ଗ ନାହିଁ ସେ ରାଜ୍ୟ ନାହିଁ ଗଜପତି ରାଜା
ଦୁର୍ଗ ହୋଇଛି ବଣ ଜଙ୍ଗଲ, ବାଜୁନି ଯୁଦ୍ଧ ବାଜା
ସେ ବୀର ମାଟିର ଶ୍ମଶାନ ପରେ ପାଇକ ଜାତିର ପ୍ରାଣ
ଫୁଟି ଉଠୁଥିବ ପଥିକ ପରାଣେ ଜଗାଇ ଗମ୍ଭୀର ଟାଣ,

ସେଇ ମାଟିପରେ ବୀର ବକ୍ସିର ବକ୍ଷ ଉଠିଥିଲା ଫାଟି
ସେଇ ମାଟିପରେ କମାଣ ଆଗରୁ ମନାଇ ଦେଇଥିଲ ଛାତି;
ସେ ମାଟିର ପ୍ରତି ଧୂଳି କଣିକାରେ ଖେଳିଥିଲା ଜୀବନ ତାର
ସିଂହ ପରି ସେ ଜବତ୍ କରିଥିଲା ବଇରୀ ଅତ୍ୟାଚାର

ସାରା ଓଡ଼ିଶାର ହୃତ୍‌ପିଣ୍ଡ ସେ ରହିଥିଲା ଏକା ଜଣେ
ଜାତିର ସବୁରି ଅନ୍ତର ବ୍ୟଥା ବୁଝୁଥିଲା ପ୍ରତିକ୍ଷଣେ;
କୋହିନୂର ପରି ଜଳୁଥିଲା ଦେଶେ, ଥିଲା ସେ ଜାତିର ବାଡ଼
କହିଲେ କହିବ ଗିରି ବରୁଣେଇ ଚିଲିକା ଊର୍ମିମାଳ,

ସେ ଜଗବନ୍ଧୁ ନାହିଁ ଆଜି, ନାହିଁ ପାଇକ ବାହିନୀ ତା'ର
ନାହିଁ ତାର ରଜା, ନାହିଁ ରାଜଗଡ଼ ପ୍ରିୟ ଭୂଇଁ ଖୋର୍ଦ୍ଧାର;
ସେଇ ସେ ଭଙ୍ଗାଗଡ଼ ଇଟା ମାଟି ସେହି ସେ ପାହାଡ଼ ନଈ
ରହିଅଛି ଏବେ ବୁକୁପରେ ବୀର ବକ୍ସିର ସ୍ମୃତି ବହି;

ଆଜି ଏଇ ଦେଶ ମାଟିରେ ପଥିକ ମାଡ଼ି ଚାଲିଗଲା ବେଳେ
ସେ'ଦିନର ସେଇ ଯୁଦ୍ଧ ବାଜଣା ପାଇକ ସଇନ ମେଳେ
ମନେ ପଡ଼ିଯାଏ, ଲଇଁ ଆସେ ମଥା ବକ୍ସିର କଥା ଭାଳି
ଜାତି ପାଇଁ ଆଉ ଏ ବୀର ମାଟିରେ ନିଆଁ କିଏ ଦେବ ଜାଳି ?

ଆଜି ଏଇ ଗଡ଼ ବଣ ବୁଦାଲଟା ଟାଙ୍ଗି ପଡ଼ିଆ ଚାହିଁ ।
ମନେପଡ଼େ ଏଥି କେତେ ପାଇକର ଜୀବନ ନଥିବ ଯାଇ ।
କା ଛାତି ଭିତରେ ବାଜିଥିବ ଗୁଳି, ବନ୍ଦୀ କେ ଥିବ ହୋଇ
ଫାସୀକାଠେ କିଏ ହୋଇଥିବ ଠିଆ ଦେଶର ଜୀବନ ପାଇଁ ।

ସେଇ ଶତ ବୀର ପାଇକ ବୁକୁର ସାହସ ଉନ୍ମାଦନା
ଏ ମାଟି ଉପରୁ ନିଭିନାହିଁ ଅଛି ଭରି ପ୍ରତିଧୂଳି କଣା
ବଞ୍ଚିଛି ଏଇ ଗଡ଼ ପ୍ରାନ୍ତରେ ବକ୍ସିର ବୀର ହିୟା !
ଦପ ଦପ ଦପ ଜଳୁଛି ତାହାର ନୟନୁ ଭୀଷଣ ନିଆଁ !!

ବରଷ ବରଷ ଫେରି ବୁଲି ଯିବ ସେଇ ସେ ଭଙ୍ଗାଗଡ଼
ତଳୁ ଫୁଟିଥିବ ସ୍ୱାଧୀନ ମନ୍ତ୍ର ଶତ ଶତ ପାଇକର !!
ବାୟୁ ହିଲ୍ଲୋଳେ ଖେଳି ଖେଳି ଯେହ୍ନ ବୁଲୁଥିବ ଅବିରଳ
ପରାଣେ ପରାଣେ ବାଢ଼ି ଗଉରବେ ସ୍ୱାଧୀନ ଜୀବନ ବଳ ।



# କଳାପାଣି

ବେଳ ଦଶଘଡ଼ି ଦୁଇପହର ଯେ ନିଆଁ ଛୁଟିପଡ଼େ ତଳେ,
କିଏ ବୀର ଯୁବା ଯାଉଚି ଚାଲି ହୋ ଯୋଲଗି ପାହାଡ଼ କଡ଼େ !
ପାଟଶାହାଣୀ ସେ ଘୋଡ଼ାରେ ବସି ହୋ ଚାଲନ୍ତି ସାହସୀ ଜନ
ବାଟର ବାଟୋଇ ଚାଲି ପାରେନାହିଁ ମାରୁଚି ଖର ପବନ !
ଯାଏ ବାଣପୁର ଚଉଦ କୋଶେ ସେ ବୀର ବଳିଆର ଯୁବା,
ଶିରେ ତା' ପଗଡ଼ି, ହାତରେ ଖଣ୍ଡା, କିଏ ପାଶେ ହେବ ଉଭା ?
ନିଶ ଦୁଇ ପଟା ଭିଡ଼ି ଦେଇଚି ହୋ, ଫୁଟେ କି କେଶରୀ ଠାଣି !
ଆରହାତେ ଢାଲ ଧରି ବସିଛି ହେ! ପିଠେ ଶୋହେ ଶରମୁଣି;

ଚାରି ହତିଆର ଝଂଜଟ ଦେହେ, ବାଘ ପରି ଯାଏ ଚାଲି,
ତିନିଭୁବନରେ ପୁରୁଷ କିଏ ହୋ, ତାହାକୁ ପାରିବ ମାରି ?
ବିଲ ବଣ ନଈ ଡୋଠା ପଡ଼ିଆ ସେ ଲଂଘି ଯାଉଛି ଚଳି
ବାଟ ତା'ର କିଏ ଓଗାଳି ପାରେ ହୋ କିବା କଉଶଳ କରି ?
ଖଣ୍ଡାପଟି ଯେ ହାତରେ ଧରିଚି ଥରେ ଯେବେ ଦେବ ଚାଳି
ଛେଳି ହୋଇଯିବେ ତିଳ କୋଡ଼ି ଲୋକ ରକତ ସିନାନ କରି ।
ଗାଆଁରୁ ଗାଆଁକୁ ବୁଲି ସେ ଆସୁଚି ହକାରି ପାଇକ ଗଣେ
ଫିରିଂ ରାଜୁତି ନ ରଖିବ ବୋଲି ଆପଣା ମୁଲକେ କ୍ଷଣେ !

ଚିଲିକାକୂଳରୁ ନୀଳାଦ୍ରି ଯାଏଁ ଏଥେ ବାଣପୁର ଧରା,
ଫିରିଂ ରାଜୁତି ଅନାଚାରମାନ ସହି କି ପାରିବ ଭଲା !
ସବୁରି ଉପରେ ବୀର ପାଟ ଶାଣି, ସାଜ ନିଜେ ଦଳପତି
ଯୁଦ୍ଧ କରିବାକୁ ଫିରିଂ ଭୁଲେ ବଳାଇଛନ୍ତି ମତି;
ପ୍ରତି ସୀମା ପ୍ରତି ଗିରି ଖୋଲ ବଣେ ଫିରିଂ ଜଗିଆ ଦଳ
ପାଟଶାହାଣୀରେ ଦେଖିବ ଧରାଇ ହୋ କରନ୍ତି କଉଶଳ ।
ଯୋଲଗି ପାହାଡ଼ ଡେଇଁ ସେ ପଶି ହୋ ଆସୁଟିକରାଙ୍କ ପିଠେ
ବେଳ ଲଇଁ ଆସେ ମୁହଁକୁ ମୁହଁ ତ ଦିଶେ ନାହିଁ କଦାଚିତେ ।

ଫିରିଂ ଜଗିଆ ଲୁଚିଥିଲା କେଉଁ ଲଟା ବୁଦା ଆଡୁଆଳେ
ଏଡ଼େ ଭିଡେ ଯେବେ ମାଇଲା ଶର ହୋ ଫି ଫିଁ ଫିଁ ଚାଲେ !
ପାଟଶାହାଣୀ ଯେ ବଡ଼ ଚତୁରା ହୋ, ବଡ଼ ବୁଦ୍ଧିଆ ଜନ
ଢାଲ ଟେକି ଶର ନିବୋଧ ଦେଲେ ହୋ ନୋହି ବିଚଳିତ ମନ;
ଘୋଡ଼ା ମାତି ସେତ ଆସିଲେ ଚାଲି ଯେ ପୁଣି ଚାରିକୋଶ ବାଟ
ଦୃଷ୍ଟି ହୋଇଗଲା ଚାରି ଦିଗରେ ହୋ ସକଳ ହାସ୍ତାଘାଟ

ପାଟଶାହାଣୀ ସେ ବଡ଼ ସିଆଣିଆ, ଭେଦଆରେ ଗଲା ବଳ
ଘରର ପିଲା ସେ ପାରିବ ତାଠାରେ ବା କିଏ କେଉଁ ଭଳ ଧରି ?

ବାଣପୁର ମାଟି ଚଉଦ କୋଶେ ହୋ ଲୋକେ ହୋଇଗଲା ଡ଼ାକୁ
ମହୀ ମଣ୍ଡଳେ କେ' ଅଛୁ ଜନ ହୋ ଧରାଇ ପାରିବ ତାକୁ ?
ଫିରିଂ ମାଲିକେ ଗୁରୁଆଡ଼ିକୁ ଯେ ଚିଟଉ ଦେଲେମ ପଠାଇ
ପାଟ୍‌ଶାଣିରେ ଯିଏ ବରଷେ ଭିତରେ ପାରିବ ନଜେ ଧରାଇ—
ଫିରିଂ ରାଜନ ଖଂଜ ଦେବେଟି ତା' ପାଇଁ ବହୁ ଜାଗିର,
ସେ ଜାଗିର କେବେ କଟି ପାରିବନ ପୁରୁଷ ପୁରୁଷ ଧରି ।
ଗାଆଁକୁ ଗାଆଁ ତ ରାଷ୍ଟ୍ର ହେଲା ହୋ ବଜୁଳି ପରି ସେ କଥା,
ଧନ ଲୋଭେ କିଏ ଧରାଇ ଦେବ ହୋ ଆଣି ଏଡ଼େ ବୀର ମଥା ?

ଯିଏ ସେ ଶୁଣିଲା, କାନେ ହାତ ଦେଲା, କାହାର ହବ ଏଭଳି ?
ନଜ ମାଟି ବୀର ପୁରୁଷେ ଧରାଇ ଦେବ କଉଶଳ କରି ;
ଜୀବନକୁ ପାଣି ଛଡ଼ାଇ ଯେହୁ ହୋ ସହି ଶତ ଦାଉ ଘାତ,
ଦେଶ ଜନନୀର ମୁକତି ପାଇଁ କି ଯୁଝିବାକୁ ଖୋଜେ ବାଟ,
ସାରା ଦେଶ ପାଇଁ ମରିବାକୁ ଯେହୁ ପତାଇ ଦେଇଛି ହିଆ,
ବଇରୀର ଅନାଚାରେ ଯା' ବୁକୁରେ ଜଳେ ଡ଼ହ ଡ଼ହ ନିଆଁ,
କୋଡ଼ିଏ ବରଷ ଯୁବା-ଯଉବନ ଭରି ଖେଳେ ସାହା ଦେହେ,
ସ୍ତ୍ରୀ ଅଙ୍ଗ ଯେ ଛୁଇଁନ ଭଲେ ହୋ ଜନମ ମାଟି ସେନେହେ

ଭଆ ହୋଇ ଭଆ ବେହରେ ପରା ଯେ ଗରଜ କହିଲା ଖରେ,
ଦିଅ ମୋ ଖଣ୍ଡା, ମୋ ଲଢ଼ୁଆ ଘୋଡା ପଶେ ମୁଁ ମେଳିଆ ଦଳେ !
ଆଖି ପିଛୁଳାକେ ଉଡାଇ ଦେବ ହୋ ସାରା ବାଣପୁର ଦେଶ
ପାଇକ ସଇନେ ମୋ ଡାକେ ଆସିବେ ଧିନ୍ଧ ସମର ବେଶ ।
ମୁଁ କାହିଁକରେ କହ ପଛେଇ ଯିବ ହୋ ଭୀରୁ କାପୁରୁଷ ପରି ?
ବୁକୁରେ ଖେଳୁଛି ବୀର ରକତ ହୋ, ଦଉଚି ଅଥୟ କରି ! !
ତାରେ କିଏ କିଆଁ ଧରାଇ ଦେବେ ହୋ କିବା ସନମାନ ପାଇଁ ?
ନଜ ବେକେ ନଜେ ଛୁରୀ ଦେବାଲାଗି କେ' ଭଲ ପାଇଚି କାହିଁ ?

ଅଳପ ବୟସ ଟୋକାଟିଏ ସିନା ହୋଇଛି ପାଇକ କୁଳେ
ତା'ଭଳି ଅଳପ ନାୟକ ଥିବ ହୋ ଭୁଲିବାକୁ ତାହା ଭୁଲେ ।
ଗୋରା ମଚମଚ ଦିହଟି ତାହାର ଗୋଟିଏ ଛାଞ୍ଚରେ ଗଢ଼ା,
ମୁଖମଣ୍ଡଳୁ ବୀର-ବଇଭବ ଫୁଟି ଆସୁଥାଏ ପରା !

ଆଖି ଦୁଇଟି ତା' ଦାଉ ଦାଉ ଦିଶେ, କିବା ନିଆଁ ଝୁଲ ପରି ?
ଦିକୋଡ଼ ମଣିଷ ବାହୁରେ ତାହାକୁ ଟେକି ନେଇ ଯିବା ଭଳି;
ଅନିଅମ କାହିଁ ଟିକିଏ ଦେଖିଲେ ରକତ ତା' ଫୁଟେ ତାତି
ହେଉ ବାପ ଭାଇ ସାଙ୍ଗ ସଜନୀ କିବା ଆସେ ଯାଏ ସେଥି !

ମେଳ ମେଳେ ପଶି ଯୁଝିବେ ପାଠ୍‌ଶାଣି ଯେବେ ଶୁଣିଲାଟି କାନେ,
ପରାଣ ପ୍ରତିମା ନବ ଯଉବନୀ ଭିଆ ହେବା କେତେ ଦିନେ,—
ଅଧେ ଚାହିଁ ଅଧେ ନଚାହିଁ କହିଲା ତୁନି ତୁନି ଦରଭୟେ
“ସତେ ଚାଲିଯିବ ପରାଣ ଦେବତା ରହିବି ମୁଁ କାହା ପାଶେ ?
ତୁମ ଭଳି ବୀର ପୁରୁଷ ହାତ ଯେ ଧରି ମୁଁ ରହିବି ଏକା
କିଏ ସେ କହିବ ମେଳରୁ ଫେରିବ ହେବ ବାରେ ପୁଣି ଦେଖା
ଫୁଲ ପରି ମୋର ନବ ଯଉବନ ମଉଳି ଯିବଟି କାହିଁ
କି ଶିରୀ ବିଭବ ଭୋଗିବି ମୁହିଁ ହେ ତୁମ ଭଳି ପତି ପାଇ ?

ଏ ପାଖେ କିଶୋରୀ ନବ ଯଉବନୀ ରହିଛି ବଦନ ପୋତି,
ଦୁଆର ଉଢ଼ାଳେ ବୀର ପାଠଶାଣି କପାଳେ କନକ ଜ୍ୟୋତି !
ଭେଣ୍ଡା ବୟସ ହସ ହସ ମୁହଁ, ବଦନେ କେଶରୀ ଠାଣି
ଭୁଲନ୍ତ କାହୁଁ ବିରଜି ଯିବେ ସେ ନବ ଯଉବନୀ ବାଣୀ,
ବୀର ପାଠଶାଣି ବଳିଆର ଯୁବା କହିଲେ ବାଳାରେ ଡାକି
“ଏକ ଆଡ଼େ ଦେଶ, ଆନ ଆଡ଼େ ଟିଲେ ଡାକେ ତୁମ ନୀଳ ଆଖି
ତୁମ ଦେହେ ଢଳି ଘର କଣେ ପଶି ରହିବି ବଇରୀ ଭୟେ
ପାଇକ ରକତ ଅଛି ଯେ ଗାତ୍ରରେ ନିମିଷେ ତ ନାହିଁ ସହେ

ଯହିଁ ଭୟ ଯହିଁ ପରପଦାଘାତ ସେ ଭଳି ଜୀବନଟିଏ
ଥିଲେ ସେ ନ ଥିଲା ପରିଟି ମହୀରେ, ତାରେ ବା ଲୋଡ଼ିବ କିଏ ?
ମାଟି ଗଢ଼ା ପରି ଜୀବନ ନୁହେଁ ଲୋ ତୂନି ହୋଇ ଥିବ ରହି
ଶତ ଭର୍ତ୍ସନା ଗୋଡ଼ ଗୋଇଠା ଲୋ ପରଠୁ ନିୟତେ ସହି;
ମରି ପଡ଼ିଥିବ ମୋ ଜନମ ମାଟି ବଇରୀ ପୀଡ଼ନ ସହି
ତା' ପାଣି ପବନେ ଗଢ଼ା ଏ ମୋହିଆ ମଉନ କି ପାରେ ରହି ?
କାଇଦ ହୁଏ ମୁଁ ଯାଏ କଳାପାଣି ମରିଯାଏଁ ଯୁଝି କରି
ତୁମ ଦେହେ, ବାଳା ନ ଢଳେ ପଛେ ମୁଁ ଜନମ ଜନମ ଭରି—

ତୁମେ ମରି ହୁଅ ମଶାଣି ପାଉଁଶ ମରେ ମୁଁ କେଉଁଠି କାହିଁ
ଜନମ ମାଟିର ସ୍ୱାଧୀନତାଟିକ ଥାଉ କାଳ କାଳ ପାଇଁ !

ଆମରି ଭିତରେ ଯେ ମନୀଷଟିକ ଅଯୁତ ମଣିଷଲାଗି
କାଳ କାଳ ପାଇଁ ଜୀବନ ଖେଳାଉ, ମରଣ ଭିତରୁ ଜାଗି ।
ନ ଥାନ୍ତା ଯେବେ ଶୋଣିତ ଟୁଣ୍ଡରେ ନିଶ୍ୱାସ ମୋର ଦେହେ,
ନ ଥାନ୍ତା ଯେବେ ବିକ୍ରମ ଯାହା ବାହୁଯୁଗେ ଆଜ ଶୋହେ,
ନୟନ ଯୁଗଳ ଦେଖି ନଥାନ୍ତା ମୋ ଦେଶର ଅନାଚାର
ଶୁଣୁ ନ ଥାନ୍ତି କାନେ ଯେବେ ମୋର, କୋଟି ବୁକୁ ହାହାକାର

ତେବେ ସିନା ମୋର କରିବାର କିଛି ନ ଥାନ୍ତା ପରାକ୍ରମ,
ସବୁ ଥାଇ ମୋର ମରମେ କାହିଁ ଲୋ ନ ଆସିବ ଜାଗରଣ ?
ନିଆଁ ଖଣ୍ଡେ ମୁଁ, ନିଆଁକୁ କେସନେ ଡେଇଁ ପାରିବନି କହ ?
ଖଣ୍ଡାପୁତର ବଧୂ ହୋଇ କିଆଁ ଏତେ ତୁମ ଡର ଭୟ ?
ହସି ହସି ଆଜ ବିଦାୟ ଦିଅ ଗୋ ! ପଲ୍ଟଣର ପ୍ରିୟା ମତେ
ଅସୀମ ପ୍ରାଣର ବିକଳ ଡାକଲୋ ! ଶୁଣି ମୁଁ ପାରୁଚି ସତେ !
ଏ ବୀର ରସନା ସେ ବିକଳ ଡାକେ ନୀରବ ରହିବ କାହିଁ
ବୀର ପରି ସେହୁ ଜବାବ ଦେବ ଲୋ ମଲେ ମରୁଥିଲେ ଥାଉ ।"

ମେଳିଆ ଭିତରେ ଦଳପତି ପରି ଏ ଯେ ବୀର ପାଠଶାଣି
ଭଲେର ନାଶିରୁ ସୋଳଶଯାଏଁ ହୋ କଏ ଅବା ନାଇଁ ଜାଣି ?
ବାଜୁଚି ବାଇଦ ଯୋଡ଼ି ନାଗରା ହୋ ପାଠ୍ଶାଣି ଚାଲନ୍ତି ଆଗେ
ବେକେ ଫୁଲମାଳ ଶିରେ ସିନ୍ଦୂର ମନେ ବୀରଭାବ ଜାଗେ !
ପଛରେ ପାଇକ ଗୋଡ଼ି ପକାଇ ହୋ କରି ତଲୁଆର ଖେଳ
ଆସନ୍ତି ପରି ଗୀତ ଗାଇ ଗାଇ ଡେଇଁ ବଳ ପଦାମାଳ !
ନିଜ ମାଟି ଜୟ ପତାକା ପରି ହୋ ! ଉଡ଼େ ହୋଇ ଫର ଫର
ବାଠ ହଣେ ନାଇଁ ଚାଲୁଥାନ୍ତି ହୋ ମେଳିଆ ପାଇକ ଦଳ ।

ଠପ ଠପ ଠପ ଚାଲଇ ଘୋଡ଼ା ହୋ ଭୂଇଁ ଯାଉଥାଏ ଥର
ଡ଼କା ପଡ଼ୁଥାଏ ଥରକୁ ଥର ହୋ ଫିରିଂରେ ଦେବା ଦଳ ?
କୁଳ ଭୂଆଷୁଣୀ କୁଠୀର ଭିତରୁ ଦିଅନ୍ତି ହୁଳହୁଳି,
ଡକା ପଡ଼ୁଥାଏ ଥରକୁ ଥର ହୋ ଫିରିଂରେ ଦେବା ଦଳ !
ଠିକ ଠିକ ପିଲେ ଗୁହ୍ମ ପାଇବେ ହୋ ନାଚନ୍ତି ବୀର ପରି,
ଡକା ପଡ଼ୁଥାଏ ଥରକୁ ଥର ହୋ ଫିରିଂରେ ଦେବା ଦଳ !
ବାଜୁଚି ବାଇଦଯୋଡ଼ି ନାଗରା ହୋ ଗାଆ ବଳ ବନ ଭରି,
ଡକା ପଡ଼ୁଥାଏ ଥରକୁ ଥର ହୋ ଫିରିଂରେ ଦେବା ଦଳ !

ପାଟଣାଣୀ ହାତ ଖଣ୍ଡାପଟିକ ଥିଲେ ପାଟଣାଣୀ ହାତେ
କିଏ ପୁଅଅଛୁ ମହୀରେ ତାହାକୁ ଛୁଇଁବା ପାରିବ ସତେ ?
ହଠନେ ପାଟଣାଣି ବସିଚନ୍ତି ଖାଇ, ଆପଣା ଶଶୁର ଘରେ,
ଖଣ୍ଡାପଟିକ ଗୁଡ଼ ନାହାନ୍ତି, ଝୁଲୁଚ କମର ତଳେ,
ଶଶୁର ତାଙ୍କ କଅଁଳ ବଚନେ କହିଲେ ହୋଇଁରେ ଗୃହିଁ
ଖଣ୍ଡାପଟିକ ଥୋଇ ହଅ ପୁଅ ! କିଏ ନେଇ ଯିବ କାହିଁ ?
ଖଣ୍ଡାଟି ଥୋଇ ପାଟଣାଣି ଭୋଜନେ ବସିଲେ ଉଷତ ହୋଇ
ଶଶୁର କରିଚ କୁପାଞ୍ଚ ବୋଲ କାହିଁକ ଜାଣିବ ହୋଇଁ ?

ମାଡ଼ଆସନ୍ତି ଫିରଂ ଫଉଜ ଲୁଚ ରହିଥିଲେ କାହିଁ,
ପାଟଶାହାଣୀରେ ବାନ୍ଧ ତୁରତେ କହିଲେ ଗୁଡ଼ବୁ ନାଇଁ !!
ପାଟ୍‌ଶାଣୀ କରବେ କ ଅବା ଭୋଜନ ପଛକୁ ଗୃହିଁଲେ ଫେର
ଖଣ୍ଡାପଟିତ ନାହିଁ ତୁ ଆଉ ହୋ, କାହ୍ନେ ଯା' ଥିଲେ ଡେର;
କହିଲେ ଶଶୁର ମୁହିଁକୁ ଅନାଇଁ କ ଅବା ନକଲ ତମେ ?
ଦେଶ ଲୋଭ ତହୁ ଧନ ଲୋଭ କଣ ଏତେ ବଡ଼ କଲ ମନେ ?
ଘର ଗୃହପାଖେ ଫିରଂ ଜଗାଇ ଧରାଇ ଦେଇଚ ମୋରେ
ସେ ମୋର କଅଣ ଜନ୍ମମାଟିକି ହତ୍ୟା ଯେ କରପାରେ !"

ଗୃହିଁନ୍ତି ଶାଶୁ ଜଳା କବାଟିରୁ ହୋଇଁ ଯାଏ ଧରାହୋଇ
ଲୁହ ବୋହି ଆସେ ଲୋଚନ ଯୁଗଳୁ, ଗୃହିଁ ପାରନ୍ତି ନାଇଁ !
ଛି ଛି କଲେ ସବୁ ମୂଲକ ଲୋକେ ଯେ ଦଳବେହେରାରେ ଗୃହିଁ
ଧନ ଲୋଭେ ଯେହୁ ଅନ୍ଧ ହୋଇଛୁ ତାକୁ ଭଲ ଗତ କାହିଁ ?
କୋଡ଼ଏ ବରଷ ତରୁଣ ନେତା ହୋ ଦେଉ ଗାଆଁ ପାଟଣାଣି
ଯମଦୂତ ପର ଫିରଂ ସଇନେ ନଅନ୍ତି ନଠୂରେ ଟାଣି !
ଗୃହପାଖେ ଗୃହ ଜଗୁଆଳ ହାତେ ଧର ଅଛନ୍ତି ରସି,
କେତେ଼ ନସ୍ଥୁରେ ହାତ ଗୋଡ଼କଡ଼ା ଦେଇ ନାହାନ୍ତି କଷି !!

ପଛକୁ ସେ ଫେର ଗୃହିଁନାହାନ୍ତି ଗୃଲଚନ୍ତି ଏକ ମୁହିଁ
ମନ କଥା ମନେ ରହିଲ ପର ହୋ, କାହାକୁ କହିବେ ଆହା !
ଫିରଂ ସଇନେ ମଝି ହାଣ୍ଡରେ ନଅନ୍ତି ସ୍ଥାନମାନେ ।
ଜନତାର ଲାଗି ମେଳୁ କରୁଥିଲା କ ଅବା ବଜ୍ର-ଟାଣେ ।
ମିଏ ସେ ଦେଖିଚ ନୟନ ଯୁଗଳୁ ଲୁହ ଯାଇଅଛୁ ବହି
ଏ ଭଳି କ୍ଷେମୀ ନ ଫେରବ ଆଉ, କ ଭଳି ସହିବ ମହୀ ?

ମାଆ ଟିକରାଣ୍ଡ ! କହି ପାଟଶାଣୀ ପାଦ ପକାନ୍ତି ଆଗେ
ବୁକୁରେ ଅଛି ସେ ଖର ବନ୍ଧମ ଭୟ ଲବେ ନାହିଁ ଜାଗେ !

ଆଗକୁ ଆଗକୁ ଗ୍ଳଲନ୍ତ ପାଟ୍ଶାଣୀ ପଛକୁ ଗ୍ଳହିଁଲେ ଫେର
ଧଶଇ ନାହିଁତ ବନ ବଲ ଗାଆଁ ସୋଲର ଆଉ ଘଲେର !
ଚଲକାର ପାଣି ଦୂରକୁ ଦଶୁଚ ଗ୍ଳଇ ଗ୍ଳୟା ମାଳ ହୋଇ
ଶେଷ ଥର ପାଇଁ ଗ୍ଳହିଁଲେ ପଣ୍ଡା ସେ ଟିକଏ ବଦନ ଲୋଇଁ;
'ଆଉ ଫେରବନ ମୋ ପ୍ରିୟ ମାଟିରେ' କହି ପ୍ରଣିପାତ କର
ଗ୍ଳଲଲେ ପାଟ୍ଶାଣୀ ହାତେ ହାତକଡ଼ା ଲାଗିଚତ ସେଇପର !
ନୟନର ଲୁହ ପୋଛୁବେ କଅଣ ଶୁଖିଚ ନୟନ ତଟେ
ବାଣପୁର ମାଟି ସବୁ ବଇଭବ ନାଚୁଚ ମାନସ-ପଟେ

ରହି କେତେଦନ କଟକ ମୂଲକେ ଗଲେ ଗ୍ଳଲ କଲାପାଣି
ଦରଆ ମଝିରେ ରହିଲେ କାହିଁ ସେ, ଖବର କେ' ନାଇଁ ଆଣି !
ସେ କଲାପାଣିର ଦୀପ ଟାପୁ କୋଳେ ରହ କେତେ ସ୍ଥାନମାନେ
ଜୀବନର ଦୀପ ଲିଭ ତ ଥିବ ହୋ କଏ ସେ କଉଳ ଜାଣେ ?
ମନେ ପଡ଼ଥିବ ସୋଲର ଘଲେଖ ବନ ବଲ ତୋଟାମାଳ
ମନେ ପଡ଼ଥିବ, ଗାଆଁ ଗାଆଁ ବୁଲ କେତେ ମେଳ କରିବାର !
ମନେ ପଡ଼ଥିବ ପାଇକ ପଧାନ ରହିଥିବେ କେଉଁ ଭଳ
ଫିରିଂ ଗଜୁଡ଼ ଦୁର୍ଦ୍ଦଟମାନ ସହୁଥିବେ ଡରିମରି ।

ତାହ ଉଠୁଥିବ ବୁକୁ ରକତ ହୋ ଫୁଟିଉଠେ ଖରବାଣୀ
ଗ୍ଳହିଁଲା ବେଳକୁ ଗ୍ଳରିଦଗରେ ହୋ କଳକଳ କଲାପାଣି !!
କେତେଶ ଯୋଜନେ ଗ୍ଳଡ଼ ଯେ ରହିଲ ମୋର ବାଣପୁର ଭୂଇଁ
ବାଣପୁର ମୋର କହ୍ନି ପିଣ୍ଡରୁ ପବନ ଯେ ଥିବ ଯାଇ !
ଶୁଣିବାକୁ ସେଇ ବଜନ ମରୁରେ କେ ଥିବ ନଜର ଅନ୍ତ ?
ସବୁ ଅନୁଭବୁ ଜାଣ୍ଡ ଅନୁଭବ ଜାଣ୍ଡର କ ସମ୍ପତ୍ତି !!
ଶୁଣିଲେ ଶୁଣିବ କହ୍ନ ଗ୍ଳରିଆଡ଼େ କଳକଳ କଲାପାଣି
"ବନ୍ଦୀ ସେ ଏଠି, ଦଗନ୍ତ ବ୍ୟାପୀ ରହିଚ କନ୍ତୁ ବାଣପୁର
ପାଟଶାଣୀ ।"

---

# ଟିପ୍ପଣୀ

## ଜୟୀ ରାଜଗୁରୁଙ୍କ ଉତ୍ସାହ ବାଣୀ

ଖୋର୍ଦ୍ଧା ରାଜା ମୁକୁନ୍ଦ ଦେବଙ୍କର ଗୁରୁ ଓ ପ୍ରଧାନ ସଚୀବ ଥିଲେ ଜୟୀ ରାଜଗୁରୁ । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ନେବା ପରେ ଖୋର୍ଦ୍ଧା ରାଜାଙ୍କର ଜଗନ୍ନାଥ ମନ୍ଦିର ନେବାକୁ ଲୋଡ଼ିଲେ । ଜୟୀ ରାଜଗୁରୁଙ୍କୁ ଇଂରେଜମାନେ ଜଗନ୍ନାଥ ମନ୍ଦିରର ଭୂ-ସମ୍ପତ୍ତିର ଆୟବ୍ୟୟ ହିସାବ ମାଗିଲେ ଏବଂ ମନ୍ଦିର ନେବାପାଇଁ ଚେଷ୍ଟା କଲେ । ଜୟୀ ରାଜଗୁରୁ ଏ ସମ୍ପର୍କରେ ଇଂରେଜମାନଙ୍କୁ ସାହାଯ୍ୟ କଲେ ନାହିଁ । ବରଂ ରାଜ୍ୟର ସ୍ୱାଧୀନତା ରକ୍ଷା କରିବା ଲାଗି ପ୍ରଜାମାନଙ୍କୁ ଧରି ଘୋର ସଂଗ୍ରାମରେ ଇଂରେଜମାନଙ୍କ ସହ ଲଢିଲେ । ନିଜେ ଯୁଦ୍ଧର ସେନାପତିତ୍ୱ ନେଇ ବରୁଣେଇ ପାହାଡ଼ ତଳେ ହଜାର ହଜାର ପାଇକ ସୈନ୍ୟଙ୍କୁ ଦେଶକୁ ବିଦେଶୀ କବଳରୁ ମୁକୁଳାଇବା ପାଇଁ ଅଗ୍ନିମୟୀ ଭାଷାରେ ଉଦ୍‌ବୋଧନ ଦେଇଥିଲେ ।

## ପୁରସ୍କାର

କବିତାଟି ପୂର୍ବପୁର ଖୋର୍ଦ୍ଧା ଅଞ୍ଚଳର ଗୋଟିଏ କିମ୍ବଦନ୍ତୀ ଉପରେ ପ୍ରତିଷ୍ଠିତ ।

## କଳଲଗଣ୍ଡ

ଖୋର୍ଦ୍ଧାର ଅନତି ଦୂରବର୍ତ୍ତୀ କଳଲଗଣ୍ଡ ନିକଟରେ ଗୋଟିଏ ଦୁର୍ଗ ଥିଲା । ଇଂରେଜମାନେ ସେ ଦୁର୍ଗ ଅବରୋଧ କରିବା ସମୟରେ ସେହି ଦୁର୍ଗକୁ ରକ୍ଷା କରିବା ପାଇଁ କଳାବତୀ ନାମ୍ନୀ ଜଣେ ପାଇକ-ବାଳା ଅସୀମ ସାହସର ସହିତ ଇଂରେଜମାନଙ୍କ ସହ ଲଢ଼ିଥିଲେ ଏବଂ ଶେଷରେ ସହିତ କଳଲାଗଣ୍ଡରେ ନିଜକୁ ଝାସ ଦେଇଥିଲେ । ଏହି କିମ୍ବଦନ୍ତୀରୁ କବିତାଟିର ପ୍ରାଣ ପ୍ରତିଷ୍ଠା ।

## ସୈନିକ ସମାଧି

ଅଠର କି କୋଡ଼ିଏ ବରଷର ଗୋଟିଏ ତରୁଣ ପାଇକ ସୈନ୍ୟ ଖୋର୍ଦ୍ଧା ପାଇକ ଯୁଦ୍ଧରେ ଗୋଟିଏ ଦିନ ଯୁଦ୍ଧ ଜିଣି ଏବଂ ସେ ଦିନ ଯୁଦ୍ଧରେ ଇଂରେଜମାନଙ୍କର ଜଣେ ସେନାପତିଙ୍କୁ ଖୋର୍ଦ୍ଧା ନିକଟବର୍ତ୍ତୀ ଗଙ୍ଗପଡ଼ାଠାରେ ମାରି ବିଜୟୀ ଭାବରେ ଫେରୁଥିଲା

ବେଳେ ବିପକ୍ଷ ଦଳର ଶସ୍ତ୍ରାଘାତରେ ପ୍ରାଣ ହରାଇ ଭୂଇଁରେ ଆଖିବୁଜି ପଡ଼ିଗଲେ । ସେହି ସ୍ଥାନରେ ଗୋଟିଏ ପଥର ତାଙ୍କର ସମାଧି ପରି ରଖାଯାଇଛି । ସ୍ଥାନୀୟ କମ୍ବଦନ୍ତୀ ଉପରେ କଳ୍ପନାର ରଙ୍ଗ ଦେଇ କବିତାଟି ଲେଖା ଯାଇଛି ।

## ଏ ମାଟିର ଅମର ଶହୀଦ୍

ଖୋର୍ଦ୍ଧାର ଗଜପତି ରାଜା ମୁକୁନ୍ଦ ଦେବଙ୍କର ପ୍ରଧାନ ସଚିବ ଜୟୀ ରାଜଗୁରୁ ଏ ଦେଶରେ କାହାକୁ ଅପରିଚିତ ନୁହନ୍ତି । ଖୋର୍ଦ୍ଧାର ସ୍ୱାଧୀନତା ରକ୍ଷା କରିବା ଲାଗି ଏବଂ ଜଗନ୍ନାଥ ଦେଉଳ ଇଂରେଜ-ମାନଙ୍କ ହାତକୁ ନ ଦେବା ଲାଗି ସେ ପ୍ରାଣ ମୂର୍ଚ୍ଛି ଇଂରେଜମାନଙ୍କ ସହ ଲଢ଼ିଥିଲେ । ଯୁଦ୍ଧରେ ପରାସ୍ତ ହେଲେ ମଧ୍ୟ ଆତ୍ମସମର୍ପଣ କଲେ ନାହିଁ । ଖୋର୍ଦ୍ଧା ରାଜ୍ୟରେ ତଥା ଜଗନ୍ନାଥ ମନ୍ଦିରର ସମସ୍ତ କାଗଜପତ୍ର ଇଂରେଜମାନଙ୍କୁ ଦେବାକୁ ଘୃଣାଜନକ ମନେ କଲେ । ଇଂରେଜମାନେ ଶେଷରେ ତାଙ୍କୁ ବନ୍ଦୀ କରି ଖୋର୍ଦ୍ଧାର ଗୋଟିଏ ବରଗଛରେ ଫାଶି ଦେଲେ । ଏ ଦେଶର ଜଣେ ସର୍ବଶ୍ରେଷ୍ଠ ଦେଶନାୟକ ଦେଶ ଓ ଜାତିର ସ୍ୱାଧୀନତା ପାଇଁ ଯେଉଁ ନିର୍ମମ ଫାଶି ପାଇଲେ ତାହା କମ୍ବଦନ୍ତୀ ଆକାରରେ ଏବଂ ଇତିହାସରେ ମଧ୍ୟ ଶୁଣାଯାଏ । ସେ ସମସ୍ତ କଥା ବସ୍ତୁକୁ ନେଇ କବିତାଟି ଲିଖିତ ।

## କାତର ଡାକ

ଜଣେ ଅସି ବର୍ଷର ବୃଦ୍ଧ ସେନାପତିଙ୍କୁ ଖୋର୍ଦ୍ଧାର କୌଣସି ଯୁଦ୍ଧରେ ସେନାପତିତ୍ୱ କରିବାକୁ ଆହ୍ୱାନ କରାଯାଇଛି ।

## ସୈନିକର ଅନ୍ତିମ ମାଗୁଣୀ

ଖୋର୍ଦ୍ଧା ପାଇକ ଯୁଦ୍ଧରେ ମୁମୂର୍ଷୁ ଅବସ୍ଥାରେ ବରୁଣୀ ପାହାଡ଼ ତଳେ ପଡ଼ିଥିବା ଗୋଟିଏ ସୈନିକର ମନୋଭାବକୁ ନେଇ କବିତାଟି ଲିଖିତ !

## ପାଇକଟୋକା

ଚନ୍ଦକୂଟ ପାହାଡ଼ ଓ ମହାକମା ନଦୀ ଖୋର୍ଦ୍ଧାର ଅନତି ଦୂରବର୍ତ୍ତୀ ରାମେଶ୍ୱର ଗାଁ ପାଖରେ; ପାଇକଟୋକା ସେଇଠି ପାଇକ ବିଦ୍ରୋହ ସମୟରେ ଯୁଦ୍ଧ କରିଥିବା ଅନୁମାନ ।

# ପାଇକ ବଧୂର ଉଦ୍‌ବୋଧନ

ଖୋରଧା ପାଇକ ବିଦ୍ରୋହ ସମୟରେ ଗୋଟିଏ ପାଇକ ଘରର ବୋହୂ ନିଜର ସ୍ୱାମୀକୁ ଯୁଦ୍ଧ କରିବାକୁ ଯୁଦ୍ଧ ଭୂଇଁକୁ ପଠାଇଛି —କବିତାର କଥାବସ୍ତୁ କିମ୍ବଦନ୍ତୀରୁ ଗୃହୀତ ।

## ଆହ୍ବତ

୧୮୧୭ ମସିହାରେ ଖୋରଧାର ପାଇକ ବିଦ୍ରୋହ ଓଡ଼ିଆ ଇତିହାସରେ ଗୋଟିଏ ବିଶିଷ୍ଟ ଘଟଣା—ଏହି ବିଦ୍ରୋହର ନାୟକ ଥିଲେ ବକ୍‌ସି ଜଗବନ୍ଧୁ ବିଦ୍ୟାଧର । ଇଂରେଜ ଶାସନାଧୀନରେ ତାଙ୍କର ଜାଗିର ରହାଙ୍ଗ ପିରେଇ ଚବିଶକୁଦ ୩ଟି ପ୍ରଗନା ଖାସ୍ କରାହୋଇ କର ଧାର୍ଯ୍ୟ ହେଲା । କେତେ ବର୍ଷ ପରେ ସେ ଗୁଡ଼ିକର ସତ୍ତ୍ୱ ଚାଲିଗଲା । ଏ ଘଟଣାରେ ଜଗବନ୍ଧୁ ତାହା ଫେରି ପାଇବାକୁ ଆବେଦନ କଲେ । ତାଙ୍କ ଆବେଦନ ପତ୍ର ଅଗ୍ରାହ୍ୟ ହେଲା, ଇଂରେଜ ଶାସନରେ ନାନା ଦୁର୍ନୀତି ଦେଖି ସେ ପାଇକମାନଙ୍କୁ ନେଇ ଇଂରେଜଙ୍କ ବିରୁଦ୍ଧରେ ଯୁଦ୍ଧ କଲେ । ତାଙ୍କର ଉଦ୍‌ବୋଧନାରେ ହଜାର ହଜାର ପାଇକ ସୈନ୍ୟ ସେ ଯୁଦ୍ଧ ଯଜ୍ଞରେ ଜୀବନ ଆହୁତି ଦେଲେ । ଭାରତର ଇତିହାସରେ ସେ ସମର କାହାଣୀ ଯୁଗଯୁଗ ଧରି ସ୍ୱର୍ଣ୍ଣାକ୍ଷରେ ଲିପିବଦ୍ଧ ରହିବ— ଜଗବନ୍ଧୁ ହାରିଲେ ସତ କିନ୍ତୁ ତାଙ୍କ ନେତୃତ୍ୱରେ ପାଇକ ସୈନ୍ୟମାନଙ୍କର ଦେଶର ସ୍ୱାଧୀନତା ପାଇଁ ଯେଉଁ ଯୁଦ୍ଧପାଗଳ ଉନ୍ମାଦନା ଏବଂ ଜଗବନ୍ଧୁଙ୍କର ଯେଉଁ ଦେଶ ପ୍ରୀତି—ତାହାର ଗୋଟିଏ ଜୀବନ୍ତ ଚିତ୍ର ଦେବାପାଇଁ ଏ କବିତାଟିର ପରିକଳ୍ପନା

---

# ଉତ୍ସର୍ଗ

ମୋ ଦେଶର ଶ୍ରେଷ୍ଠ ଜନନାୟକ
ଏ ଯୁଗର ଓଡ଼ିଆ ଜାତୀୟ ସାହିତ୍ୟ—
ପ୍ରାଣ-ପ୍ରତିଷ୍ଠାକାରୀ
ନବ ଉତ୍କଳର ନିର୍ମାତା,
ମୋ ଦରିଦ୍ର କବି ଜୀବନର
ପରମ ହିତୈଷୀ
ଡକ୍ଟର ହରେକୃଷ୍ଣ ମହତାବଙ୍କ
ଅମୃତହସ୍ତରେ ମୋର ମାଟିଦୀପ ଅର୍ପଣକରି
ନିଜକୁ ଧନ୍ୟ ମନେ କରୁଚି ।

# ଜୀବନ ଯେଉଁଠି ଜୀବନ ଗୃହେ

କାହିଁ ସେ ରାଇଜ କାହିଁ ସେ ଭୂଇଁ ? ଜୀବନ ଯେଉଁଠି ଜୀବନ ଗୃହେ ?
ଝଲମଲ ସିଏ ହେଉଚ କାହିଁ ପ୍ରଶାନ୍ତ ଆକାଶେ ରଙ୍ଗ ପ୍ରାପ୍ତେ
କେତେ ଦୂର ଗଲେ ପାଇବ ତାରେ କଭଳ ଗୃଳବ ସେ କେଉଁ ପଥେ
ଗଭୀର ପିପାସା ବକ୍ଷତଳେ ଆକୁଳ ଅଥୟ କରଇ ମତେ !

ସେ ଭୂଇଁର ବନ ପାହାଡ଼ ପଥ ଆକାଶ ବତାସ ସମସ୍ତରେ,
ପୂର୍ଣ୍ଣ ପ୍ରାଣର ସ୍ୱର୍ଣ୍ଣ ଆଭା ଲୀଳା କରୁଥିବ ନିରନ୍ତରେ
ହାକିମ ହୁକୁମ୍ ନଥିବ ତହିଁ ନଥିବ ଶୋଷଣ ନିଷ୍ପେଷଣ
କଳବଳେ କିଏ ଉଷ୍ମ ଲୁହ କରୁଚ ନଥିବ ସମ୍ବରଣ ।

ଲାଞ୍ଛିତ କାଏ ବୁକୁର ଜାଳା ବୁକୁତଳେ ଗୃପି ନଥିବ ରହି
ମାଟି ଗୃଳଆରେ ସୌଧ କାର ଗୃହୁଁ ତ ନଥିବ ଘୃଣା ବହି ।
କ୍ଷମତା ଓ ଧନ ଗାଦିରେ ବସି ଆହୁରି କ୍ଷମତା ଆହୁରି ଧନ—
ପାଇବାକୁ ସାରା ଜୀବନ ଧରି କରୁ ନଥିବ କେ ଅନ୍ୱେଷଣ !

କାହିଁ ସେ ରାଇଜ କାହିଁ ସେ ଭୂଇଁ ଜୀବନ ଯେଉଁଠି ଜୀବନ ଗୃହେ ?
ହାଣ ମାରି ପିଠି ହୃଦ୍ୱନ୍ଦ୍ୱ ଭେଦ ଲାଗେ ଯହିଁ ନିତ ସ୍ୱପ୍ନ ପ୍ରାପ୍ତେ ।
ସେନେହ ସେନେହ ସେନେହ ଖାଲି ସବୁରି ବୁକୁରୁ ପଡୁଚ ଝରି
ହସୁଚ ସେ ଭୂଇଁ ଚତୁର୍ଦ୍ଦିଗ ପୁନଅଁ ରାତିର ଜୋଛନା ପରି ।

ବୋହିଲେ ନୟନୁ ଟୋପିଏ ଲୁହ, ବୁକୁତଳେ କାର ଲାଗିଲେ ବ୍ୟଥା
ଆଶ୍ୱାସନାର ପୀୟୁଷ ଢାଳି ଲକ୍ଷ ଓଠ କହଇ କଥା ।
କାହିଁ ସେ ରାଇଜ କାହିଁ ସେ ଭୂଇଁ ଜୀବନ ଯେଉଁଠି ଜୀବନ ଗୃହେ
ପଡ଼ିଗଲେ ଯହିଁ ଟେକିବା ପାଇଁ ଲକ୍ଷ ହାତ ସରାଗେ ଯାଏ !

ସ୍ୱପ୍ନ ଯେଉଁଠି ଉଠଇ ଚେଇଁ କି ଅବା ବୃଜକୁଳ ପରଶ ଲଭି
ପ୍ରତି ଅନ୍ତର ସୃଜୁଚି ଯହିଁ କଳ୍ପଲୋକର କନକ ଛବି ।
ଜଟିଳ କୁଟିଳ ବସୁନ୍ଧରା ଭଙ୍ଗି ମୁଁ ତାହା ପାଏ ହେ ପାଏ
କାହିଁ ସେ ରାଇଜ କାହିଁ ସେ ଭୂଇଁ ଜୀବନ ଯେଉଁଠି ଜୀବନ ଗୃହେଁ ?

---

# ବହୁଦୂରେ

ଧରାର ମଣିଷ ରହିଅଛୁ ତୁହି ଜୀବନର ବହୁଦୂରେ
ପ୍ରାଣ ବିମୋହନ ଗନ୍ଧ ଯେଉଁଠୁ ଅବାରିତ ହୋଇ ସ୍ଫୁରେ
ତୋହର ଶକ୍ତି ତୋହର ସାଧନା
ଢାଳେ ଧରଣୀରେ ଅସୀମ ବେଦନା
ବୁଝି ତୁ ପାରୁନୁ ବୁଝି ତୁ ପାରୁନୁ
ପବନ ଚଢ଼ ପରି ତୋର ମଥା
ସେ କେଉଁ ମୂଲକେ ଘୂରେ
ଧରାର ମଣିଷ ରହିଅଛୁ ତୁହି ଜୀବନର ବହୁଦୂରେ !

ଡାକଲେ ତୋରେ ତ ଶୁଭୁନାଇଁ ଡାକ କି ନିଶା ପିଇଚୁ କହ ?
ଚଉଦିଗେ ଖାଲି ସୃଜୁଅଛୁ ମରୁ ଭୀଷଣ ଦୁର୍ବିସହ !
ପ୍ରାଣଭରା ହସ ନାଇଁ ତୋ ଅଧରେ
ଅମୃତ ନାଇଁ ତୋ' କଥା ପଦରେ
ଆଡ଼ମ୍ବର ଓ ଅହମିକା ଧରି
ଫାଟି ପଡ଼ୁଅଛୁ କହ କିପାଇଁ ?
ଅହରହ ଅହରହ
ଚଉଦିଗେ ଖାଲି ସୃଜୁଅଛୁ ମରୁ ଭୀଷଣ ଦୁର୍ବିସହ !

ହେମହର୍ମ୍ୟର କୋଳେ ସେ' ଯେ କେଉଁ ତୁଳି ତଳ୍ପରେ ଶୋଇ
କି ମଧୁ ସ୍ୱପ୍ନ ଦେଖୁଅଛୁ ତୁହି ପାଷାଣୁ କଠିନ ହୋଇ
ମଣିଷ ରକତ ଏତେ କିରେ ମିଠା
ପିଇ ପିଇ ତୋର ଭାଜୁ ନାଇଁ ଚଟା !

କରୁଚୁ ଚନ୍ଦ୍ରା ପିଇବୁ ଆହୁର
ଯେତେଦୂର ପାରୁ ଏ ମାଟି ଉପରେ
ଅତି ନିର୍ମମ ହୋଇ
ହେମନ୍ତହର୍ମ୍ମ୍ୟର କୋଳେ ଯେ ଯେ କେଉଁ ଭୁଲ ତଲ୍ପରେ ଶୋଇ !

ଆଖିଫେଇ ଚୁହଁା ଅଭାବ ଭିତରେ ସନ୍ତୁଳ ହୋଇ ଖାଲି
କାନ୍ଦୁଚି ଏଇ ଜୀର୍ଣ୍ଣ କୁଟୀରେ କାହାର ବିଧବା ନାରୀ
ଶିଶୁଟିଏ କାର ଗଣିହୁଏ ହାଡ଼
କେତେଦିନ ଅବା ଆୟୁଷ ତାହାର
ପଡ଼ଶା ଘରର କୁଳବୋହୂ ଚୁହଁା
ପେଟକୁ ମୁଠିଏ ନପାଇ କ ଭଳି
ସହରେ ସାଜନ୍ତି ଦାସୀ
ଆଖି ଫେଇ ଚୁହଁା ଅଭାବ ଭିତରେ ସନ୍ତୁଳ ହୋଇ ଖାଲି ।

ଆହୁର ତୁ ଚୁହା ବେକାର ରହିବ କେ' ତରୁଣ ଯୁବକ ଜଣେ
ଗଳେ ରସି ଦେଇ ଆଖିବୁଜିଅଛି ନିଃସ୍ୱ କୁଟୀର କଣେ
କାହା ପିଲା ଝିଲା ଭୋକ ଉପବାସ—
ସହି ନ ପାରି କେ' ଯାଇ ପରବାସ
ଫେରି ନାହିଁ ଆଉ ଫେରନାଇଁ ଆଜି
କାନ୍ଦୁଚି ତା'ର ତରୁଣୀ ଘରଜା
ପ୍ରତିଦିନ ପ୍ରତିକ୍ଷଣେ !
ଆହୁର ତୁ ଚୁହଁ ବେକାର ରହିବକେ ତରୁଣ ଯୁବକ ଜଣେ !

ଦଳ ଦଳ ଦଳ ସର୍ବହରା ଯେ ପଥେ ଘାଟେ ଚୁହଁା ଚୁହଁା
ଦୁନିଆରେ ନାହିଁ ତାଙ୍କର କଏ କରିଦେବା ପାଇଁ ଆହା !
କେଉଁଗଛ ତଳେ ହୋଟେଲ ଦୁଆରେ
ପଡ଼ିଅଛନ୍ତି ସାତ ନାରଖାରେ
ମଲେ ସେ ମରିବେ ଜୀଇଲେ ଜୀଇବେ
ନିରାଶ୍ରୟର ଚିରଦିନ ଧର
କେହି ହୁଏନାଇଁ ସାହା ।
ଦଳ ଦଳ ଦଳ ସର୍ବହରା ଯେ ପଥେ ଘାଟେ ଚୁହଁା ଚୁହଁା ।

ହସୁନାଇଁ ତଟେ ବୁଲନ୍ତି କେତେ ତରୁଣ ବାଳକ ଦଳ
ବୁକୁତଳେ ନାଇଁ ଉନ୍ମାଦନା କି ଦେହେ ନାଇଁ ତେଜବଳ !

ମୁଖମଣ୍ଡଳେ ଲାବଣ୍ୟ ନାହିଁ
ଶୁଣିଲେ କାହିଁ ତ ହୁଏ ନାହିଁ ଶୁଣି !
କାହାକୁ ନେଇ ଏ ପୃଥିବୀ ହସିବ
ଉଜ୍ଜ୍ୱଳ କରି ଗଢ଼ିବ ତାହାର
ଭବିଷ୍ୟତର ଘର
ହଣୁନାହିଁ ତତେ ବୁଲନ୍ତି କେତେ ତରୁଣ ବାଳକ ଦଳ !

ପୁଞ୍ଜି ଉପରେ ପୁଞ୍ଜି ତୋହର ଲାଗିଚୁ ବଢ଼ାଇବାରେ
ଦେଖୁନୁ ଲକ୍ଷ ଜୀବନ କଭଳ ମିୟମାଣ ଅନାହାରେ ?
ଲକ୍ଷ ଜୀବନ ମାରବ ବୋବାଳି
ତତେ କରେ ଦଏ ଅମୃତ ତାଳି ?
ବଞ୍ଚିଚୁ ତୁହି କଭଳ କହତ
ମଣିଷ ବୁକୁର ପୁଣ୍ୟ ରକତ
ପଚୁଚି କି ତୋହଠାରେ ।
ପୁଞ୍ଜି ଉପରେ ପୁଞ୍ଜି ତୋହର ଲାଗିଚୁ ବଢାଇବାରେ ।

କୋଟି ବୁକୁତଳ ହସି ଉଠିଲେରେ ଫୁଟିବ ତୋର ଯେ ହସ
ସେ କି ନୁହେଁ ତୋର କୋଟିନିଧି ପରି ଜୀବନର ମଧୁରସ ?
ତାକୁ ଛାଡଦେଇ ସାଜ ସଇତାନ
ଗାଉଚୁ ତୁ ଖାଲି ନରକର ଗାନ
ନିଜ ହାତେ ତୁହି ନିଜକୁ ହରାଇ
ଜାଣିହୁଏ ନାହିଁ ପାଉଚୁ କି ଅବା
ପ୍ରାଣଭରି ପରିତୋଷ
କୋଟି ବୁକୁତଳ ହସି ଉଠିଲେରେ ଫୁଟିବ ତୋର ଯେ ହସ ।

ଅସୀମ ଆଖିରୁ ଲୁହ ପୋଛିଦେଇ ବକ୍ଷେ ନେଏରେ ଭିଡ଼ ।
ଅସୀମ ଶୁଷ୍କ ମଳିନ ବଦନେ ଫୁଟାରେ ପ୍ରାଣର ଶିରୀ
ତୋହରି ଧରାର ତୋର ଏ ମଣିଷ
କାହିଁକି କାହିଁକି ହେଉଚୁ ତୁ ବଡ ?
ସବୁରି ମାଂସ ହାଡ଼ ତଳେ ତଳେ
ଗୋଳି ହୋଇ ଯାଆ, ସ୍ୱର୍ଗର ସୁଧା—
ପଡ଼ିବ ତୋ ପାଖେ ଛିଡ଼ି
ଅସୀମ ଆଖିରୁ ଲୁହ ପୋଛିଦେଇ ବକ୍ଷେ ନେଏରେ ଭିଡ଼ି !

———

# ସର୍ବହରା

—୧—

ସେ'ଯେ ସର୍ବହରା ସେ'ଯେ ସର୍ବହରା ।
ତାରେ ପଗୃରେ ନାହିଁ ଏଇ ନିଖିଳ ଧରା !
ତାର ଦୁର୍ବହ ଦୁର୍ଦ୍ଦଶା ବେଦନା ଧର
ସେ ତ ଗୃଳିତ ନିତ ସେ ତ ଗୃଳିତ ନିତ
ତାରେ ପାଏନା କେହି ଭଲ ହୃଦୟ ଭର !
ତା'ରେ ବୁଝେନା କେହି ତାରେ ଜାଣେନା କେହି
କେହି ଘୂରାଏ ନାଇଁ ମଥା ତାହାକୁ ନେଇ
ସେ ଯେ ସର୍ବହରା ସେଯେ ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନା ଭରା !!

—୨—

ଫୁଲ, ଫୁଟିଲେ ଅବା ତା'ର କି ଆସେ ଯାଏ ?
ସେ'ବା, କି ଶିରୀ ପାଏ ଗୃହରା ଚଇତ ବାଏ ?
ଆସୁ ସଞ୍ଜ ଧର ତାର ମୋହନ ମାୟା
ଆସୁ ସକାଳ ଯେନି ତାର ପାଟଳ ଛାୟା !
କଳ-କଣ୍ଠଟୋଳ ଗାଉ ବିହଗ ଗୀତ
ଜାଗୁ କନକ ଶିରୀ ଏଇ ମାଟିରେ ନିତ,
ତାର ବକ୍ଷତଳ ନାଇଁ ଉଲୁସି ଉଠେ
ସେ'ତ ପାଏନି କାହିଁ ହେଲେ ଖାଇବ ମୁଠେ !
ସେ'ଯେ ସର୍ବହରା ସେ' ଯେ ସର୍ବହରା !
ତାର ଜୀବନ ଖାଲି ବ୍ୟଥା ବେଦନା ଭରା !

—୩—

ତୁମ ଦୁଆରେ ଯେବେ ପାଦ ପକାଏ ଯାଇ
ମାଗେ ମୁଠିଏ ହେଲେ କେତେ କରୁଣେ ଗୁହିଁ !
ତୁମ ଚିତ୍ତ ତଳେ ନାଇଁ ଚିନ୍ତା ଛୁଏଁ
ଖାଲି ଘଉଡ଼ ଦେବା ପାଇଁ ଇଚ୍ଛା ହୁଏ

ତୁମେ ଘଉଡ଼ ଦେଲେ ସେହୁ ଦୂରେଇ ଯାଏ
ତାର ଲୋଚନୁ ଟୋପେ ଲୁହ ଗଡ଼େନି ହାଏ !
ସେ'ଯେ ସର୍ବହରା ସେ ଯେ ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନା ଭରା !

—୪—

ଏଇ ମାଟିରେ ଜନେ ହେଲେ ମଣିଷ ପରି
ସେ'ତ ଭୁଲିନ ଓଠେ ହସ ଟିକିଏ ଭରି !
ତା'ର ମନର କେଉଁ ଦୂର ଗୋପନ ପୁରେ
କେତେ ଆଘାତ ବାଜଉଠେ କରୁଣ ସୁରେ !
ସେ'ତ କହୁନ କାରେ ସେ'ତ କହେନି କା'ରେ
ସବୁ କହିବା ପାଇଁ ତାର କେ'ଅଛି ହା'ରେ ! !
କିଏ ଶୁଣିବ ତାକୁ ଅବା ହୃଦୟୁ ଭରି
କିଏ ଦେଖିବ କାହିଁ ଅବା ଭୁଲେ ତା' ତରି
ସେ'ତ ସର୍ବହରା ସେ'ତ ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନାଭରା ! !

—୫—

ତା'ର ଶୁଷ୍କ ଦେହ ତା'ର ଶୁଷ୍କ ମନ !
ତା'ର ଶିକ୍ଷା ନାହିଁ ତା'ର ଦୀକ୍ଷା ନାହିଁ
ତା'ର ଲକ୍ଷ୍ୟ ଜାଗେ ନାହିଁ ତୀକ୍ଷ୍ଣତମ !
ତା'ର ହିଂସା ଜାଗେ ନାହିଁ କାହାରି ପାଇଁ !
ତା'ରେ ରହିଛି ଘେରି ଶୋକ ଦୁଃଖ ଜରା
ସବୁ ବାଧାରେ ସେହୁ ଚିର ବାଧକା ଘରା !
ସବୁ ଦଇନ ତା'ର ଘିନ ମଥାରେ ଭରି
ସେତ ଭୁଲିଚି ଜନେ ଏକ'ଜନ୍ତୁ ପରି !
ତା'ର ଭାଗ୍ୟ ଗୋଟି ଫେରି ଆଣିବା ପାଇଁ
ତା'ର କି ଅଛି ଗତି ଏଇ ଧରାରେ ହାଇ !
ସେ'ତ ସର୍ବହରା ସେ'ତ ସର୍ବହରା
ତା'ର ଜୀବନ ଖାଲି ବ୍ୟଥା ବେଦନା ଭରା !



ସେହୁ ଆସିଛୁ କାଟି ଯେତେ ଝଞ୍ଜା ଝଡ଼
ସେତେ ଝଞ୍ଜା ବଢ଼େ ପୁଣି ପ୍ରବଳତର !
ସେହୁ ଦେଖୁଛ ଯେବେ ଟିକେ ଆଶାର ଛାଇ
ସେତେ ନଆସା ସୁଅ ଆସେ ସୁଦୂରୁ ବହି !
ସେତ ଭାଙ୍ଗି ପଡ଼ିଅଛୁ ବହୁତ ବାର
ଯେତେ ଚେଷ୍ଟା କଲେ ସେତ ପାରୁନ ଉଠି
ଖାଲି ହାହାକାର ଯାହା ହେଉଛି ସାର
ତା'ର ଭଙ୍ଗା ଦେହ ଆଉ ଭଙ୍ଗା ମନ—
ଧରି ବୁଲୁଛି ଏ ମାଟିର ସକଳ କ୍ଷଣ
ସେ'ଯେ ସର୍ବହରା ସେ'ଯେ·ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନା ଭରା !



କିଏ କାନ୍ଦୁନକି ତା'ର ବକ୍ଷତଳେ
ପ୍ରତି ରକ୍ତକଣା ସତେ କି ଜଳିବଳେ !
କିଏ କଷ୍ଟ ପଚାରଇ ସେ'କି ଯାଉନି ହୋଇ ?
ପଥେ ବୁଲିଲା ବେଳେ କୋଟି ବେଦନା ବୋହି !
ବାଣୀ ଜାଗୁନି କରେ ତାର ବକ୍ଷତଳେ
ସତେ କି ସ୍ୱପ୍ନମାନେ ଅଛୁ ଧରଣୀ ପରେ !
ତାର ବସୁଧା ପରେ ଲକ୍ଷେ ନାହିଁରେ ଥାନ
ନୁହେଁ·ସେ ଲାଗି କରେ ତାର ଆକୁଳ ପ୍ରାଣ !
ତାର ବନ୍ଧୁ ନାହିଁ ତାର ସୋଦର ନାହିଁ
ସେ'ବା କରିବ କିସ ? ଖାଲି ରହିଚି ଗୁହାଁ !
ସେତ ସର୍ବହରା ସେତ ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନା ଭରା ।



ସେ'ତ ଚିନ୍ତା ଧାରା ନୁହେଁ କବିର ଖାଲି
ସେ'ତ ଭୂମିର ଏଇ ମାଟି ଜୀବନ ନାଡ଼ି !

ସେ'ତ ଶିଳ୍ପୀ ତୂଳୀମୁନେ ଚିତ୍ର ନୁହେଁ
ସେ'ତ ଗୋଟିଏ ଧାର୍ ତୁମ ଅସୀମ ସୁଏ !
ସେ'ତ ଛନ୍ଦ ନୁହେଁ ସେ'ତ ବନ୍ଧ ନୁହେଁ
ସେ'ତ ଭାସୁଛି ତୁମ ଏଇ ସାଗର ସୁଏ !
ତୁମେ ଚାଲିଚ ଦୂରେ ତୁମ ତରଣୀ ବାହି
ତୁମ ତରଣୀ ପାଖେ ସେ ଯେ ରହିଚ ଚାହିଁ
ସେ'ତ ଉବେଇ ଟୁବେଇ ହୋଇ ଯାଉଚ ବୁଡ଼ି
ତୁମେ ଯାଉଚ କେଉଁ ଦୂର କନକ ପୁରୀ ?
ସେ'ଯେ ସର୍ବହରା ସେ'ଯେ ସର୍ବହରା
ତାର ଜୀବନ ଖାଲି ବ୍ୟଥା ବେଦନା ଭରା ?

———

# କାହାର ଏ ଦୁଇଗୋଟି ପିଲା ?

କାହାର ଏ ଦୁଇଗୋଟି ପିଲା ଖେଳୁଚନ୍ତି ଏ ସଡ଼କ ପରେ
ଚାହିଁଲି ମୁଁ ଅକସ୍ମାତେ ଯେବେ ଚକ୍ଷୁ ମୋର ଭରିଗଲା ଜଳେ,
ଖାଇବାକୁ ଅନ୍ନ ନାହିଁ ମିଳେ ହାଡ଼ ଦିଶେ ଗୋଟି ଗୋଟି ଦିହେ
କିଏ ବୁଝେ ସେମାନଙ୍କ ବ୍ୟଥା ହେପାଜତ କିଏ ଅବା ନିଏ ?

କୋଠା କୁଠି, କାଠ ଆଣି ବଣୁ ମାଆ ପିଲା ଦୁଇଟରେ ଉଡ଼ାଏ
ଦୁଧ ଟୋପେ ପାଇବେ କେଉଁଠୁ, ଘରେ ନାହିଁ କଉଡ଼ି କଡ଼ାଏ,
ପିଲା ଦୁଇ ବୁଲୁଚନ୍ତି ଏଥି ଦିହେଁ ନାହିଁ ଜୀବନ ତାଙ୍କର
ଫୁଙ୍କିଦେଲେ ଉଡ଼ିଯିବେ ପରା ନାରଖାରେ ଆସିଛନ୍ତି ବଢ଼ି

ଓଠେ ତାଙ୍କ ଫୁଟୁଥାନ୍ତା ହାସ ଖାଇପିଇ ଦିଶୁଥାନ୍ତେ ତୋରା
ବେଗେ ପେଟ ପଡ଼ିଚ ବାହାରି ଦୀପ୍ତିହୀନ ଦିଶେ ଆଖି ଡୋଳା
ଦାରିଦ୍ର୍ୟର ବିକଳାଙ୍ଗ ଛାୟା ପ୍ରତି ଅଙ୍ଗେ ଉଠେ ନୃତ୍ୟକରି
ପାଷାଣ ବି ଚାହିଁ ଦେଲେ ଥରେ କରୁଣାରେ ଉଠିବ ତରଳି

ଜନମରୁ ଅନ୍ଧକାର କୋଳେ ଆସିଚନ୍ତି ହୀନମାନେ ବଢ଼ି
ସେ ଅନ୍ଧାର ଝଡ଼ିଯିବ ଦିନେ ଏଇ ବେନି ଜୀବନର କଳି !
ମୋ ମାଟିର ଏ ଦୁଇଟି ପିଲା କେ କହିବ ସ୍ୱର୍ଣ୍ଣଦୀପ ପରି
ନ ଜଳିବେ ଦିନେ ମୋ ମାଟିରେ ଚତୁର୍ଦ୍ଦିଗେ ଆଲୋକ ବିତରି

କେ, କହିବ ଶୁଣା ତାନ ଏଠୁ ନ ଫୁଟିବ ମୁଗ୍‌ଧ କରି ଧରା
କେ ନ ଜାଣେ ! ଏମାନଙ୍କଠାରେ କି ସମ୍ପଦ ରହିଥିବ ପରା !
ଦେଶ ମୋର ଗୃହିଁ। ଭଲ କରି ଆସ ଆଜ ଏମାନଙ୍କ ପାଖେ
ଏମାନଙ୍କ ଅନ୍ତର ବେଦନା ଦୁଃସହ କି ତଳେ ନାହିଁ ଲଗେ ?

ଯୁାଙ୍କ ଓଠେ ଫୁଟାଅ ହେ ହାସ ପ୍ରାଣେ ଦିଅ ନବ ତେଜ ବଳ
କଲତାନ କରି କରି ବର୍ଷେ ଛୁଟି ଯୁାଙ୍କ ଜୀବନ ନିର୍ଝର
ବିଳାସ ଓ ଐଶ୍ୱର୍ଯ୍ୟ ଭିତରେ କେତେ କାହିଁ ଅର୍ଥ ଖର୍ଚ୍ଚ ହୁଏ
ଏମାନଙ୍କୁ ତୋକେ ଦେବା ପାଇଁ ପଛଘୁଞ୍ଚା ଦେବା ଠିକ୍ ନୁହେଁ;

ଦେଶ ମୋର ଗର୍ବ କର ତମେ ସଭ୍ୟତାର ପତାକା ଉଡ଼ାଇ
ତୁମ ସେଇ ସଭ୍ୟତା ଭିତରେ ଏଇମାନେ ଯାଆନ୍ତି କି ନାଇଁ ?
ଅନାହାରେ ଜୀବନର ଫୁଲ କେତେ ଆହା ମରି ମରି ଯାଏ
ଆଖି ମୋର ଭରି ଆସେ ଜଳେ ଏମାନଙ୍କୁ ଯେବେ ସ୍ମରୁଥାଏ ।

———

## କର ତାରେ ଆପଣାର !

କରନା ତାହାରେ ଦୁର୍ ଦୁର୍ ମାର୍ ମାର୍,
ସେ ଯେ·ଧରଣୀର ଗୋଟିଏ ଅଶ୍ରୁଧାର !
କେହି ଜଣେ·ତା'ର ନାଇଁ ଆପଣାର
ବୁଝିବାକୁ ଲବେ ବେଦନାର ଭାର
ଶତ ବେଦନାର କଷାଘାତେ ତାର
    ଭାଙ୍ଗଯାଏ ମେରୁଦାଣ୍ଡ
କରନା ତାହାରେ ଦୁର୍ ଦୁର୍ ମାର୍ ମାର୍ !

ସଭିଏ କାହିଁକି କଠୁର ଗୃହାଣୀ ତାଳ
କର୍ମମେ ତା'ରେ ଦେଉଅଛ ଏତେ ଗାଳ !
ସେ' କଏ ମାଟିର ନୁହେଁ କୋଳ ସଙ୍ଗାଳ ?
ରହିବାକୁ ସେ କି ନୁହେଁ ଏଥି ଅଧିକାରୀ ?
ଏଇ ପୃଥିବୀରେ ତୁମରି ପରି ସେ
    ରକ୍ତ ମାଉଁସ-ଧାରୀ ।

ରୁଗ୍ଣ ପଙ୍ଗୁ ତା' ଦେହର ତଳେ ତଳେ
ମୁଗ୍ଧ ମଧୁର ଅନ୍ତରଟିଏ ଟଳେ
କାଢ ଉଠାଇ ସେଇ ଅନ୍ତର
ନୟନୁ ବୁହାଇ ଲୁହ ଝରଝର
ମଣିଷଠୁ କଣ ମଣିଷ ଏଭଳ
ଭର୍ତ୍ସନା ଆଶା-କରେ ?
ରୁଗ୍ଣ ପଙ୍ଗୁ ତା ଦେହର ତଳେ ତଳେ
ମୁଗ୍ଧ ମଧୁର ଅନ୍ତରଟିଏ ଟଳେ !

ହେଉ ସେ ରୁଗ୍ଣ ହେଉ ସେ ପଙ୍ଗୁ
ମିଛୁ ତା' ମାଂସ ହାଡ଼
ସେ ମିଳା ମାଉଁସୁ ଝର ପଡ଼ୁ ପୋକ
କର ତାରେ ନାରଖାର
ଶତ ଦାରିଦ୍ର୍ୟ ଅଭାବ ଭିତରେ
ତରଣୀ ତାହାର ଗୃଲୁ କଲବଲେ
ତଥାପି ତାହାଠି ମଣିଷ ଅଛିରେ
କର ତାରେ ଆପଣାର !
ହେଉ ସେ ରୁଗ୍ଣ ହେଉ ସେ ପଙ୍ଗୁ
ମିଛୁ ତା' ମାଂସ ହାଡ଼ ।

---

## ଛତର-ଖିଆ

ଛତର ଖାଇ ଖାଇ ଛତରଖିଆ ତାର ନାଆଁ
ନାଇଁ ତା' ଜାତ ପତ ନାଇଁ ତା' ଜମିବାଡ଼ ଗାଆଁ
ଚିରିଣ୍ଡା କନା ଖାଲ ଗୁଡ଼ାଇ ହୋଇ ଥାଏ ଦେହେ
କରିବାପାଇଁ ଆହା ତାହାର ହୋଇ ନାଇଁ କଏ !

କନାର ବୁଜୁଲି ସେ କାଖରେ ଥାଏ ଝଣ୍ଡ ଯାକ
ଭଙ୍ଗା ଟିଣ ଟିନା ହାତରେ ଧରି ଯାଏ ମାଗି ।
କାହାର ପିଣ୍ଡାରେ ଅବା କାହା ଗଛତଳେ ଶୁଏ
ଉପାସେ କେବେ ରହେ କାହାଠୁ ମାଗି ଅବା ଖାଏ ।

ମୁଣ୍ଡବାଳ ତା'ର ଉଡ଼ୁଥାଏ ଫୁରୁଫୁରୁ
ଗୋଟିଏ ପ୍ରେତପରି ଦିଶୁ ସେ ଥାଏ ଅବା ଦୂରୁ ?
କେଉଁଠି ନଳା ତଳେ ଅଇଁଠା ଭାତ ଥିଲେ ପଡ଼ି
ଗୋଟାଇ ଖାଉଥାଏ, ତା' ବ୍ୟଥା କିଏ ପାରେ କଳି ?

ନେହୁରା ହୋଇ କାରେ ମାଗଇ ଟଙ୍କା କନା ଟିକେ
ସକାଳୁ ସଞ୍ଜ ଯେ' ବୁଲୁ ସେ ଥାଏ କେତେ ଦିଗେ ।
ରାସ୍ତା କଡ଼ ଧୂଳି ଲୋପ ଓ ଖଙ୍କାରେ କାହିଁ
ଶୋଇ ସେ ପଡ଼ୁଥାଏ, ତାହାର ଗାଁ ଘର ନାହିଁ !

ତା' ଦେହ ଭଣ ଭଣ ନଇଁଣ ଗନ୍ଧାଉ ଥାଏ
ସବୁଠୁ ଛୁଆଁକର ନମୁନ ଧରଣୀରେ ପାଏ ।
ଛତର ଖାଇ ଖାଇ ଛତରଖାଈ ତା'ର ନାଆଁ
ନାଇଁ ତା' ଜାତିପତି ନାଇଁ ତା' ଜମିବାଡ଼ି ଗାଆଁ ।

ଭଗିନୀ ବୋଲି ତା'ରେ କିଏ ସେ ଡାକନାଇଁ ଭଲେ
ମାଉସୀ ମାଆ ଡାକ ଶୁଣିନ ଲବେ ଧରଣୀରେ !
କାହାର କଣ୍ଠୁ ସେ ସେନେହ ବୋଳା ମଧୁଭାଷା
ଶୁଣିନ, ଶୁଣିବାକୁ କଣ୍ଠେ ଜାଗିଥିବ ଆଶା ।

'ପ୍ରାଣର ପ୍ରିୟା ମୋ'ର' ଶୁଣିନ ଏଇ ବାଣୀ ବାରେ
ଏ ଭଳି ବାସନା ତା କଳ୍ପନାର ପର ପାରେ ।
ଏ ଯାଏଁ ଭରମେ ସେ ହୋଇନ କା'ର ଖୁଡ଼ି ନାନୀ
ଛତର ଖାଇ ବୋଲି କୁହା ସେ ହୁଏ ଦବା-ଯାମୀ ।

ପୃଥିବୀ ଉପରେ ସେ ତ୍ୟକ୍ତ ପ୍ରାଣୀଟିଏ ପରି
ବୁଲିଚି, ଦିନପରେ ଦିନ ଯେ ଯାଉଅଛି ଗଡ଼ି
ଜଟିଳ ପ୍ରଶ୍ନ ଯେ ଏଇଠି ଜାଗେ ବୁକୁତଳେ
ନ ମରି ବଞ୍ଚିଚ କାହିଁକି ଏତେ କଳବଳେ ?

ବରଂ ସେ ମରିଗଲେ ଜଗତେ ପାଇଯିବ ଝାହି
ତା'ଭଳି ଜୀବନରେ ମୂଲ୍ୟ ଲେଲେ ହେଲେ ନାହିଁ ।
କି ଭଳି ମରିଯାଉ ଏଭଳି ବଞ୍ଚିରଲା ବେଳେ
କି ଭଳି ବଞ୍ଚିବ କେହିତ ବଞ୍ଚିରନ ହେଲେ ?

କାହାର ଜୀବନର ମୂଲ୍ୟ ନାହିଁ ମତେ କହ !
ହେଉ ସେ ବ୍ୟଥାମୟ ହେଉ ସେ ଯେତେ ଦୁରୁବହ ।
ଜୀବନ ଯେତେ ହେଉ ଅସୀମ ଲାଞ୍ଛନା ଭରା
ଅଳଆଗଦା ପର ଫିଙ୍ଗିଦେଉ ତାରେ ଧରା ।
ତଥାପି ଜୀବନ ସେ ତହିଁରେ ମିଠା ଅଛି ଭରି
ପାରିବ ପାରିବ ସେ ଧରଣୀ ଆମୋଦିତ କରି !!

ତା' ଓଠେ ଭାଷା ଅଛି, ସେ ଭାଷା ଶୁଣେନି କେ' କାନେ
ବୁକେ ତା ଆଶା ଜାଗେ ପରଶି ପାଉନି କା' ପ୍ରାଣେ ।
ଅଛି ତା' ଅନ୍ତର ଫୁଲର ପରିମଳ ପରି
ପୃଥକ ରହିଚି ସେ ନ ଯାଇପାରି ସଞ୍ଚରି !
ଅଛି ତା ଗୃହାଣୀରେ ଜୀବନଭରା ମଧୁ ଛରି
ଅସୀମ ଅବସାଦେ ପଡ଼ିଚି ଚିରକାଳ ଲାଗି ।

ସେନେହ ଉତ୍ସ ଯେ ରୁଦ୍ଧ ତା' ମରମ ତଳେ
ବହି ସେ ଯିବା ପାଇଁ ପାଉନି ପଥ ଅବରଳେ ।
ଜନନୀ ହୋଇ କୋଳେ ଧରିବା ପାଇଁ ଏକ ପୁଅ
ଶୁଷ୍କ ନୟନେ ତା' ଜାଗୁନି କେତେବାର ଲୁହ ?

ହୃଦୟ ଦେଇକାରେ ସେନେହେ ବରି ନେବା ପାଇଁ
ଖୋଜୁଚି ବକ୍ଷ ତା' କାହାରେ ଲଭେ ପାଉ ନାହିଁ ।
କୁଟୀରେ ରହି କା'ର କରିବା ପାଇଁ ଜନସେବା
ଲୋଡ଼ିଲେ ହେଲେ ତାକୁ ସୁଯୋଗ ଦେଉଅଛି କେ'ବା ?

---

# ଫକୀର ଜେନା

ବଞ୍ଚିଚି ଫକୀର ଜେନା ତଥାପି ବଞ୍ଚିଚି
ତା' ଦରିଦ୍ର ଜୀବନର ଇତିହାସ ଧରି ।
ଘରେ ତାର କିଏ ?
ଶୂନ୍ୟ ଘର, କେହି ନାହିଁ କେହିନାହିଁ—
ଜଣେ ସୁଦ୍ଧା କେହି ନାହିଁ

ତୋରାଣି ଟିକିଏ ଘରେ ବାଢ଼ିଦେବା ପାଇଁ !
ଫେରିଲେ ସେ ମୂଲ ଲାଗି
ଘେରେ ଯେବେ ହେଉଥାଏ ଆଉଟୁ ପାଉଟୁ
ଶୋଷେ ଯେବେ ହଂସା ତାର ଯାଉଥାଏ ଉଡ଼ି
କ୍ଷୁଦ୍ର ତାର ଦରିଦ୍ର କୁଟୀରେ
ବସିଯାଏ ଥକାମାରି କେତେବେଳଯାଏଁ
ଆଖିରୁ ଦି'ଧାର ଲୁହ ଝରି ପଡ଼େ
ବାକଲେ ମଉନେ ।

ଅଖିତର କେତେ ସ୍ମୃତି ଆଖି ଆଗେ ନାଚି ଯାଏ
ଗୋଟି ଗୋଟି ହୋଇ ।
ସବୁଥିଲା ତାର—
ପୁଅ ଥିଲା, ଝିଅ ଥିଲା,
ଥିଲା ତାର ରୂପବତୀ ଗୁଣବତୀ ଗୋଟିଏ ଘରଣୀ ।
ପୁଅ ତାର ?
ଭେଣ୍ଡାପୁଅ, ବୋଲଦେଲା ପରି ବାହା
କରି କରି ଆସୁଥିଲା ପାଇଟି ପତର ।
ଝିଅ ତାର ?
ଆସନ୍ତା ଏ ମଗୁଣିରେ ହୋଇଥାନ୍ତା ବାହା ।
ତାର ସ୍ତ୍ରୀ ?
ମୂଲ ଲାଗି ଯେତେବେଳେ କ୍ଳାନ୍ତ ପଦେ
ଫେରି ଆସେ ଗୃହେ
ଜାଉ, କାଞ୍ଜି, ଭାତ ଓ ତୋରାଣୀ
ବାଢ଼ିଦିଏ ସହାସେ ଆଦରେ
ଦିନକର ସବୁକ୍ଳାନ୍ତି, ଅବସାଦ
ଅଭାବର ଗୁରୁ ନିଷ୍ପେଷଣ
ଭୁଲିଯାଏ ନିମିଷକେ ସେ ଫକୀରା ଜେନା ।
ସବୁ ଦୁଃଖ ଦାରିଦ୍ର୍ୟ ଭିତରେ
ତାର ଏଇ ମଧୁର ସଂସାର
ସାତ ସରଗରୁ ବଳି ଥିଲା ଯେହ୍ନେ ଜୀବନର ପ୍ରିୟ ।
ଅଭାବ ଦୈନ୍ୟରେ ଯେବେ
ଯାଉଥିଲା ଝାଉଁଳି ତା' ଗୋଟିକ ଅନ୍ତର
ଏଇ—ଏଇ—ସଂସାରଟି ଦେଉଥିଲା ଯେହ୍ନେ ତାରେ
ସଞ୍ଜିବନୀ ଧାରା—

ସେ ବରଷ ଘରଜାଟି ବୁଜ ଦେଲା ଆଖି
ହେଲା ଯେବେ ସନ୍ନିପାତ ।
କେତେ କାନ୍ଦୁଁ କରବ ସେ ଓଷଦ ପତର
ଏତେ ବା ପଇସା କାହିଁ ?
ଦେବାପାଇଁ ପଥି ବା ପାଚନ ;
ଛ'ମାସ ନ ଯାଉଁ
ପୁଅପର ପୁଅ ତାର
ଧନକର ହଇଜାରେ
ଶୂନ୍ୟ କର ଦରିଦ୍ର ସଂସାର ଗଲା ଆର-ପାରେ !
ସମ୍ବଳ କାହିଁ ବା ତାର
କରିବାକୁ ତୁରନ୍ତ ଚିକିତ୍ସା ?
ସେଥର ବସନ୍ତ ହେଲା
ଝିଅଟି ତା' କଲବଲ ହୋଇ
ଗୁରିଦିନେ ବୁଜିଦେଲା ଆଖି !

ପୃଥିବୀ ଗୁଳିଚ
ତା'ଭିତରେ ଗୁଳିଚ ବି ଏ ଫକୀର ଜେନା
ଆଖି ଲୁହ ଆଖିରେ ତା' ମରି ମରି ଯାଏ
ବୁକୁର ଅନନ୍ତ ବ୍ୟଥା ବୁକୁତଳେ ଥାଏ
ଯେଉଁଲେ ସ୍ତୂପୀକୃତ ହୋଇ ।
ମନେ ପଡ଼େ କେବେ ପୁଅ
ମନେ ପଡ଼େ କେବେ ବା ଘରଜା,
ସମସ୍ତେ ତ ଗଲେ ଗୁଳି ଗୋଟି ଗୋଟି ହୋଇ
ରହିଛି ଏ ଭଗ୍ନ ଗୁଳୀ ରହିଚ ଏ କାନ୍ଥ ବାଡ଼
ରହିଚ ଏ ମାଟି ।
ଏହାର ଭିତରେ ଯେବେ ବକ୍ଷ ତାର
ନଦାରୁଣ ଆଘାତରେ ଯାଏ ଫାଟି ଫାଟି
କିଏ ବୁଝେ ? କିଏ ଜାଣେ ? କିଏ ଆସେ
ଦେବାପାଇଁ ପ୍ରବୋଧନା ବାଣୀ !
ସୁଦୂର ପଲ୍ଲୀର ସେ ଯେ
ଅବଜ୍ଞାନ ପ୍ରାଣୀ !

ଆଖିକୁ ଦିଶୁନି ତାର କାନକୁ ଶୁଭୁନି
ଦେହେ ଖାଲି କଣ୍ଟା ଅଛି
ବୁକୁତଳେ ଅଛି ତାର
ବେଦନାର ଇତିହାସ
ଚିର ଅଶ୍ରୁମୟ ।
ତଥାପି ଜୀବନ ତାର
ବହି କି ବୈଚିତ୍ର୍ୟ ଭାର
କେଉଁ ମହା ବିଧାତାର
ଖଣାତାରେ ଥିର
ହୁଏ ଚଞ୍ଚଳ ଅଥୟ ?

---

## ନିରନ୍ନ

ଯିଏ ଯହିଁ ଚାଲିଗଲ ଆପଣା କୁଟୀରେ ନିରନ୍ନ ଏ ହତଭାଗା ଯିବ କହ କାହିଁ
ଭଗ୍ନମାଡ ହୋଇ ସେହି ବୁଲଇକି ଏଥି କେହିଜଣେ ଆପଣାର ହୋଇ ତାର ନାହିଁ
ଶିରେ ରୁକ୍ଷ କେଶରାଶି, ଦେହେ ଛିନ୍ନବାସ, ଓଠେ ଦୈନ୍ୟ ବାଣୀ
ଦିଶେ ଜୀର୍ଣ୍ଣ ଅଙ୍ଗଯଷ୍ଟି, ଧରଣୀର ମାନହୀନ ଅବଜ୍ଞାତ ପ୍ରାଣୀ
ସୀମାହୀନ ଏ ଯେ ମହା ସୃଷ୍ଟି ତଳେ ତଳେ
ଅବସାଦେ କୋଟିଲୁହ ବିନ୍ଦୁ ଯେବେ ଝରେ
କହିବାକୁ ଫିଟାଇ ମରମ
କିଏ ଅଛି ଆପଣାର ଜନ ?
ବୁକୁ ବ୍ୟଥା ବୁକୁତଳେ
ଚକ୍ଷୁ ଲୁହ ଚକ୍ଷେ ମରେ
ବିଶାଳ ଏ ପଥେ
ଚାଲେ ଅବିରତେ
ଦିନରାତି
ନାହିଁ ସାଥି !

ସେ ବରଷ ଖରଜାଟି ବୁଜ ଦେଲ୍ ଆଖି
ହେଲ୍ ଯେବେ ସନ୍ନିପାତ ।
କେତେ କାହୁଁ କରିବ ସେ ଔଷଦ ପତର
ଏତେ ବା ପଇସା କାହିଁ ?
ଦେବାପାଇଁ ପଥି ବା ପାଚନ ;
ଛ’ମାସ ନ ଯାଉଁ
ପୁଅପର ପୁଅ ତାର
ଦାନକର ହଇଜାରେ
ଶୂନ୍ୟ କରି ଦରିଦ୍ର ସଂସାର ଗଲ୍ ଆର-ପାରେ !
ସମ୍ବଳ କାହିଁ ବା ତାର
କରିବାକୁ ତୁରନ୍ତ ଚିକିତ୍ସା ?
ସେଥର ବସନ୍ତ ହେଲ୍
ଝିଅଟି ତା’ କଲବଲ ହୋଇ
ଗୁରିଦନେ ବୁଜଦେଲ୍ ଆଖି !

ପୃଥିବୀ ଗୁଲଚ
ତା’ଭିତରେ ଗୁଲଚ ବି ଏ ଫକୀର୍ ଜେନା
ଆଖି ଲୁହ ଆଖିରେ ତା’ ମରି ମରି ଯାଏ
ବୁକୁର ଅନନ୍ତ ବ୍ୟଥା ବୁକୁତଳେ ଥାଏ
ଯେହ୍ନେ ସ୍ତୂପୀକୃତ ହୋଇ ।
ମନେ ପଡ଼େ କେବେ ପୁଅ
ମନେ ପଡ଼େ କେବେ ବା ଖରଜା,
ସମସ୍ତେ ତ ଗଲେ ଗୁଲ ଗୋଟି ଗୋଟି ହୋଇ
ରହିଛୁ ଏ ଭଗ୍ନ ଗୁଳୀ ରହିଚ ଏ କାନ୍ଥ ବାଡ଼
ରହିଚ ଏ ମାଟି ।
ଏହାର ଭିତରେ ଯେବେ ବକ୍ଷ ତାର
ନଦାରୁଣ ଆଘାତରେ ଯାଏ ଫାଟି ଫାଟି
କିଏ ବୁଝେ ? କିଏ ଜାଣେ ? କିଏ ଆସେ
ଦେବାପାଇଁ ପ୍ରବୋଧନା ବାଣୀ !
ସୁଦୁର ପଲ୍ଲୀର ସେ ଯେ
ଅବଜ୍ଞାନ ପ୍ରାଣୀ !

ଆଖିକୁ ଦିଶୁନି ତାର କାନକୁ ଶୁଭୁନି
ଦେହେ ଖାଲି କଣ୍ଠା ଅଛି
ବୁକୁତଳେ ଅଛି ତାର
ବେଦନାର ଇତିହାସ
ଚିର ଅଶ୍ରୁମୟ ।
ତଥାପି ଜୀବନ ତାର
ବହି କି ବୈଚିତ୍ର୍ୟ ଭାର
କେଉଁ ମହା ବିଧାତାର
ବୀଣାତାରେ ଥିର
ହୁଏ ଚଞ୍ଚଳ ଅଥୟ ?

---

## ନିରନ୍ନ

ଯିଏ ଯହିଁ ଚାଲିଗଲା ଆପଣା କୁଟୀରେ ନିରନ୍ନ ଏ ହତଭାଗା ଯିବ କହ କାହିଁ
ଭଗ୍ନମୀତ ହୋଇ ସେହୁ ବୁଲଇକି ଏଥି କେହିଜଣେ ଆପଣାର ହୋଇ ତାର ନାହିଁ
ଶିରେ ରୁକ୍ଷ କେଶରାଶି, ଦେହେ ଛିନ୍ନବାସ, ଓଠେ ଦୈନ୍ୟ ବାଣୀ
ଦିଶେ ଜୀର୍ଣ୍ଣ ଅଙ୍ଗଯଷ୍ଟି, ଧରଣୀର ମାନହୀନ ଅବଜ୍ଞାତ ପ୍ରାଣୀ
ସୀମାହୀନ ଏ ଯେ ମହା ସୃଷ୍ଟି ତଳେ ତଳେ
ଅବସାଦେ କୋଟିଲୁହ ବିନ୍ଦୁ ଯେବେ ଝରେ
କହିବାକୁ ଫିଟାଇ ମରମ
କିଏ ଅଛି ଆପଣାର ଜନ ?
ବୁକୁ ବ୍ୟଥା ବୁକୁତଳେ
ଚକ୍ଷୁ ଲୁହ ଚକ୍ଷେ ମରେ
ବିଶାଳ ଏ ପଥେ
ଚାଲେ ଅବିରତେ
ଦିନରାତି
ନାହିଁ ସାଥି !

ନାହିଁ ତା' ଆକାଶସ୍ପର୍ଶୀ କନକ ସଉଧ ନାହିଁ ତା ଉଆସଭରି ଧନ-ଦଉଲତ
ନାହିଁ ତା' ଉଦ୍ୟାନ, ନାହିଁ କେଳି ସରୋବର ରାଜହଂସ କ୍ରୀଡ଼ା ଯହିଁରେ ଅବିରତ ।
ଆଡ଼ମ୍ବର ଅହମିକା ଶାସନର ରାଜଦଣ୍ଡ ନାହିଁ ତାର ନାହିଁ
ତା' ବ୍ୟଥିତ ବୁକୁତଳ ଏ ମଣିଷ ସମାଜରେ ମାନପତ୍ର ପାଇଁ
ଥୋଇନାହିଁ ଶତଦାବୀ ଅଭିମାନ ବୋଲି
ଦିନେହେଲେ ଚାଳି କେବେ ତା' ରକ୍ତିମ ଡୋଳା
ନୀରବ ଇଙ୍ଗିତେ କାହା ପ୍ରାଣେ
ଦେଇନାହିଁ ବ୍ୟଥାହେଲେ ଧାନେ
ନିଜର ଗୌରବ ଯାହା
କହିବାକୁ କାହିଁ ରାହା ?
ଦରିଦ୍ର କାଙ୍ଗାଳ
କିବା ଅଛି ତାର ?
ଦୁଇଧାର
ଲୁହତାର !

ଧରଣୀର ପଥେ ପଥେ ବସିଅଛି ଆନନ୍ଦ ବଜାର ଲାଗିଅଛି ନୃତ୍ୟ ଗୀତନାଟ
କିଏ ଚାଲେ ବକ୍ଷ ଟେକି ମତ୍ତ ବଇଭବେ କାହା ଶିରେ ବନ୍ଧା ହୁଏ ନିତ ଜୟପାଟ
ଏକଚ୍ଛତ୍ର ସମ୍ରାଟର ଆସନ ପାଇଁ କି ଧରଣୀର ମହା ବକ୍ଷପରେ
କିଏ କେତେ ଲୋଡ଼ିବସେ ଅଭିଯାନ ପରେ ଶତ ଅଭିଯାନ କରେ
କେତେ ଆଶା ଅଭିଳାଷ ସ୍ୱପ୍ନ ସାଧନାର
ମୁଞ୍ଜରି ଉଠଇ କାହା ବକ୍ଷେ ବାର ବାର
କିଏ ଚାହେଁ ଧନଜନ ଜ୍ଞାନ
କିଏ ଚାହେ କ୍ଷମତା ସମ୍ମାନ
ନିରନ୍ନ ଦରିଦ୍ର ଏଇ
ବିଶ୍ୱେ ତାର ନାହିଁ କେହି
ତାର ବକ୍ଷ ପୁଟେ
ଖାଲି ଯେହ୍ନେ ଫୁଟେ
ମୁଠେ ଭାତ !
ମୁଁ ଅନାଥ !

ହାତକେ ଖର୍ପର ଧରି ଆନ ହାତ ଶୂଳମାଟେ ଦଅବାବୁ ଦଅଗଣ୍ଡେ ଭାତ ମଟେ
ଘରୁ ଘରେ କେତେ ସ୍ଥାନମାନେ ପାଦଶୂଳ ନିଶ୍ୱାସ ନୟନେ ଡାକେ ବିଶ୍ୱରାଜପଥେ !
ଆକାଶ ଯାଏନି ଫାଟି ପାଦତଳେ ବସୁନ୍ଧରା ଲସିଯାଏ ନାହିଁ
ସୂର୍ଯ୍ୟ ଚନ୍ଦ୍ର ଗ୍ରହ ତାରା କକ୍ଷଭ୍ରଷ୍ଟ ନୋହିଁ କେହ୍ନେ ରହିଚନ୍ତି ଚାହିଁ !
ଅନନ୍ତ ବୁଭୁକ୍ଷା କେହ୍ନେ ଶିର ତାର ଟେକି
ସେ ଖର୍ପର ପ୍ରତି ଅଣୁ ପରମାଣୁ ଖୋଳି
ସୃଷ୍ଟି ପ୍ରତିରନ୍ଧ୍ରେ ଚାହିଁ ଡାକେ
ଦୟା କଣ ନାହିଁ ତୁମ୍ଭ ପାଖେ ?
ବିପୁଳ ସୁନ୍ଦର ସୃଷ୍ଟି
ଗୃହେଁ ତାଳ ହୀନ ଦୃଷ୍ଟି
କା' ଅନ୍ତର ତଳ
ହୁଏନି ସଜଳ
ହାହାକାର
ହୁଏ ସାର !

ଅଭାବ ଓ ଅନାହାର ପୀଡ଼ନର ଭରେ ଅନନ୍ତ ସନ୍ତାପ କୋଳେ ସେ ଯେ ଦିନଯାପେ
ଦିନଯାଏ ଋତୁ ଆସେ ଆସେ ବର୍ଷମାସ,ତା'ବେଦନା ଘୂଞ୍ଚେନାହିଁ କାହା ଅଭିଶାପେ
ତା'ପାଇଁ ଫୁଟେନି ଫୁଲ ତା'ପାଇଁ କଣେଶୀରବଧୂ ଜାଳେନି ଜାଗର
ତାପାଇଁ ବହେନି ବାଆ, ତାହାପାଇଁ ଊର୍ମି ଟେକି_ନାଚେନି ସାଗର !
ଯହିଁ ସେ ପକାଏ ତାର ଦୃଷ୍ଟି ବାର ବାର
ଫୁଟେ ତହିଁ ବେଦନାର କୋଟି ଅଶ୍ରୁଧାର
ଅନ୍ଧକାର କୋଳେ ଥରି ଥରି
ଗୃଲେ ତା'ର ଜୀବନର ତରୀ
କାହିଁକି ଏ ଅସମତା ?
କାହିଁକି ଏ ନିଷ୍ଠୁରତା ?
ଏ ଯେ ଅତ୍ୟାଚାର
ନୁହେଁ ସହିବାର
ମନୁଷ୍ୟର
ଚରାଚର !

ଯେତେବେଳେ ନିଃସହାୟ ନିରନ୍ନ କାଙ୍ଗାଳ ମଣିଷ କାନ୍ଦୁଚି ତା'ର ବୁକୁ ତଳେତଳେ
ବର୍ଷ ମାସ ଦିନ ଧରି ତାହାରି ଭିତରୁ ମଣିଷ ଦିଅଇ ଡାକ ଏଇ ମଣିଷରେ
କୋଟି ବନ୍ଧୁ ଲୋକଙ୍କ ଆପ୍ଲୁତ କରି ଧରଣୀର ପ୍ରତି ଅନୁଭୂତି
ମଣିଷର ପାଦତଳେ ମଣିଷ ଡାକଇ କେତେ ନମ୍ର ହୋଇ ଅଛି !
ଆଖି ଫେଇ ହେ ପୃଥିବୀ ! ଗୃହଁ ଥରେ ଗୃହଁ
ସେ ଯେ ତୋର ଅନ୍ତରର ଅନୁଭୂତି ମନ୍ତ୍ର—
ଗୋଟିଏ ନିରନ୍ନ ଜୀବ, ସେ ଯେ—
ଲୋତ୍ତେ, ତୋହରି ଅନ୍ତର ଶେଯ
ପଡ଼ିବାକୁ ସୁଖେ ତଳ
କହିବାକୁ ବକ୍ଷ ଭରି
ଅନ୍ତର ବେଦନା
କରନାହିଁ ମନା
ସେ ଯେ ତୋର
କର କୋଳ !

———

# ଠିଆ ହେଲା

ଅକସ୍ମାତେ ମୋ ସମ୍ମୁଖେ ହେଲା, ସମ୍ମୁଖେ ହେଲା ଠିଆ
କେଉଁ କୁଟୀରର ସଂଖାଳ ସେ ଯେ ଗୋଟିଏ ନିଃସ୍ୱ ଝିଆ !
ବାର ବରଷର ବାଳିକାଟିଏ ସେ ପଞ୍ଜରା ହାଡ଼ ଦିଶେ
ଆଣ୍ଠୁ ଲୁଚୁନି ଚିରା କନାଟିକୁ ଭୂଷଣ କରିଚି କି ସେ ?
ହାତରେ ଧରିଚି ଭଙ୍ଗା ଝୋଟକେଇ ଧାନ ଗୋଟାଇବା ପାଇଁ
ଧାନର ଶିଂଘା କେତୋଟି ତହିଁରେ ପଡ଼ିଚି ଅଥବା ନାହିଁ !
ସମ୍ମୁଖେ ମୋର ଠିଆ ହେଲା ଆସି ନ କହି ପଦଏ କଥା
ଉଷ୍ମଲୋତକ ଓଦା କରୁଥାଏ ନିଃସ୍ୱ ତା' ଆଖିପତା
ହାତର ପିଠିରେ ଲୁହପୋଛୁ ଦେଇ ଖାଲି ରହିଥାଏ ଗୃହଁ
'କିଏ ଭୁଲି ମାଆ କାହାଘର ଝିଅ କାନ୍ଦୁଚୁ କାହିଁପାଇଁ ?'

ପଚାରିଲି ତାରେ, ଉତ୍ତରିଲା, 'ମୁଁ ଲୋକା ତନ୍ତୀର ଝିଅ
ବିଦେଶେ ମୋହର ମରିଅଛି ବାଆ ହେଲାଣି ବରଷ ନଅ ।
ବୋଉ ପଠେଇଛି ଯା' ତା ବିଲରୁ ଧାନ ଗଣ୍ଡିଏ ନେଲେ
ମକଚି ଖାଇବୁ, ଘରେ କିଛି ନାହିଁ କଟିପିବ ହେଲେ ବେଳେ ।'
ଦେଖିଅଛି ମୁହିଁ ଲୋକା ତନ୍ତୀକି ବଡ଼ ଉତ୍ତମ ଲୋକ
ଦରିଦ୍ର ତାର ଜୀବନେ ସହିଚି କେତେ ଯେ ଉପାସ ଶୋକ ।
ଶେଷକୁ ସେ ଗଲା ଆସାମ ମୁଲକ ସେଇଠି ନିଭିଲା କାହିଁ
ଝିଅ ତା' ବୁଲୁଚି ଏହି ବିଲମାନେ ଧାନ ଗୋଠାଇବା ପାଇଁ !
କାହା କିଆରିରେ ପଶିଲେ କେ କରେ ଦୂର ଦୂର ମାର ମାର
ମନା କଲେ କିଏ ଫେରି ଆସେ ତାର ଚକ୍ଷୁଲୋତକ ଧାର ।

ବିଲ କିଆରିରେ ତାଳୁରୁ ତଳପା ଯାଏ ମୁଁ ଦେଖିଚି ତାରେ
ଝାଉଁଳି ପଡ଼ିଚି ଦେହ ମନ ତାର ନିର୍ଯ୍ୟାତନାର ଭାରେ
ସମ୍ମୁଖେ ମୋର ଠିଆ ହେଲା ସେହି ଲୋକା ତନ୍ତୀର ଝିଅ !
ମାଗିନାହିଁ କିଛି, କହିନାହିଁ ପଦେ 'ବାବୁ ଗଣ୍ଡିଏ ଦିଅ'
ପଚାରିଚି ଯାହା କହିଚି ସେତିକି, ଆଉ କିଛି କହିନାହିଁ
ଠିଆ ହେଲା ଖାଲି ସମ୍ମୁଖେ, ଚାହିଁ ଚାହିଁ ମୁଁ ପାରିଲି ନାହିଁ
କହିବାର:ପାଇଁ କଥିଲା ତାହାର ? କହିଥାନ୍ତା କି କଥା ?
ଭିତର ବାହାର ଚରିଦିଗ ତାର ବୋଲା ଖାଲି ରିକ୍ତତା !
ଠିଆ ହେଲା ମୋର ସମ୍ମୁଖେ ଖାଲି ଟିକିଏ ରହିଲା ଚାହିଁ
ଭଙ୍ଗା ଠୋକେଇ କାଖରେ ଯାକିଚି ଚାଲିଗଲା ଦୂରେ କାହିଁ !

ନିରୀହ ନିଃସ୍ୱ ତା ଆଖି ଦୁଇରୁ ପୋଛି ପୋଛି ଲୁହ ଧାର
ଫେରିତ ଚାହିଁନ, ଚାଲିଗଲା ସେହୁ ବହି ତା' ବେଦନା ଭାର
ଆଖିରେ ତାହାର ସେଇ ଲୁହ ଅଛି କଟୀରେ ଛିଣ୍ଡା କନା
ମୁଖମଣ୍ଡଳେ ସେ ମଳିନ ଛାଇ ବୁକୁ ତଳେ ସେ ବେଦନା
ପଚାରିଲି 'ନେ ଏ କଲେଇ ଗଦାଏ' କିଛିତ କହିଲା ନାହିଁ
ସମ୍ମୁଖେ ମୋର ଖାଲି ଠିଆ ହେଲା, ଟିକିଏ ରହିଲା ଚାହିଁ
ଚାଲିଗଲା ସିଏ ! ଚାଲିଗଲା ସିଏ ! ମିଶିଗଲା ବିଲମାନେ
ସିଏ କାନ୍ଦୁଚି, ମୁହିଁ କାନ୍ଦୁଚି ତା' ପାଇଁ ଅସମ୍ଭାଳେ !
ସମ୍ମୁଖେ ମୋର ଠିଆ ହେଲା ସେଇ ଲୋକା ତନ୍ତୀର ଝିଅ
ମାଗିନାହିଁ କିଛି କହିନାହିଁ ପଦେ 'ବାବୁ ଗଣ୍ଡିଏ ଦିଅ ।'

———

# ନୟନ ଲୁହ ନୟନ କଟଣି ଭରି

ଜୀବନ ଭରି ଏ ବୁକୁତଳେ ଫୁଟେ ମୋ' ଯେଉଁ କଥା
କହିଲେ କହି ପାରିବି ନାହିଁ ଘୂରିଇ ଯାଏ ମଥା
ଆଖିର ଲୁହ ଆଖିରେ ମରେ ନୀରବ ହୋଇ ରହେ
ପଧାନ ଘର ବୋହୂ ଯେ ମୁହିଁ କୋଟିଏ ଦୁଃଖ ସହେ

ପହିଲ ପାଳ ଆସିଲି ଯେବେ ପଡୁଚି ମୋର ମନେ
ଗିରସ୍ତ ମୋ ଗଜା ବଇସା ମରଦ ଟୋକା ଜଣେ
କାନରେ ତାର ବାଡ଼ିଆ ନୋଳି କଉଳି ଆହାମାନେ !
କବାଟ କଣେ ଗୃହେଁ ମୁଁ କେତେ ସରାଗ ସନମାନେ !

ବିଲ ବାଡ଼କ ଯାନ୍ତି' ସିଏ ସକାଳୁ ଉଠି କରି
ଖରା ହେଉ ବରଷା ହେଉ ହେଉ ବା ଝଡ଼ ବଡ଼ି ।
ପ୍ରତି ନିତି ସେ ଆଣନ୍ତି ମୂଲ ପଇସା ଗୁରିଅଣା
ଭଲରେ ଆମେ ଚଳି ଯେ ଯାଉ କରଣି ପିଠା ପଣା

ସେଥର ଯେବେ ମଡ଼କ କାହୁଁ ପଡ଼ିଲା ଆମ ଗାଏଁ
କି ପିଲା ପିଲି ଭେଣ୍ଡା ବୁଢ଼ା ମଲେ ଯେ ଶହେ ପ୍ରାଏ !
ହଞ୍ଜି ନୋହୁ ତାଠି କବାଟ ସବୁରି ଯାଏ ପଡ଼
ମଶାଣି ରଇ ନଭିଲା ନାହିଁ ଦି' ତିନ ପଖ ଧରି ।

ସେଥର ମୋର ଶଶୁର ବୁଢ଼ା ବୁଜିଲେ ପରା ଆଖି
ମରିବା ପାଇଁ ଦି'ଦିନ ଅଛି କହିଲେ ପୁଏ ଡାକି ।
ଦେଖି ଗୁହିଁ ଚଳିବୁ ବାବୁ ଯାଉଚି ସବୁ ଛାଡ଼ି
ଲାଗିଲା ତତେ ଘର ଦୁଆର ଲାଗିଲା ବିଲ ବାଡ଼ି ।

ସେଦିନୁ ତାଙ୍କ ସେରନ୍ତା ପଣ ଯାଇଚି ଗୁଳି କାହିଁ
ଲାଗିଲା ଘର ଲାଗିଲା ଧନ୍ଦା ସବୁ ଆମରି ପାଇଁ
ଯୋଡ଼ାଏ ଝିଅ ଗୋଟିଏ ପୁଅ ସାନଟି ଥାଏ ପେଟେ
ଖାଇବା ପାଇଁ ଅଣ୍ଟେ ନାହିଁ ଆଣିଲେ ଯହୁଁ ଯେତେ ।

ବିକଲି ଖଡ଼ୁ ବିକିଲି ନୋଥ ବିକିଲି ଚନ୍ଦ୍ରହାର
ବିକିଲି ବଦ ବିକିଲି ମୁଦି, ବାହୁର ରୂପା ତାଡ଼
ଗିରସ୍ତ ସେ ଦିହ ଦୁଃଖରେ ପଡିଲେ ଶେଯ ଧରି
ମିଳିଲା ନାହିଁ ମୂଲ କି ପାଣ୍ଡ ସବୁ ଯେ ଗଲା ସରି ।

ହାତରେ ଥାଏ ଦିପଠ କାଚ ଦେହରେ ଚିଣ୍ଡା କନା
ରାତି ପାଇଲେ ଖାଇବା ପାଇଁ ନ ଥାଏ ଘରେ ଦାନା
ପିଲାଟିମାନେ ହୁଅନ୍ତି ଆହା ଯେଭଳି ନାରଖାର
ଭଗାରି ହେଲେ ଚାହିଁଲେ ଥରେ ବହିବ ଲୁହ ଧାର ।

ହି'ମାଣ ଭୂଇଁ ବାଡ଼ି ତଳରେ ବିକିଲି ସାଥେ ସାଥେ
କରଜ ସୁଝି ସାଉକାରର ଫେରିଲି ଖାଲି ହାତେ,
ପରାଣ ପଡି ଜର ବେଗରେ ବୁଜିଲେ ଆଖି ଯେବେ
ଶୀତେଇ ଯାଏ ଦିହ ସେଦିନ ପଡ଼ିଲେ ମନେ ଏବେ !

ଯେ ଯାହିଁ ଥିଲେ ସଙ୍ଗାଳି ମୋ ଗଲେରେ କାହିଁ ମରି
ଗୋଟିଏ ବୋଲି ଯମ ଅଇଁଠା ରହିଛି ମରି ମରି ।
ତାକୋଇ ଚାହିଁ ପାଶୋରି ଦିଏ ସକଳ ଦୁଃଖଦାଉ
ତାକୋଇ ଚାହିଁ ନୟନତଳୁ ନ ବହେ ଲୁହ ଆଉ !

ସେଦିନ ପରା ଆମରି ଗାଆଁ ଖମାର ସାଉକାର
ଧରି ନେଇ ମୋ ଧନକୁ ଦେଲେ ହଙ୍ଗା ଲଙ୍ଘା ମାଡ଼
ବଳରୁ ତାଙ୍କ କିଏ ସେ ନେଲା ଚୋରାଇ କରି କ୍ଷେତ
ମୋ ଧନମାଳି ଖାଇଲା ଗାଳି ବାଜିଲା ଦେହେ ବେତ

କାକୁତି କରି କହିଲା କେତେ ଚୋରାଇ ନାହିଁ ମୁହିଁ
ପିଆଦା ତାଙ୍କ ମଦନ ସାଉ ମାଇଲା ଦିହ ଛୁଇଁ
ଶ୍ରାବଣ ମାସ ବରଷା ପରି ଝରୁଥେ' କେତେ ଲୁହ
ବାହାରେ ରହି କହିଲି ଦୋଷ କରିନି ମୋର ପୁଅ !

ବାହାରେ ରହି କହିଲି ଦୋଷ କରିନି ମୋର ପୁଅ
ପିଠିରେ ମୋର ବସିଲା ବାଧା ଶୁଣିବେ ଥିଲେ ଦିଅଁ
ମାଆ ଓ ପୁଅ ଫେରିଲୁ ଆମେ ମାଡ଼ ଓ ଗାଳି ସହି
ଉପାସେ ପେଟ ଜଳୁଥେ' ଦୁଃଖେ ଯାଉଥେ ଲୁହ ବହି ।

ତା' ଆରଦିନ କୁଡ଼ିଆଟିରେ ଲାଗିଲା ମୋର ନିଆଁ
ସେ ମାଡ଼ କଥା କହିଲି କିଆଁ ହୋଇ ମୁଁ ଅମାନିଆଁ !
କୋଡ଼ିଏ ଟଙ୍କା କରଜ କରି ତୋଳିଲି ମୋର ଘର
ଛ'ମାସ ନୋହୁ ଘରଟି ମୋର ନେଲେ ସେ ସାହୁକାର

କହିଲି କେତେ ନେହୁରା ହୋଇ ଚରଣ ତଳେ ପଡ଼ି
କୋଡ଼ିଏ ଟଙ୍କା ଧନ ଯେ ମୋର ଶୁଝିବି କାଲିପରି ।
ମୋ ପିଲା ଦେହେ ଲାଗିଲେ ଡେଣା କୋଡ଼ିଏ ଟଙ୍କା କିସ
ବରଷ ପିଛୁ ଆଣିବି ଲାଗି ଦୁଇଶ ନୁହେଁ ମିଛ ।

ପଦନ ସାହୁ ମହତ ସାରି ଶୋଧିଲା ଯାହା ମତେ
ରକତ ଧରି କିଏସେ ସହି ପାରିବ ଏ ମରତେ ।
ମୋ ଧନମାଳି ବରଣ୍ଡା ପରି ଥରୁଥେ' ଥର ଥର
ବହୁଥେ' ତାର ନୟନ ତଳୁ ଲୁହ ଯେ ଝର ଝର ।

ଧନମାଳିର ନୟନ ଲୁହ ପଣତେ ପୋଛି ଦେଇ
କହିଲି ବାବୁ ଆମର ହୋଇ ମଣିଷେ ନାହିଁ କେହି ।
ନିଅନ୍ତୁ ଏଇ କୁଡ଼ିଆ ଏଇ ଦୁଃଖୀର ଆଶ୍ରାଟିକ
ବୁଲିବା ପଛେ ଦ୍ୱାର ଦୁଆରେ ମାଗିବା ପାଇଁ ଭିକ ।

ଉପାସ ଭୋକେ ସଡ଼କ ପାଖେ କେଉଁଣ ଗଛତଳେ
ମରିବା ପଛେ ଛୁଇଁବା ନାଇଁ ଏମାଟି ଆଉଥରେ
ସତ୍ୟ ନାଇଁ ଧର୍ମ ନାଇଁ ମଣିଷ ଠାରେ ଯହିଁ
ନିମେଷେ ହେଲେ ସେ ମାଟି ପରେ ଆସେ କି କେବେ ରହି ?

ମୋ ଧନମାଳି ଖାଇନି ଭାତ ବସିଛି କଂସା ପାଖେ
ପାଟିକି ଗୁଣ୍ଡା ନିଏ ନ ନିଏ ତାହାରେ କିଏ ଡାକେ ।
ବାହାରିଯାଅ ଘର ଭିତରୁ ବାପର ଘର ପରି
ଶୁଣୁନି କଥା କେତେ ସେ ପୃଥୀ ଦମାକ୍ ଅଛି କରି ।

କୋ'ଦିନୁ ଆମେ ମାଆ ଓ ପୁଅ ଆସିଛୁ ଗ୍ରୁଡ଼ ଘର
ଗାଆଁରୁ ଗାଆଁ ଏ ପେଟ ପାଇଁ ବୁଲୁଚୁ ଅବିରଳ ।
କାହାକୁ ମାଗୁ ଗୃଉଳ ଅବା କାହାକୁ ମାଗୁ ଭାତ
କାହାକୁ ମାଗୁ ଲୁଗା ଖଣ୍ଡିଏ କାହାକୁ ମାଗୁ କାଠ ।

ସେ ଦିନୁ ଆମେ ଯାଇନୁ ଆଜି ଆମର ପ୍ରିୟ ଗାଆଁ
ପଡ଼ୁଛି ମନେ ବିଲ ପୋଖରୀ ନଈ ପାହାଡ଼ ନାଆଁ
ପଡ଼ୁଛି ମନେ ସାଇ ପଡ଼ିଶା ଆପଣା ପ୍ରିୟ ଯିଏ
ପଡ଼ୁଛି ମନେ କୁଟୀର ଯାହା ମାଡ଼ି ବସିଛି କିଏ ।

ପଡ଼ୁଛି ମନେ ଶାଗ ପଟାଳି ଯହିଁ ମୁଁ ଢାଳେ ପାଣି
ପଡ଼ୁଛି ମନେ ନଈରୁ ପାଣି ଆଣିବା ପାଇଁ ଗୁଣି
ପଡ଼ୁଛି ମନେ ବୋହୂ ହୋଇ ମୁଁ କାଟିବା ସୁଖେ କାଳ
ପଡ଼ୁଛି ମନେ ତାପରେ କେହ୍ନେ ହେଲି ମୁଁ ନାରଖାର !

ପଡ଼ୁଛି ମନେ ଘର ଛାଡ଼ି ମୁଁ ଦାଣ୍ଡେ ହେଲି ଠିଆ
କାହା ଘରର ଝିଅ ମୁଁ ଥିଲି, ଥିଲି ମୁଁ କାହା ପ୍ରିୟା ।
ବାଟ ଘାଟ ମୁଁ ନ ଥିଲି ଦେଖି ନଥିଲି ଚିହ୍ନି ଲୋକ
ବାର ଦୁଆରେ ବୁଲିଲି ଆହା ପାଇବା ପାଇଁ ଟୋକ

ସୁଦୂର ଏଇ ପ୍ରବାସ ଗାଏଁ ପିଲାଟି ମୋର ବୁଲେ
ଆଖି ବୁଜି ମୁଁ ଯିବଇଁ କାଲି କେଉଁ ଅଜଣା ପୁରେ
ପିଲାଟି ମୋର ଜୀବନେ ଥାଉ ନ ପଡ଼ୁ ପରମାଦ
ଭିକାରୁଣୀର ଭାଗ୍ୟେ ଦିଅ ସେତକ ପରସାଦ ।

ନୟନୁ ତାର ନ ବହୁ ଲୁହ ନ ପଡ଼ୁ ବାଧା ବୁକେ
ପୃଥ୍ୱୀପରେ ମୋ ପିଲାଟିକି ନିଅ ହେ ରଖି ସୁଖେ
ଗରିବ ପାଇଁ ମରତେ କେହି କାନ୍ଦେ ନାହିଁ ଜଣେ
ତା'ପଥେ ଯେହ୍ନୁ ଗଳଇ ଏକା ଲୋତକ ଆଖି କଣେ ।

ଗୌରବର ଛତ୍ରତଳେ ହୁଏନି କେବେ ଠିଆ
ଅଭାବ ଓ ଅସମ୍ମାନେ ପୋଡ଼ଇ ତାର ହିଆ ।
ଆପଣା କରି ବକ୍ଷେ କିଏ ନିଏନି ତାରେ ଟାଣି
ମୂଲ୍ୟହୀନ କହିଲେ ସିଏ ମୂଲ୍ୟବାନ ବାଣୀ ।

ଲକ୍ଷ ଲକ୍ଷ ବରଷ ହେଲା ପୃଥିବୀ କରେ ଗତି
ଫୁଟଇ ଫୁଲ ବହଇ ବାଆ ହୁଅଇ ଦିନ ରାତି
ଦୁଃଖୀ ତାର ନୟନ ଲୁହ ନୟନ କଣେ ଭରି
ଧରଣୀ ବକ୍ଷେ ଗଳିଛି ମୂକ ଗାଈ ବଳଦ ପରି ।

ଏଭଳି କେତେ କହୁ ତା' ନେତ୍ରୁ ଲୋତକ ଗଲା ବହି
ନିମେଷ ପରେ ନିଭିଲା ଶେଷ ପବନ ରହି ରହି
ପୁଅ ତା' ଦେଖେ ଜୀବନ ନାହିଁ ଦେହରେ ବୋଲି ହାତ
ଶୁଣଇ ଖାଲି—'ମୋ ପିଲା ପରେ ନ ପଡ଼ୁ ପର୍‌ମାଦ' ।

---

## ଲୁହର ଦାବୀ

କଳା କନା ଖଣ୍ଡେ ପିନ୍ଧି ଏ ବିଜନ ପଡ଼ିଆରେ
ବସିଅଛୁ ମେହେନ୍ତର ଭାରିଜା ମରୁଆ
ସକାଳୁ ଖାଇନି ସିଏ ବେଳ ହେବ ବାର ଘଡ଼ି
ଜଗିଛ ଏକାକୀ ଏଥି ପାଚିଲା ମାଣ୍ଡିଆ !

ଘରେ ତା' ଗୁଟିଏଟି ପିଲା ହେଉଥିବେ ଛଟପଟ
ତାଙ୍କୁ ଯେବେ ବେଳୁ ବେଳ କରୁଥିବ ଭୋକ
ଗିରସ୍ତ ତା ବୁଲୁଥାଏ ମନ ଇଚ୍ଛା ଏଣେ ତେଣେ
ବୁଝେନି ପିଲାଙ୍କୁ ବାରେ ଦେବା ପାଇଁ ଢୋକ ।

କହିଲା ଝକଲେ ମତେ, ଶୀର୍ଣ୍ଣ ତା, ନୟନୁ ଢାଳି
କେତେ ବେଦନାର ସୀମାହୀନ ଲୁହ ଧାର
ଦ'ଘର କରିଛୁ ସେବା ପର୍ହିଘ ଗୁଞ୍ଜୁଣୀ ବକ
ଚାଲିଯାଏ ମୋର ପ୍ରତିନିତି ଯା' ଆଧାର ।

ବଡ଼ ଦୁଃଖେ ଏ ପିଲାଙ୍କୁ ଚଳାଏ ମୁଁ ଏକା ଏକା
ଭୁଣ୍ଡରୁ ଆଧାର ଦେଇ ବାର ନାରଖାରେ
ଖପି ପଣ୍ଠା କରିବାକୁ ମିଳେ ନାହିଁ ପଇସାଏ
ତୁମ ଆଗେ କହିବନି ଦୁଃଖ କଥା ବାରେ ?

ପିଲାଟା ମୋ ହୁଏ ଡଇଁ ଡଇଁ ମାଛ ଟିକେ ଖାଇବାକୁ
ପାରେନି ମୁଁ ଦେଇ, ଯାଏ ମାଗି କା'ଦୁଆରେ
କେ' ଦେଲେ କେ' ଦିଅନ୍ତିନି, ଭଲମନ୍ଦ କାହୁଁ ଅବା
ଦେଖିବେ ପିଲାଏ ମୋର ଗରିବ ସଂସାରେ !

ହେଉଛି ଦେଖୁଛ ବାବୁ ! ପିନ୍ଧିଛି ଏ ଚିରାକନା
ବାହାରକୁ ଯିବା ପାଇଁ ଲାଗୁଛି ସରମ
ହାଡ଼ିକୁଳ ବୋଲି କଣ ଆମର ମହତ ନାଇଁ ?
କଅଣ କରିବୁ ଆମ ଗରିବ କରମ !

ପେଟରେ ମୋ ଆଠମାସ ଭୋକ ତ ହୁଅଇ ବେଶୀ
ସକାଳୁ ମୁଁ ଉଠି ଯେବେ ଦାନ୍ତ ଘଷିଦିଏ
ନଥାଏ ମୁଠିଏ ଭାତ ପାଣି ମନ୍ଦେ ପିଇ ରହେ
ମନସଧ ମତେ ଆଣି ଦବ ଅବା କିଏ ?

କେତେ ମୁଁ ଅନାସ୍ତ ହୁଏ ମନ କଥା ମନେ ରହେ
ପଠାଇଛ ଯାଆ ଏଠି ଜଗିବୁ ମାଣ୍ଡିଆ
ଏତେବେଳ ହେଲା ଆସି ପିଲେ କାନ୍ଦୁଥିବେ ଘରେ
ବାଆ ତା'ର କହିଥିଲା ନ ଆସିଲା କିଆଁ ?

ଶୁଣି ତା' ଅନ୍ତର କଥା ଫେରିଲି ମୁଁ ପଥେ ପଥେ
ତଥାପି ପଛକୁ ଫେରି ନିମିଷକେ ଚାହେଁ
କଳା କଳା ଖଣ୍ଡେ ପିନ୍ଧି ବିଜନ ସେ ପଡ଼ିଆରେ
ସେଇପରି ବସିଅଛି କେତେବେଳ ଯାଏଁ !

ଉତ୍ପ୍ରେକ୍ଷ ନୟନେ ପୁଣି ଚାହିଁଲି ବହୁତ ଦୂରୁ
ଦେଖିଲି ବସିଛି ସେଇ ଦୁଃଖିନୀ ମରୁଆ
ଦେଖିଲି ସେ କଳା କଳା ତଳୁ ଯାହା ବାହାରୁଛି
ନିଖିଳ ପୃଥ୍ୱୀକୁ କରୁଅଛି ଅନ୍ଧାରୁଆ !

ଆହୁରି ଦେଖିଲି ମୁହିଁ ଏ ନିଖିଳ ଚରାଚରେ
ମାଡ଼ି ଯାଉଅଛି ବେଶି ବେଶି ଅନ୍ଧକାର
ଜଳ ସ୍ଥଳ ଗଛପତ୍ର ପାହାଡ଼ ପ୍ରାନ୍ତର ଗାଆଁ
କିଛି ହେଲେ ଦିଶୁନାହିଁ ସବୁ ଏକାକାର !

ଏହି ମହା ଅନ୍ଧକାରେ ଦେଖେ ସେଇ ପଡ଼ିଆରେ
କେ ଆସୁଛି ଅଗ୍ନି ସମ ଚଣ୍ଡ ରୂପ ଧରି !
ପୁଞ୍ଜୀଭୂତ ଲୁହ ଅବା ମଣିଷ ପ୍ରାଣର ସେ ପେ
ଖେଦ ସେ ଆସୁଛି କହି ବାଣୀ ଭୟଙ୍କରୀ !

ବିରାଟ ଏ ଧରଣୀରେ କରିବାକୁ ଉପଭୋଗ
ସକଳର ଅଛି ଦାବୀ ଅଛି ଅଧିକାର
ସଭିଏ ହସିବେ ଏଥି ସଭିଏ ନାଚିବେ ସୁଖେ
ଜୀବନ ଅମୃତ ଶିରୀ ଭୁଞ୍ଜି ଅନିବାର

ସବୁରି ଅନ୍ତର ଲୋଡ଼େ ଧନମାନ ଗଉରବ
ସବୁରି ଅନ୍ତର ତଳେ ଜଳେ ଅଗ୍ନି ଏକ
ସବୁରି ଏ ଜଳସ୍ଥଳ ଆକାଶ ଭୁବନ ବାୟୁ
ସଭିଏ ବଞ୍ଚିବେ ଏଥି ନ ହୋଇ ନିରେଖ !

କହରେ ମଣିଷ କହ ! କିଏ ତୋ ନୟନେ ଦେଲା
ବିଷର କଜଳ ରେଖା ନିବିଡ଼େ ନିର୍ମମେ
କେ' କହିଲା ପୃଥିବୀର ଅସଂଖ୍ୟ ଜୀବନ ଭୁଲି
ମାରି ହାଣି ଦୋଳୁଥିବୁ ସୁଖର ସପନେ !

ଘିଅ ଦୁଧ·ମାଛ ଭାତ ଖାଇ ତୁ ରହିବୁ ଏଥି
ଅସଂଖ୍ୟ ଜନତା ମରୁଥିବେ ହା'ହାକାରେ
ରାକ୍ଷସ ତୁ ପିଶାଚ ତୁ ମଣିଷର ଖୋଳ ଧରି
କଳଙ୍କ ବୋଳୁଚୁ ଏଇ ସୁନାର ସଂସାରେ !

ସୀମାହୀନ ବେଦନା ମୁଁ ଏଇ ମହା-ପୃଥିବୀର
ଆସିଚି ମୁଁ ଅଗ୍ନି ହୋଇ ଦେବି ଧ୍ୱଂସ କରି
ଯେଉଁଠି ଜଳୁଛୁ ଭୁଲି ଅସୀମ ଏ ଜନତାରେ
ତୋ' ଅନ୍ୟାୟ ରଥଚକ୍ରେ ପ୍ରଭଞ୍ଜନ ଦଳି !

ତୋ ଆଖିରେ ମଣିଷର ପ୍ରାଣଭୋଳା ଦୀପ୍ତି ନାହିଁ
ବକ୍ଷେ ନାହିଁ ମଣିଷର କରୁଣା ସେନେହ
ବିରାଟ ନରକ ଶାଳା ତୋ ଅନ୍ତର ଦେହମନ
ପୂର୍ଣ୍ଣ ତହିଁ ସ୍ୱାର୍ଥ ଅବିଶ୍ୱାସ ଓ ସନ୍ଦେହ ! !

ତୋ' ଭଳି ପ୍ରାଣର ନାହିଁ ଦଣ୍ଡେ ହେଲେ ଅଧିକାର
ଏଇ ବସୁନ୍ଧରା ପରେ ବଞ୍ଚି ରହିବାର
ତୋହର ନିଶ୍ୱାସ ତାପେ ସିଝିଯାଏ ଯେଉଁଠାରେ
ସୀମାହୀନ ଜନତାର ଅନ୍ତର ବାହାର ।

ଯେ ମଣିଷ ମଣିଷର ବ୍ୟଥା ଏକା ବୁଝିପାରେ
ସବୁରିଙ୍କି ଦିଏ ପ୍ରାଣ ଖୋଲି ମଧୁଧାରା
ତାର ଏକା ଅଧିକାର ଏ ମାଟିରେ ରହିବାର
ତା'ପରଶେ ସ୍ୱର୍ଗଭଳି ନାଚେ ବସୁନ୍ଧରା ।

——

# ହତାଶ ପଥିକର ଗାନ

—୧—

ବଞ୍ଚିବା ଧରଣୀରେ ହେଲି ଏତେ କଠୋର
ସଂଗ୍ରାମୁ ଫେରିଚି ମୁଁ ପରାଜିତ ସଇନ
ଗମ ଗମ ଝାଳ ମୋର
ବହିଯାଏ ଦେହରୁ
ସହିଚି ମୁଁ ଯେତେ ଯାହା ନିଷ୍ଠୁର ଦଇନ
ଚାଲିଚି ମୁଁ ପଥେ ଏକା
ଏ ସକାଳ ପହରୁ !

—୨—

ନୟନୁଁ ମୋ ଝରେ ପଡ଼େ ଲୋତକର ଝରଣା
ଆକାଶେ କତାଶେ ଚାହିଁ ଫେରୁଚି ମୁଁ କୁଟୀରେ
ପଥ ବଡ଼ ଦୁର୍ଗମ
କ୍ଲାନ୍ତ ମୁଁ ଶ୍ରାନ୍ତ
ଏକା ମୁଁ ଯେ କେହି ନାହିଁ ବନ୍ଧୁ ମୋ ସାଥିରେ
ମୋ ମରମ ବୁଝି ମୋରେ
କରିବ ଯେ ଶାନ୍ତ !

—୩—

ମନ କଥା ମନେ ମାର ଚାଲିଛି ମୁଁ ଯାତ୍ରୀ
କାନ୍ଦୁଛି ମୋ ଭିତରର ଜସ୍ମ ସେ ରକତ !!
ରଞ୍ଜିତ ପଥ ମୋର
ସୀମାହୀନ ଲୁହରେ !
କା' ଭୁଲେ ମୁଁ ହେଲ ନାହିଁ କେତେ ଭାବେ ଯୁକତ,
ଚାଲିଛି ମାରବେ ଏକା
ଭିନ୍ନ ଏ ସୁଅରେ !

—୪—

କହରେ ଆକାଶ କହ, କହ ଆଗୋ ଧରଣି !
କହ ମୋର ପରିଚିତ ବନ ବଲ ସରଣି !
ଶତ ଦାଉ ଧକ୍କା କ
ସହ ସହ ଚାଲିବ ?
ମୋ ଲଗି ଫୁଟିବ ନାହିଁ ଉଷା ହେମ ବରଣୀ ?
ଆଖି ଲୁହ ଆଖେ ମାର
ସବୁ କଥା ଭୁଲିବ ? ?

—୫—

ପଲ୍ଲି-ପାହାଡ ଘେରା ଦୂରେ ମୋର ଗାଆଁଟି !
ପଚାରିବ ଜଣେ ମୋରେ ସଂଗ୍ରାମ ବାରତା,
ବକ୍ଷେ ତା' କେତେ ଆଶା
ମୁଞ୍ଜରି ଥିବନ !
କ ଦେବ ମୁଁ ଉତ୍ତର ଖାଲି ବୁକୁ କରତା !
କେ ବୁଝୁଛି ବିଶ୍ୱରେ
ନଃସ୍ୱର ଜୀବନୀ !

—୬—

ଫୁଟିଛି ଗୋଲାପ କଳ ଫିଟିନାହିଁ ରଙ୍ଗ !
ଖୁନ୍ଦିଁ ମୋ ରହିଛି କବା ସୀମାହୀନ ଧିଆନେ ?

ଜାଗିଛି ବସନ୍ତ
ପିକ ପଞ୍ଚମ ଆସିଲା
ସୌମ୍ୟ ଦିଶଇ କବା କନକର ସ୍ନାହାନେ !
କି ମଧୁ ପିଆସା
ତାର ମନ ତଳେ ବସିଲା !

—୭—

ଭାଙ୍ଗି ପଡ଼ିବ ତାର ସପନର ସଉଧ ।
ଓଠ ତା' ପଡ଼ିବ ଫିକା ଫୁଟିବନି କଥା ଯେ ।
ଲୁହ ଛଳ ଛଳେ ମୋରେ
ଗୃହ ଥିବ ଛଇଲା !
ବିଦରୁ ଥିବ ତା' ହିଆ ନିର୍ମମ ବ୍ୟଥା ଯେ
ଜୀବନ କି ସାତ ହୀନ-
ମାନ ହୋଇ ରହିଲା ?

—୮—

ଦୁର୍ଦ୍ଦମ ବିଦ୍ରୋହ ବୁକୁ ତଳେ ଜାଗଇ,
ପ୍ରତି ଲୁହ ପ୍ରତିକୋହ ଭୁଲେ ହୋଇ ଜଡ଼ିତ,
ସ୍ୱାର୍ଥ କଳୁଷ ଭରା
ମଣିଷର ସୃଷ୍ଟି
ଯୁଗେ ଯୁଗେ ଧରଣୀକି କରୁନି କି ପୀଡ଼ିତ ?
ଶତ ଅନାସ୍ଥର କର
ନିମିଷକେ ବୃଷ୍ଟି ।

—୯—

ଏ ବିରାଟ ଧରଣୀର ସୀମା ହୀନ ଜନତା—
ମୂକ ଅନ୍ତର ବ୍ୟଥା ବୁଝିବାର ପାଇଁକି,
କେହି ନାହିଁ କେହି ନାହିଁ
କେହି ନାହିଁ ଜଣେ ତ ! ! !
ଯେଉଁ ବାଟ କାଟି ଯିଏ ଚାଲିଅଛି ସର୍ବଦା,
ନୀରବେ ପଢୁଛି କିଏ
କେଉଁ ଗୃହ କଣେ' ତ !!

# ଦେଇଥାନ୍ତା

କେହିତ ଟିକଏ ମୁହଁକୁ ଚାହିଁଲ ନାହିଁ ?
ଆସିବାର ବେଳେ ଆସିଲ ଅଶ୍ରୁ ବାହି ।
ପଦଏ ବଚନ ଟିକଏ ଚାହାଣୀ ଖାଲି,
ଦେଇଥାନ୍ତା ମୋ ଅନ୍ତରେ ସୁଧା ଢାଳି !

ଆଗକୁ ଚାଲିଲି, ପଛକୁ ଚାହିଁଲି ଫେରି
ସେଇ ବଣବୁଦା, ସେ ନଈ ପାହାଡ଼ ଧାଡ଼ି ।
ସେଇ ସେ ସୌଧ ସେଇ ସେ ବନ୍ଧୁଜନ
ସହାନୁଭୂତିରେ ଆର୍ଦ୍ର ନ ହେଲା କାହାରି ଟିକଏ ମନ !

ବୁକୁ ଚିରି ମୁଁ କି ସେନେହ ନ ଥିଲି ଦେଇ
ମୋ ପାଇଁ କାହିଁତ ଗ୍ଲାନିଲାନି ଜଣେ କେହି !
ଚାହିଁଲିନି କେହି ବୁଝିଲିନି କଏ ମତେ,
ଗମ୍ଭୀର ଦଇନେ ଫେରିଲି ଆପଣା ପଥେ ।

ଝରି ଝରି ଝରି ଲୁହ ଯାଉଥାଏ ଝରି
ବକ୍ଷ ଫଟାଇ କୋହ ଆସୁଥାଏ ଭରି !
ଜଣେ କେହି ମୋର ଗୋଟିଏ ବିନ୍ଦୁ ଲୁହ
ପୋଛି ଦେଇଥିଲେ ମଣିଥାନ୍ତି ମୁଁ ଭାଗ୍ୟବାନ କି ନୁହଁ ?

ପାଷାଣରୁ ବଳି ସଭିଏ ମଉନ ହେଲେ
ଆପଣାର ବ୍ୟଥା କହିଯାଉଥିବା ବେଳେ
କାହାପାଇଁ ମୁ ବା କଅଣ ନଥିଲି କରି ?
ଯେତେବେଳେ ମୁହିଁ ପଡ଼ିଗଲି ତଳେ
ଆହୁରି ଚରଣେ ନିଷ୍ଠୁରେ ଦେଲି ଦଳି !

ହୃଦୟରୁ ବ୍ୟଥା ଘନାଇ ଆସିଲା ମମ
ଶ୍ରାବଣ ସଞ୍ଜ କୃଷ୍ଣ ବାରିଦ ସମ
ନିଜ ହାତେ ନିଜେ ଲୁହ ପୋଛି ପୋଛି ଗଲି
ବୁକୁର ବେଦନା ବୁକୁତଳେ ଚାପି ଧରି ।

ଦେଇ କି ନ ଥିଲି ଅନ୍ତର ଭରି ଦାନ ?
ଭଲ କି ନଥିଲି ତୁମେ କି ମୋହର ପ୍ରାଣ ?
ନେଉ କି ନଥିଲି ତୁମ ପାଖେ ଖାଲି ଥାଇ
ଦିନକାଳ ମୋର ସବୁଗେ ଯାନ୍ତା ପାଇ ?

କେହି ବୁଝିଲେନି ପାଲଟିଲି ସବୁ ଜଡ଼
କାହାର ଆଖିରେ ମୋପାଇଁ ନଥିଲା ଗୋଟିଏ ବିନ୍ଦୁ ଜଳ ?
କାହା ବୁକୁତଳେ ମୋ ପାଇଁ ନଗଲା ଟିକିଏ ଆଘାତ ଲାଗି
ସଭିଙ୍କୁ ଚାହିଁ କାତର ନୟନେ ଆସିଲି ବିଦାୟ ମାଗି !

ପାଟଳ ତପନ ପଶ୍ଚିମ ଗିରି ଚୂଳେ
ବୁଡ଼ ଯାଉଥିଲା ଦୂରେ ଦୂରେ ବହୁଦୂରେ
ଗାଈଆଳ ପିଲା ଅଡ଼ାଇ ତା' ଧେନୁ ପଲ
କୁଟୀରେ ତାହାର ଫେରୁଥିଲା ଚଞ୍ଚଳ ।

ଏ ସବୁ ଭିତରେ ମୁହିଁ ଆସୁଥିଲି ଫେରି
କେତେ ବରଷର ସ୍ମୃତି ଅନ୍ତରେ ଧରି !
ଏତେ ସ୍ନେହ ଏତେ ସାଧନାର ପରିଣତି
ଏଇଭଳି ହେଲା ତାର ନିଦାରୁଣ ଗତି ?

ଯେଉଁଠି ହୃଦୟ-ସେନେହ ବାରିଧିଲୀଳା
ଯେଉଁଠି ପ୍ରାଣର କୋଟି ଅମୃତ କ୍ରୀଡ଼ା
ସପନ ପରିଏ ମରୁ ଗରଜିଲା ତହିଁ
ପାରୁନି ପାରୁନି ଏ ମହାବେଦନା ସହି !

ସବୁ ସହି ପାରେ, ସହିବ କେସନେ କହ
ଅପରିଚିତରୁ ଭଲ ପରିଚିତ ହୁଏ ଯେବେ ନିର୍ଦ୍ଦୟ !
ସବୁ ଗ୍ରୁଡ଼ିପାରେ, କଷ୍ଟ ଯେ ଗ୍ରୁଡ଼ିବାରେ
ପାଳ ମୁଁ ଆଣିଚି ଯାହାରେ ମୋ ଲୁହ ଧାରେ !

ମଣିଷ ଯେବେ ଏ ମଣିଷର ବୁକୁ ତଳେ
ଗୋଳ ହେବାପାଇଁ କୁଣ୍ଠା ପ୍ରକାଶ କରେ,
ମଣିଷରେ ଯେତେ ମଣିଷ ଆଡ଼େଇ ଦିଏ,
ମଣିଷର ବ୍ୟଥା ବୁଝିବ ଧରାରେ କିଏ ?

କେହି ତ ଟିକଏ ମୁହିଁକୁ ଚାହିଁଲ ନାହିଁ
ଆସିବାର ବେଳେ ଆସିଲ ଅଶ୍ରୁ ବାହି
ପଦଏ ବଚନ ଟିକଏ ଚାହାଣି ଖାଲି
ଦେଇଥାନ୍ତା ମୋ ଅନ୍ତରେ ସୁଧା ଢାଳି !

———

## ନିର୍ଯ୍ୟାତିତର ଆତ୍ମବିଳାପ

ତିକ୍ତତାର ଇତିହାସ ଶିରପରେ ବହି
ଦିନ ପରେ ଦିନ କେତେ ନେବି ମୁହିଁ ବାହି !
ଭାଜିପଡ଼େ ଦେହ ମନ, ଭାଜିପଡ଼େ ମୋର
ଆଶାର ଅଟ୍ଟାଳି ଯାହା ଗଢ଼ିଅଛି କାହିଁ !

ଚତୁର୍ଦ୍ଦିଗେ ଚାହିଁ ଦେଖେ ତାଳି ନେଇ ବେନି
ରୁଦ୍ଧ ମୋର ଚାରିଆଡ଼ କାହା ଅଭିଶାପେ
ଫେରି ଆସେ ଫେରି ଆସେ ବିଦଗ୍ଧ ଅନ୍ତରେ
ବୁକୁ ତଳେ ସବୁ ବ୍ୟଥା ଚୁପି ଆପେ ଆପେ !

ଲାଗେ ନାହିଁ ଭଲ ମତେ ନିଖିଳ ଧରଣୀ
ଯେତେ ଯାହା ସୀମାହୀନ ମୋହନ ସମ୍ଭାର
ଫୁଲ ଫୁଟେ ବାଆ ବହେ ସୂର୍ଯ୍ୟ ଆସେ ଉଇଁ
ବୁଣି ଦେଇ ସୁବର୍ଣ୍ଣର ରେଣୁ ଚାରିଆଡ଼ ।

ବାତ୍ୟା ପରେ ବାତ୍ୟା ଖାଲି ଯାଏ ବହି ବହି
ଛିନ୍ନ ଭିନ୍ନ କରି ଯେତେ ମୋ ପଞ୍ଜରା ହାଡ଼
ଦେଖେ ମୁହିଁ ଜୀବନଟା ରହିଅଛି ଚାହିଁ
ଯେପରି କେଉଁ ଶୂନ୍ୟଗୃହ ପ୍ରେତର କଙ୍କାଳ !

ମଣିଷ ମୁଁ ଆସିଥିଲି ମହା ଧରଣୀରେ
ଏଇଭଳି ହନ୍ତସନ୍ତ ହେବି ବୋଲି କରେ ?
ଆସିଥିଲି ଚିରଦିନ ରହିବାକୁ ବୁଡ଼ି
ଘୋର ଅବସାଦଭରା ତପ୍ତ ଲୁହ-ନୀରେ !

ଆସିଥିଲ ଆସିଥିଲ ଆସିଥିଲ କରେ
ପଦାଘାତ ପରେ ଶତ ପଦାଘାତ ଲଭି
ପୃଥିବୀ ଅତଳ ତଳେ ଦୂରେ ଦୂରେ କାହିଁ
ଚିହ୍ନ ବର୍ଣ୍ଣ ଲୋପ୍ୟ କରି ଯିବାପାଇଁ ଦବି !

ମଣିଷ ମୁଁ ମଣିଷ ମୁଁ ଆସିଥିଲ କରେ
ଏ ମାଟିଏ ସୀମାହୀନ ବଇଭବେ ଗୃହିଁ
କାହିଁରେ ନ ଦେଇ ହାତ ଜଡ଼ ପଙ୍ଗୁ ପରି
କେଉଁଆଡେ ଯିବାପାଇଁ ମାରବେ ଉଭାଇ !

ଆସିଥିଲ ସତେ କରେ ମହା ବଶ୍ୱ ଭର
ଅନନ୍ତ ପ୍ରାଣର ମଧୁ ନାଇଁ ଗୃଖିବାରେ
ଖାଲ ବଞ୍ଚି ରହିବାକୁ ପଳେ ପଳେ ମରି
କାଠି ହୋଇ କେଉଁ ଶୂନ୍ୟ ତୀକ୍ଷ୍ଣ ଖୁର ଧାରେ !

ଆସିଥିଲ ରୂପ ଯେନ ଭାଷା ଯେନ କରେ
ପ୍ରାଣହୀନ ପରି ଖାଲି ରହିବାର ପାଇ
ଆସିଥିଲ ଦେଖିବାକୁ ହୃ ପସ୍ତମ୍ଭ ମୋର
ମୋ ଗୃଲିବା ପଥେ କଏ ରଖିଛି ସଜାଇ !

ମୋ ବୀଣା ରହିଲା ଯେବେ ଚିରଦିନ ମୂକ
ନ ଫୁଟିଲା, ନ ଫୁଟିଲା ଲବେ ହେଲେ ସ୍ୱର
ମୋ ଆକାଶ ହେଲା ଯେବେ ମେଘାଚ୍ଛନ୍ନ ନିତି
ଆଲୋକ ପ୍ରବାହେ ନାଇଁ ହସିଲା ଭାସ୍ୱର !

ମୋର ବାଡ଼ ବଗିଗୃରେ ଫୁଲଟିଏ ଯେବେ
ନ ଫୁଟି ରହିଲା ତାହା ମହା ମରୁ ପରି
ମୋର କ୍ଷୁଦ୍ର ସରୋବରେ ରାଜହଂସ ଯେବେ
ଦନକ ପାଇଁକ ହେଲେ ନ ଆସିଲା ଚରି,

ମୋର ରାଜପଥ ଯେବେ ନ ହେଲା ନ ହେଲା
ଆନନ୍ଦର କୋଳାହଳେ ନପୂତ ମୁଖର
ମୋ ଲତାଟି ତଳେ ଯେବେ ପଡ଼ ପଡ଼ ଗଲା
ତରୁ ଶିଖେ ଉଠି ନାଇଁ ପାରିଲା ମୁକର !

ସମସ୍ତ ସାଧନା ମୋର ସମସ୍ତ ଆକାଙ୍‌କ୍ଷା
ଚୂରମାର ହେଲା ଯେବେ ଦିନ ଦିନ ଧରି
ଏତେ ଗୃହିଁ ଏତେ କରି ଏକଇ ନିମେଷେ,
ପାରିଲିନି ଯେବେ, ମୁହିଁ ବାରେ ସ୍ପର୍ଶ କରି—

ଜୀବନର ଯେ ବାଞ୍ଛିତ ନିଧି ଠିକ ମୋର—
କେମନ୍ତେ କହିବ ନାଇଁ କୋଟି ଅଶ୍ରୁ ଢାଳି
ଏଇ ମାଟି ଏ ଆକାଶ ନୁହେଁ ମୋହ ପାଇଁ
ମୁଁ ଯେହ୍ନେ ଆସିଚି ମୋର ଦେଶ କାହିଁ ଛୁଡ଼ି !

ସତେ କରେ ଏଇ ମାଟି ନୁହେଁ ମୋର ଘର
ନୁହେଁ ମୋର ଆପଣାର ଏ ପଥ ପ୍ରାନ୍ତର
ସତେ କରେ ଜୀବନର ପଲକେ ପଲକେ
କେ ମୋରେ କରୁଚି ଏଥି ହୃଦୟ୍ରୁ ଅନ୍ତର !

ନାସିକା କୁଞ୍ଚନ କରି ମହା ଅବଜ୍ଞାରେ
କେ ମୋରେ ରଖିଚି ଦୂରେ ଆବର୍ଜନା ପରି
ଲୁହ ମୁଁ ନ କାନ୍ଦି ଖାଲି କାନ୍ଦୁଚି ରକତ
ଶର ବିଦ୍ଧ ବିହଗର ଆର୍ତ୍ତନାଦ ସରି !

ହରାଇଚି ବିଶ୍ୱାସ ମୁଁ, ହରାଇଚି ଆଜି
ସକଳ ସାହସ ଆଶା ଭରସା ମୋହର
ନୁହେଁ ମୁହିଁ ଏ ମାଟିର ମୁଁ ଯେ ଅନ୍ୟ ଜୀବ
କକ୍ଷଚ୍ୟୁତ ହୋଇ ଏଥି ପଡ଼ିଚି ମାତର !

ମୋ ଦେହ ନୁହଇ ଦେହ, ମୋର ସୁଖ ଦୁଃଖ—
ନୁହେଁ ସୁଖ ଦୁଃଖ ଖାଲି ମହା ଅବାନ୍ତର
ମୋ ଶୋଣିତ ପ୍ରତି ବିନ୍ଦୁ ଭିତରେ ଭିତରେ—
ଯେହ୍ନେ ନାହିଁ ଜୀବନର ରେଣୁ ମାତ୍ର ଝର !

ନୂତନ ମୁଁ ନୂତନ, ମୁଁ ଅତି ହିଁ ନୂତନ,
ନାହିଁ ମୋ ଥିଭିରେ ପ୍ରାଣ ଭରା ଗଉରବ
କାଳ କାଳ ଧରି ମୁଁ ଯେ ସମସ୍ତ ମୁହୂର୍ତ୍ତି
କରୁନିକି ବୁକୁଭରି ଏଥି ଅନୁଭବ !

କଥା କହ କଥା କହ ମତେ କଥା କହ
କେ କହିବ କଥା ତତେ କିଏ ଅଛି ତୋର ?
ଦୂର ପ୍ରତିଧ୍ୱନି ପରି ପିଟି ହୋଇଯାଏ
କାନେ ମୋର ତାଳି କବା ଅବସାଦ ଘୋର !

ଚାହିଁ ମୋରେ ଚାହିଁ ମୋରେ କେ ଚାହିଁବ ତତେ
ମହାଶୂନ୍ୟ ଆସିଯାଏ ନିର୍ମମ ଉତ୍ତର
ବସିଯାଏ ଥକା ମାରି ମୁହିଁ ଯେହ୍ନେ ଅବା
କେଉଁ ରାଜପଥ ଧାର ଅକାମୀ ପଥର !

ଆସ ମୋ ପାଖକୁ ଲବେ ଶୁଣିଯାଅ ମୋର
ଜୀବନର ମର୍ମନ୍ତୁଦ ଇତିହାସ ଗୋଟି
ତୋର ପୁଣି ଇତିହାସ ? ଅଟ୍ଟହାସ କରି
କିଏ ଚାଲିଯାଏ ନାଇଁ ପୁଚ୍ଛି କଥା ଦୋଟି !

ଟିକେ ହେଲେ ରହିଯାଅ ପାଖ ଦେଇ ମୋର
କେ ଯାଉଚ ପଥଭ୍ରଷ୍ଟ ରହ ଦଣ୍ଡେ ରହ
କେ କିମ୍ପା ରହିବ ? ମୁହିଁ ଶୁଣି ପାରେ ନା କି ?
ଲାଗେ କେହ୍ନେ ଏ ଜୀବନ ଅଶିବ ଦୁର୍ବହ ।

କାକୁତି ମିନତି କରି ବଞ୍ଚି ରହିବାଠୁ
ନରକ ଯନ୍ତ୍ରଣା କାହିଁ ଅଛି କି ରେ ବଡ଼ ?
ଯେଉଁ ବଞ୍ଚି ରହିବାରେ ଯାଏରେ ଦୋହଲି
ମୁହୂର୍ତ୍ତ ମୁହୂର୍ତ୍ତ ଧରି ଏଇ ବୁକୁ ତଳ !!

ମଣିଷଠୁ ବଳି କିଏ ଅଛିରେ ସୁନ୍ଦର ?
ନିଖିଳ ଏ ଧରଣୀର ଦିଗଚନ୍ଦ୍ର ଧରି
ମଣିଷଠୁ ବଳି କିଏ ଅଛି ବଳୀୟାର
ପାରିବ ଏ ଧରଣୀକୁ ଋଦ୍ଧିମନ୍ତ କରି ?

ମଣିଷଠୁ ବଳି କିଏ ବିରାଟ ବିପୁଳ
ହାଣି ହାଣି ପାହାଡ଼ରେ ଶତ ଶୋଭା ଢାଳି
ମଣିଷଠୁ ବଳି କିଏ ଅଛି ପ୍ରାଣବାନ
ବେଦନାରେ ଆନନ୍ଦର ମାୟା ଦେବ ବାଢ଼ି !

ମଣିଷକୁ ଛାଡ଼ିଦେଲେ ସମସ୍ତ ଏ ମାଟି
ନୁହେଁ କରେ ପ୍ରାଣହୀନ,ଅର୍ଥହୀନ ଖାଲି
ମଣିଷହିଁ ଚତୁର୍ଦ୍ଦିଗ ଦେଇଚରେ ସ୍ଥିର
ଶତ ଶତ ସ୍ୱର୍ଣ୍ଣଶିଖା ଅକାତରେ ଛାଡ଼ି !

କାହିଁ ସେ ମଣିଷ କାହିଁ ପ୍ରାଣର ମଣିଷ ?
ଲୁହସିକ୍ତ ନୟନେ ମୁଁ ରହିଅଛି ଚାହିଁ
ତା' ଟିକକ ପରଶେ ମୁଁ ଉଠନ୍ତିରେ ଜାଗି
ପାଷାଣୀ ଅହଲ୍ୟା ପରି ଜୀବନ୍ୟାସ ପାଇ !

ଯାଆନ୍ତିନ ମରି ମରି ଉଠନ୍ତିରେ ଫୁଟି
ଅଶୋକ ସ୍ତବକ ପରି ନବ ବସନ୍ତର
କେତେ ନବ ଉନ୍ମାଦନା ସାହସ ଉତ୍ସାହ—
ଭିତରେ ମୁଁ ଦିଶୁଥାନ୍ତି ନୂତନ ଭାସ୍ୱର !

---

## ଦେଖା

ସେ ଗଲିଲା, ମୁଁ ଗଲିଲି, ପଥପ୍ରାନ୍ତେ ନିମିଷକେ ଦେଖା !
ସେଇ ଶୁଷ୍କ ମଳିନ ବଦନ, ସେଇ ତା'ର ଦଗ୍‌ଧ ଅନ୍ତର
ରହିଚି ମୋ ମନ ତଳେ ଲେଖା !
ପଚାରିଲି କେମିତି ଚଳିଚ ! ଭଲ ସବୁ ?
ଲୁହେ ଆଖି ଛଳ ଛଳ କରି—
ଜୀବନର ତିକ୍ତ ଇତିହାସ କହିଗଲା ଗୋଟିଏ ନିଶ୍ୱାସେ
ଯହିଁରୁ ବେଦନା ଖାଲି, ଅନନ୍ତ ବେଦନା !
ପଡ଼ୁଥିଲା ଝରି ଝରି ଝରି ! !

ସୀମାହୀନ ଅଭାବ ଓ ଅଭିଯୋଗ ଧରି
ତାର କ୍ଷୁଦ୍ର ଜୀବନଟି ହେଉଅଛି ଖାଲି କଲବଲ !
ଟିକିଏ ଶାନ୍ତି, ଟିକିଏ ଆନନ୍ଦ ଛଇ—
ହେବା ପାଇଁ ଦେହେ ମନେ ତାର ତଳ ତଳ
ତା' ସାରା ଜୀବନ ଧରି ଆସୁଚି ସେ ଖୋଜି,

କିନ୍ତୁ ସବୁ ବ୍ୟର୍ଥ, ସବୁ ଆଶା ଚୂରମାର
ଯେହେତୁ ନିରନ୍ତର ! !

ଏହି ମହା ଧରଣୀର ଜଟିଳ ସଂଗ୍ରାମେ
ସେ ଯେ ପଙ୍ଗୁ, ପରାଜିତ, ସେ' ଯେ ସାଥିହରା !
ରହି ଅଛି ଶରବିନ ହୋଇ ଦରମରା !
ଯୋସାର ହୋଇ କେତେ ଦିନ ! କି ସମ୍ପଦ ଲାଗି ?
ବାହି ନେବ ତା' ଜୀବନ ତରୀ !
ଜୀବନ ! ଜୀବନ ! ଆହା ମଣିଷ ଜୀବନ !
ଟିକିଏ ନ ପାଇ ମିଠା
କେମନ୍ତେ ସେ ସୀମାହୀନ କାଳବଳେ ଯାଏ ମରି ମରି !!!
ସେ ଚାଲିଲା ମୁଁ ଚାଲିଲି ପଥପ୍ରାନ୍ତେ ନିମିଷକ ଦେଖା !
ମୁଁ ଦେଖୁଚି ସିଏ କେଉଁ ମହା ସାଗରର—
କଜଳ କଳା ତେଉର ଅତଳ ତଳେ ଯାଉଅଛି ବୁଡ଼ି !
ସେ ଦେଖୁଚି ଅନନ୍ତ ସଂସାର—
ତା' ଆଖିରେ ଆଶ୍ରୟହୀନ ମହାଶୂନ୍ୟ ପୁରି !!!

---

## ରହିବ ଚାହିଁ

ତାହାର ଯେବେ କେହି ଧରଣୀ ତଳେ ନାହିଁ
ରହିବ ରହିବ ମୁଁ ତାହାରେ ନିତି ଚାହିଁ !
ଆଖିରୁ ପୋଛି ଦେବ ଉଷ୍ଣ ଲୁହ ଟିକ
କହିବ ତା'ରେ ବାଣୀ ମଧୁର ସମଧିକ !
ଶୁଷ୍କ ଓଠେ ତାର ବୋଳିବ ହସଟିଏ
ଧରଣୀ ତଳେ ସେକି ମୋହର ନୁହେଁ କିଏ ?
ଗଭୀରୁ ଗଭୀର ତା' ବୁକୁର ବେଦନାରେ
ମରି ସେ ଯାଉନି କି ଆର୍ତ୍ତ ହାହାକାରେ !
ତାହାର ନାହିଁ ସଖା ତାହାର ନାହିଁ ସାଥି
ତାହାର ପାଇଁ କିଏ ଦେଉନି ଖୋଲି ଛାତି !

ଉଠନ୍ତି ପଲ୍ଲବ ତାହାର ବୁକୁତଳ
କ୍ଷୀଣରୁ କ୍ଷୀଣ ହୋଇ ମରୁଚ ପଳ ପଳ !
ତାହାର ଯେବେ କେହ୍ବ ଧରଣୀ ତଳେ ନାହିଁ
ରହିବ ରହିବ ମୁଁ ତାହାରେ ନତ ଚାହିଁ !
ପଡ଼ିଚ ପଥେ ଯେହ୍ବ ଅସୀମ ନାରଖାରେ
ତାହାରେ ଛାଡ଼ି ମୁହଁ କୁଆଡ଼େ ଯାଇପାରେ ?
ତୃଷ୍ଣାଭରା ଆଖି ତାଳ ଯେ ଅଛି ଚାହିଁ
ଚକିଟି ଦଳ ତାରେ କଭଳ ଯିବ କାହିଁ ?
ସେ ଧନ ଦଉଲତେ କ ଅଛି ଲୋଡ଼ା କହ ?
ଯେଉଁଠି ଚାହିଁ ମତେ କାନ୍ଦେ ଅସହାୟ !
ମଣିଷଟିଏ ମୁଁ ଯେ ମଣିଷ ପାଇଁ ଗଢ଼ା
ମଣିଷ ପାଇଁ ଦେବ ସେନେହ ବୁକୁଭରା !
ମୋହର ହସଖେଳ, ତାହାର ହସଖେଳେ
ତାହାର ଗୌରବେ ମୋ ବୁକୁ ଉଦ୍‌ବେଳେ !
ତାହାର ଯେବେ କେହ୍ବ ଧରଣୀ ତଳେ ନାହିଁ
ରହିବ ରହିବ ମୁଁ ତାହାରେ ନତ ଚାହିଁ ।

———

## କେଉଁ ଅନ୍ଧାରେ ଚାଲ ବାହ ତୁମ ତରଣୀ !

ଯେଉଁଠାରେ ନାହିଁ ହୃଦ ଦଆ ଦେଇ ଟିକଏ
ଇମିତି ଚାଇଜ କଏ କାହିଁ ଅଛ ଦେଖିହେ ?
କଥାକେ କଥାକେ ଖାଲି ଚାଲ୍‌ବାଜି ଖେଳଇ
ଜଣକୁ ଜଣେ ଯେ ଜଗି ଜଗି ଖାଲି ଚଳଇ !

ଜଣେ ଯେବେ ହସି ହୃଦଭରା କଥା କହଇ
ଆନ ଜଣେ ଖାଲି ଗମ୍ଭୀର ହୋଇ ରହଇ !
ସେନେହ ସୋହାଗ ମଧୁ ଆଳାପନ ଭିତରେ
ଖୁରା ଧରି ଜଣେ ତୋଟି କାଟି ଚାଲେ ସତରେ ।

ସତ କହିବାକୁ କା'ର ଗୁର୍ଦ୍ଦା ନାହିଁ ପତାଏ
ମିଛ କହିବାକୁ ଜଣେ ଯେ ଜଣଙ୍କୁ ବତାଏ
ମିଛରେ ଭର୍ତ୍ତି ଯେ ଯାରେ ପାଗଲ ମାରି ହେ
ସେ ପୁଣି ସବୁଠୁ ପାରିବାର ଅଟେ ଭାରି ହେ ।

ହଟହଟା କରି ଆନକୁ ପାରିବା ଦବାଇ
ଆନର ବିପଦେ ହସି ବାହାଦୁରୀ ନବାହିଁ—
ପୌରୁଷ ବୋଲି ଗର୍ବେ ଯେ ଗୁର୍ଦ୍ଦା ଠେକଇ
ସିଏ ପୁଣି ସାର ମଣିଷ ଦୁନିଆ ଲେଖଇ !!

ଆଜିସିଏ ତୁମ ବନ୍ଧୁ ପଡ଼ିଶା ଭାଇ ହେ
କାଲି ହ' ଗୋଇଠା ଦେଲଣି ତାହାକୁ ଥୋଇ ହେ
ପରଦିନ ତାକୁ ପଥ ଭ୍ରଷ୍ଟ କଲଣି
ଜୀବନ ଧରି ଯା ବଞ୍ଚି ରହିଚ, ମଲନି ?

ସୀମାହୀନ କେତେ ଜୀବନର ଢେଉ ଖେଳଇ
ଚୁହିଁ ଦେଲେ ତଳେ ଅନ୍ତର କେତେ ପୂରଇ ?
ଏ ମହାଲୀଳାରେ ଆଶ୍ଳେଷ ଦେଇ ନିପୁତ
ଚୁଲବାକୁ ତୁମ ଇଚ୍ଛା ହେଉନି କିପୁତ ?

ଅନ୍ତର ଭରି ଦୁନିଆକୁ ଭଲ ପାଇବା
ଦୁନିଆ ଓଠରେ ହସର ଜୁଆର ବାହିବା
ଏକି ନୁହେ ତୁମ ଜୀବନର ମଧୁ ସରଣୀ ?
କେଉଁ ଅନ୍ଧାରେ ଚୁଲ ବାହି ତୁମ ତରଣୀ ?

———

# ଦେଉ ସେ ଯେତେ ବାଧା ଦବ !

—୧—

ଜୀବନେ ଯେତେବାର ଲୋଡ଼ିଲି ଠିଆ ହେବ
ଧରଣୀ ବାଧା ଦେଲା ମତେ
ପଡ଼ିଛି କେତେବାର ଛିଡ଼ିଛି ଦେହସାଜ
ତଥାପି ଗ୍ଭଲିଛି ମୋ ପଥେ
ଆଘାତ ପ୍ରତିଘାତ ସହିଛି ବହୁବାର
ନୟନୁ ଝରିଅଛି ଅଶ୍ରୁ ଧାର ଧାର
ଜାଗିଛି କେତେ କୋହ ଏ ବୁକୁ ତଳେ ମମ
କେ ଜାଣି ପାରିବ ବା ସତେ ?
ଜୀବନେ ଯେତେବାର ଲୋଡ଼ିଲି ଠିଆ ହେବ
ଧରଣୀ ବାଧାଦେଲା ମତେ !

—୨—

ସବୁରି ନୟନେ ମୁଁ ହେୟ ଅପଦାର୍ଥ
ଅଟଇଁ ଧନହୀନ ପ୍ରାଣୀ
ମୋତେ କେ ଦେଉ ନାହିଁ ସେନେହ ସମ୍ମାନ
କହିନ ପଦେ ମଧୁ ବାଣୀ
ଯହିଁ ମୁଁ ଠିଆହୁଏ ଧରଣୀ ତଡ଼ିଦିଏ
ସେନେହ ଗଉରବ କାହିଁ ବା ଦେବ କିଏ ?
ଆଖିର ଲୁହ ମୋର ଆଖିରେ ମାରି ମାରି
ବିତାଏ ମୋର ଦିବାଯାମୀ
ସବୁରି ନୟନେ ମୁ ହେୟ ଅପଦାର୍ଥ
ଅଟଇଁ ଧନ ହୀନ ପ୍ରାଣୀ !

—୩—

ଅଭାବ ଭିତରେ ମୁଁ ନୟତ ଗତି କରେ
ନୁହେଁ ମୁଁ ଧନଶାଳୀ ଜନ
ସବୁରି ବିଦ୍ରୂପ ସହେ ମୁଁ ସହିପାରେ
ମଉନେ ମାରି ଦେଇ ମନ

ଯେଉଁଠି ରହିଅଛି ଅଭାବ ଅନାଟନ
ସେଇଠି ଧରଣୀର କାହିଁକି ନିପୀଡ଼ନ ?
ଶ୍ରେଷ୍ଠରୁ ଶ୍ରେଷ୍ଠ କର ସେଇଠି ମଣିଷକୁ—
ମଣିଷ ଦେଖେ·ଅନୁକ୍ଷଣ
ଅଭାବ ଭିତରେ ମୁଁ ନସ୍ୟୁତ ଗନ୍ଧ କରେ
ନୁହେଁ ମୁଁ ·ଧନଶାଳୀ ଜନ ;

—୪—

ଧରଣୀ ମୋ ବେଦନା ନ ବୁଝୁ ଲବେ ହେଲେ
ଦେଉ ସେ ବାଧା ଯେତେ ଦିବ
ଉଠି ମୁଁ ନାଇଁପାରେ, ଉଠିବା ପାଇଁ ପ୍ରାଣେ
ଜଳୁ ସେ ଆଶା ଅଭିନବ;
ଆସିବ ଦିନ, ଦିନେ ଫୁଟିବ ଫୁଲକଳି
ଗନ୍ଧ ଯିବ ତାର ସମୀରେ ସଞ୍ଚରି,
ପଣ୍ଡିତ ଚିରକାଳ ପଣ୍ଡିତ ନାଇଁ ଥାଏ
ଦିନେ ତା' ଫୁଟେ ଗଉରବ
ଧରଣୀ ମୋ ବେଦନା ନ ବୁଝୁ ଲବେ ହେଲେ
ଦେଉ ସେ ଯେତେ ବାଧା ଦିବ !

———

# ଫେରିଅଛି

ଏ ଜୀବନ ଯେତେ ବଡ଼
ତାହାଠୁ ଆତ୍ମର ବଡ଼
ଜୀବନର ସ୍ୱାତନ୍ତ୍ର୍ୟ ଟିକକ
ସେଇ ଟିକ ହଜ ଗଲେ
ସେଥିରେ ଆସିଲେ ଆଞ୍ଚ
ସାରା ଜୀବନଟା ଯେସ୍ନେ
ଅସହ୍ୟ ବେଦନା ଭରା ଗୋଟାଏ ନରକ !
ଚିର ଦିନ ଯେସ୍ନେ ଖାଲି
ବଞ୍ଚି ରହିବାକୁ ହୁଏ

ପ୍ରାଣହୀନ ସ୍ୱପ୍ନହୀନ
ମହା-ମେରୁ ସମ
ଗଢରେ ଥିବରେ ହାୟ
ଜାଗେନା ଜାଗେନା ଲବେ
ପ୍ରାଣବୋଳା ମଧୁ ଉନ୍ମାଦନା !

ଫେର ଅଛ ବନ୍ଧୁ ମୋର !
ସେ ଟିକ ସମ୍ପଦ ଧର,
ପଦାଘାତ କର ସବୁ—
ଅନାଗୃର ପରେ !
ଜୀବନ ବୀଣାରେ ତୁମେ
ପାରଚ ମୂର୍ଚ୍ଛନା ତାନ
ବୁଝିଚ ପ୍ରାଣର ମୂଲ୍ୟ
ଏ ଧରଣୀ ପରେ ।
ତୁମେ ନୁହଁ ମୁହିଁ ନୁହେ
ନୁହେଁ କେହି
କାହା ପରେ କରବ ଜୁଲମ
ସଭିଙ୍କି ଏ ମାଟି ପରେ
ଗୃଲବାକୁ ହେବ ସଖା ।
ପରସ୍ପରେ ଦେଇ ଦେଇ
ସେନେହ ଓ ସମ୍ମାନ ପରମ !

ଫେରଅଛ ବନ୍ଧୁ ମୋର !
ଫେରଅଛ
ମରଣ ଭିତରୁ ଧର
ଜୀବନର ସ୍ୱର୍ଣ୍ଣ କଣାଟିକ
ତୁମର ଏ ପ୍ରାଣ ଭରା
ଅଭିମାନ
ଲଗେ ମୋରେ
ଅଧିକୁ ଅଧିକ !!

———

# ଗରିବ-କୁଟୀର

## —ଏକ—

"ପୂଜାଛୁଟି ହୋଇଯିବ ହୁଆହେବ ଆଗରୁ ସିନା ଇସ୍କୁଲ ଦରମା
ନ ଦେଲେ ତ କଟିଯିବ ନାଆଁ
ନାଁ। ପୁଣି ଲେଖା ହେଲେ ପଡ଼ିବ ଅଧିକା ଫିସ୍
କେଜାଣି ହେଲେ ଫିସ୍‌ଟାକୁ କରିବେନି କ୍ଷମା
ସେତ ଆମ ଇସ୍କୁଲ ନିୟମ
ବାପା ! ଏତେ ଭାବୁଛ କଣ ମ ?"
"ଆରେ ବାପ ଏବେ ପରା ଦେଇଥିଲି
ମୋ ପାଖରେ ନାଇଁ ଆଉ ଜମା ପଇସାଏ !
ଉଷା ! ଉଷା ! ଖଡ଼ୁ ହଳ ପାଦୁ କାଢ଼ି ଦିଅ ମତେ ଦିଅ
କାହା ପାଖେ ଥୋଇ ଦେଇ
ଆଣିବି ଦି' ଟଙ୍କା ହେଲେ,
ଯାଏଁ ବେଗି ଯାଏଁ"
କାନ୍ଦ କାନ୍ଦ ହୋଇ କହେ ଉଷା
"ନେବ ମୋର ଖଡ଼ୁହଳ ?
ଦି'ଟଙ୍କା କି ମିଳିବନି ?
ଏ ଗାଆଁରେ ଏ ସାଇରେ
କେଜାଣି କଣ ନାହାନ୍ତି ଆମର ?
ଘର କଣ ଭାଙ୍ଗି ଆମେ ଚାଲିଯିବା ଏଠୁ
ପାରିବାନି ସୁଝି ଟଙ୍କା ଦୁଇ ?
ଆମେ କଣ ଏତେ ପର ?
ଗରିବ ବୋଲି କି ଆମେ
ଦେଇଅଛୁ ବିଶ୍ୱାସ ହରାଇ ?"

"ନାଇଁ ଉଷା ! ତୁମେ କିଛୁ ବୁଝୁ ନାହଁ କଥା ?
ଆମର କି ଅଛି ଜମିବାଡ଼ି ?
ଆମର କି ଅଛି ଲୋ ଚାକିରି ?
ଅଛି କିଲୋ ବ୍ୟବସାୟ କିଛି ?
କି ସମ୍ପଦ ଦେଖି, ବା ଆମର
ଲୋକେ ଦେବେ ଧାର ବା ଉଧାର !

ଲାଗିଲେ ଖାଇବା ଆମେ
ନଇଲେ ରହିବା ଆମେ
ଖାଡ଼ା ଉପବାସ
ଗର୍ବର ନାହିଁ ବନ୍ଧୁ
ନାହିଁ ପ୍ରିୟ ନାହିଁ ଆପଣାର
ଗର୍ବକୁ ଡାକି କଏ
ପୁଚ୍ଛେନାହିଁ ପଦେ ମଧୁଭାଷ ।"

ଶିକୁଳା ଲଗାଇ ଉଷା କାଢ଼ୁଅଛି
ଗୋଡ଼ ଖଡ଼ୁ ତା'ର
ନେତ୍ର ପ୍ରାନ୍ତୁ ବହୁଅଛି
ଲୁହ ଧାର ଧାର
"ହେଉ ହେଉ
ଧନ ମୋର ପଢ଼ୁ ପାଠ
ଦରମାଟି ଠିକ୍ ବେଳେ ଦେଇ
ସେ ଆସିଲେ ପାଶ୍ କରି
ଲକ୍ଷେ ଟଙ୍କା ମୋର ଅଟେ ସେଇ ! !"

ଶ୍ୟାମ ବନ୍ଧୁ ବୁଲୁଚନ୍ତି ସାଇ ସାଇ ଖଡ଼ୁହଲେ ଧରି
ବନ୍ଧା ରଖି ହେଲେ ଦିଅ କଏ ଟଙ୍କା ଦୁଇ ।
କେ କହୁଛି "ଦି" ଟଙ୍କାର ନୁହେ ସେ ଜିନିଷ
ହେଲେ ଆମେ ଟଙ୍କେ ଦେଇ ପାରୁ"
ସେ କହୁଛି 'ରସ ଖଡ଼ୁ ହଲେ
ବନ୍ଧା ରଖିବାକୁ—
ଭଲ ଲାଗୁନି ଜମାରୁ ।'
କଏ ସେ ଦୋକାନୀ ଜଣେ ତଉଲୁଛି—
ବଦନ ହଲାଇ
କହୁଛି ଇତର ହସି
ରଖିବ ଏହାକୁ କଏ
ଦୁଇଟଙ୍କା ପାଇଁ ?
ନିରାଶ ନୟନ କରି ଅଶ୍ରୁ ଛଳ ଛଳ
ଶ୍ୟାମ ବନ୍ଧୁ ଫେରୁଚନ୍ତି ଘର !

କପାଳେ କାଟୁଚ ଖଗ୍ଗ
ଗମ ଗମ ବୋହୁଅଛୁ ଝାଳ,
ଗୋଡ଼ ଦୁଇ ଧୂଳ ସର ସର,
ବଡ଼ କଷ୍ଟ ବଡ ବାଧା !
ପିଲ୍ଲଟିକୁ ଆଉ ନାହିଁ ପାରବ ପଢ଼ାଇ
ଭାବୁଚନ୍ତ ମର୍ମଗତେ,
ଧନଯାକ ବୁଲ ବୁଲ ମାରେ ଝୋଲ୍ ଝାଇଁ
ଘରେ ଯାଇ ପହଞ୍ଚିଲେ,
ପ୍ରିୟା ତାଙ୍କ ଖରଡୁଚ ଶାଗ
'ନାଇଁ ଉଷା ! ମିଳଲାନ ଟଙ୍କା ଦୁଇ
ଆସିଲ ମୁ ବୁଲ ସାଇଯାକ'
"ମିଳଲାନ ?
ହଉ ତେବେ ପାଦ ଧୂଅ
ଆଗ ଖାଇ ବସ
କରଚ ମାଣ୍ଡିଆ ଜାଉ
ବେଳତ ଗଲାଣି ଗଡ଼
କରୁଥିବ କେତେ ଭୋକ ଶୋଷ !!"

"ଖାଇ ବସିବାକୁ ଉଷା ! ଇଚ୍ଛା ହୁଏ ନାଇଁ ।
ଗୋଟିଏ ବୋଲ ମୋ ପିଲ୍ଲ
ରହିବ ସେ ପଡ଼ା ଗୁଡ଼ ଦେଇ ?
ଦୁ' ଅକ୍ଷର ପଢ଼ିଥାନ୍ତା
ହୋଇଥାନ୍ତା ମଣିଷ ଗୋଟିଏ
କେତେ ଆଶା କରଥିଲ
ସବୁ ହୋଇଯିବ ଚୁରମାର ?
ପିଲ୍ଲଟି ପଢୁଚି ଭଲ
କହୁଥିଲେ ମାଷ୍ଟର ତାହାର !
ଏ ଦେହର ପ୍ରତି ବିନ୍ଦୁ ରକ୍ତ ଦେଇ
ଆମେ ଉଷା ! ଗଢ଼ିଚେ ଯାହାରେ
ତା' ଓଠରୁ ହସ ଯେବେ ଶୁଖିଯିବ
ମଉଳିବ ଯେବେ ତାର
ମୁ ନେଇ କଳ୍ପନା ସବୁ

କେମନ୍ତେ ବଞ୍ଚିବା କହ ଧରି ଏ ଜୀବନ ?
ଫୁଟିଥିବା କୁସୁମରେ
କେମନ୍ତେ ଲୋ ବୃନ୍ତଚ୍ୟୁତ କରି
ପାଦରେ ମକଚି ଦେବା ?
ଉନ୍ମନ ଯେ କରିବାକୁ
ଗନ୍ଧ ବିକୀରଣ !!
ସ୍ରୋତ ଝରଣାଟି ଯହିଁ
କୁଳୁ କୁଳୁ କଳତାନ କରି
ଲଙ୍ଘି କେତେ
ବିଲ ବଣ ଶିଳା
ଗୁଳିଚି ଲୋ ଦିବସ ଶର୍ବରୀ
କେମନ୍ତେ ତା' କଳ ତାନ ମାରିବା କହତ ?
ବକ୍ଷେ ବହି ମଣିଷ ରକତ !

କାହିଁକି କାହିଁକି କହ
ଦରିଦ୍ର ଉପରେ
ଚିରଦିନ ଅତ୍ୟାଚାର ଅନାଚାର
ପୀଡ଼ନ ପେଷଣ ?
କାହିଁକି କାହିଁକି ସତେ
ସମାଜରେ ଦରିଦ୍ରର ସ୍ଥାନ ଅକିଞ୍ଚନ !
କାହିଁକି କାହିଁକି ସତେ
ଦରିଦ୍ରର ନେତ୍ର ପ୍ରାନ୍ତୁ
ବହୁଥିବ ଉଷ୍ମ ଅଶ୍ରୁ ବାରି ?
କାହିଁକି କାହିଁକି ସତେ
ପଥ ପ୍ରାନ୍ତେ ଗୃହ କଣେ
ସୀମାହୀନ ଅଭାବରେ
ହୋଇ ଆତ୍ମହରା
ଦରିଦ୍ର ପିଣ୍ଡରୁ ଯିବ
ପ୍ରାଣବାୟୁ ଚାଲି ?
ଦରିଦ୍ରର ଧନ ନାହିଁ
ମାନ ନାହିଁ
ସ୍ଥାନ କମା ନାହିଁ ?

ତା ଅନ୍ତର କହ କଥା
ଯିବ ମର ମର
ତା'ଜୀବନ ରହିଥିବ କଥା
ମଳୟ ବିଶୁଷ୍କ ହୋଇ
ମରୁଭୂମି କଣ୍ଟାଗଛ ପର ?"

"ଏ ସକଳ ପ୍ରଶ୍ନ ଆଜ
ମୋ ବୁକୁରେ
ଜାଳୁଅଛୁ ବିଦ୍ରୋହର ନିଆଁ
ମୁଁ ତ ହୋଇ ଯାଉନି ଗୁନିଆ ।
ଦାରିଦ୍ର୍ୟର କଷାଘାତେ
ଜଣେ ଯେବେ ପୃଥିବୀର କେଉଁ ପ୍ରାନ୍ତେ
ହୁଏ କଲବଲ,
ବୁଝିବାକୁ ହେବ ଚିନ୍ତା !
ପୃଥିବୀ କରୁଚି ନଷ୍ଟେ
ଜନ୍ମ ଆରମ୍ଭେ, ଉକାସ୍ତୁତ
ଲୁଚି ଲୁଚ ଛପି ଛପି କାହିଁ !
ଗୁଲୁନ ଗୁଲୁନ ସିଏ
ସତ୍ୟର ସୁବର୍ଣ୍ଣ ରଥେ
ନିର୍ଖିକ ନିର୍ମଳ କର
ତା'ର ବୁକୁତଳ !!!"

"ଏଇ ମୋ ପିଲାଟି ଦେଖ
କେମନ୍ତେ ରହିଚ ଗୁହିଁ
ନିରାଶ ନୟନେ !
କାଲେ ସିଏ ଆଜଠଉଁ
ପାରିବନି ପଢ଼ି ।"
ପ୍ରିୟତମ ! ଆଉ ନାଇଁ କଚୁ
ଅଛୁ ଏଇ ଭଙ୍ଗାଦଣ୍ଡି
ଯହିଁରେ ରହିଚ ଟିକେ
ଖାଣ୍ଟି ସୁନା ଜୟପୁରୀ
ନିଅ ସ୍ବାକୁ ବିକ ଦିଅ ନିର୍ବିଘ୍ନରେ
ଯାଉ ଏଇ ଘର ଖଣ୍ଡି,

ବକା ହେଉ ବାଡ଼
ପଢ଼ୁପାଠ ମୋର ଧନମାନ
ପାଠ ପଢ଼ି ଯୋଗ୍ୟ ହୋଇ
ହସି ଖେଳ ରହିଲେ ପିଲାଟି
ସେ ଆମର କୋଟିନିଧି,
ସେ ଆମ ସୁନାର ସ୍ୱର୍ଗ,
କାହିଁକି ଭାଙ୍ଗୁଛ ଆଉ
ଖାଇ ବସ ଗଡ଼ିଲାଣି ବେଳ !

"ଉଷା ! ଉଷା ! ଦେଖି ଏଇ—
ପୃଥିବୀର କ୍ରୂର ଜୁଆଖେଳ
ମୋର ପ୍ରତି ରକ୍ତ ବିନ୍ଦୁ
ଉଠୁଚି ଉତ୍ତପ୍ତ ହୋଇ
ଲକ୍ଷ ଲକ୍ଷ ପୁତ୍ର କନ୍ୟା ନରନାରୀ
ବିପନ୍ନ ଯେଉଁଠି,
କେମନ୍ତେ ରହିବି
ମୁହିଁ ସ୍ଥିର ହୋଇ ତହିଁ ?..."

—ଦୁଇ—

"ସୀମାହୀନ ପୁରପଲ୍ଲୀ ଚତୁର୍ଦ୍ଦିଗେ ଗୃହିଁ ଦେଲେ ଉଷା !
ମୁଣ୍ଡ ମୋର ଯାଏ ଲୋ ଘୂରିଇ
ଦୀନ ଦୁଃସ୍ଥ ରୁଗ୍‌ଣ ପଙ୍ଗୁ କେ କାହିଁ ଅଛନ୍ତି ପଡ଼ି
କେତେ କଳବଳେ ହେନ ନଅନ୍ତି ପୁହାଇ !
ଚିତ୍ରକନା ଠିକେ କଏ ପାଉ ନାହିଁ ଦେବାକୁ ଘୋଡ଼ାଇ
କା' ଅନ୍ତ ଯାଇଚି ଶୁଖି ନ ଖାଇ ନ ପିଇ
ଭୁଣ୍ଡରୁ କା' କଥା ପଦେ ବାହାରୁ ତ ନାହିଁ ।
ପ୍ରାଣପୂର୍ଣ୍ଣ ହସଟିକେ କା' ଓଠରେ ହେଉ ନାହିଁ—
ଲଟେ ତଳ ତଳ
ଗ୍ଭଲିଲେ କେ' ପାରୁ ନାହିଁ ସିଧା ଓ ସଳଖେ
ଆପାଦ ମସ୍ତକ ତାର ହୁଏ ଟଳ ଟଳ !
ଛୁଡ଼ୁଚି କାହାର କଫ ପେଲୁଅଛୁ ଧଇଁ
କା' ହୃଦରେ ଫୁକା ଫୁକା ଛଉ

ତ୍ୟକ୍ତ ଆବର୍ଜନା ପରି
ସମାଜର ହତାଦର ବନ୍ଧୁ, ପଡ଼ିଛି ସେ ରହି !

ନବ ଯଉବନ ଛନ୍ଦଇ ପ୍ରତି ଅଙ୍ଗେ ବନ୍ଧୁ
ଯେ କଣୋଣ୍ଠ, ବଧୂ ଆଜ
ପ୍ରିୟ ଭୁଲେ ତା'ର ରଚୁଥାନ୍ତା କେଳି
ବଳତା ପରାଏ ତାର ପ୍ରତି ଅଙ୍ଗ,
ଯାଇଅଛୁ ଶୁଖି !
ପର୍ଯ୍ୟୁଷିତ ଫୁଲ ପରି ପଡ଼ିଛି ମେଞ୍ଚାଟି ହୋଇ
ଜର ରୋଗ, କାଶ ତାରେ ରହିଅଛୁ ବେଢ଼ି ।"

"ଏଇ ଦେଖ ! ଊଷା !
ଏଇ ଯେ ପିଲାଟି କା'ର
ଦୋକାନକୁ ଯାଉଅଛୁ ଆଣିବାକୁ ମାଲପା ଟିକଏ
ହ' ପାହୁଣ୍ଡ ଚାଲି ପୁଣି ଟିକଏ ବସୁଛି
ଫୁଙ୍କିଦେଲେ ଉଡ଼ିଯିବ ସିଏ !
ଅଇଁଠା ଗଦାରେ ବସି
ବାଘଡ଼ କୁକୁର ପରି
ଟିକି ଟିକି ପିଲାଛୁଆ କା'ର
ଭାତ ଟୁଙ୍କି ଖାଉଛନ୍ତି,
ଦୁଃସହ ଦୁର୍ବହ ଲାଗେ
ଦେଖିବାକୁ ହତଭାଗ୍ୟ ମଣିଷ ସଂସାର !
ଗୁମ୍ଫି ଗୁମ୍ଫି ଘର ସବୁ
ପବନ ଓ ଆଲୋକର
ନାହିଁ ଗତାଗତ
ତା' ଭିତରେ ଜନ୍ତୁପରି
ମୋହର ମଣିଷ ଭାଇଭଉଣୀ ଶତେକ
କେଉଁଠେ ନାରଖାରେ ସତେ
ନାହାନ୍ତି ସେ ରହି ।
ଅଭାବର କଷାଘାତେ
ନିସ୍ପେଷିତ ହୋଇ ଅବିରତ !
ମଣିଷ ଭିତରେ

କେତେ କଣ ଅତୁଳ ସମ୍ପଦ ରହିନାହିଁ !!!
କେହି ହେଲେ ଏ ମାଟିରେ ଜଣେ ବୁଝି ନାହିଁ !!
ଫଟାଇ ଏ ଆକାଶ ଅବଣୀ
ମର୍ମଭେଦୀ ଗଭୀର ଚିତ୍କାର କରି
ବସୁନ୍ଧରା ଅନନ୍ତ ଅନ୍ଧାରେ
ସେ ଫୁଟନ୍ତ ଫୁଲକଢ଼ି ଯିବ ଝଡ଼ି ଝଡ଼ି
ତା' ଆତୁର ରଡ଼ି
କା' ବୁକେ କମ୍ପନ
ଯାଉ ନାହିଁ ଲବେ ସୃଷ୍ଟି କରି !"

—ତିନି—

"ଥରେ ବସି ଚିନ୍ତାକର ଉଷା !
ଆମ ଗାଆଁ କୁସୁନିଆ ଯାଇଅଛୁ ମରି
ତା ପାଇଁ କାହାର ନେତ୍ରୁ
ଲୁହଟିଏ ଯାଇନାହିଁ ଝରି !
ତା ପାଇଁ ଅନ୍ତର କାର ହୁଏ ନାହିଁ ବ୍ୟଥିତ ବିକଳ
ସେ ଯେହ୍ନେ ଧରଣୀ ପରେ
କାଠ ବା ପାଷାଣ ପରି ନଥିବ ଅନ୍ତର !
ଜଳୁଚି ତା' ଚିତାନଳ ଶମଶାନେ ସ୍ୱର୍ଣ୍ଣଶିଖା ମେଲି
କାହା ଅନୁଭବେ ସେହୁ ଆସେ ନାହିଁ ଲବେ ହେଲେ ଫେରି !
ଦରିଦ୍ର ସେ, ଅଭଗା ସେ, ରୁଗ୍ଣ ଯିଏ
ଚିର ଦିନ ବେଦନାର ସାଥି
ବଢ଼ିନି ସେ ଖାନଦାନ ଘରେ
ବୁଲିନି ସେ ରାଜପଥେ ଫୁଲାଇ ତା ଛାତି !
ପିନ୍ଧିଥାଏ କଳାକନା ଧରିଥାଏ ବାଡ଼ି ଖଣ୍ଡେ !
ବୁଲୁଥାଏ ଗ୍ରେଟଠେଇ ଗ୍ରେଟଠେଇ
ଭିକ ଗଣ୍ଡେ ମାଗିଆଣି ଶମେ ତା' ଉଦରଜ୍ୱାଳା
ଧରଣୀରେ ଆପଣାର ନାହିଁ ତାର କେହି !"

"ତା'ର କଣ ଭଲଗୁଣ ନ ଥିଲା କିଛି ?
ଥିଲା ତାର ଥିଲା !

ଚାହୁଁଥିଲା ଚେରମୂଳ ଅଉଷଧ ପାଇଁ
ଆଣୁଥିଲା ଖୋଜି ଖୋଜି ବଣ ବୁଦାଶିଳା !
ମଧୁକଣ୍ଠ ଫେଇ ସେହୁ ଗାଉଥିଲା—
ବସନ୍ତ ରସର ଗୀତ
ଚଇତାଳି ରାତେ ବସି ଗାଁ ମଣ୍ଡପରେ
କେତେ ଲୋକ ଏ ଗାଆଁ ର ଶୁଣୁଥିଲେ କାନପାରି
କି ଅମୃତ କଣ୍ଠ ସିଏ ପାଇଥିଲା ବିଧାତାର ବରେ !
ଦରିଦ୍ର କୁଡ଼ିଆଟିରେ ବେଳେ ବେଳେ ବସି
ଛୋଟ ପିଲାଙ୍କର ମନ ବିନୋଦନ ପାଇଁ
ସୁନ୍ଦର ଖେଳନା କେତେ ତିଆରି କରିଚି,
ଦୁ' ପଇସା ପାଏ ତହୁଁ
ପିଲେ ଆଉ ସେ ଖେଳନା ପାଇବେ ତ ନାଇଁ !
ପୃଥିବୀକୁ କରିନାଇଁ କେତେକଥା ଦାନ
ଆଜି ସେହୁ ହାମାମାନେ ଯାଇଅଛୁ ମରି
କାହା ନେବ ପ୍ରାନ୍ତ ହାଇ !
ତାହା ଲାଗି ଲୁହଟିଏ ଯାଉନାଇଁ ଝରି !
କୁସୁନଆଁ ଏ ଦେଶର ନୁହେ ମନ୍ତ୍ରୀ ନୁହେ ବାଚସ୍ପତି !
କୁସୁନଆ ନୁହେଁ ଏ ଦେଶର ଜ୍ଞାମୀ ବା ପଣ୍ଡିତ !
ତାହାଠାରେ ନାଇଁ ଥାଇପାରେ ପ୍ରଚୁର ଶକତି !
କୁସୁନଆ ନୁହେଁ ଏ ଦେଶର ଉଚ୍ଚ ପଦବୀର—
ରାଜ କର୍ମଚାରୀ
କୁସୁନଆ ଚଢ଼ିନି ଜୀବନେ
ମଟର ବା ଏରୋପ୍ଲେନ୍ ଗାଡ଼ି
କୁସୁନଆ କୁସୁନଆ ଖାଲି
ସେଇ ଝାଟିମାଟି କୁଟୀରର ନିଧନ ସଙ୍ଖାଳି !
କୁସୁନଆ କୁସୁନଆ ଖାଲି—
ତା' ଅନ୍ତର ସେତେ ଛୋଟେ ମଧୁ
ତା' ଦରିଦ୍ର ପଲ୍ଲୀଗାଏଁ ବକ୍ଷଭରି ଦେଇଅଚ୍ଛୁ ତାଳି !
କୁସୁନଆ ଏଇ ମହାପୃଥିବୀର ଗୋଟିଏ ଦରିଦ୍ରଜୀବ
ପୃଥିବୀର ଇତିହାସେ ନାଇଁ ପାଇ ପାରେ ସ୍ଥାନ
କିନ୍ତୁ ଚିରଦିନ ମନେ ପଡ଼ୁଥିବ ନିଜ
ଦାରିଦ୍ର୍ୟ ଭିତରେ ଯତି

କେମନ୍ତେ ସେ ଗାଉଥିଲା ମଧୁଭରା ଗାନ ।
ଚେରମୂଳ ଅଉଷଧ ଚକ୍ଷି ଆଣି
କେମନ୍ତେ ବଞ୍ଚାଉଥିଲା ଶତ ନିଃସ୍ୱ ପ୍ରାଣ !
ଟିକି ଟିକି ପିଲାଙ୍କର ଓଠେ
କେମନ୍ତେ ଫୁଟାଉଥିଲା ଅସରନ୍ତି ହାସ
କାହାକୁ ସେ କେବେ ଭନେ
ଖେଳନା ଯେ ଦେଉଥିଲା
ପୁନଅ ପରବ ଦିନେ ହେଲେ ନାଚ ଯାତ !''

''କୁସୁନଆ ସେଇ ଝାଟିମାଟି କୁଟୀରର
ନିଧନ ସନ୍ତାନ
କି ନିଠୁର ହୀନମାନେ
ଆରପାରେ ଯାଇଅଛୁ ଗୃହ !
କାହାର କରନ ଷଣ୍ଡ
ସୀମାହୀନ ଜନତାର ଆର୍ତ୍ତ ହା'ହାକାର
ପଦତଳେ ଦଳି
ବଡ଼ ହେବାପାଇଁ ସ୍ୱପ୍ନେ ବଳାଇନ ମନ୍ତ୍ର !
ସବୁର ଲାଞ୍ଛନା ତାଡ଼ନା ସହି
ସହି ଶତ ଉପବାସ ଜାଳା
ଦୁନଆରେ ମେଲିଥିଲା ତା ଦରିଦ୍ର ଜୀବନର ଧାରା
ପୃଥିବୀ କରିଚି ତାରେ ତୀବ୍ର ଉପହାସ
କୁକୁର ବିରାଡ଼ଠାରୁ ହୀନକରି ଦେଖିଅଛୁ ତାରେ
ସେ କାହାକୁ ତୁଚ୍ଛକରି ଦେଖିନାହିଁ ବାରେ !

''କହରେ ଜଗତ୍ କହ !
ମଣିଷକୁ ମାପିବାକୁ ହେଲେ
ମାପିବାକୁ ହେବ ତାର ଧନଗର୍ବ ଜ୍ଞାନଗର୍ବ
ଅଭିଜାତ୍ୟ ଗର୍ବ ନେଇ ମତେ ?
ସୀମାହୀନ ଦାରିଦ୍ର୍ୟର
କାଳିଆ କୋତରା ଛିଣ୍ଡା କନା ତଳେ ତଳେ
ଅମୃତର ଯେ ଜୀବନ ନିତ୍ୟ ଲୀଳାକରେ
ସେ କି ନୁହେଁ ଧରଣୀର ଜୀବନ୍ତ ଗୌରବ ?

ତା' ଭିତରୁ ଫୁଟେ ଯେଉଁ ମୋହନ ସୌରଭ—
ସେ କି ନୁହେଁ ସବଳର ଆଦରର ଧନ ?
ଆଡ଼ମ୍ବର, ଅହମିକା, କ୍ଷମତାର ସିଂହାସନ ଯହିଁ.
ସେଇଠି କେବଳଥାଏ ମଣିଷ ଜୀବନ ।"

"ଆମ ଗାଁ କୁସୁନଆ ଯାଇଅଛି ମରି
ତା' ପାଇଁ ଗୋଟିଏ ଅଶ୍ରୁ
କାହା ନେତ୍ରୁ ଯାଇ ନାହିଁ ଝରି !"

## —ଗରିବ—

ଗରିବ ଉପବାସ ପଶିନାହିଁ ମୁଖେ ଅନ୍ନଜଳ
ଦେହେ କଣ୍ଠା ଅଛି ଖାଲି, ନାହିଁ ଲବେ ତେଜ ବୀର୍ଯ୍ୟବଳ
ପିନ୍ଧିବ କରିଆକନା, ଗଳିଅଛି ପଥପ୍ରାନ୍ତେ ସିଏ—
ମଣିଷର ବହୁଦୂରେ । ଉଠୁନାହିଁ ପ୍ରଶ୍ନ ସିଏ କିଏ ?
କାହା ମୁଖେ ଧରଣୀର ।
ଥିଲେ ତା'ର ଧନ ଜନ ବାପମାଆ ଭାଇ
ଦେଖି ତା' ଏସନ ଦଶା ତା'ରେ କେହି ପଚାରନ୍ତେ ନାହିଁ ?
ଏ ପୃଥିବୀ ସମସ୍ତ ମଣିଷ ତା'ର ସତେ ନୁହନ୍ତି କି କେହି
ରକ୍ତର ବନ୍ଧନ କଣ ଏମାନଙ୍କ ଭିତରେ ତାର ନାହିଁ ?
ରକ୍ତ ! ରକ୍ତ ! ମଣିଷର ନାଲିରକ୍ତ ତା'ର ପ୍ରତି
ଶିରା ପ୍ରଶିରାରେ
କେମନ୍ତେ ବିକଳ ହୋଇ କାନ୍ଦୁଅଛି ଦେଖୁନ କେ'ବାରେ
ଗୁହାଁ ତା'ରେ ଗୁହାଁଲବେ ତା' ରକ୍ତର ପ୍ରତି ବିନ୍ଦୁ ଟିକି
ଆମକୁ କହୁଛି ବାଣୀ, ଗୃଲିଚେ ବଧିର ହୋଇ—
ଆମେ ସମଧିକ !
ଯେତେ ଧନ ଯାଏ ରକ୍ତର ବନ୍ଧନ ସକଳର ଭୁଲେ
କରିନାହେଁ ଆମେ ଅନୁଭବ
ଯେତେ ଧନଯାଏ ଆମର ଯେ ଆନନ୍ଦ ସଂସାର
ଆମ ପାଇଁ ନଷ୍ଟପ୍ରଭ ନୀରବ !

## —ପାଞ୍ଚ—

ଏ ମଣିଷ ମଣିଷକୁ ଯେଉଁ ଠାରେ
ଦେଖେ କ୍ଷୁଦ୍ର କରି
ନରକର ଘୃଣ୍ୟପୀଠ ସେଇଠାରେ
ନାହିଁ ଅବତରି ?
ସେଇଠାରେ ମଣିଷର ମହାଦୃଷ୍ଟି
ହୋଇନକି ହଳାହଳମୟ ?
ସେଇଠାରେ ମନୁଷ୍ୟତ୍ୱ ଆପେ ଆପେ
ପାଇନକି କ୍ଲାନ୍ତ ପରାଜୟ !
ସେଇଠାରେ ଅନ୍ଧକାର ରହିନ କି ?
ବେଢ଼ି ଦଶଦିଗନ୍ତର ଭରି
ପ୍ରଭାତର ସ୍ୱର୍ଣ୍ଣ ରବି
ସେ ଭୂମିର ଦିଗ୍‌ବଳୟ ଘରେ
ଯାଇନ କି ମରି ?

ଆମର ଆମର ମଧ୍ୟେ
ଆମେ ଯେବେ ପରସ୍ପର
କରୁ ପ୍ରତାରଣା
ଆମ ଆମ ମଧ୍ୟେ ଯେବେ
ଅବିଶ୍ୱାସ ସନ୍ଦେହର
ବିଷାକ୍ତ ଝରଣା—
ହୁଏ ନିତ୍ୟ ପ୍ରବାହିତ
ଆମର ଉତ୍‌ଥାନ କାହିଁ ?
କାହିଁ ସମୁଜ୍ଜ୍ୱଳ ଅଭ୍ୟୁଦୟ
ଆମେ ଯେଉଁଠେ ଜାଣି ଜାଣି
ଗଢ଼ୁଚେ ଆମର ଦେଶେ ଶୋଷଣ ନିରୟ !

## —ଛଅ—

ଉଷା ! ଉଷା ! ଏ ମଣିଷ
ଟିକିଏ ଭଲନ୍ତା ହେଲେ—
ସକଳର ଆନନ୍ଦର ଲୀଳାଭୂମି

ଏଇ ଆମ ମାଟି
ଏଥି ଆସ ଆମେ ସମସ୍ତେ ଚାଲିବା
ହୋଇ ହାତ ଧରା ଧରି
ହୋଇ ପରସ୍ପରେ ସାଥି !

ଆମେ ସମସ୍ତେ ଏ ମାଟିରେ
ସାଧନାର ରଙ୍ଗ ଦେଇ
ଚାଲିଚେ ଚାଲିବା
ଆମେ କପାଁ ପରସ୍ପରେ
ହାଣିବା ମାରିବା ?

ଆମଠାରେ କା' ଭିତରେ
କି ସମ୍ପଦ ନାହିଁ !
ଜଣକ ସମ୍ପଦ ନୁହେ ଜଣକର
ସେ ଯେ ମହା ଅସୀମର ପାଇଁ !

ଆମର ଏ ମାଟି ପରେ
ଭୀଷଣ ନରକ ସୃଜ
ଆମେ କପାଁ ଚାଲିଥିବା
ଦିନ ଦିନ ଧରି
ଆମ ଚକ୍ଷୁଁ ବନ୍ଦ କଏ
ନିର୍ବୋଧ ଓ ବୋକା
ନାହିଁ ପାରେ କହି !

ଆମେ ନିଜର ସାଥି
ସାଇ ପଡ଼ଶାର ସାଥି
ଅସୀମ ଏ ଦୁନିଆର ସାଥି
ସବୁରିଙ୍କି ପ୍ରେମ କରୁଣା ଦେବାକୁ
ଆମେ ଗଢ଼ିଚୁ
ଆମର ଗ୍ରନ୍ଥ
ଏଇ ବାଣୀ ଅନ୍ତରେ ଅନୁଭବ
ଆମେ ଚାଲିବୁ ଚିରକାଳ

ତା'ପରେ ଦେଖିବୁ ଆମେ
ଆମରି ମାଟିରେ କେମିତେ
ଫୁଟୁଅଛି
ଜୀବନର ମଧୁର ସଂସାର ! !

—ସାତ—

ହାଇରେ ପିଲାଟି ମୋର !
ରହିଅଛୁ କେଉଁ ସ୍ୱପ୍ନମାନେ !
ଲୁହ ତୋର
ଛଳ ଛଳ ହୋଇ ଆସେ
ଅଶ୍ୱବର ଅନନ୍ତ ପୀଡ଼ନେ !
ଭାବୁଥିବୁ
ମୋର କେତେ
ସଖା ସାଥି
କେତେ ଭାବେ
ବଢ଼ୁଥିବେ
ସୌଭାଗ୍ୟର କୋଳେ
ତଳ ତଳେ
ମୋହଭଳି
ନଆଣ୍ଡିକ
ଜୀବନର
ମଉଯିବ
ଯେତେ ଯତ୍ନ
ଧରେ ଆଶା କଳି !

ଲୁହ ଛଳ ଛଳ ନେନେ
ମତେ ସେ
ଗୃହସ୍ଥ କେତେ !
ପାରୁନାହିଁ
ଆଉ କହି କଥା !
ପୃଥିବୀରେ ଫୁଟିବାକୁ
କାହା ଇଚ୍ଛା ନୁହେଁ କହ ?

ଯେଉଁଠିକି
ନ ଘଟିଲେ
ମରଣରୁ ବଳ କେଉଁଠୁ
ମାଡ଼ିଆସେ ବ୍ୟଥା ?
ଫୁଟିବାକୁ
ଉନ୍ମାଦନା ଭରେ
ନିଜଟିକି
ଦେବାପାଇଁ
ଅସୀମରେ ଡାଳି
କି ମଧୁ ଆକାଙ୍କ୍ଷା ଜାଗେ
ସବୁରି ଅନ୍ତରେ
ଏ ସୃଷ୍ଟିର ଆଦିକାଳୁ
ଆଜଯାଏଁ ଧରି
ସେ ଲାଗି ପିଲାଟି ଆହା !
କେମନ୍ତେ ଗୁହାରି ମତେ
ପ୍ରଭୁ ଲୁହବନ୍ଧ ତାର
ଯେଉଁଠୁ ଯାଏ କହି
ମୋତେ ତୁମେ
ଫୁଟିବାରୁ କରନା ବଞ୍ଚିତ !
ମୋ ଭିତରୁ ଫୁଟିବ ଯା
ସେ ଯେ ମହା ଅସୀମର ପାଇଁ !

ଉଷା ! ଉଷା ! ଦରିଦ୍ର କୁଟୀର ତଳେ
କେତେ ଫୁଲ ଫୁଟି ଆହା
ଫୁଟିପାରେ ନାଇଁ
ଏ ସବୁ କି ରହିଥିବ
ଚିରକାଳ ପାଇଁ ?
ଗରିବ କୁଟୀର ଆହା ଗରିବ କୁଟୀର !
ଦିନ ଦିନ ଧରି ଝରିଉଠେ
ନେତ୍ରୁ ତାର ଅସରନ୍ତି ନୀର ! ! !

———

# ହେ ମୋର ମଣିଷ !

ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟ ତର
ହେ ମୋର ମଣିଷ ! ହେ ମୋର ମଣିଷ ! ହୃଦ ନିର୍ମଳ କର !
ଅମୃତମୟ କର ତୋ ବକ୍ଷ ଅମୃତ ଦିଅ ଭରି
ସନ୍ତାନ ନୋହ ଚାଲିଚୁ କୁଆଡ଼େ ମହା ସଇତାନ ପରି !
ସରଗ ଗଢ଼ିବା ଶକ୍ତି ତୋ' ହାତେ
ନରକ ଗଢ଼ି ତୁ ଚାଲିଚୁ କି ବାଟେ ?
ନୟନେ ତୋହର ପରଳ ମଢ଼ିଚି କି ମହାଭୟଙ୍କର
ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟ ତର !

ସ୍ୱଚ୍ଛ ହୁଅ ତୁ ଶୁଦ୍ଧ ହୁଅ ତୁ ମଣି କାଞ୍ଚନ ପରି !
ସିଂହପରି ତୁ ଚାଲ ତୋର ବାଟେ ଗଉରବ ବାନା ଧରି,
ତୋର ତେଜେ ହସୁ ଗଗନ ପବନ ନିଖିଳ ଧରଣୀତଳ
ଖେଳୁ ତରଙ୍ଗରେ ନବ ଉଲ୍ଲାସେ ଜୀବନର କଲରୋଳ !
ତୁ ଯେ ବୀରହୃଦୟା ଅବାର ପଥିଏ
ଅପଥେ କି ଭଳି ଚାଲିଅଛୁ ହାୟେ !
ଶମଶାନ ପରି ତୋ ମାଟି କାନ୍ଦେ କରି କି ଆର୍ତ୍ତସ୍ୱର !
ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟତର ।

ଶତ ଶହୀଦର ତତଲା ରକ୍ତ ଉତଲା କରୁନି ତତେ ?
ବୀର ବୀର୍ଯ୍ୟର ସାଧନା ବାଜୁନି କର୍ଣ୍ଣ କୁହର ପଥେ ?
ତୋ ପାଇଁ କେ କେତେ ଛାଡ଼ି ସବୁ ମାୟା ଦେଇଛି ଆତ୍ମବଳି
ଅନ୍ତର ତଳେ ସ୍ପନ୍ଦନ ତୋର ଜାଗୁନାଇଁ କେଉଁ ଭଳି ?
ଏ ଯେ ମାଟି ତୋର ଅତି ଆପଣାର
ତା'ଲାଗି ଝରୁନି ତୋର ଲୁହଧାର ?
ନିଜ ପାଇଁ ନିଜେ ଚାଲିଚୁ ଏ ମାଟି ଦଳି ପଦତଳେ ତୋର
ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟତର !

ସତ୍ୟ ନ୍ୟାୟର ଶୁଭ୍ର କିରଣେ କପାଳେ ନ ଫିଟେ ଝଲ
ଶତ କୂଟ ଜାଲ ଷଡ଼ଯନ୍ତ୍ର ଯେ ଉଠେ ଖାଲି ପ୍ରତିଫଳ,

ରସନାରୁ ତୋର ଫୁଟଇ ନସ୍ୱତ ଭଣ୍ଡ କପଟବାଣୀ
ଶିଖିଚ କି ଭଲ ଜାଲପାତ ଖାଲ ବଞ୍ଚିବୁ ମାଛଆଣି,
ସ୍ୱାଧୀନ ହୃଦୟର ଏ କି କାରବାର ?
ପାଲଟିଚ ଭୃତ୍ୟ କେଉଁ ଜାନୁୟାର !
ଜାଗ୍ରତ ହୁଅ ଉତ୍ଥିତ ହୁଅ ଦୃଢ଼ ସଂକଳ୍ପ ଧର
ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟତର !

ତୋହର ମାଟିର କେତେ ମହାତ୍ମା ସାଧକ ସନ୍ଥଜନ !
ବିଶ୍ୱପାଇଁ କି ବୁକୁକାଟି କଲେ ଅମୃତ ବିତରଣ
ତାହାର ଦାୟାଦ ହୋଇ ବୁକୁତଳେ ସେ ମହା ଶୋଣିତ ଧର
ଊର୍ଦ୍ଧ୍ୱେ ତୋହର ନୟନ ପଡ଼ୁନି ନିମ୍ନେ ଯାଉଚ ଚଳି
ବିରାଟ ଭିତରୁ ଜନ୍ମ ତୋହର
ବିରାଟ ଭିତରେ ନିତ ଗତିକର,
କାହିଁକି ତୋହର ଅନ୍ତର ବୀଣା ଭୁଲିଯାଇ ଚରାଚର
ସବୁ ଗରଳରୁ ମଣିଷ ଗରଳ ଅତି ଉତ୍କଟତର ।

---

# ସ୍ଥାନାନ୍ତର

କବି, ଖଲିକୋଟ ହା: ଇ: ସ୍କୁଲରେ ଶିକ୍ଷକତା କରୁଥିବାବେଳେ ତତ୍‌କାଳୀନ ପ୍ରଧାନ ଶିକ୍ଷକ ଗୋଟିଏ ନୋଟିସ୍ ଜାରି କଲେ ଯେ, ଯେଉଁ ଛାତ୍ରମାନେ ସ୍କୁଲକୁ ସକାଳ ବେଳା ଆସି ଉପରବେଳା ଆସୁନାହାନ୍ତି— ଶିକ୍ଷକମାନେ ସେମାନଙ୍କର ସମୁଦାୟ ଦିନ ଅନୁପସ୍ଥିତ ବୋଲି ହାଜରିରେ ଲେଖିବେ—କବି ତାହା ଅବୈଧ ବୋଲି ପ୍ରତିବାଦ କଲେ—ତା'ର ଫଳସ୍ୱରୂପ ପ୍ରଧାନ ଶିକ୍ଷକଙ୍କ ଗୁପ୍ତ ଶଠ ବଳରେ କବିଙ୍କୁ ସତର୍କବାଣୀ ଆସିଲା ଏବଂ ପରେ ପରେ ଗୋଟିଏ ଅପନ୍ତରା ସ୍ଥାନକୁ ସ୍ଥାନାନ୍ତର କରାହେଲା—

ହେଲା ମୋର ସ୍ଥାନାନ୍ତର ଦୂରଦେଶେ ଦୂର ପଥେ
ଏ ଥାନର ଯେତେ ଯାହା ଛାଡ଼ିବାକୁ ହେବ ମତେ !
ରହିବାକୁ ହେବନାଇଁ ଗୋଟିଏ ମୁହୂର୍ତ୍ତ ହେଲେ
କହିବାକୁ ହେବନାଇଁ କଥା ପଦେ ବନ୍ଧୁମେଳେ !

ଗୁଲଯିବା ପାଇଁ ହେବ ଯେଣ୍ଟେ ସାଙ୍ଗେ ସାଙ୍ଗେ ଆଜ
ମୁହିଁ ଯେଣ୍ଟେ ସଏତାନ, ଦୁଷ୍ଟ ବଦମାସ ପାଜ !
ଆଲୋଡ଼ା ମୁଁ ସକଳର ଯେଣ୍ଟେ ଅବା ଏଇଥାନେ
ଯେଣ୍ଟେ କାର ଢୋର କ୍ଷତ ମୁଁ ଏଥି ରହିବା ମାନେ
ସେଦିନ ଆସିଲା ମତେ ଏକ ସାବଧାନ ବାଣୀ
ଦେଲ ତା' ଉତ୍ତର ମୁହିଁ କରିନି ମୁଁ କା'ର ହାନି
ହେବ କପାଁ ସାବଧାନ ଦିଅ ମତେ ପ୍ରତ୍ୟୁତ୍ତର
ନିର୍ଦୋଷ ନିଷ୍ପାପ ମୁହିଁ ପାଇଁ ସତ୍ୟ ସାହସର !
ଫେରାଇ ନିଅ ଏ ତୁମ ଅନ୍ୟାୟ ଆଦେଶ ଗୋଟି
ଯା'ପ୍ରତି ଅକ୍ଷରେ ମୁହିଁ ପଦାଘାତ କରେ କୋଟି !
ଯା ଅନ୍ୟାୟ, ଅନାଚାର, ଯା ଅସତ୍ୟ ଅମଙ୍ଗଳ
କରିଚି ତା' ପ୍ରତିବାଦ କରୁଥିବ ନିରନ୍ତର !
ଚାକିରି କରିଚି ବୋଲି ଦାସତ୍ୱ କରିନି ଜାଣି
ଚାକିରି ଦାସତ୍ୱ ମଧ୍ୟେ ଅଛି—ବହୁ ବ୍ୟବଧାନ !
ଚାକିରି କରିଚି ବୋଲି ମୁଣ୍ଡ ବିକ ଦେଇନାହିଁ
ଯାହା ତୁମେ କହିଯିବ, ଖାଲି କରିଯିବା ପାଇଁ
ଚାକିରି କରିବା ଅର୍ଥ ନୁହେଁ କେବେ ଉପରିର
ରହିଥିବା କି ହା ପାଖେ ରାତ୍ରିଦିନ କରଯୋଡ଼ି !
ଦେଶର, ଜାତିର ଅବା, ବ୍ୟକ୍ତିର ଚାକର ଯିଏ
ଅଛି ତା'ର ସ୍ୱତନ୍ତ୍ରତା ଭଲ ମନ୍ଦ ବୁଝି ସିଏ
କରିଯିବ କାମ ତା'ର, ଯାହା ସତ୍ୟ ଶୁଭଙ୍କର
ଏତକ ଯାହାର ନାହିଁ, ଦାସ ସିଏ ଦାସ ଖାଲି
ନିଜ୍ଜ ହିତୁ ବଳି ସିଏ ଆହୁରି ନିଜ୍ଜ ହିତର !

ହେଲା ମୋର ସ୍ଥାନାନ୍ତର ଦୂରଦେଶେ ଦୂରପଥେ
ଡିଲେ ମୋ ପରୁଆ ନାହିଁ ଯିବା ପାଇ ହବ ମତେ
ଯେତେ ଯିଏ ବନ୍ଧୁ ମୋର କାହିଁକି ବ୍ୟଥିତ ହୁଅ
କାହିଁକି କାନ୍ଦୁଚ ଏତେ ନୟନୁ ବରଜି ଲୁହ !
ତୁମେ ମୋର ଆପଣାର ଚିରଦିନ ଆପଣାର
ତୁମ ସ୍ମୃତି ମୋ ଦରିଦ୍ର ଜୀବନର ଉପହାର !
ସିଂହ ପରି ଆଜ ମୁହିଁ କହୁଚି ତାହାଙ୍କୁ କଥା
ନିଶ୍ଚେ ଏ ମାଟି ପରେ ନ ନୁଆଁଇ ମୋର ମଥା

ଜନହୀନ ପ୍ରାଣହୀନ ମରୁବକ୍ଷେ ରଖ ମତେ
ରଖ କେଉଁ ଅପନ୍ତର ମହା ଅନ୍ଧକାର ପଥେ
ରଖ ହେ ସମୁଦ୍ର ଘେରା କେଉଁ ଦୂର ଟାପୁପରେ
ରଖ କେଉଁ ପର୍ବତର ବିକଟ ଗହ୍ୱର ତଳେ !
ନିଘଞ୍ଚ ଅରଣ୍ୟ ଯହିଁ ଶ୍ୱାପଦର ଲୀଳାସ୍ଥଳୀ
ତା' ଭିତରେ ରଖ ମତେ ଯେବେ ଇଚ୍ଛା ଅଛ କର
ଚତୁର୍ଦ୍ଦିଗେ ମୋର ଖଞ୍ଜି ବାଡ଼ ମହାବିପଦର
କେଳେଇ କୁଟେଇ ମତେ ଯାହା ଇଚ୍ଛା ତାହା କର
ସୀମାହୀନ ଅଭାବ ଓ ବିପଦ ଭିତରେ ପଡ଼ି
ସାତହୀନମାନ ହୋଇ ଯାଇପାରେ ପଚି ସଡ଼ି
ମୁଁ ଖଣ୍ଡେ ଜଳନ୍ତା ନିଆଁ ଚିରଦିନ ମୋ ଭିତରେ
ମତେ କିଏ ପାରିବନି, ନିଭାଇ ଏ ଧରାତଳେ !

କେତେ ବନ୍ଧୁ, କେତେ ଗୁଣି ବିଦାୟ ଦେଉଛ ମତେ
ମୋର ଏଇ ସ୍ଥାନାନ୍ତରେ ବ୍ୟଥିତ ହେଉଛ ସତେ !
ସ୍ନେହ ସୁଖ ଆଳାପନେ କେତେ ଦିନ କେତେ ରାତି
ପୁହାଇ ଦେଇଚେ ଏଥି ଛାତିରେ ମିଶାଇ ଛାତି !
ବୁଲିଚେ ଏ ବିଲବନ ପାହାଡ଼ ପ୍ରାନ୍ତର ପଥେ
ଦେଖିଚେ ଅନନ୍ତ ଶୋଭା, ଆମେ ଏଥି ଅବିରତେ
ଜଣେ ଜଣକର ହୃଦ ସୁଖ ଦୁଃଖ ନ କହିଲେ
ଲାଗୁ ତ ନ ଥିଲା ବୋଧ ଏଥି କେବେହେଲେ ତିଳେ ।
ଏ ସବୁର ଆଜି ସତେ ହୋଇଯିବ ଅବସାନ
ଆଉ ଏତେ ପ୍ରିପୂତର ହେବ ନାହିଁ ଏକଥାନ ?
ଏତିକି ତୁମକୁ କହେ ଆଜ ଏ ବିଦାୟ ବେଳେ
ମେଣ୍ଢାପରି ଚଳିବନି ଜୀବନରେ କେବେହେଲେ !
ସମୁନ୍ନତ କରି ମଥା ଏଥି ଚଳିବାକୁ ହେବ
ଭୁଲିବାକୁ ହେବନାହିଁ—ଜୀବନର ଗଉରବ !
ବିଦାୟ ଦିଅ ହେ ବନ୍ଧୁ ! ଚଳେ କରି ନମସ୍କାର
ମୁଁ ତୁମର ତୁମେ ମୋର ଚିରଦିନ ଆପଣାର

ହେ ମୋର କୁଟୀର ରାଣି ! ଅଶ୍ରୁ କର ଛଳ ଛଳ
ମଧୁରୁଚ କାହିଁ ପାଇଁ ହେଲା ମୋର ସ୍ଥାନାନ୍ତର ?

ଯେ ଯହିଁ ରହିଲେ ସୁଖେ ତୁମେ ହିଁ ପଡ଼ିଲ ଖାଲେ
ରହିବ କେଉଁଠି ଯାଇ ସେ କେଉ ଜଙ୍ଗଲମାଳେ !
ଦିହ ଦୁଃଖ ହେଲେ କିଏ ଦେଖିବାକୁ ନାହିଁ ଥିବ
ଚିଠି ଦେଲେ ଯାଇ କେବେ ଦଶଦିନେ ପହଞ୍ଚିବ ।
ପାଖେ ଥିଲ ଘରପାଖେ ନିତି ଦେଖୁଥିଲି ମୁହିଁ
ତୁମ ଯୋଗୁଁ ଘର ମତେ କି ଅବା ସରଗ ଭୂଇଁ ।
ତୁମକୁ ଜାଣିଛି ମୁହିଁ, ଟିକେ ଗଲେ ଲଇଁ ସଇଁ
କିବା କ୍ଷତି ହେଉଥିଲା ନିଶ୍ଚିନ୍ତେ ଥାଆନ୍ତ ରହି ।
ତୁମେ ତ କଳିଆ ଲୋକ କେଉଁଠି ପାରୁନ ରହି
ଯେ ଯହିଁ ଦିଅନ୍ତୁ ତଡ଼ି ତୁମପରେ ରାଗ କହି !

ହେ ମୋର କୁଟିରରାଣି ! ବୁଝ ତମେ ବୁଝ ମତେ
କାହାର କରିନ କ୍ଷତି ଜୀବନର ଯାତ୍ରାପଥେ
ନିଜର ସାମାନ୍ୟ ଟିକେ ସୁବିଧା ହାସଲ ପାଇଁ
ଅନ୍ୟାୟର ପାଖେ ମୁଣ୍ଡ ବିକ ମୁଁ ପାରିବ ନାହିଁ
ନିଆଁ ହୁଳା ଭିତରେ ମୋ ଜୀବନ' ହୋଇଛି ଗଢ଼ା
ଯେଉଁଠି ଦେଖିବି ଟିକେ ଅଳିଆ ବା ଅସକରା
ପୋଡ଼ି ଜାଳି ଧ୍ୱଂସ ତାରେ କରିଯିବା ଲକ୍ଷ୍ୟ ମମ
ନଚେତ ପୃଥିବୀ ହେବ ବିରାଟ ଶ୍ମଶାନ ସମ
ଗୃଧ୍ର, ଶ୍ୱାନ, ଶୃଗାଳର ବାସସ୍ଥଳ, ଲୀଳାସ୍ଥଳ,
ଚତୁର୍ଦ୍ଦିଗୁ ମରିଯିବ ଜୀବନ ଅମୃତ ଝର ।
ମୁହିଁ ଚାହେ ଚତୁର୍ଦ୍ଦିଗେ ଜୀବନ ଆନନ୍ଦ ମାୟା
ମୁହିଁ ଚାହେଁ ଚତୁର୍ଦ୍ଦିଗେ ସ୍ନେହ ପ୍ରେମ ସତ୍ୟଶ୍ରୟା
ମୁଁ ଚାହେଁ ଆଲୋକ ଖାଲି ଚତୁର୍ଦ୍ଦିଗ ଥିବ ଭରି
ନାଚୁଥିବ ତା' ଭିତରେ ଏଇ ଶ୍ୟାମ—ବସୁନ୍ଧରା
ମୋହର ଟିକକ ଚେଷ୍ଟା ମୋହର ଟିକିଏ ଦାନ
ପୃଥିବୀର କେଉଁ କଣେ ଯେବେ ଆଣିପାରେ ପ୍ରାଣ
ମୋର ଟିକେ ଅସୁବିଧା, ମୋହର ଟିକିଏ କ୍ଷତି
କା' ଓଠେ, ଫୁଟାଇପାରେ ଯେବେ ଆନନ୍ଦର ଜ୍ୟୋତି
ମୋ ସମସ୍ତ ସାଧନାର ସେଇ ସ୍ୱର୍ଣ୍ଣ ପରିଣତି
ରହେ କୋଠି ହଇରାଣେ, ତହିଁରେ କି ଦୁଃଖ ଅଛି ?

———

# ଜଣେ ପ୍ରତିବାସୀ

କି ହୀନ ଅବସ୍ଥା ହୋଇ କାଟୁଅଛୁ କାଳ
ଖାଇବାକୁ ମିଳୁନାହିଁ ମୁଠିଏ ପଖାଳ !
ରହିବାକୁ ଥାନ ନାହିଁ ପିନ୍ଧିବାକୁ କନା
ପାଣି ଗଲେ ଘର ଚାଳେ ସତରଠି କଣା !
ପିଲଟି ଯେ ବାରଦିନେ ତାକୁ ତେର ରୋଗ
ଜୀବନେ ତୋ ହେବ ଅବା କି ଐଶ୍ୱର୍ଯ୍ୟ ଭୋଗ ?
ଘରଜାଟି କଣ୍ଟା ହୋଇ ଦିଶୁଛି କେବଳ
ପ୍ରେତ ପରି ଦିଶୁ ତୁହି ନାହିଁ ତେଜ ବଳ ।
ଜାତକ ଦେଖାଉ କାରେ ଭଲ ଦଶା ସତେ
ଆସିବ କି ନାହିଁ ଆଉ ତୋ ଜୀବନ ପଥେ
ଜାତକ ଦେଖାଇବାରେ କିଛି ଲାଭ ନାହିଁ
ଦାରିଦ୍ର୍ୟ ଭିତରେ ତୁହି ପଡ଼ିଅଛୁ ଲାଗି ।
ଟିକିଏ ଫୁଟୁନି ହସ ତୋ ଅଧର ତଳେ
ଟିକିଏ ଜାଗୁନି ସୁଖ ତୋହର ଅନ୍ତରେ
ଟିକିଏ ଆନନ୍ଦ ତୋରେ କେହି ଦେଉନାହିଁ
ଟିକିଏ ତ ଚିନ୍ତା କିଏ କରୁନି ତୋ ପାଇଁ
ଟିକିଏ ତ ତୋ' କୁଟୀର ମୋହନ ସରାଗେ
ହସି ଖେଳ ଏ ଧରଣୀ ପରେ ନାହିଁ ଜାଗେ !
ହସି ହସି ବାଳୁତଟି ତୋହ କୋଳେ ଢଳ
ଦବୋଟି ବଚନେ ମନ ନ ନିଏ ତୋହର ।
ଘରଜାଟି ମନ ଦୁଃଖେ ରହିଛି ମାତର
ପ୍ରତି ଅଙ୍ଗେ ବେଦନାର ଗୁସ୍ତା ଢଳ ଢଳ
ପ୍ରାଣ ଉଠୁଥାନ୍ତା ପୂରି ତା'ରେ ଚାହିଁ ଦେଲେ
ମରିବ କି ବଞ୍ଚିବ ସେ ଆଜକାଲି ହେଲେ
ବନ୍ଧୁଜନ କିଏ କାହିଁ ଆସୁଥାନ୍ତେ ଚାଲି
ସୁଖେ ଦୁଃଖେ କେତେ ମାୟା ଦେଉଥାନ୍ତେ ଢାଳି ।
ଖାଇବା ପିଇବା ସବୁ ରହିଥାନ୍ତା ଘରେ
ପୁରି ଉଠୁଥାନ୍ତା ପ୍ରାଣ କି ପୁଲକ ଭରେ ।

ବସିଲା ଠାବରୁ ତୁ ତ ଉଠି ପାରୁନାଉଁ
ମୁଣ୍ଡ ଭ୍ରମିଯାଏ ବାଟେ ଯେବେ ଚାଲି ଯାଉଁ ।

ରହିଛନ୍ତି ଜନେ କେତେ ରଚ କୋଠାବାଡ଼ି
ହସି ଖେଳ ଚାଲିଚନ୍ତି ପଥେ ଧାଡ଼ି ଧାଡ଼ି
କେତେ ଆଶା ଉନ୍ମାଦନା ଉତ୍ସାହ ଭିତରେ
ପୁହାଇ କଅନ୍ତି ଧନ ବ ସୋହାଗ ଭରେ
କା'ଘରେ ଗ୍ରାମୋଫୋନ ବାଜେ ରେଡ଼ିଓ କା'ଘରେ
କିଏ ବସି ଗୀତ ଗାଏ ଦୋ'ତାଲା ଉପରେ
କାହାଘରେ କେତେ ସ୍ୱର୍ଣ୍ଣ ଶିଶୁଛନ୍ତି ରହି
ପୁଲକ ଉଦ୍‌ବେଳେ ରଚ ସରଗ ଏ ମହୀ
ନାଚ ଜାତ ଦେଖି କିଏ ଯାନ୍ତି ହସି ହସି
ଅଭାବ ବେଦନା ଦୁଃଖ ଯାଇନ ପରଶି
ସବୁବେଳେ ହସ ହସ କଥା ଓ ବାରତା
ଜାଣନ୍ତିନ ଜୀବନରେ ଅଛି କାହିଁ ବ୍ୟଥା !
ଏ ସବୁ ବିଲୋକ ତୋର ହୃଦୟ ଭିତର
କେମନ୍ତେ ଉଠୁଚ କାନ୍ଦ ସତେ ନିରନ୍ତର
ହା ହୃତ ଶେ ଚଉଦିଗେ ମିରବେ ଅନାଇ
ନେତ୍ରୁ କେତେ ଅଶ୍ରୁବାର ଝରୁଥିବ ନାଇଁ ।
କହୁଥିବୁ ମୋ ଜୀବନ ହେଲା ଅକାରଣ
ସୁଖେ ନ ବଢିଲି ମୋର ହେଲେ ପ୍ରତିକ୍ଷଣ
ଏଇଭଳି ହା' ହୃତାଶେ ନେତ୍ରୁ ଲୁହ ଢାଳି
ମୋ ସାରା ଜୀବନ କଣ ସତେ ଯିବ ଚାଲି ?
ସତେ କଣ ଆସିବନି ମୋର ଭବିଷ୍ୟତ
ମୋ ଲାଗି ସହାଗେ ଗଢି ସ୍ୱର୍ଣ୍ଣ ରାଜପଥ
ମୁଁ କିମ୍ପା ଅବସ୍ଥା ହୋଇ ରହେ ଧରାଧାମେ
କୋଟିଏ ବଭବେ କିମ୍ପା ଛନ୍ତି ଅନ୍ୟମାନେ ?
ମୁହିଁ କିମ୍ପା ଜଳ ପୋଡ଼ି ହୁଏ କଲବଲ
ମୋ ପାଇଁ ଜଗତ କିମ୍ପା ନିଦାରୁଣ ତର ?
ଈଶ୍ୱର ଅଛନ୍ତି କି ଏ ? ଅଛନ୍ତି ସେ କାହିଁ
ଜଣଙ୍କୁ ହସାନ୍ତି କିମ୍ପା ଜଣକୁ କନ୍ଦାଇ ?

ମୋ ପିଲା ପାଏନା ଯେବେ ପେଜରୁ ଟୋପିଏ
କାନ୍ଦି କାନ୍ଦି ଭୂଇଁ ତଳେ ଯେବେ ଗଡ଼ିଯାଏ
ତା'ଦୁଃଖ ଈଶ୍ୱର କଣ ବୁଝନ୍ତି କି ଆସି ?
ପୋଛନ୍ତି କି ଲୁହ ପଦେ ମଧୁବାଣୀ ଭଷି ?
ଏ ଜଗତ କି ସୁନ୍ଦର ସମସ୍ତଙ୍କ ପାଇଁ
ମୋ ଲାଗି ଅମୃତ ଏଥି କଣିକାଏ ନାହିଁ ।
ଘାଣ୍ଟି ହୋଇ ଦିନ ନିଏ ଘୋର ନିଯାତନେ
ତଥାପି କାହିଁକି ଆଶା ଜାଗେ ପ୍ରତିକ୍ଷଣେ
—ସୋହାଗ ସମ୍ପଦ ଦିନ ଆସିବ ମୋହର
ଲୁଚିଯିବ ବାଧା ଯାହା ଦିଏ ମୋରେ ଦଳି
କି ଦୁର୍ମଦ ଆଶା ଜାଗେ ବକ୍ଷେ ମଣିଷର
ତାର ଯେଣୁ ଶେଷ ନାହିଁ ଜନ୍ମ ଜନ୍ମାନ୍ତର !
ତୋ' ଦରିଦ୍ର ସଂସାରେ ମୁଁ କଲେ ଦୃଷ୍ଟିପାତ
ମରମେ ଜାଗଇ ମୋର ଗମ୍ଭୀର ଆଘାତ
ଜୀବନ୍ତ ଶ୍ମଶାନ ଏ କିଏ ଏ ଧରଣୀ ପରେ ?
କାହିଁକି ରହିଚ ସତେ ଏତେ କଲବଲେ ?
ଛିନ୍ନ ହୋଇ ରହିଚ ସେ ସବୁଜ ଉଡ଼ାଳେ
ସିକ୍ତ ହୋଇ ଚିରଦିନ ଉଷ୍ଣ ଲୁହ-ଧାରେ !
ଜୀବନ ତ ସବୁଠାରେ ସୁନ୍ଦର ସମାନ
ଲୋଡ଼ଇ ନିତ୍ୟତ ସୁଖ ଶିକ୍ଷା ସନମାନ !
ସୁଦୂର ପଲ୍ଲିରେ ଥାଉ, ଥାଉ ବା ନଗରେ
ଥାଉ ଶ୍ୟାମ ଅରଣ୍ୟାନୀ ଗମ୍ଭୀର ଗହ୍ୱରେ
ଦୁସ୍ତର ମରୁରେ ଥାଉ, ମହାସମୁଦ୍ରର
ଦ୍ୱୀପ ଟାପୁ ମଧ୍ୟେ ରହିଥାଉ ଯୁଗାନ୍ତର !
ଦେବା ପାଇଁ ହବ ତାକୁ
ତା' ଅନ୍ତର ତଳ
ଯେତିକି ନପାଇ ନିତ୍ୟ ହୁଏ କଲବଲ ! !
ସତେ କଣ ମରହଜି ଯିବୁ ଧରଣୀରେ
ତୋହଭଳି ଯେତେ ଯିଏ ନିରନ୍ନ କୁଟୀରେ
କରିଚନ୍ତି ବସବାସ ଛୁଆପିଲା ନେଇ
ରହିବେକି ଧରଣୀରେ ଏଇମାନେ କେହି ?
ସମସ୍ତେ ଭଜିବେ ଏଥି ଜୀବନ୍ତ ସମାଧି ?

ଶିରେ ବହି ମଣିଷର କ୍ରୂର କାରସାଦି
କୁନ୍ତସମ; ଏତେ ଏତେ ନିଃସ୍ୱ ପରିବାର
ସେମାନେ ଅଲୋଡ଼ା ସତେ ଏଇ ମୃତ୍ତିକାର ?
ସୌଧବାସୀ ବୁଦ୍ଧିଜୀବୀ ଜୁଆଗ୍ରେଶୀ ଦଳ
କେବଳ ରହିବେ ଏଥି ଏଇମାନଙ୍କର
ହେବ ଏଇ ମାଟି କ'ଣ ଚିର ରସସ୍ଥଳୀ ?
ସମସ୍ତେ ମରିବେ ଏଥି ପୋକ ମାଛିପରି ?
ତେବେ କାହିଁ ଜନ୍ମ କହ ଏଇମାନଙ୍କର
ଘାସପରି ଉଠି ଯେବେ ନିମେଷ ମାତର
ରହି ଏଥି ଶୁଖିଯିବେ ଜନ୍ମ ଜନ୍ମ ଧରି,
ଏମାନଙ୍କ ପାଇଁ କିଣ ଧରିତ୍ରୀ-ସୁନ୍ଦରୀ
ଫୁଟାଇନି ଫୁଲ ଫଳ ଶସ୍ୟ ମନୋରମ
ଛୁଟାଇନି ନଦନଦୀ ଶୈଳ ସ୍ଥଳ ବନ ?
ତୁମେ ଆମେ ସମସ୍ତେତ ଜୀବ ଏ ମାଟିର
ଜଣେ କାହିଁ ଥିବ ହୋଇ ନ-ମର- ନ-ଖିର
ଭୁଲିବୁନି ? ରହିଥିବୁ ଚିରଦିନ ପଡ଼ି ?
ଏ ମାଟିର ଏକ ଅଭିଶପ୍ତ ଜୀବପରି
ତାର ଅଛି କୋଠାବାଡ଼ି ଧନ ଜନ ଭରା
ତାର ଅଛି ହସଖେଳ ଆନନ୍ଦ ପସରା
ତାର ଅଛି ଶିକ୍ଷା ଦୀକ୍ଷା ଆଶା ଅଭିଳାଷ
ତାର ଅଛି ସ୍ନେହ ସୁଖ ମୋହନ ବିଳାସ
ଏ ସବୁ ଭିତରେ ତୁହି ଚିରଦିନ ସଡ଼ି
ଅଭାବ ଓ ଯାତନାରେ ଯିବୁ ଖାଲି ମରି ?
ତୁ କଣ ଜୀବନ ନୁହ ମହା ଧରିତ୍ରୀର ?
ଚିରଦିନ ଭୁଲିଥିବୁ ହୋଇ ନତ ଶିର ?
ପିନ୍ଧିବାକୁ କନାଟିକେ ମିଳୁଥିବ ନାହିଁ
ଉପବାସେ ରହିଥିବୁ ଦିନେ ଦିନେ ତୁହିଁ
ସଜଳ ନୟନେ ତୋର ଦରିଦ୍ର କୁଟୀରେ
କି ଦୁଃଖ ଲାଗୁଥିବ ଏ ଧରଣୀ ଷ୍ଠରେ
ତୋହର ଜୀବନ ଠିକ ?
ଏ ମହା ସଂସାର—
ଭିତରେ କେତେ ଯେ ପ୍ରାଣ ହୁଏ ଛାରଖାର

ନ ପାଇ ଟିକିଏ କାହିଁ କୂଳ ବା କିନାର
ଭାବିଲେ ନୟନୁ ଖସିପଡ଼େ ଲୁହଧାର ।
ସୁଖୀ ଦୁଃଖୀ ବଡ଼ ସାନ ଧନୀ ଓ କାଙ୍ଗାଳ
ରହିଛି କାହିଁକି ହୋଇ
ମଣିଷ ସଂସାର ?
ଜଣେ ବସି ପେଜ ଢୋପେ
ପିଇବାର ବେଳେ
ଅନ୍ୟ ଜଣେ ଘିଅ ଭାତ କେତେ
ଖାଏ ହେଲେ ?
ଜଣଙ୍କ ଆତ୍ମାର ଯେଉଁ ଗଭୀର କ୍ରନ୍ଦନ,
ଅନ୍ୟକୁ କେମନ୍ତେ ନାହିଁ ଛୁଇଁଛି ବହନ,
ଦେଖିଲେ ତୋ ନେତ୍ରପ୍ରାନ୍ତେ ଏକ ଅଶ୍ରୁଧାର
ବୁଝିଲେ ତୋ ବୁକୁତଳ ସୀମାହୀନ ଭାର
ଚୁହିଁଲେ ତୋ ପ୍ରାଣହୀନ ମଳିନ ବେଶ
ଅନୁଭବ କଲେ ତୋର ଦୁଃଖଦୈନ୍ୟ କ୍ଲେଶ
କେମନ୍ତେ କା ବୁକୁତଳ ଉଠିବ ଉଲ୍ଲସି ?
ଆନନ୍ଦର ହାସ କିଏ ପାରିବ ବା ହସି ?

---

# ପ୍ରାଣର ବାଣୀ

ଗୋଟିଏ କୁଟୀର କଣେ ବନ୍ଧା ହୋଇ ରହିବାକୁ
ଚାହେଁନା ଅନ୍ତର
ଗୋଟିଏ କୁଟୀରେ ମୋର ସୁଖଦୁଃଖ ଆନନ୍ଦର
ଚିର ଗନ୍ତା ଘର ।
ସବୁରେ ମୁଁ ଖୋଜି ବୁଲେ ପ୍ରାଣର ଅନନ୍ତମାୟା
ଚିର ଧନ ଧର
ସବୁରେ ମୁଁ ଗୋଳି ହୋଇ ରହିବାକୁ ଚାହେଁ ଯେତେ
ଦିବସ ସର୍ବରୀ

ମାତ୍ରେ ମାତେ ହସଖେଳ  ଆନନ୍ଦର ସୀମାହୀନ
ଶୋଭା ଦେଖିବାରେ—
ପରମ ଐଶ୍ୱର୍ଯ୍ୟ ମୋର  ଏ ତହୁଁ କି ବଇଭବ
ଅଛି କେଉଁ ପାରେ ?
ଏ ବଲ୍ମଠ ମାଟିପରେ  ସଭିଏ ମୋ ଆପଣାର
ବନ୍ଧୁ ପ୍ରିୟତମ !
ଚୁହିଁଦେଲେ ସକଳରେ  ଅନୁଭବେ ଏମାନେ ମୋ
ଛତିର ସ୍ପନ୍ଦନ !

———

ଉତ୍ସର୍ଗ—

ମୋର ଶ୍ରଦ୍ଧେୟ ଗୁରୁ

ଶ୍ରୀମାନ୍ ମଦନମୋହନ ମିଶ୍ର, ଏମ୍.ଏ., ଏମ୍.ଇଡ୍. ଙ୍କ

ନାମରେ……………………

# କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ

## ଡକ୍ଟର ମାୟାଧର ମାନସିଂହ

ବାଣପୁରର ତରୁଣ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର କବିତା ଓଡ଼ିଶାର ପତ୍ର ପତ୍ରିକାରେ ବହୁ ବର୍ଷ ଧରି ପଢ଼ି ଆସୁଛି । କିନ୍ତୁ ଗତ ଦୁଇ ବର୍ଷ ଭିତରେ ତାଙ୍କର କେତୋଟି କବିତା ସଂକଳନ, ମାଟିଦୀପ, ଅଗ୍ନିଶଙ୍ଖ, ଆହୁତି, ରୂପାୟନ ଇତ୍ୟାଦି ପଢ଼ିବାକୁ ପାଇ ଏହି କବିଙ୍କର ଅନ୍ତର୍ନିହିତ ହୋମ-ଶିଖା ସହିତ ପ୍ରତ୍ୟକ୍ଷ ଓ ନିବିଡ଼ ପରିଚୟର ଯେଉଁ ଆନନ୍ଦ ମୁଁ ପାଇଛି, ତାହା ପ୍ରକାଶ୍ୟରେ ନ ଜଣାଇ ରହିପାରୁନି । ଏହି ତରୁଣ କବି ବର୍ତ୍ତମାନ ଜଣେ ସାମାନ୍ୟ ଶିକ୍ଷକ ମାତ୍ର । ଏହି ହତଭାଗ୍ୟ ଦେଶରେ ଲୋକର ସମ୍ମାନ ସହଜାତ ଗୁଣରୁ ଆସେନା—ଆସେ ମନ ଓ ଆସନରୁ । ଦୂରଦୂରାନ୍ତ କୌଣସି ଏକ ଅଜ୍ଞାତ ସ୍କୁଲର ଅବଧାନ ମାତ୍ର ଏହି କୃଷ୍ଣଚନ୍ଦ୍ର ତ୍ରିପାଠୀ କବି ଭାବରେ, ତେଣୁ, କି ସମ୍ମାନ ଆଶା କରି ପାରନ୍ତି ? ସେଥିପାଇଁ ହୁଏତ ଏହି କବିଙ୍କର କୌଣସି ଆଲୋଚନା ଓଡ଼ିଶାର କୌଣସି ପତ୍ର ପତ୍ରିକାରେ ଏ ପର୍ଯ୍ୟନ୍ତ ଦେଖା ଯାଇନାହିଁ । କିନ୍ତୁ ସୁଦୂର ପଲ୍ଲୀ ଅଭ୍ୟନ୍ତରରେ, ଆପଣାର ଦରିଦ୍ର କୁଟୀରରେ ନିଃସଙ୍ଗ ନିଶୀଥର ମ୍ଳାନ ଦୀପଶିଖା ତଳେ ଏହି କବି, ଦେଶର ମାନଗାନକୁ ଅପେକ୍ଷା ନ କରି, ଯେପରି ନିରବଚ୍ଛିନ୍ନ ଭାବରେ ଅଗଣିତ କବିତାରେ ଦେଶ ଓ ଜାତିର ଦୁଃଖରେ ଅଭିଭୂତ ନିଜର କୋମଳ ଆତ୍ମାକୁ ଢାଳି ଚାଲିଛନ୍ତି, ତାହା ବିଚାର କରି ମୁଁ ମୁଗ୍ଧ ଭାବରେ ଠିଆ ହୋଇଛି ।

'ମାଟିଦୀପ'ରେ କବି ଗାଇଛନ୍ତି—

"ନୟନୁ ମୋ ଝରି ପଡ଼େ
ଲୋତକର ଝରଣା,
ଆକାଶେ ବତାଶେ ଗୁହୁଁ
ଫେରୁଛି ମୁଁ କୁଟୀରେ
ପଥ ବଡ଼ ଦୁର୍ଗମ
କ୍ଳାନ୍ତ ମୁଁ ଶ୍ରାନ୍ତ
ଏକା ମୁଁ ଯେ କେହି ନାହିଁ
ବନ୍ଧୁ ମୋ ସାଥିରେ !
ମୋ ମରମ ବୁଝି ମୋରେ
କରିବ ଯେ ଶାନ୍ତ ।"

ଜଗତର ଓ ନିଜର ଦୁଃଖରେ ଅଭିଭୂତ କବି, ଚତୁର୍ଦ୍ଦିଗରେ ଅନ୍ୟାୟ ଅତ୍ୟାଚାରର ତାଣ୍ଡବଲୀଳା ଦେଖି ଦେଖି, ବାରମ୍ବାର ଦୀର୍ଘଶ୍ୱାସ ପରିତ୍ୟାଗ କରିଛନ୍ତି ସତ, କିନ୍ତୁ ବାରମ୍ବାର ମଧ୍ୟ ସେ ଉଠିଛନ୍ତି ଜୀବନର ଝଡ଼ଝଞ୍ଜାକୁ ବୁଢ଼ା ଦେଖାଇ ଅକୁତୋଭୟ ଭାବରେ ଆଗେଇ ଚାଲିବା ପାଇଁ । ଦୁର୍ଭାଗ୍ୟ ନିଷ୍ପେଷିତ, ଭୂପତିତ କବି ଗାଇ ଉଠିଚନ୍ତି—

"ଧରଣୀ ମୋ ବେଦନା, ନବୁଝୁ ଲବେ ହେଲେ
ଦେଉ ସେ ଯେତେ ବାଧା ଦବ
ଉଠି ମୁଁ ନାହିଁ ପାରେ, ଉଠିବା ପାଇଁ ପ୍ରାଣେ
ଜଳୁ ସେ ଆଶା ଅଭିନବ ।"

ଧନ ବା ମାନ ଦିଗରୁ ପତିତ ହେଲେହେଁ, ସାମାଜିକ ଭାବରେ ନଗଣ୍ୟ ହେଲେହେଁ, କବିଙ୍କର ଅନ୍ତର୍ନିହିତ ପ୍ରତିଭାର ଉତ୍ତାପ-କଣା ତାଙ୍କୁ ଗରୁଡ଼ପରି ବାରମ୍ବାର ଉଡ଼େଇ ନେଇ ଚାଲିଛି ସୀମାହୀନ ଅନ୍ତରୀକ୍ଷକୁ, ଅମୃତର ସନ୍ଧାନରେ । କବି ନିଜ ଦୁଃଖରେ ଅଭିଭୂତ ହୋଇ ଦୀର୍ଘଶ୍ୱାସ ପରିତ୍ୟାଗ କରିବା ସଙ୍ଗେ ସଙ୍ଗେ, ନିଜ ଗାଁ, ନିଜ ପ୍ରତିବେଶୀ, ନିଜ ଦେଶ ଓ ଶେଷରେ ସମଗ୍ର ମାନବ ଜାତିର ଦୁଃଖ ଦୂର କରିବା ପାଇଁ ଚିତ୍କାର କରି ଉଠିଛନ୍ତି 'ମୂଷାହାଡ଼' ଓ 'ପଧାନ ସାଇର ଦାମିଆ ଝିଅ ନେତ' ଏଇ ସର୍ବବ୍ୟାପୀ ମାନବିକ ଦୁଃଖର ମର୍ମମନ୍ତୁଦ ପ୍ରତୀକ ହୋଇ ଠିଆ ହୋଇଛନ୍ତି, କବିଙ୍କ କବିତାରେ । ଯେଉଁ ସରସପ୍ରାଣ, ସାଥୀ, ପ୍ରତିବେଶୀ ଓ ମାନବର ଦୁଃଖରେ ଅଶ୍ରୁ ଜର୍ଜ୍ଜର ହୋଇ ପଡ଼ୁଛି, ସେଇ ପୁଣି

'ଆହ୍ୱତ'ରେ ଖୋର୍ଦ୍ଧା ପାଇକର ଉତ୍କ୍ଷିପ୍ତ ଧମନୀ ଦେଇ ଉଗ୍ର ସମରାହ୍ୱାନ ଉଦ୍‌ଗାର କରିଛି, 'ଅଗ୍ନିଶଙ୍ଖ'ରେ ବଞ୍ଚିଦେବାକୁ ଯାଇଛି, ବିପ୍ଳବ ।

ନିପାଠୀଙ୍କର ଏଇ ସବୁ କବିତା ଏତେ ସ୍ୱାଦ୍ୟ ଓ ଉପଭୋଗ୍ୟ ହୋଇଛି, କାରଣ ଏ ଗୁଡ଼ିକ ତାଙ୍କର ସମ୍ପୂର୍ଣ୍ଣ ନିଜର । ଏସବୁ ତାଙ୍କ ଦରିଦ୍ର କୁଟୀରର ଲକ୍ଷ୍ମୀଙ୍କ ନିଜ ହାତ ରନ୍ଧା ପଖାଳ ଭାତ ଶାଗ ଖରଡ଼ା । ଏଥିରେ ଉଧାର ଆଣି ଫଟାଟମ ଦେଖାଇବାର ବା ଚୋରାଇ ଲୁଚାଇ ଆଣି ନିଜକୁ ସମୃଦ୍ଧିବାନ ବୋଲି ପରିଚୟ ଦେବାର ଇତରତା ଆଦୌ ନାହିଁ । ସେ କୌଣସି ଯୁଗ ସୃଷ୍ଟି କରିବାକୁ ଯାଇ ନାହାନ୍ତି ବା କୌଣସି ଯୁଗାବତାରର ଅନୁଗାମୀ ହୋଇ ସେହି ଅନୁଗମନକୁହିଁ ନିଜର ପରମ ମୌଳିକତା ବୋଲି ପ୍ରଚାର କରିବାକୁ ଚେଷ୍ଟା କରିନାହାନ୍ତି । ଏପରି 'ପ୍ରଗ୍ରେସିଭ୍' ପ୍ରଚେଷ୍ଟା କୃଷ୍ଣଚନ୍ଦ୍ରଙ୍କର ଦରକାର ନାହିଁ । ସେ ଖାଣ୍ଟି କବି ଏବଂ ଖାଣ୍ଟି ମନୁଷ୍ୟ । ସେ ଯାହା ଦେଖୁଛନ୍ତି ଓ ଯାହା ଅନୁଭବ କରୁଛନ୍ତି, ତାହାହିଁ ପ୍ରକାଶ କରି ଚାଲିଛନ୍ତି ଆପଣାର ନିଜସ୍ୱ ଭଙ୍ଗିରେ । ସେ ସେଥିରେ ସିଦ୍ଧି ମଧ୍ୟ ଲାଭ କରିଛନ୍ତି ।' କାରଣ ତାଙ୍କର ମର୍ମଦହନ ହୋଇ ଉଠୁଚି, ଆଜି ସକଳର ମର୍ମଦହନ । ନାନା ଶ୍ରେଷ୍ଠ ଶ୍ରେଷ୍ଠ ଆପାଂକ୍ତେୟ ଅନୁଭବ, ଆଜି :ତାଙ୍କ ରଚନାର ଯାଦୁସ୍ପର୍ଶରେ ଓଡ଼ିଆ ସାହିତ୍ୟରେ ଅମର ସ୍ଥାୟିତ୍ୱ ଲାଭ କରିଗଲେଣି ।

ଏଇ ତରୁଣ କବିଙ୍କି ଅଭିବାଦନ କରି ମୁଁ ଆଜି ଆନନ୍ଦ ଅନୁଭବ କରୁଛି । ଲେଖିଯାଅ କବି, ଲେଖିଚାଲ । ଏ ଦେଶରେ ତମେ ଆଦର ସମ୍ମାନ ପାଇବାର ଆଦୌ ଆଶା ରଖନି । କୌଣସି ଦେଶରେ କବି ଓ ଲେଖକ ଏପରି ଲାଞ୍ଛିତ ନିର୍ଯ୍ୟାତିତ ଜୀବନ ଯାପନ କରି-ନାହାନ୍ତି, ଯେପରି ଘଟି ଆସିଛି ଓଡ଼ିଶାରେ । କିନ୍ତୁ ଏ ଜାତିକୁ ଗଢ଼ି ଯାଇଛନ୍ତି ସେଇମାନେ । ହେ ଭାଗ୍ୟ ନିଷ୍ପେଷିତ, ଦରିଦ୍ର ଅଜ୍ଞାତ କବି, ତମେ ସେଇ ଆନନ୍ଦକୁ ଲକ୍ଷ୍ୟ ରଖି ଦେଇ ଯାଅ ଯାହା ଜାତିକ ଦେବାର ।

(୯ । ୪ । ୫୯ ତାରିଖ ଦୈନିକ ସମାଜରୁ ଗୃହୀତ)



# ସମ୍ରାଟ ଓ ଫକୀର

ଖିଳବିଶ୍ୱର ସ୍ରଷ୍ଟା ସେ ଦିନ ଦେଲେ ଯେ ଘୋଷଣାଟିଏ
"ସାରା ଧରଣୀର ସମ୍ରାଟ ପଦ ପାଇବାକୁ ଲୋଡ଼ କିଏ ?
ଆଣିଥିବି କରେ ମୁକୁଟ ଗୋଟିଏ ଅତି ସୁନ୍ଦରତର,
ଶତ ମଣି ଶତ ମୁକ୍ତାର ତେଜେ ଦିଶୁଥିବ ଝଲମଲ !

'ସମ୍ରାଟ ହେବି ସମ୍ରାଟ ହେବି ମୁହିଁ ହେବି ସମ୍ରାଟ'—
ବୋଲି, ସମ୍ମୁଖେ ମୋର ଯେ, ଟେକିବ ଉଚେ ଯୁଗଳ ହାତ'
ମୁକୁଟ ମୁଁ ତାର ଶିରେ ଖଚି ଦେବି, ସେହି ହେବ ସମ୍ରାଟ,
ଧରଣୀର ପ୍ରତି ଅନ୍ତରୁ ସେହି ପାଉଥିବ ପ୍ରଣିପାତ ।

ଯାହା ସେ କହିବ, ଯାହା ସେ ଚାହିଁବ ସକଳ ପାରିବ ପାଇ
ଧନ ଜନ ମାନ କେଉଁ ସମ୍ପଦୁ ଊଣା ସେ ହୋଇବ ନାହିଁ ।"
କେତେ ଦିନ ପରେ ନିଖିଳ ସ୍ରଷ୍ଟା ଦେଖିଲେ ଯେ ସମ୍ମୁଖେ
ମଣିଷର ମହାପାରାବାର କିବା ଚାହିଁଅଛି ଉତ୍ସୁକେ !

ପ୍ରତି ଅନ୍ତରେ ପୁଲକ-ଉର୍ମି-କଳ-ବେଣୁ ଦୋଳି ଖେଳେ,
ପ୍ରତି ଅନ୍ତରେ ସମ୍ରାଟ ଆଶା କି ବିରାଟ ହୋଇ ଜଳେ !
ସ୍ରଷ୍ଟା ଯେବେ ସେ ଠିଆହେଲେ ଆସି ଏ ମହାଜନତା ଆଗେ
'ସମ୍ରାଟ ହେବି' 'ସମ୍ରାଟ ହେବି' ଖାଲି ଚିତ୍କାର ଜାଗେ !!

କାହା ଶିର ନାହିଁ ଅବନତ ହେଲା ସ୍ରଷ୍ଟା ଚରଣ ତଳେ,
ସମ୍ରାଟ ପଦ-ନିଶା-ଉନ୍ମତ୍ତ ଜନତା ଉଚସ୍ୱରେ—
ଚିତ୍କାର କରେ ଚିତ୍କାର କରେ 'ମୁହିଁ ହେବି ସମ୍ରାଟ' !
ସ୍ରଷ୍ଟା କହିଲେ ଜନତାର ଆଗେ ଉତ୍ତୋଳି ବେନି ହାତ—

"ଦୁଃଖର କଥା ଜାଣି ନଥିଲି ମୁଁ ଯବୁ ହେବେ ସମ୍ରାଟ,
ଆଣିଚି ଜମା ମୁଁ ଗୋଟିଏ ମୁକୁଟ କାହିଁ ନିଷ୍ପତ୍ତି ବାଟ ?
ଆଉଦିନେ ଯାର ନିଷ୍ପତ୍ତି ହେବ, ଆଜ ମୁଁ ଯାଉଚି ଚାଲି,
ଫକୀର ହେବାକୁ କଏସେ ଲୋଡ଼ୁଚି ଆସିବ ଏ ଥାନେ କାଲି ।

ଆଣିଥିବ ମୁହିଁ ଗୈରିକ ବାସ ପିନ୍ଧାଇ ଦେବ ତାରେ
ଚିର ପରି ସେହୁ ଥିବ ଅବିରଳ ଦୁଃଖ ଓ ହାହାକାରେ ।
ମୋର ଧରଣୀର ପ୍ରତି ଅନ୍ତରେ ଦେବ ଆନନ୍ଦ ବାଣୀ,
ଆପଣାରୁ ବଳି ଅତି ଆପଣାର ଦେଖିବ ସକଳ ପ୍ରାଣୀ,

ନଥିବ ତାହାର ପର ଓ ଆପଣା ନାହିଁଥିବ ଘରଦ୍ୱାର,
ଆକାଶ ଅବନୀ ସ୍ୱର୍ଗରୁ ବଳି ହେବ ତାର ପରିବାର ।"
ସେଦିନ ଆସିଲେ ସ୍ରଷ୍ଟା ହାତରେ ଗୈରିକ ବାସ ଧରି
ଦେଖିଲେ କେ ନାହିଁ, ଦୂରେ ଦିଶୁଚି କେ ଗୋଟିଏ ଚିହ୍ନପରି,

ଚାଲିଲେ ସ୍ରଷ୍ଟା ଯେତେ ଆଗେ ଆଗେ ଉଜ୍ଜ୍ୱଳ ଚାରିଆଡ଼,
ମଣିଷ ଗୋଟିଏ ନାଚି ନାଚି ଆସେ ଆନନ୍ଦ-ମତୁଆଲ,
ସ୍ରଷ୍ଟା ଚରଣେ ନତ କରି ଶିର କହେ ବାର ବାର କରି,
"ଚିରକାଳ ମତେ ଏ ଫକୀର ବେଶେ ରଖିଥାଅ ନରହରି !

ତୁମରି ଲାଗିଜେ ଫକୀର ହୋଇ ମୁଁ କାଟିଦିଏ ମୋର କାଳ,
ମୋର ଯାହାଅଛି ମହାବିଶ୍ୱର ପାଉ ତାହା ଚାରିଆଡ଼ ।"
ସମ୍ରାଟ ଶିର ମୁକୁଟ ଗୋଟିକ ବାନ୍ଧି ତାହାର ଶିରେ,
ହସି ହସି ତାରେ ସ୍ରଷ୍ଟା କହିଲେ ମଞ୍ଜୁମଧୁର ଗୀରେ

'ତୁମେ ଧରଣୀର ସମ୍ରାଟ ଲାଗି ଏକଇ ମାତ୍ର ପୁଅ
'ତୁମରି ଭିତରେ ବିକଶି ଉଠଇ ବିଶ୍ୱ ପ୍ରାଣର ସୁଅ ।"

---

# ଛିନ୍ନ

ଜୀବନର କେଉଁ ସୁଦୂର ଅଞ୍ଚଳେ,
ତୁମର ମୋହର ଦେଖା—ତାହା ପରେ ପରେ
ତୁମେ ମୁହିଁ କେ କାହାରେ ଦେଖିନାହେଁ ବାରେ,
ମୁ ଭୁଲିଲି ମୋର ବାଟେ
ତୁମେ ଗଲ ସେ ଯେ କେଉଁ ଦୂରଦୂରାନ୍ତରେ !

ଏକାକୀ ବିହଗଟିଏ ଉଡ଼ ଉଡ଼ ଆସିବାର ପରି
ଦୂର ଦିଗ୍‌ବଳୟୁ ତଟ୍, ବହୁ ଯୁଗ ବହୁ ବର୍ଷ ପରେ
ତୁମେତ ଆସିଲ ଫେରି
ପକ୍ଷ ଛିନ୍ନ ଦେହ କ୍ଷତ ଓ ବିକ୍ଷତ,
ପଚାରିଲ ସକରୁଣ କଣ୍ଠେ ଟିକିଏ ଖେଳାଇ ସ୍ମିତ
"ଚିହ୍ନି ପାରୁଛ ତ ?"
ତାଳୁରୁ ତଳପା ଯାଏଁ ଚାହିଁଗଲି ଥରି ଥରି କରି
ସେଇ ସେ ଓଠର ହାସ, କଣ୍ଠର ସେ କଥା ପଦେ
ମୋରେ ଚିହ୍ନି ରଖିବାକୁ ରହିଲାନ ବାକି କିଛି ତଳେ,
ଦେଖିଗଲି ତୁମେ ମୋର ଅତ୍ୟନ୍ତ ନିଜର
ଏତେ ଦିନ ଧରି ରହିଥିଲ କେଉଁ ଅନ୍ଧକାର-ତଳେ !



ସେଇ ଦେହ, ସେଇ ଦୀପ୍ତି, ମନର ସେ ସାହସ ଓ ବଳ
ସେଇ ଧୈର୍ଯ୍ୟ, ସେଇ ଦମ୍ଭ, ସେହି ପୁଣ୍ୟ ଗର୍ବ ଗଉରବ,
ସେଇ ଆଶା, ସେ ଆକାଙ୍‌କ୍ଷା, ସେଇ ଅଭିଳାଷ,
କେଉଁଆଡ଼େ ହୋଇଚି ଉଭାନ,
ରହିଚି କେବଳ ଯାହା ଗୋଟିଏ ମୁମୂର୍ଷୁ ପିଣ୍ଡ
ଦୁଃଖ ଦୈନ୍ୟ ଅଭାବରେ ହୋଇ ଖଣ୍ଡ ଖଣ୍ଡ
ଶତ୍ରୁ ଯେବେ ଚାହିଁଦିଏ ବାରେ
ଉଠିବ ତରଳ ଯେହ୍ନେ ଅସୀମ ଦୟାରେ;
ପଚାରିଲ ବିସ୍ମୟ ଓ ପୁଲକରେ ହୋଇ ଆନ୍ଦୋଳିତ
"କେଉଁଠୁ ଆସିଲ ତମେ ? କିପରି ଆସିଲ ?
ଏଇ ଦରିଦ୍ର କୁଟୀରେ,
କିପରି ଚିହ୍ନିଲ ବାଟ ? କିପରି ଜାଣିଲ
ମୁହିଁ ଅଛି ଅବା ନାହିଁ ?

ମୋରେ ତୁମେ ମନେ ରଖିବାର
ନଥିଲା ତ କଣ୍ଠି ହିଁ କାରଣ ;
ମୁଁ ତୁମରେ ରଖିଥିଲି ମନେ ଚିରଦିନ ପାଇଁ
ମୁହିଁ ଜାଣେ କାହିଁକି ମୁଁ
ରଖିଥିଲି ମନେ, ଜୀବନର ସୁଦୂର ଅତୀତୁ
ସୁଦୀର୍ଘ ସମୟ ପରେ ଆଜ ଏତେ ଦିନେ !

ତୁମର ଐଶ୍ୱର୍ଯ୍ୟ ଥିଲା
ତାହା ସାଥେ ଥିଲା ବିଜଡ଼ିତ ହୋଇ
ତୁମର ଯେ ଗୋଟିଏ ମୋହନ ଅନ୍ତର,
ଦୟା, ଦାନ, ତିତିକ୍ଷାରେ ହୋଇ ଚଳ ଚଳ,
ଆକାଶରେ ବାରିବିନ୍ଦୁ ପରି ପଡୁଥିଲା ଲଇଁ,
ଯେଉଁଠି ଗରଜୁଥିଲା ଶୁଷ୍କ ପ୍ରାଣହୀନ ମରୁ
ଆଁ କରି ରହିଥିଲା ତାପ ଦଗ୍‌ଧ ମହୀ ।"

ମନେ ପଡ଼େ ଯେଉଁଦିନ ପାହାନ୍ତ-ସ୍ନାହାନ ସାରି
ଫେରୁଥିଲି କୁଟୀରେ ମୋହରି,
ତରୁଣ ବୟସେ ମୋର ଶତ ଶତ ସାଙ୍ଗ ସାଥୀ ମେଳେ
ପାଲଟି ନ ଥିଲି ପାରି,
ଓଦା ବସନଟି ମୋର—
ପିନ୍ଧି ଠିଆ ହୋଇଥିଲି
ନାଇଁଥିଲା ଲୁଗା ଖଣ୍ଡେ ହେଲେ ;
ମୋରେ ବଡ଼ ଲାଗୁଥିଲା ମାନହାନି,
କାନ୍ଦ କାନ୍ଦ ହୋଇ,
ସେହି ଓଦା ଲୁଗା ଖଣ୍ଡି ପିନ୍ଧି
ବସୁଥିଲି ପଡ଼ି
ତୁମେ ଗୁହିଁ, ପାରିଲନି ଗୁହିଁ ;
ହସି ହସି ଧଡ଼ପଡ଼ କରି,
ଲୁଗା ଖଣ୍ଡେ ମୋ ହାତେ ବଢ଼ାଇ ଦେଇ
କହିଲ ସହାସେ "ସାଥୀ ମୋର ! ବନ୍ଧୁ ମୋର !
କେତେ ବେଳ ଯାଏଁ ବସିଥିବ ଓଦା ପିନ୍ଧି ?

ନାଅ ଯାକୁ ବ୍ୟବହାର କର ;
କରନାଇଁ ମନା
ମୁଁ କଣ ! ତୁମର ନୁହେଁ ?
ଦିଅ ମୋତେ କ୍ଷମା ।"

ସେତେବେଳେ ରୋମାଞ୍ଚ ଉଠିଲା ମୋର ଏ ଦେହର ପ୍ରତି ଅବୟବ,
ବାହାରିଲା "କିଏ ତମେ ? ଜୀବନର ଏ ସ୍ୱର୍ଣ୍ଣବସ୍ତୁସେ
କେମନ୍ତେ ଦେଉଛ ଅଜାଡ଼ି
ହୃଦୟର ସବୁଟିକ ମଧୁ ଏଇ ଦରିଦ୍ର ପାତ୍ରରେ !
ମୁଁ ତୁମର କେଉଁଦିନ କେଉଁ ଶୁଭ ମୁହୂର୍ତ୍ତରେ
ହୋଇଥିଲି ଏତେ ଆପଣାର ?
ମୋତେ ତୁମେ ପାରିଅଛ ବାନ୍ଧି
ଅନ୍ତରେ ଅନ୍ତର ଛନ୍ଦ ମୋହନ ସ୍ୱରରେ ।"

ମୋ ଅନ୍ତରେ କେତେ କୋହ !
ମୋ ଆଖିରେ କେତେ ଅଶ୍ରୁ !
ଚତୁର୍ଦ୍ଦିଗେ ମୋର କେତେ ବାଧା ଓ ବନ୍ଧନ !
ମୋତେ ଯେବେ ଲାଗେ ନିଃସହାୟ
ମୋତେ ବୁଝିବାକୁ କିଏ ଅଛୁ ଧରଣୀରେ ଆପଣାର ଜନ ?
ତୁମ ଅନ୍ତରର ଅମୃତ-କକ୍ଷରେ ମୋତେ ବନ୍ଦୀ କରି,
ବୋଲିଦେଲ ଦେହେ ମନେ ମୋର ଯେ ଆନନ୍ଦ ଆଭା
ଜୀବନରେ ଏ ଟିକକ ଦବାନବା କିଏ କରିପାରେ ?
ପ୍ରତିଦାନ ପାଇଁ ନୁହେ,
ଅଭିସନ୍ଧି ପାଇଁ ନୁହେ,
ନୁହେ ମାନପତ୍ର ପାଇଁ ;
ହୃଦୟ ବିହ୍ୱଳ ହେଲେ
ଆପେ ଆପେ ଚତୁର୍ଦ୍ଦିଗେ ଯାଏ ବୋହି କୋହି
ରଚି କବା କଳ-ବେଣୁ ତାନ
ସେଇ ତା'ର ଅମୃତର ଧ୍ୟାନ ।"
ତୁମେ ସେଇ ଅମୃତର ଗୋଟିଏ ମୋହନଧାର
ଉଚ୍ଛୁଳି ଉଠୁଛ ପ୍ରତି ମୁହୂର୍ତ୍ତରେ ନଗିଲ ବଣ୍ଟରେ ;
ପ୍ରାଣର ଏ ମୋହନ ଉଚ୍ଛ୍ୱାସ

କେଉଁଠୁ ଆଣିଲ ତମେ ?
ଏ ଐଶ୍ୱର କେଉଁ ଗନ୍ଧାଘରୁ କଲ ଆହରଣ !
ତୁମର ଚକ୍ଷୁରେ ଦେଇଚ କେ ବୋଳ
କବା ଅପରୂପ ମୋହନ ଅଞ୍ଜନ !

ଜୀବନର ସକଳ ମୁହୂର୍ତ୍ତି ଧରି,
ମୋ ଆଖିରେ କଏ ହେବ ନତ ତଳ ତଳ,
ମରଣ-ଶପ୍ନେ ତଳ ପଡ଼ିଥିଲେ ଶୋଇ,
କାହାର ଆନନ୍ଦଭରା-ମୋହନ-ଶ୍ରୀକର
ମୋରେ ପାରିବ ଉଠାଇ
ଅମୃତପରଶ ବୋଳ ଦେହେ ମନେ ମୋର ;
ଦୁଃଖ କଷ୍ଟ ବାଧା ଗ୍ଳାନ ଅପମାନ ପରାଜୟ ପରାଭବ ସମସ୍ତ ଭିତରେ
କଏ ଆସି ଠିଆହେବ ?
ରସାଣିତ କର ମୋରେ ପ୍ରାଣର ଆଗ୍ରହରେ
ହସି ହସି କଏ ଫେରିଯିବ ?

କାହାର ଅମୃତ ପରଶ ଟିକକ ଲଗି
ଏ ଜୀବନ ଅନନ୍ତ ସମୟ ଧରି
ଚତୁର୍ଦ୍ଦିଗେ ରହିଅଛୁ ଗୃହିଁ !
ଜୀବନର ଦୁଃଖ ? ସେ କି ଦୁଃଖ ?
କିଏ ଯେବେ ନଥିଲ ଏ ଧରଣୀ ଉପରେ ?
ମମତା-କମ୍ପିତ-ପ୍ରାଣେ
କାହା ପାଇଁ ରହିଅଛୁ କାହିଁ ?
ତୁମେ ସେ ଦିନର ସେଇ ବନ୍ଧୁ ମୋର !
ତୁମରେ ମୁଁ ଚହ୍ନିବିନ ? ତୁମରେ ମୁଁ ଜାଣିବିନ ?
ଚହ୍ନିବି କାହାକୁ ଏଇ ଧରଣୀ ଉପରେ ?
ତୁମର ସମସ୍ତ ଯାଇଚ କେଉଁ ମହାପାରେ ଗୃଳି
ତୁମର ସେ ଅନ୍ତରର ସ୍ୱର୍ଣ୍ଣ ଆଭା
ଉର୍କିମାରେ ବେଳେ ବେଳେ ତୁମର ଭିତରେ !

ତୁମେ ଆଜ ପ୍ରାଣହୀନ ପରି ବୁଲୁଅଛ
ପୃଥିବୀ ବୁକୁରେ,
ମୂଠିଏ ଅନ୍ନର ସଂସ୍ଥାନ ପାଇଁ,

ଘର ଗଲା, ବନ୍ଧୁ ବାନ୍ଧବ ଗଲେ,
ମନର ସମସ୍ତ ସାଧନା ଓ ଆଶା ଆକାଙ୍କ୍ଷା ଗଲା,
ଚୀର ପରିହିତ ହୋଇ
ବୁଲୁଅଛ ନିରାଶ୍ରୟ ପଥିକଟି ପରି !
ଜୀବନର ଫୁଲ ଫୁଟିଉଠିବା କେଡ଼େ କଷ୍ଟକର !
ସମୁଦ୍ର ଲହରୀ ପରି ଯେବେ
ସହସ୍ର ସହସ୍ର ଘାତ ପ୍ରତିଘାତ ଆସି
ଜୀବନକୁ କରଯାଏ ଅଥୟ ବିକଳ !!

ତୁମେ ପାଗଳିନୀ ପାଇଁ
ଯେତେ ଦୂର ଯାଇଥାନ୍ତ ଧରଣୀ ଉପରେ,
ତ ତୁମେ ରହିଗଲ ପଡ଼ି,
ପକ୍ଷଛିନ୍ନ ବିହଗଟି ପରି,
ଅତୀତ ଯାଇଛି
ଭବିଷ୍ୟତ ନାହିଁ କିଛି,
ଜୀବନର ଗୁରିଆଡ଼େ ହା-ହୁତାଶମୟ
ବେଦନାର ଏ ଅନନ୍ତସିନ୍ଧୁ ପାର ହୋଇ
ଦୂରେ ବହୁ ଦୂରେ ଯିବା
କେଡ଼େ ଦୁଃସାଧ୍ୟ
କେଡ଼େ ଦୁର୍ବିସହ !!

---

## ଗୋଲଦାସ

### —ଏକ—

ଗୋଲଦାସ ! ଗୋଲଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମରି ଗାର୍ଯ୍ୟ ବିଭିଷିକା ଜୀବନର ଇତିହାସ !

କେଉଁ ପଲ୍ଲୀର ଶ୍ମଶାନ ବୁକେ ମିଳାଇ ଯାଇଚ ତମେ !
କେଉଁଠି ଜନମି କେଉଁଠି ଯାଇଚ ହଜ
ତୁମକୁ କଏସେ ମନେ ପକାଉନ ଜଣେ !
କୁଟୀର ତୁମର ଭଙ୍ଗି ପଡ଼ଚ—ରହିଅଛୁ ମାଟିଗଦା
ବଲୁଆ ଭୂକୁଚ ସଞ୍ଜ ଆସିଲେ ଗୃହଆଡ଼ ଖାଲ ପଦା
ଏ ମାଟି ଉପରେ ତୁମେ ଫୁଟିଥିଲ ସେ କେଉଁ ଅଜ୍ଞାତ ଭାଲେ
ଏଇଠି ବ ଦନେ ଝଡ଼ ପଡ଼ଥିଲ ପୃଥିବୀ ଜାଣେନା ବାରେ ;
ରହିଚ ତୁମର ଭଙ୍ଗା କାନ୍ଥ, ରହିଚ ପାହାଚ ଶିଳା
ଦେଖିଥିବେ କଏ ତୁମ ଗଉରବ ତୁମ ତେଜସ୍ୱୀ ଲୀଳା !
ରହିଚ ଏ ନଇ ପୋଖରୀ ଗାଡ଼ିଆ ରହିଚ ଏ ବାଟ ଘାଟ
ଦେଖିଥିବେ କଏ ନସ୍ୱ କୁଟୀରେ ଜନମି କ୍ ଭଳ ହୋଇଥିଲ
ସୁବରାଟ !

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ, ଜାଣିନ ତୁମରେ
ଶୁଣିଚ ତୁମର ବୀର୍ଯ୍ୟ ବଭବଭରୀ ଜୀବନର ଇତହାସ !

—ଦୁଇ—

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ, ଜାଣିନ ତୁମରେ
ଶୁଣିଚ ତୁମର ବୀର୍ଯ୍ୟ ବଭବଭରୀ ଜୀବନର ଇତହାସ !

କେଉଁ ଉଦ୍ଦାମ ତରୁଣ ଜୀବନେ କ ମହା ସାହସ ଧର,
କଂସାରୀ ନଈ ଅକାତ ପାଣିରେ ତୁମେ ଥିଲ ଡେଇଁ ପଡ଼ !
ଶୁଣିଲ ଯେବେ ହେ ସକରୁଣ ଡାକ 'କଏ ଅଛ ଦୁଅ ସାହା !'
"ଭୟ ନାଇଁ ! ଭୟ ନାଇଁ ! ମୁହିଁ ଅଛୁ କହିଥିଲ ତୁମେ ସ୍ପର୍ଦ୍ଧାରେ
ପିଟି ବାହା !"
ଭାସି ଯାଉଥିଲେ ସେ କେଉଁ ଗାଆଁର ଗୃହେଟି ମୂଲଆ ଲୋକ
କଏ ହେଉଥିଲା ଉବେଇ ଟେବେଇ, କଏ ପିଇଥିଲା ପାଣି ଢକ
ଗୃର ଢୋକ;
ଭଉଁର ଗାତରେ କଏ ପଡ଼ଯାଇ ଜୀବନର ଆଶା ଛାଡ଼,
ଉପରକୁ ହାତ ଟେକ ରହିଥିଲ,

ଦୁଇକୂଳେ ଚାହିଁ ରହିଥିଲେ ନରନାରୀ;
ଅସୀମ ଜନତା ଭିତରୁ ତୁମେ ହେ ଏକଇ ମାତ୍ର ଜଣେ,
ଗୋଟି ଗୋଟି କରି ଉଦ୍ଧାର କଲ
ନିଜ ଜୀବନରେ ମମତା ନରଖି କ୍ଷଣେ;
ସଂଗ୍ରାମ ରଚି ବନ୍ୟା ସୁଅର ତୋଡ଼େ ଚାଲିଲ ଚାଲିଲ ଦୂରେ
ଅରକ୍ଷ ସେଇ ତିନି ଚାରି ଜୀବନରେ ଫିଙ୍ଗି ପାରିଲ କୂଳେ !
ତୁମ ଦୁର୍ଦ୍ଧର୍ଷ ଜୀବନରେ ମୁହିଁ କରି ଉଠେ ପ୍ରଣିପାତ !
ଶକ୍ତି ତୁମର, ସାହସ ତୁମର, ଧୈର୍ଯ୍ୟ ତୁମର,
ଜୀବନ ତୁମର କି ମହାନ କି ବିରାଟ !

ଗୋଲଦାସ ! ଗୋଲଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବ ଭରା ଜୀବନର ଇତିହାସ !

—ତିନି—

ଗୋଲଦାସ ! ଗୋଲଦାସ !
ଦେଖିନି ତୁମରେ, ଜାଣିନି ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

ସୋଲରି ପାହାଡ଼ ନିଘଞ୍ଚ ବଣେ କାଠ ହାଣୁଥିଲା ଶ୍ୟାମ
ଅରକ୍ଷ ସିଏ ବଣୁ କାଠ ହାଣି ବଞ୍ଚାଏ ତାର କୁଟୁମ୍ବ ଚାରି ପ୍ରାଣ !
ଠକ୍ ଠକ୍ ଠକ୍ ହାଣୁଅଛି କାଠ ଏକ ଲକ୍ଷ୍ୟେ ଏକ ମନେ
ଝାଳ ଗମ ଗମ ବୋହି ପଡ଼ୁଅଛି,
ପୋଛୁ ସେ ଦେଉଚି ହାତ ପଛେ କ୍ଷଣେ କ୍ଷଣେ;
ବେଳତ ହେଲାଣି ଦ୍ୱି'ପହର ଦଶଘଡ଼ି,
ଆଉ ଘଡ଼ିକରେ ଫେରିବ କୁଟୀରେ ତା'ର,
ହାଇରେ ! ହାଇରେ ! ମହାବଳ ବାଘ ଆସି
ଶ୍ୟାମ ପଛଡ଼ାର ଜଙ୍ଘକୁ ଧରି, ଝିଙ୍କୁଚି ବାର ବାର;
ଅରକ୍ଷ ଶ୍ୟାମ ତଳେ ଯାଇଅଛି ଢଢ଼ି,
'ମରିଗଲି' 'ମରିଗଲି' ବୋଲି ଯାହା ଛୁଡ଼ିଚି ଗୋଟିଏ ରଡ଼ି !
ଆଉ ଶୁଭି ନାହିଁ ସ୍ୱର ଶବ୍ଦ ତା' ; ସବୁ ଶୂନ୍‌ଶାନ୍ ତାହାପରେ ;
ତା ଆତୁର ରଡ଼ି ଚମକ ଆଣିଲା ତୁମର ବକ୍ଷ ତଳେ !

ତୁମେ ତେଜସ୍ୱୀ ତୁମେ ହେ ସାହସୀ ପଲ୍ଲୀର ବୀରଯୁବା
କେଉଁ ବଣ ଉହାଡ଼ରେ ହାଣୁଥିଲ କାଠ ସଗର୍ବେ ହୋଇ ଉଭା !
ସେଇ ସେ ଦାଢ଼ୁଆ କଟୁରିଟି ହାତେ ଧରି,
ଶିଳାରୁ ଶିଳାକୁ ବଣରୁ ବଣକୁ ଚଞ୍ଚଳ ଡେଇଁପଡ଼ି,
ଚୂରଆଡ଼େ ତୁମେ ବୁଲାଇ ନୟନ ଡୋଳା,
ଦେଖିଲ ଦେଖିଲ ଶ୍ୟାମ ପରଡ଼ାରେ ଟେକ ନେଉଅଛୁ ବାଘ,
ଧାଇଁ ଯାଇ କବା ବିଦ୍ୟୁତ ଚଞ୍ଚଳେ, ବାଘର ବେକକୁ ଧରି
ପକାଇଲ ଆଗ;
ସେଇ କଟରିରେ ଚୋଟ ଚୋଟ କରି ହାଣିଲ କୋଡ଼ିଏ ଚୋଟ;
କ୍ଷତ ବିକ୍ଷତ ବାଘ ଚୂଲିଗଲା
ଶ୍ୟାମ ପରଡ଼ାଟା ଗୋଟାକ ସାତଟା ହୋଇ, ଥରୁଅଛୁ ଛଟଛଟ !!

ସଚେତ କରାଇ ତା'ରେ
କାନ୍ଧରେ ଥୋଇ ଆଣିଲ ଗାଆଁକୁ
ଝରି ଝରି ଝରି ଝରି ପଡ଼ୁଥାଏ ରକ୍ତ
ତୁମରି ସେ ଦେହ ମୁଣ୍ଡର ଚୂରଆଡ଼େ !

ବଣ ତଇଲରୁ କିଏ ହାଣୁଥିଲା କାଠ
ବଣ ତଡ଼େ ତଡ଼େ କିଏ ଚୂଲୁଥିଲେ ପଥିକ ସେ କେତେ
ସେ ଯେ' କେଉଁ ଦୂରବାଟ,
ବିଲ କାମ କିଏ କରୁଥିଲେ କାହିଁ ସେ ବଣ ପାହାଡ଼ ତଳେ
ସବୁରି କାନରେ ପଶିଥିବ ତାର କଣ୍ଠ ,ଆତୁର ରଡ଼ି
ସଭିଏ ରହିଲେ ମୂକ ଶିଳାସମ ଶୁଣି ନଶୁଣିଲା ପରି,
ପଲ୍ଲୀର ବୀର ଦୁର୍ମଦ ଯୁବା ଗୋଳିଦାସ ! ଗୋଳିଦାସ !
ମୂକ ଓ ମଉନ ତୁମେ ପାରିଲନି ରହି, କାନ୍ଧେ କଟୁରି ବହି
କିଭଳି ଧାଇଁଲ ଗୋଟିଏ ଜୀବନ ପାଇଁ, ଜୀବନ ଦେବାକୁ ଝାସ !
ତୁମରି ଗାଆଁର ତୁମରି ମାଟିର ତୁମ ଶୋଣିତର ଜଣେ,
କଲବଲ ହୋଇ ମରି ଯେ ଯାଉଚି ପଡ଼ିଅଛୁ ଅଚେତନେ,
ତାହାରେ ତେଆଗି ଆଖି ବୁଜି ଦେଇ ଦୂରେ ଦୂରେ ଚୂଲିଯିବା
ଏହା ଠାରୁ ବଳି ନିର୍ଲଜ ପ୍ରାଣ ଅଛୁ ଧରଣୀରେ କିବା ?
ବିପଦ ଭିତରେ ଆପଣାରେ ଝାସି ମରିଯିବା ପକ୍ଷେ ଭଲ
ବିପଦ ଭିତରେ ଜଣେ ବୃନ୍ଦ ରହି ହେଉଥିବା କଲବଲ—
ଏ ଟିକିକ ଦେଖି ବଞ୍ଚି ରହିବା ଆହ୍ଵର କଷ୍ଟକର !

ବିଗୁରିଲ ମନେ ମନେ, "ମରେ ବା ବଞ୍ଚେ କିଛୁ ଯାଏ ଆସେ ନାହିଁ
ଜୀବନ ଆସିନ ମରିଯିବା ଅବା ବଞ୍ଚିବା ଲାଗି ଖାଲି,
ଆସିଛି ଧରାର କଲ୍ୟାଣ ପାଇଁ ଲାଗିବାକୁ ପ୍ରତିକ୍ଷଣେ,
ସେ ଠିକକ ଯେବେ ନ ହୋଇ ପାରିଲା
ଏ ଜୀବନେ ଅଛି କିବା ପୌରୁଷ କହ ?"
ଜୀବନ ତୁମର ହେଲା ଅତି ଦୁଃସହ !
ବିଦ୍ୟୁତ ପରି ଚମକି ଉଠିଲ କଣ୍ଟୁଷ୍ଟ ଉର୍ଦ୍ଧେ ଟେକି
ସଂଗ୍ରାମ କରି ବିଜନ ପାହାଡ଼ ଖୋଳିଲେ
ଏକା ଏକା କେହି ନାହାନ୍ତି ତୁମ ତୁଲେ,
ଶ୍ୟାମ ପରିଡ଼ାରେ ଝିଙ୍କି ଆଣିଲ
ମରଣ ମୁହଁରୁ ତୁମେ ବୀର ବଳଆର !
ତୁମେ ଯା ପାରିଚ କରି,
କା ବୁକୁରେ ଜଳେ ଅଗ୍ନି ଏ ଭଳି
ମରଣର ତୁଲେ ସଂଗ୍ରାମ କରି
ବଜାଇ ପାରିବ ଜୟ ଦୁନ୍ଦୁଭି
ଆକାଶ ପବନ କମ୍ପାଇ ଗୁରିଆଡ଼ !!

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ, ଜାଣିନ ତୁମଠାରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

—ଗୁରି—

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ, ଜାଣିନ ତୁମଠାରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

ଖୋର୍ଦ୍ଧା ତାଲୁକା ମାଜିଷ୍ଟ୍ରେଟର ଦେଖିଲ ଗୋଟିଏ ଅତି ଉଦ୍ଦଣ୍ଡଘୋଡ଼ା,
ବରୁଣୀ ପାହାଡ଼ ତଳେ ଚରୁଅଛି
ପାଦରେ ତାହାର ଲୁହା ଜଞ୍ଜୀର ନିବଡ଼େ ହୋଇଛି ଭିଡ଼ା ;
ପଗୁରି ବୁଝିଲ ଆଜଯାଏଁ କେହି

ଚଢ଼ି ପାରୁନାହିଁ ସେହି ଯେ ଘୋଡ଼ାର ପିଠେ
ଏକଇ ଲମ୍ଫେ ଚଢ଼ି ସେ ଘୋଡ଼ାରେ
କଦମ୍ କଦମ୍ ଚାଲିଲ ଚାଲିଲ ପାହାଡ଼ର ଆରପଟେ;
ପବନ ପରାଏ ଚାଲିଅଛୁ ଘୋଡ଼ା ଡେଇଁ ଝିଲ ପଦା ବନ
କିଏ ସେ ବସିଛ ଏତେ ବଳଆର ଆଚମ୍ବିତ ଯେ ଚଉଦିଗେ
ପୁରଜନ ;
ମାଜିଷ୍ଟ୍ରେଟ ଯେ ବିସ୍ମିତ ହୋଇ ରହିଲେ ଘଡ଼ିଏ ଚାହିଁ
ଦୁର୍ଦ୍ଦଣ୍ଡ ଏ ଘୋଡ଼ାର ପିଠିରେ କିଏସେ ବସିଛ
ଭୟ ବା ଭ୍ରାନ୍ତି ଟିକିଏ ତାହାର ନାହିଁ !
ସହର ତମାମ ଟପ ଟପ ଘୋଡ଼ା ଚାଲି
ଫେରାଇ ଆଣିଲ ଟିକିଏ ଥାପୁଡ଼ି ଦେଇ;
ସହର ତମାମ ପଡ଼ିଗଲା ହୁରି 'ଗୋଲଦାସ ! ଗୋଲଦାସ !
ଅଛି ଅମାନିଆ ଘୋଡ଼ାରେ କପରି ମନାଇ ପାରିଛି ସେଇ;
ସାହେବ ତୁମର ବୀର୍ଯ୍ୟ ବିଭବ ସାହସ ଦମ୍ଭ ଦେଖି,
ଆପଣା ହାତରେ ଗଉରବ କରି କେତୋଟି ଟଙ୍କା ଦେଲେ
ଉପହାର ଟେକି;
ସାହେବରେ ତୁମେ ଦରଖଣ୍ଡିଆ ହିନ୍ଦୀରେ ପରା କହିଲ
ଗୋଟିଏ କଥା
"ସାହେବ, ମୋହର ଟଙ୍କାତ ଲୋଡ଼ା ନାହିଁ
ତୁମେ ଯେ ବୁଝିଲ ଏ ଦେଶେ ଛନ୍ତି ବୀର ବଳଆର
ସେଇତକ ମୋର ସକଳ ସାର୍ଥକତା !"
ଗୋରା ସାହେବର ପ୍ରତି ଅବୟବେ ପ୍ରେମ ଟାଙ୍କୁରି ଉଠି
ଅଧରେ ଗୋଟିଏ ମୋହନ ହାସ୍ୟ ସୋହାଗେ ଆସିଲା ଫୁଟି ;
ଗୁରୁଗଉରବେ ତୁମରି ମଥାରେ ବୁଲାଇ ଆପଣା କର
ବନମ୍ର ଭାଷେ କହିଲେ ତୁମରେ "ଗୋଲଦାସ ! ଗୋଲଦାସ !
ସେଇ ବୀର, ଯିଏ ଧନ ସମ୍ପଦ ଉପରେ ନରଖି ମାୟା
ଦେଶର ଜାତିର ଗଉରବ ପାଇଁ ଚାଲିଥାଏ ରଖି ଅମୃତ ଅଭିଳାଷ !"

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ ଜାଣିନ ତୁମରେ
ଶୁଣିଛି ତୁମରି ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !

## —ପାଞ୍ଚ—

ଗୋଲଦାସ । ଗୋଲଦାସ ।
ଦେଖିନ ତୁମରେ, ଜାଣିନ ତୁମରେ
ଶୁଣିଚି ତୁମର ବୀର୍ଯ୍ୟବିଭବ ଭରା ଜୀବନର ଇତିହାସ !

କେଉଁ ଶତାବ୍ଦି ଅନ୍ଧାର ତଳେ, କେଉଁ ପଲ୍ଲୀର କୁଟୀରେ ବିକଶିତମେ
କେଉଁଠି ନିଭୂଲ, ଆପଣା ଟିକକ ଫୁଟାଇ ଫୁଟାଇ
କିଏ ତ ଜାଣିନ ଦୁନିଆରେ ଆଜି ଜଣେ ;
ଦେହ ଓ ମନର ଶକ୍ତି ସାଧନା ଅମିତ ସାହସ ବଳ
ଦେଇ ଚାଲିଗଲ ପଲ୍ଲୀ-ବୁକୁରେ ଫୁଟାଇ କି ଅବା କନକର ଶତଦଳ
ଇଚ୍ଛା କରିନ କିଏ ସେ ତୁମକୁ ଜାଣୁ
ଫୁଟି ଉଠୁ ତୁମ ଗଉରବ ଚାରିଆଡ଼େ,
ଇଚ୍ଛା କରିନ ବଞ୍ଚି ରହିବା ପାଇଁ
ସ୍ମୃତିସ୍ତମ୍ଭର ଫଳକେ ବିରାଜେ ବଡ଼ ବଡ଼ ବଡ଼ ଅକ୍ଷର ସମ୍ଭାରେ ।
ବଂଶ ତୁମର ଧ୍ୱଂସ ହୋଇଚି, ଚିହ୍ନ ତୁମର ନାଇଁ,
କେଉଁ ବିସ୍ମୃତି-କଳା ଅନ୍ଧାରେ ଲୁଚି ଯାଇଅଛ କାହିଁ !
ତୁମର ବୀର୍ଯ୍ୟ ତୁମର ଶୌର୍ଯ୍ୟ ତୁମର ସାହସ ବଳ
ବଞ୍ଚି ରହିଚି ସୃଷ୍ଟିରେ ରଚି ଜୀବନ ଉଜ୍ଜ୍ୱଳ ;
ନିଖିଳ ଦୁନିଆ କୋଟି ସଂଭ୍ରମେ
ଚିର ଦିନ ପାଇଁ ରହିବ ସବାରେ ଚାହିଁ,
ଜୀବନ ଯେଉଁଠି ଜୀବନ ଆଣିଚି କେବଳ ଜୀବନ ପାଇଁ !

ଗୋଲଦାସ ! ଗୋଲଦାସ !
ଦେଖିନ ତୁମରେ ଜାଣିନ ତୁମରେ
ଶୁଣିଚି ତୁମର ବୀର୍ଯ୍ୟ ବିଭବଭରା ଜୀବନର ଇତିହାସ !!

———

# ଆଦେଶ

—ଏକ—

ଲେଖିଲ ମୁଁ ଥର ଥର କର ଲକ୍ଷ ଥର
ଯିବନ ସୁଦୂରେ ଆଉ, ମୋତେ ସ୍ଥାନାନ୍ତର
କର ତମେ ସନ୍ନିକଟେ, ମୋର ପ୍ରିୟମାଟି
ଯା' ବନ୍ଧନ ଜନ୍ମେ ଜନ୍ମେ ପାରିବନି କାଟି ।
ପାହାଡ଼ ପ୍ରାନ୍ତର ଶ୍ୟାମ ଗଛ ପତ୍ରମାଳ
କେତେ ବନ୍ଧୁ ପରିଚିତ, ପ୍ରିୟ ଆପଣାର
ସକଳର ପୁଣ୍ୟସ୍ମୃତି ମୋ ଅନ୍ତର ତଳେ
ଚିରଦିନ ଲିଳାପ୍ସିତ, ଏତେ ଦୂରସ୍ଥରେ
ପାରିବନି ରହି ଆଉ, ଆତ୍ମୀୟ ସ୍ୱଜନ-
ସଭିଙ୍କଠୁ ଛିନ୍ନ ହୋଇ, ମହା ମରୁସମ—
ନିଃସଙ୍ଗ ଜୀବନ ଯାପ ବଡ଼ କଷ୍ଟକର;
ତଥାପି ଲେଖିଲ "ଯାଅ ସୁଦୂରେ ସତ୍ୱର
ଆଦେଶ ବଦଳିବନି !" କ ବୁଝିଲ ମତେ ?
ହାକମ ଗୁଡ଼ାକ ନିଷ୍ଠୁର ଜାଣୁଆର ସତେ !!

—ଦୁଇ—

କି ମହା ଆଦେଶ ତୁମେ କରଅଛ ଜାରି
ନ ମାନିଲେ କାଟିଦେବ ମୋ ଜାଗିର ବାଡ଼ି
ପଳାତକ ହୋଇ ମୁହିଁ ଗୁଲଯିବ କାହିଁ
ମୋ ଲାଗି ଏ ଧରାବକ୍ଷେ ସ୍ଥାନ ଯେତେ ନାହିଁ
ମରି ପଡ଼ିଥିଲେ ମଧ୍ୟ ଘୁସୁରି ଘୁସୁରି
ତୁମରି ଆଦେଶେ ଯିବ ଶହେ କୋଶ ଦୂରି,
ତୁମେ ବିଗୃରିଚ, ମୁହିଁ ଜନ୍ତୁଟିଏ କନହା ?
ତୁମେ ଏକା ପ୍ରଭୁ ମୋର ଖାଇବାକୁ ଦିଅ,
ତୁମେ ବା ରଖିଚ ମୋତେ ବେକେ ବାନ୍ଧି ପଘା
ଯହିଁ ଓଟାରିବ, ଯିବ ମୁଁ ସେ ଅଗା ବଗା
ମୁଁ ଯେତେ ଧରାରେ ନୁହେଁ ଗୋଟିଏ ଜୀବନ
ମୁଁ କାହା ବୁକୁର ବୁହା ଘୃଣ୍ୟ ହେୟ ଜନ ,

ଏ ମହା ଆସ୍ପର୍ଦ୍ଧା ତୁମେ କରିଚ କମ୍ପାଇଁ ?
କେତେ ଶ୍ରେଷ୍ଠ ହେଲେ ଜଣେ ଏହା କରେ ଯାଇ !!

—ତିନି—

ତୁମେ ଯେ ବିଦେଶୁ ଫେରି ମାଇଚ ଚାକିରି
ବଡ଼ ବଡ଼ ମ୍ୟାହାଙ୍କର ଗୋଡ଼ ହାତ ଧରି ;
କାହା ଦ୍ୱାରେ ହୋଇଅଛ ଠିଆ ହାତ ପାତି,
କାହିଁ ତା' କଳନା କେତେ ଦିନ କେତେ ରାତି !
କାହା ଝିଅ ବିଭା ବେଳେ ସୁବର୍ଣ୍ଣର ହାର,
ଦେଇଚ ପାଇବା ପାଇଁ ଅନୁଗ୍ରହ ତାର ।
କାହାଠୁ ଭର୍ତ୍ସନା ଖାଇ, ଖାଇ ଯୋତା ମାଡ଼
ଧରିଚ ଯାବୁଡ଼ି ତାର ପଦୁର ଯୁଗଳ ;
ପଠାଇଚ ବଣା ବଣା ଖଇଙ୍ଗା, କଙ୍କଡ଼ା,
ରାଗ ତାର ଉପଶମ କରିବାକୁ ପରା !
ଦାମିକା ଜର୍ଜେଟ ଶାଢ଼ୀ ଦେଇଅଛ କା'ରେ
ମାଇପ ଆଗୁ ତା' ସ୍ୱାର୍ଥ ହାସଲ ଆଶାରେ;
ଏ ସବୁ ଭିତରେ ବଢ଼ି ହୋଇଅଛ ବଡ଼ !
କି ଅବା ବରିଷ୍ଠ ତୁମ ନାଇଁ ପଦ କଡ଼ !

—ଚାରି—

କରି କରି ଖାଲି ନକୁଟିଆ ଆଚରଣ,
ପାଇଚ ଜୀବନେ ଯିଏ ବରିଷ୍ଠ ଆସନ,
କି ଶିକ୍ଷା ସମ୍ପଦ ତା'ଠୁଁ ପାଇବ ବା ପାଇଁ ?
ଥିଲେ ସ୍ୱର୍ଣ୍ଣପାନେ ବିନ୍ଦୁ ଗନ୍ଧାଇବ ନାଇଁ ?
ଅଫିସରେ ରଖିଅଛ ସେ ଯେଉଁ କାହାଣୀ
ତା' ମୁଣ୍ଡରେ ଦୁନିଆର ସବୁ ସଇତାନୀ !
ଆଁ କରି ବସିଚ ସେ ଉଣ୍ଡି ଉଣ୍ଡି ଓର
ପ୍ରତିଦିନ ପଡ଼େ ପେଟେ ବାଳଦା ଶଉଳ !
ତୁମେ ତହୁଁ ପାଉଥିବ ଭାଗ କିଛି କିଛି
ଏ ଭଳି କାହିଁକି ଜଣେ ରଖିଥାନ୍ତା ବାଛି ?
ତାହାକୁ ଅନ୍ତର କଲେ ତୁମରି ଅନ୍ତର
ପରସ୍ୱ ନ ପାଇ ହେବ ଅସ୍ଥିର ବିକଳ;

ସେଥିଲାଗି ତୁମେ ତାରେ ରଖିଚ ସାଇତି;
ଆନ କେ' ଦଇଆନ୍ତା ତଡ଼ି ପାଣ୍ଠୋଇରେ ପିଟି;

—ପାଞ୍ଚ—

ତୁମ ଆଦେଶର ହେବନାଇଁ ରୂପାନ୍ତର,
ବେଦବାଣୀ ଠାରୁ ବଳ ଆଦୃର ଯେ ବଡ଼ ! !
କାଲର କୁକ୍କୁର ଆଜ ପାଲଟିଚ ହାତୀ,
ପଙ୍କଜ ଦେଖାଅ ବାର ହାତ ଠେଲ ଗୁଡ଼ି !
ଭିତରେ ଯାହାର ନାଇଁ ମାଲ କ ମସଲା
ବାହାରକୁ ତା ଛଇଟା ଖୋଲପଣ ପରା !
ଏ ଛଇ ଛଟକ ଏଇ ଧଡ଼କ ଭିତରେ,
ମୁଖର ବକଟ ଭଙ୍ଗୀ କଲମ ହାତରେ,
ବର୍ଣ୍ଣଚ ଯାହା ଇଚ୍ଛା ତାହା ଦେବ କରି,
ତୁମକୁ ମାନବେ ସର୍ବେ ଦେବତାରୁ ବଳି;
ତୁଳନା ପତରେ ଯା'ରେ ନ ମିଳବ ସ୍ଥିତ,
କେ, ଜାଣି ସେ ହେଲେ ହେବ ତୁମ ଅନୁଗତ,
ହେଲେ ମଧ ଅନୁଗତ ହେଉଥିବ ଭଲ
'ଏ ଲୋକଟା ପାଶୁ ଦୂରେ ଯାଆନ୍ତୁ ବାହାର ।'

—ଛଅ—

ନିଜ ଦୋଷ ଦୁର୍ବଳତା ଘୋଡ଼ାଇବା ଲାଗି,
ଦୁନିଆରେ ସାଜ ସାଧୁ, ସନ୍ଥ ବଇରାଗୀ,
କେତେ ମିଛ ଯୋଡ଼ ଯାଡ଼ କଳଙ୍କ ଆନରେ
ତୁମେ ସବୁ ଦେଇପାର; ତୁମରି ପ୍ରାଣରେ
ପୂରି ରହିଅଛି ଖାଲ ବିଷର ଭଣ୍ଡାର,
ଲାଗେନା ଟିକିଏ ଦ୍ୱିଧା ନାମିଷେ ଉଦ୍‌ଗାର
କରିପାର । ତୁମେ ସବୁ ଶଠ ଯମୂତାନ
ତୁମରି ଏ ବ୍ୟବସାୟୁ ଜୀବନ ତମାମ ;
ଆଲୋକକୁ କରିପାର ତୁମେ ଅନ୍ଧକାର,
ବସନ୍ତରେ ଆଣିପାର ଗ୍ରୀଷ୍ମର ସଞ୍ଚାର,
ନାଇଁ କେ' କରିବା ପାଇଁ ପ୍ରତିବାଦ ତାର,
ତୁମରି କଥାରେ କିଏ ହେଉ ନାରଖାର

କିବା ତବ ଆସେ ଯାଏ ? ସପୁତାନ ହାତେ
ବର୍ତ୍ତେ ଦାସ୍ୟିତ୍ୱ ଦେଲେ ସବୁ ତୋଟି କାଟେ ।

—ସାତ—

ଦରିଦ୍ର କୁଟୀରେ ମୋର ବସିଚ ଏକାକୀ
ଗୃହକର୍ତ୍ତା ବାକଶ୍ରୀ ନାଇଁ, ବନ୍ଧୁଜନେ ଡାକି—
ପଚ୍ଚରନ୍ତି, 'ଆସିଲା କି କେଉଁଠୁ ଆଦେଶ
ଯିବାପାଇଁ', ଓଠ ଫେଇ ହଏ ମୁଁ ନିର୍ଦ୍ଦେଶ
"ଆସିଚି ଆସୁଚି ପୁଣି ଆସିବ ସତ୍ୱର
ଯିବାକୁ ସୁଦୂର ଭୂଇଁ, ଯହିଁ ମୋ ଅନ୍ତର
ଯିବା ପାଇଁ ରାଜି ନୁହେଁ, କେତେ ଜଣଙ୍କର
କୂଟ ମନ୍ତ୍ରଣାରେ ତହିଁ ମୋର ସ୍ଥାନାନ୍ତର—
କରା ହୋଇଅଛି, ମୋତେ ଦେବାକୁ ବଞ୍ଚନା,
ଯିବିନି ମୁଁ କଦାଚନ, ଅଭାବ ଯାତନା—
ଭିତରେ ମୁଁ ଦଗ୍‌ଧ ହୋଇ, ପାଉଁଶ ଅଙ୍ଗାର,
ପାଲଟିଣ ରହେ ପଛେ ସୀମାହୀନ କାଳ—
ଅନାତ୍ମର ପାଦ ତଳେ ପେଡ଼ି ପେଷି ହୋଇ
ସୁଖ ପାଇବାଠୁ ଭଲ ମରିଯିବା ଭାଇ ! !"

—ଆଠ—

ଅନ୍ୟକୁ ବିପନ୍ନ କରି, କରି ମୂଳ ପୋଛ
ଜୀବନରେ ପାଏ ଯେଉଁ ଆନନ୍ଦ ସଙ୍କୋଚ
ପଶୁର ଆନନ୍ଦ ତାହା, ସେଇଟିକ ଧର,
ଯାର ଗର୍ବ ଗଉରବ, ତାହା ତହୁଁ ବଳି
ନରାଧମ ନାଇଁ କେହି ; ଧରଣୀ ଉପରେ
ଅନ୍ୟର ନକରି କ୍ଷତି, ନିଜ ବାହୁବଳେ,
ନିଜ ପାଇଁ କାମ କରି, ଯେ ଆନନ୍ଦ ପାଏ,
ଅନ୍ୟ ପାଇଁ ଯା' ଅନ୍ତର ମୂକ ଜଡ଼ ପ୍ରାୟେ—
ରହିଥାଏ ଉଦାସୀନ, ସେ ଆନନ୍ଦଟିକ,—
ସାଧାରଣ, ନାଇଁ ତହିଁ ଗୌରବ ଅଧିକ
ଅକୂଳ ସମୁଦ୍ରେ ଭାସିଗଲା ବେଳେ ଜଣେ
ତା' ଲାଗି ନିଜକୁ ଝାସି ଅକୁଣ୍ଠିତ ମନେ

ଯେ ତାହିଁ ଆନନ୍ଦ ପାଏ, ସେଇ ଶ୍ରେଷ୍ଠତମ
କବି ମୁଁ, ସେ ଆନନ୍ଦରେ କରଇ ବନ୍ଦନ !

## —ନଅ—

"ଏତେ ଟଙ୍କା କ୍ଷତି କରି କାହିଁ ପାଇଁ ଘରେ
ବସିଅଛ ଠୁଙ୍କା ହୋଇ ପର୍ଯ୍ୟନ୍ତ ନରେ
ରହିବ ତୁମରି କଥା ? ତୁମ ଅଧିକାରୀ—
ଆଦେଶ ଉଡ଼ାଇ ଯିବ ଶୂନ୍ୟେ ଶୂନ୍ୟେ ଖାଲି
କାହିଁକି ମାଡ଼ିଛ ଏଥି ? ଏ ତୁମ ବୋକାମୀ
ବସି ବସି ହୋଇଯିବ ଶେଷରେ ଅକାମି ।"
"ଏକ ଦୁର୍ବିଚାର ତବ ? ହେ ମୂର୍ଖ ଜନତା !
ମୁଣ୍ଡପାତି ସହିନେବା ସବୁ ବର୍ବରତା—
ତାହିଁ ବଳି ଅପୌରୁଷ କିବା ଅଛି କହ ?
ଦୁଃଖ ନାହିଁ ପାଏ ପଛେ ଶେଷେ ପରାଜୟ
ପ୍ରତିରୋଧ କରିବାରେ ଗୌରବ ମୋହର
ବିକ୍ଷତ ହୋଇ ମୁଁ ପଡ଼ିଯାଏଁ ଧରାତଳ ।
ଟଙ୍କାର ଲାଭ ବା କ୍ଷତି ଭିତରେ ଜୀବନ
ମୁଁ ଦେଖିନି ଦେଖି ପାରିବନି କଦାଚନ ।

## —ଦଶ—

ବହୁଥର କେତେବାର ଦେବି ମୁଁ ଇସ୍ତଫା
ଶତ ବନ୍ଧୁ ଜନେ ମନା କରିଦେଲେ ସଫା
"ଦେଲେ କି ସେ ଫେରାଇବେ ? ଅଭିମାନ କରି—
ହୋଇଛନ୍ତି, ବହୁରିବେ ? ହୃଦେ ଦୟା ଭରି—
କରିବେକି ସୁବିଚାର ? ଯାହିଁ ନିଷ୍ଠୁରତା
ଭିତରୁ ବାହାରୁ କହେ ଚିରଦିନ କଥା
ତାହିଁ ସବୁ ଅଭିମାନ ନିଷ୍ଫଳ ପ୍ରୟାସ
ଫଳ ଖାଲି ପାଇବାର ତୀବ୍ର ଉପହାସ
ଯେ ଅଯୋଗ୍ୟ ଅପଦାର୍ଥ କଠୋର ପାଷାଣ
ତା'ପାଖରେ କରିବାର ଅଶ୍ରୁ ଅଭିମାନ—
ସାଜେନା ସାଜେନା କବି ନିରସ୍ତ ରହ ହେ !
କବିତା ନିର୍ଝର କଣ ସବୁଠାରେ ବହେ ?

ସବୁଠାରେ ବଢୁଥିଲେ କବିତା ନିର୍ଝର
ବିଷରେ ପୃଥିବୀ ହୋଇ ନଥାନ୍ତା ଜର୍ଜର !"

## —ଏଗାର—

କା' ଭୁଲେ କରିବ ଦେଖା ? କରିବ କମ୍ପାଇଁ ?
ଯେ ଦେଖାରେ ଲାଞ୍ଛନା ଓ ପରାଭବ ପାଇ
କେବଳ ଫେରିବ ଗୃହେ ପୋଛୁ ପୋଛୁ ଲୁହ
ମୋ ପକ୍ଷେ ସେ କେତେ ଆହା ଦୁର୍ବିସହ ନୁହଁ ?
ଯେ' ଦେଖାରେ ଅମୃତର ବାଣୀ ନାହିଁ ଫୁଟେ,
ଯେ ଦେଖାରେ ସବୁ ଦୁଃଖ ନିମିଷେ ନ ତୁଟେ,
ଯେ ଦେଖାରେ ଏକ ଆତ୍ମା ଅପର ଆତ୍ମାର—
ଭୁଲେ ମିଶି ହୋଇଯାଏ ନାହିଁ ଏକାକାର,
ସେଠି କଣ କଥା ଭାଷା ? ସେଠି କଣ ଦେଖା ?
ବିରାଟ ପ୍ରାଚୀର ପରି ଯହିଁ ସୀମାରେଖା—
ଯୁଗ ଯୁଗ ଧରି ନିତ୍ୟ ହୋଇଥାଏ ଠିଆ
କି ଶିକ୍ଷା ପାଇବ ତହିଁ ବିଦଳିତ ହିୟା ?
ଆତୁର ଏ ଦେହ ମନ ହେବ ଛଟପଟ
କାହିଁକି ଆସିଲ ବୋଲି ରୁଷ ମରୁତଟ ?

## —ବାଆର—

ଫେରିଲ ସେ' ଦିନ ବନ୍ଧୁ ! ନିରାଶ ଅନ୍ତରେ
ମୋ ପାଇଁକି କଁପା କହ କାହାର ବକ୍ଷରେ
ଫୁଟିବ ତରଙ୍ଗ ଲବେ ? ଉପରେ ଉପରେ
ହାଁ ସବୁ କରିଦେଲେ, ମୁଁ ଯେତ୍ପେ ସତରେ
ସେ ସବୁ ପାରୁନି ଜାଣି, ଆସିଲି ମୁଁ ଫେରି
ଦୀର୍ଘ ପଥ ମୁହିଁ ପଡ଼ିଥାଏ ନେଲି,
ବଡ ବ୍ୟସ୍ତ ଲାଗୁଥାଏ, ଭାଳୁଥାଏ ମନେ
ନିଜଦୁଃଖ ଧରଣୀରେ କମ୍ପା ଅନ୍ୟ ଜନେ,
ଏତେ ବା କରିବ ଚିନ୍ତା ? କେତେ ଆପଣାର
ହେଲେ ତା'ର ନେତ୍ର ପ୍ରାନ୍ତୁ ଅଶ୍ରୁ ଧାର ଧାର
ଭୂତଳେ ମଣ୍ଡିବ ଖସି ! ମାତୃ ହୃଦ ପରି
ପୃଥିବୀର ବେଦନାରେ ଉଠିବ ତରଳି,

ସେ ଭଲ ଜୀବନ କାହିଁ ? ସେ ଭଲ ଜୀବନ
ଅଶ୍ରୁଳ ନୟନେ କରୁଚ ମୁଁ ଅନ୍ୱେଷଣ ।

—ତେର—

ଅସ୍ଥିର ଚଞ୍ଚଳ ଆଜ ଏ ଅନ୍ତର ମନ
ବାଜ କାହା କଷାଘାତ ନିଦାରୁଣ ତମ !
ଧରଣୀରେ କରଚ ମୁଁ କାହାର ବା କ୍ଷତ
ମୋ ଶିରେ ଚଡ଼କ ପଡ଼େ । ବାରେ ମୋହ ପ୍ରତ
କାହାର ମମତା ନାହିଁ । ହସି କଥା ପଦେ
କେ'ମୋରେ କହେନ କିମ୍ବା, ଆନନ୍ଦ ଗଦ୍‌ଗଦେ ?
ବସିଚ ମୁ ମନ ଗୋଟି ମାଚ ଦେଇ ମୋର
ବିଶ୍ୱର ଅନନ୍ତ ଶିଖ ସମ୍ପଦେ ବିଭୋର—
ହେବାକୁ ଅନ୍ତର ମୋର ଲବେ ନାଇଁ ଡ଼ାକେ
ବଞ୍ଚିତ ଜୀବନ ଆଜ ଯିବ କାହା ପାଖେ ?
କେ' ତା'ରେ ଧରିବ ତୋଳ ? ଧରଣୀର ପଥ
ଅବରୁଦ୍ଧ ତାହା ଲଗି, ତା' ଭାଗ୍ୟେ ସନ୍ତତ —
ଲେଖା ଖାଲି ପରାଜୟ, ଶତ ଅପମାନ
ତା' ପାଇଁ ନାହାନ୍ତ ମଧ୍ୟ ବିଶ୍ୱେ ଭଗବାନ !!

—ଚଉଦ—

ଦେଖୁଚ କେତୋଟି ଟଙ୍କା ଅଛୁ ଆଉ ପାଶେ
ହେବ ପ୍ରାୟ ଦଶବାର, ସର ସର ଆସେ
ତା'ପରେ ଚଳବ କେମ୍ୱେ କୁମାର ପୂର୍ଣ୍ଣିମା
ନାତି ପାଇଁ କଣାହେବ ଗୋଟେ ପାଇଜାମା;
ଝିଅ ପାଇଁ ଶାଢୀ ଖଣ୍ଡେ, ହଳଆର ଲଗି
ମନ ମାନିବାର ଭଳି ସିଲକ୍‌ର ଲୁଙ୍ଗି ;
ଆମ ଦୁ'ଜଣଙ୍କ କଥା କାହିଁ ବା କହିବା ?
ଏହା ବାଦ୍ ମାଛ, ଶାଗ ପନି ଓ ପରିବା,
ଗୃହକାରୁ ସ୍ଥାନାନ୍ତର, ଛୁଟି ନେଇ ଘରେ
ବସିଅଛୁ ଗୃହମାସ, ଦୂରଦୂ ପ୍ରାନ୍ତରେ
ଆଉ ଯିବନାଇଁ ବୋଲି, . ଅର୍ଥହୀନ ହାତେ
ରହିଚ ଦରିଦ୍ର ବାସେ; ପ୍ରାଣେ ଭିରି କାଟେ !

ଦେଖୁଚ ଏ ଧରଣୀରେ ନର ଅଭାଗ୍ୟର
କେମନ୍ତେ କରଚ ମତେ ସାନ୍ତ ନାରଖାର !

## —ପନ୍ଦର—

ପଚ୍ଛରୁଚ "ଗତ ହେଲା, ଆଜ୍ଜ ବାଇଗଣ
କଚ୍ଛଚ ଗୋଟି ଏ'ନାଇଁ, କଲବ ଭଅଣ—
କି ଅବା ଭ୍ରମର ଲାଗି ? ନାଇଁ ପଇସାଏ
ଦୋକାନୁ ଆଣନ୍ତ ଯାଇ, ପିଆଜ କୋଳାଏ,
ତହିଁରେ ବା ଚଳଯାନ୍ତା ।" ଦେଲ ମୁଁ ଉତ୍ତର
"ରୁକଣା ନାହିଁ ଛୁ ବୋଲ ସବୁ ଅଭାବର—
ମାଡ଼ ସହିବାକୁ ହୁଏ, ଦେଖଚ ହାଡ଼ିରେ
ଆମ୍ବୁଲ ତନ୍ତୁଳ ଥିବ, ଲୁଣଚ କୁଣ୍ଡିରେ—
ରହିଥିବ, ତାହା ଦେନ ପିବା ଆଜ ଚଳ
ଆସିଲେ ବେଦନା ଦୁଃଖ, ତାରେ ପାଦେ ଦଳ
ଚଳିବାକୁ ହେବ ସଖି ! ଧରଣୀ ଉପରେ
କି ଲଭ ଭଆଗି ଅଶ୍ରୁ ; ଗୃହେନା ବଶ୍ୱରେ
ବଳଦେଇ ଆପଣାର ମୁକ୍ତ ମତବାଦ
ଭୁଞ୍ଜିବ ଘୃତାନ୍ନ ତହିଁ କାହିଁ ଛୁ ଆହ୍ଲାଦ ?

## —ଷୋହଳ—

ଦୁର୍ଭାଗା ଏ ଜୀବନରେ ମୋର
ବପନ୍ନ କରଚ ଯେବେ, ନଥାନ୍ତୁ ଈଶ୍ୱର
ବୁଝିବାକୁ ଦୁଃଖ ମୋର, ମହା ଧରଣୀର
ଚତୁର୍ଦ୍ଦିଗ ସିକ୍ତ ହେଉ ମୋର ନେତ୍ର ନୀର—
ବପୁଳ ପ୍ଲାବନ ଦେନ; ସେଇ ଶାନ୍ତବାର
ଜ୍ୱଳନ୍ତ ଜୀବନେ ମୋର ପାଶବ ଅଜାଡ଼ି ।
ତହିଁରେ ପାଶବ ପାଇ, ଆଶ୍ୱସ୍ତି ପରମ
ସୀମାହୀନ ଅଭାବର ଗୁରୁ ନଷ୍ପେଷଣ
କଚ୍ଛୁ ମୋରେ ବାଧିବନ, ଗୋଲାପ ଶଯ୍ୟନେ
ପ୍ରାଣର ଈପ୍‌ସିତ ମିଳେ ? ଭ୍ରୁବନେ ଭ୍ରୁବନେ
ସକଳ ବପଦ ଦୁଃଖ ନେବ ବୁକୁ ପାତ
ଫାଟିଗଲେ ଫାଟିଯାଉ ଏ ଦରଦ୍ର ଛାତ;

ମୃତ୍ୟୁ ହେଉ ସୀମାହୀନ ଯନ୍ତ୍ରଣା ଭିତରେ
ମୋ ଆନନ୍ଦ ଗ୍ଭଲବାହିଁ କଣ୍ଟକ ପଥରେ !!

## —ସତର—

ଧମକ ଚମକ ତୁମେ ଦେଇଅଛ ମୋରେ,
କର୍ମରେ ନଦେଲେ ଯୋଗ ଦୂର ଦୁରାନ୍ତରେ,
ମୋରେ ତମେ ଦଣ୍ଡ ଦେବ ନିଠୁର ନିର୍ମମ !
ହାତରେ ଧରଚ ବୋଲି ଗୋଟାଏ କଲମ
କ୍ଷମତାର ଆସନର ଏତେ ଦୁଃସାହସ
ଆମେ କେଉଁ ପଲ୍ୱଲର ଯେହ୍ନେ ପାତି ହଂସ
ତୁମର ଶିକାର ପର ରହିଥିବୁ ପଡ଼ି
ପ୍ରତି ପଦେ ଜୀବନକୁ ଆତଙ୍କିତ କରି
ଜାଣ ତମେ ? ତୁମପରି ଲୁଟି ନେଇନାହିଁ
ଏକ କପର୍ଦ୍ଦକ କାହୁଁ, ପ୍ରିୟାପ୍ରୀତି ପାଇଁ
ସ୍ୱାର୍ଥାନ୍ଧ ବାସନା ଲବେ ଉଇଁନାଇଁ ମନେ,
କାହାରେ କରିନି ହତ୍ୟା, କଲମର କଣେ
ଅକୁଣ୍ଠ ଆକ୍ରୋଶ ରଖି । ନିଷ୍କଳଙ୍କ ଯିଏ
ମୃତ୍ୟୁ ବ ତାହାକୁ ଛୁଇଁ ପାରିବନି ଟିକେ ।

## —ଅଠର—

କାଲିକ ଏ ଆସନରୁ ଗ୍ଭଲିଗଲେ ତମେ
ଘୃଣାଭରେ ଛେପ ପକାଇବେ କୋଟି ଜନେ ;
କରିବେନି କେହି ତୁମ ନାଆଁ ଉଚ୍ଚାରଣ ;
କହିବେ—କରିଚ ଇଏ କେତେ ହଇରାଣ ;
ଠୁଙ୍କା ହୋଇ ବସିଥିବ, କୋଟି ଅପଯଶ
ଶିରେ ବହି, ନଥିବ ଏ ମୁଖ ହସ ହସ ।
ଲୁଣ୍ଠିଅଛ ଯେତେ ଯାହା ନେଇଥିବ କାହିଁ
ରୋଗ ବଇରାଗେ ସବୁ ଯିବଟି ଉଭାଇ ।
ଏଭଳି ଜୀବନ ଯାପି ବୋଲାଇବା ବଡ଼—
ଭିତରେ ରହିଚ କବା ଆନନ୍ଦ-ନିର୍ଝର ?
ବାଟର ଭିକାରୀ ବରଂ ତୁମ ଠାରୁ ଭଲ
ଅଛି ତା'ଭିତରେ ଭରି ହୃଦୟ ସୁନ୍ଦର,

ତା'ଆଖିରେ ଲୁହ ଅଛୁ, ଓଠେ ଅଛୁ ହାସ
ବୁଝିବାକୁ ଦୁନିଆର ସୁଖ ଦୁଃଖ ଗ୍ରାସ;

## —ଉଚ୍ଚଶ୍ରେଣୀ—

ବାହାରେ ଫୁଟାଣି ତୁମେ ଦେଖାଉଛ ବସି
ବଡ଼ ବଡ଼ କଥା କହ କେତେ ବାଙ୍କେ ହସି
ହଜାର ହଜାର ଟଙ୍କା ଲୁଟି ଦେଶଟାର
ଅତ୍ୟାଚାର, ଅନାଚାର, ଶତ ବ୍ୟଭିଚାର
ଚଳାଇଚ ତୁମେ ଦଳେ, ମୂର୍ଖ ସମ୍ଭ୍ରାନ୍ତ
କଳୁଷିତ କରୁଅଛ ଏ ଦେଶ ତମାମ ।
ତୁମରି ଭିତରେ ନାହିଁ ନିର୍ଭୀକ ସୁନ୍ଦର
ଗୋଟାଏ ବଳିଷ୍ଠ ଆତ୍ମା, ସତ୍ୟ ସାହସର
ଦେବ ପୂର୍ଣ୍ଣ ପରିଚୟ, ନିମିଷକ ପାଇଁ
କି ଶିକ୍ଷା ସମ୍ପଦ, ଦେଶ ପାରିବ ବା ପାଇ ?
ତୁମରେ ଆସନ ଦେଇ, ଦେଇ ଏ କ୍ଷମତା
ମୁକୁଟରେ ଅଳଙ୍କୃତ କରି ତୁମ ମଥା
କଳଙ୍କ ପସରା ତୁମେ ସମଗ୍ର ଦେଶର
ତୁମ ଶେଷେ ଶେଷ ହେବ ଦୁର୍ନୀତି ସକଳ ।

## —କୋଡ଼ିଏ—

କଠୋର ପାଷାଣେ ଗଢ଼ା ଯାହାର ଅନ୍ତର
ଦେଖି କି ପାରିବ ସେହୁ କ୍ଷତ ଚିହ୍ନ ମୋର ?
ପୋଛି କି ପାରିବ ମୋର ନେତ୍ର ନୀରଧାର ?
ଜୀବନେ ଛୁଇଁନି ଯାରେ ଦୁଃଖ କଷ୍ଟ ଭାର,
ବିତେ ଯା' ଜୀବନ ଅହମିକା ଆଡ଼ମ୍ବରେ,
ଆପଣାର କରିବ କି ? ମୋ ଭଳି ନିଃସ୍ୱରେ
ପ୍ରଭୁତ୍ୱର ମଦ ପିଇ ସେହୁ ମତୁଆଲ
ଶୁଣିବ କି ଗୁହାରି ସେ ଦରିଦ୍ର ହସ୍ପୃାର !
ତୋଷାମଦ ଶୁଣିବାକୁ ସେହୁ କାନ ପାତେ
ଲାଞ୍ଚ ମିଛ ପ୍ରବଞ୍ଚନ ପଡ଼େ ଯାହା ହାତେ
ନ୍ୟାୟ'ବୁଝାବଣା ସତେ କରିବ ମୋ ପାଇଁ
ମୋହଠୁ ତ ପାଇବାର ତାର କିଛି ନାହିଁ;

ଅନ୍ଧପର ଗୃଲଚ ଯେ ଧରାରେ ନସୃତେ
ତା' ପାଖରେ ପ୍ରାର୍ଥୀ ହେବା ବଡ଼ ବାଧେ ମତେ ।

## —ଏକୋଇଶି—

ଇନ୍ଦ୍ରଧନୁ ଏ ବେଳେ ବେଳେ ସୋଲସ୍ଥ ଶିଖରେ
ଗୃହୁଁ ଥାନ୍ତ ବସି ଏଇ ବନକୁଞ୍ଜ ତଳେ ;
ଏ ବାଉ୍ ଶ ନଈ ଏଥି ପାଉଥାନ୍ତା ବହି
ସର୍ପିଲ ଗଡ଼ରେ ଠାବେ ଠାବେ ରହି ରହି
ଦେଖୁଥାନ୍ତ ବାୟୁ। ବସା ତାଳ ବାହୁଙ୍କାରେ
ଝୁଲିବାର । ଡୋଳୁଥାନ୍ତ ଏ ବଣ ବୁଦାରେ
ଆଙ୍କୁ ଓ ବଇଞ୍ଚ କୋଳ ଶିଶୁସମ ବୁଲ
କ ମଧୁ ସମ୍ପଦେ ପ୍ରାଣ ଉଠ ଥାନ୍ତା ପୂର ?
ବାଧନ୍ତାନ ମତେ ଏଇ ବଦଳ ଆଦେଶ
ସୁଦୂର ମୂଳକେ କାହିଁ । ଭତର ଉଦ୍ଦେଶ—
ଯାର ମତେ କରବାକୁ ଖାଲ ହଇଗଣ
ମଣିଷ ମଣିଷରେ କ ଶତ୍ରୁ ବଳୀପ୍ଲାନ !
ନଖିଳ ଏ ଧରଣୀରେ । କେତେ ଯୁଗ ପରେ
ମଣିଷ ମଣିଷ ପର ଫୁଟିବ ବଶ୍ୱରେ;

## —ବାଇଶି—

ଧରଣୀରେ ଯେଉଁଠାରେ ଆଧିପତ୍ୟ ଗୃଲେ
ସେଠିକି ଜୀବନ ସ୍ରୋତ କଳତାନ ତାଳେ ?
ଅମୃତ ଉତ୍ସବମୟୀ ବସୁନ୍ଧରା ତହିଁ
କେବେକ ଉଠଇ ଫୁଟି ସ୍ୱର୍ଣ୍ଣ ଶିଷ୍ୟ ବହି ?
ଲକ୍ଷ୍ମୀଚ୍ୟୁତ ହେଲାପର ସବୁ ଝଡ଼ ପଡ଼େ
ପ୍ରାଣର ସମ୍ପଦ ଶିଖ । ବଳେକ ଅନ୍ତରେ
ଏଇ ପ୍ରାଣହୀନ ବେଶ ମହା ଧରଣୀର,
ଯେଉଁ ପ୍ରଭୁ ଗର୍ବ କରେ ନୋହି ନତ ଶିର,
ରହିବ ବଜାୟ ବୋଲ ପ୍ରଭୁତ୍ୱ ଟିକକ
କେମନ୍ତେ କହିବ ନାହିଁ ସେ ମହା କଳଙ୍କ ?
ପ୍ରାଣବନ୍ତ ବସୁନ୍ଧରା ଗଢ଼ିବାରେ ଯାର
ହୃଦ୍ଭୂତ୍ୱ ନ ଫୁଟେ, ସେହି ପ୍ରଭୁତ୍ୱ ପ୍ରଭାର

ପ୍ରତି ରଶ୍ମି ରେଣୁରେ ମୁଁ କରେ ପଦାଘାତ
ପ୍ରଭୁତ୍ୱ-ପ୍ରତିଷ୍ଠା ନୁହେ ରଚିବା ଉତ୍ପାତ !

## —ଡେଇଶି—

ଛୁଟି ନେଇଥିଲି ବୋଲି, ଆସିଲା ନିର୍ଦ୍ଦେଶ
'ଯାଅ ଚିକିତ୍ସକ ପାଶେ,' ଗଲି ମୋ ଉଦ୍ଦେଶ—
ଜଣାଇବା ଲାଗି ତାହାଁ, ଦେଲେ ସେ ଉତ୍ତର
'ବହୁ ଡେରି ହୋଇଲାଣି, କପାଇଁ ସତ୍ୱର
ନ ଆସିଲ ? ଏତେ କାଳ ମଠ ହେବା ପରେ
କେମନ୍ତେ ସାହାଯ୍ୟ ମୁହିଁ କରିବି ତୁମରେ ?
କଷ୍ଟ ହୋଇ ପାରିବନି, ନୈରାଶ୍ୟର ବାଣୀ
ପ୍ରଥମେ ଶୁଣାଇ, ପରେ ଆସ କାଲି ପୁଣି
ଦେଖିବା କହିଲେ ; ଏଇ କହିବା ଭିତରେ
ପଇସା ପାଇବା ଲାଗି ଫିକର ସତରେ
ଲୁଚି ଉଙ୍କି ମାରୁଥିଲା । ବର୍ଷା ତଳେ ତଳେ
ପୋକ ସାଉଁ ସାଉଁ ହେଲାପରି ଅନ୍ତରାଳେ
ନର ପାଲଟିଛି କେଡ଼େ ପଇସାର କୀଟ !
କବି ମୁଁ ଆସିଲି ଫେରି କ୍ଷୁବ୍ଧ ସଚକିତ !!

## —ଚବିଶି—

ତୁମେତ ଆସିଲ ଏଥି ଜଣେ କ୍ଷେତ୍ରପତି
ଅଣ୍ଡା ଭଜା ମାଂସ ଝୋଳେ ଲଭିଲ ତୃପତି ।
କମଳା, କଦଳୀ, ଦ୍ରାକ୍ଷା, ଅଙ୍ଗୁରର ରସ
ପିଇଲ ପରାଣ ଭରି । ତନୋଟି ଦିବସ—
ରହଣି ଭିତରେ ନିତ ପଞ୍ଚ ଉପଚାରେ
ପାଇଲ ବହୁତ ପୂଜା । ଦିଅର ବିହାରେ—
ଖରଚ ଖାଟିଏ ଟଙ୍କା । ମୁଦ୍ରା ଦୁଇଶର
ଦେଇଥିବ ଟିକେଟି ହେଲା ବଲ୍‌ଟା ପଞ୍ଜୁରି ।
ଦୁଃସ୍ଥ ଓ ଦୁର୍ବଳ ଏଇ ଗୃହକର୍ତ୍ତାଙ୍କର
ରକ୍ତ ଶୋଷି ହେବାଲାଗି ପୁଷ୍ଟ ଓ ସବଳ
ତୁମେ ଏଥି ଆସିଥିଲ । ଆସିଥିଲ ତମେ
ରାଜଭୋଗ କରିବାକୁ, ନିସ୍ୱ ନିର୍ଧନେ—

ଚପାଇ କ୍ଷମତା ବଳେ । ଭୂମପର ଲୋକ,
ଅମୃତର ଶିକ୍ଷାଳାପେ କ ବକ୍ଷାକ୍ତ ପୋକ !!

—ପଚଶି—

ଲୋଡ଼ାନାହିଁ ସୌଧବାସ ସ୍ୱର୍ଣ୍ଣ ଆଭରଣ
ଲୋଡ଼ାନାହିଁ ଲାଞ୍ଛିତ ପାପ ଉପାର୍ଜ୍ଜନ;
ଲୋଡ଼ାନାହିଁ ଏ ସକଳ ଭିତରେ ଅନ୍ତର—
କଲ୍ପନା କର ଗୃଳବାକୁ, ଟେକ ବୁକୁତଳ
ବିପୁଳ ସୁନ୍ଦର ଏଇ ଧରଣୀ ଉପରେ
ଅମୃତର ଜୀବନକୁ ଏଇ ଟିକକରେ
କପାଇଁ କରିବ ଦଗ୍ଧ ? ଜଳ ଜଳ କରି ;
ମୁହିଁ ଗୃହେଁ ଶରତର ମୁକ୍ତା ବିନ୍ଦୁ ପରି
ସ୍ୱଚ୍ଛ ଓ ପାବନ ହେବ, ଭିତରେ ବାହାରେ
ଉଠିବ କଲ୍ଲୋଳ ନବ ଜୀବନ୍ତ-ଶୋହାରେ
ଜୀବନର ଉପଭୋଗ, ଗର୍ବ ଗଉରବ
ଜୀବନ ଅମୃତ ଶିଖ ଭିତରେ ସମ୍ଭବ ;
ରହେ ମାଟି କୁଡ଼ିଆରେ ରହେ ବୃକ୍ଷତଳେ
ରହେ ପଛେ ଅଗ୍ନିବର ଅତଳ ଗର୍ଭରେ ।

—ଛବିଶି—

ସ୍ୱାର୍ଥର ସଂଘର୍ଷ ଠାରୁ ସଂଘର୍ଷ ସତ୍ୟର
କାମ୍ୟ ମୋ ଦରିଦ୍ର ଏଇ କବି ଜୀବନର
ଯାତ୍ରାପଥେ, ଜାଣେ ମୁହିଁ ପଡ଼ିବ ବିତ୍ରପାତ
ଆସିବ ଅଭାବ ଘୋଟି ଜୀବନ-କବାଟ—
ରୁଦ୍ଧ ହୋଇ ଯାଇପାରେ, ମୃତ୍ୟୁ ଅବଶେଷେ
ନେଇ ଯାଇପାରେ ମୋତେ, ଦୀନ ହୀନ ବେଶେ ;
ମୋ ଲାଗି ସାହାଯ୍ୟ ଅବା ସହାନୁଭୂତିର
ସ୍ପର୍ଶ ନାହିଁ ମିଳିପାରେ, ମହା ଧରଣୀର—
ଚତୁର୍ଦ୍ଦିଗୁ ଆସିପାରେ ଅପମାନ ରାଶି,
ଯାଇପାରେ ନେଇ ବେଳ ଅଶ୍ରୁ ନୀରେ ଭାସି,
ସର୍ବସ୍ୱ ହରାଇ ମୁହିଁ ପଥର ଭିକାରୀ—
ପଡ଼ିଏ ବା ବୁଲିପାରେ ହୋଇ ଅନାହାରୀ—

ରାଜପଥ ଧାରେ ଧାରେ । ଏସବୁ ଭିତରେ
ବିଜୟୀ ମୁଁ, ହାରିଲିନି କଦାପି ନିଜରେ !

## —ସତେଇଶି—

ପଥର କାଙ୍ଗାଳ କରି ରଖ ପଛେ ମତେ
ବିହରି ପାରିବି ବିଶ୍ୱେ ଆନନ୍ଦେ ସନ୍ତତେ ;
ନ ଦିଅ ପଛକେ ମୋରେ ହେମ ହର୍ମ୍ୟ ବାସ
ମାଟି କୁଡ଼ିଆ ହିଁ ମୋର ରାଜାର ଉଆସ ;
ଘୃତାନ୍ନ ନ ଯୁଟୁ ପଛେ ମୋର ଭାଗ୍ୟେ ନାଥ !
ମାଣ୍ଡିଆ ଯାଉରେ ହେବ ମୋର ତୃପ୍ତି ଜାତ ;
ଶିରୁ ମୋ ମୁକୁଟ ପଛେ ନିଅ ହେ ଛଡ଼ାଇ
ପାରିବି ମୋ ଜୀବନର ଗୌରବ ବଢ଼ାଇ,
ସର୍ବଶୂନ୍ୟ କରି ମତେ ରଖ ଧରଣୀରେ
ବୁଡ଼ିଯିବି ନାହିଁ ନାଥ କେବେ ଉଷ୍ମାରେ ;
ଚତୁର୍ଦ୍ଦିଗୁ ବାନ୍ଧି ଆଣ ପ୍ରଳୟ ସମୁଦ୍ର
ଭୟ ନାହିଁ ନିମିଷକେ ପାଲଟିବି ରୁଦ୍ର !
କା' ରକ୍ତିମ ନୟନର ଇଙ୍ଗିତ ଭିତରେ
ଏକଇ ମୁହୂର୍ତ୍ତ ନାହିଁ ବଞ୍ଚିବି ସତରେ !!

## —ଅଠେଇଶି—

ମୁହିଁ ଯେ ବିଚ୍ୟୁତ ହୋଇ ତୁମମାନଙ୍କଠୁ
ରହିଲି କୁଟୀରେ ମୋର, ତୁମ ପୁଣ୍ୟ କଣ୍ଠୁ
ପଡ଼ିଏ ମୋହନ ବାଣୀ ପାରିଲିନି ଶୁଣି,
ଏକବାରେ ଭୁଲିଗଲ ? ହନଗତ ଗୁଣି
ହୁଏ ମୁଁ ତୁମରି କଥା, ତୁମ ସ୍ୱର୍ଣ୍ଣମୁଖ
ହସି ହସି ଯାଏ ମୋରେ; ହୁଏ ମୁଁ ଉନ୍ମୁଖ
ପୁଣି ମୁଁ ଯାଆନ୍ତି ଚାଲି; ତୁମ ସନ୍ନିଧାନେ
ପରାଣେ ପରାଣ ତାଳି ଶତ ସନମାନେ,
କାଟନ୍ତି ଜୀବନ ମୋର, ସୁଖ ଦୁଃଖ ଭବ
ହୃଦ ଭରି କରନ୍ତି ମୁଁ ନିତ ଅନୁଭବ !

ମାନହାନି ଲାଗେ ମୋରେ, କେମନ୍ତେ ତୁମରେ—
ବରଜ ଆସିଲ ମୁହିଁ ? ବନ୍ଧନ ଭିତରେ—
ଜୀବନର ଫୁଟି ଉଠେ ଯେଉଁ ମଧୁ ତାନ
ତା' ଲାଗି ଆକୁଳେ ଗୃହିଁ ରହେ ମୋର ପ୍ରାଣ ।

---

# ରାସ୍ତା ନାହିଁ

—ଏକ—

ରାତି ! ରାତି ! ନବଡ଼ ଅନ୍ଧାର ରାତି ! ମୁହିଁକୁ ଦଶୁନ ମୁହିଁ
ଧୂସର ପାହାଡ଼ମାଳା ଦୂରେ ଦୂରେ ଦଶୁଅଛି ଅସ୍ପଷ୍ଟ ଆକାରେ !
ତାରାଦଳ ଚନ୍ଦ୍ରାକୁଳ ହୋଇପରି ପଡ଼ୁଛନ୍ତି ଆକାଶ କନାରେ !!
ଆମେ ସବୁ ଯାଉଅଛୁ ଆଗକୁ ଆଗକୁ, କନ୍ତୁ ପାରୁନାହିଁ ଗୃଲ,
ଆମକୁ ଦେଉଚ କଏ ଅଟକାଇ କାହିଁ
ପାରୁନୁ ପାରୁନୁ ଦେଖି, ଜାଣି ପାରୁଅଛୁ ଖାଲ !!

—ଦୁଇ—

ଆଗକୁ ଆଗକୁ ଆମେ ମାଡ଼ିଯିବୁ ଗୃଲିଯିବୁ
କଏ ତୁମେ ? କାହିଁ ପାଇଁ ଗତିରୁଦ୍ଧ କର ?
ଶୁଭେ କାର ଅଟ୍ଟହାସ
'ତୁମେ ଯିବ ? ଯାଅ !
ପାରିବ ପାରିବ ଯାଇ ?'
କାହାର ଏ ଅଟ୍ଟହାସ ? କାହାର ଏ ପ୍ରଶ୍ନ ଭୟଙ୍କର ?

—ତିନି—

ରହିଲୁ ରହିଲୁ ଆମେ, ତଥାପି କେ' ଦଏ ବାଧା ?
ସମ୍ମୁଖେ ଦଶଇ କଏ ଠିଆ ହୋଇ ପରି,
କଏ ସେ ଗୃହୁକ ଧରି ରୋଷ କଷାୟିତ ନେତ୍ରେ
ଆସୁଚ ପୁଣି ଯାଉ ଅଛୁ ଫେରି,

ଆମେ ସବୁ ଆତଙ୍କିତ, ଆଚମ୍ବିତ,
ଚାଲିଲୁ ଚାଲିଲୁ, ଆମେ ଦ୍ୱିଗୁଣ ସାହସ ଧରି
କି ମହା ଗର୍ଜନ ଶୁଣିଲେ !
ସମସ୍ତ ଆକାଶ ଯେମିତି ଆମ ଶିରେ ଭାଙ୍ଗିଗଲା ପରି !

—ଚାରି—

'ରାତି ହେଲେ ପାଇଯାନ୍ତା !'
'ନା ! ନା ! ପାଇବନି ରାତି !'
କିଏ ସେ କହୁଛି ଯେମିତି ଦନ୍ତକରି ଗ୍ଲାନି !
ଆହୁରି ଚାଲିଲୁ ଆମେ ସେ ଘନ ଅନ୍ଧାର କାଟି
ଦୂରେ ଦୂରେ କୋଳାହଳ,
କା'ର ଭୀଷଣ ଗର୍ଜନ ପାଟି !
ଆମର କେହି ନାହିଁ ଜଣେ ସାହାସାଥି !
ଆମେ ଯେମିତି କରୁଅଛୁ ଅନୁଭବ
ଆମ ଚତୁର୍ଦ୍ଦିଗେ ରହିଅଛି ଭୀଷଣ ରୌରବ !!

—ପାଞ୍ଚ—

ଉତ୍ତର ଆସୁଛି "ଫେରିଯାଅ ! ଫେରିଯାଅ !
ଆମେ ସବୁ ଠିଆହେଲୁ, ଥକ୍କା ମାରି
କେ ଆମକୁ ଠେଲି ଠେଲି ନେବା ପାଇଁ ଆସୁଅଛି ଧାଇଁ !

—ଛଅ—

'ଆମେ ତେବେ ଏଇଠାରେ ମରିଯିବା ?
ପାରିବାନି ଆଉ ଚାଲି ?'
ତୁମେ କି ବଞ୍ଚିଛ ସତେ ?
ବଂଚି କି ପାରିବ ଆଉ ?'
ଆସୁଛି ଉତ୍ତର !
ଆମେ ହେଲୁ ଭୀତ ତ୍ରସ୍ତ ନିର୍ବାକ ଚଞ୍ଚଳ !

—ସାତ—

"ତେବେ ତୁମେ ଛାଡ଼ିଦଅ"
"ତୁମ ପାଇଁ ରାସ୍ତା ନାଇଁ !
ରାସ୍ତାନାଇଁ ! ମୋଟେ ରାସ୍ତାନାଇଁ !!"

—ଆଠ—

ଆମେ କଣ ଠିଆ ହୋଇ ଜଳ ଜଳ ରହିଥିବୁ ଚାହିଁ ?
ଆମେ ଆଉ ଯିବୁ ନାଇଁ ?
ଆମେ ସବୁ ପଡୁଚୁ ଝାଉଁଳି ?
ଆମକୁ ଲାଗୁଚି ବଡ଼ ବ୍ୟସ୍ତ ଓ କାଉଳ !
ଫସର ଆସୁଚି ଫାଟି,
ଆମର ଜୀବନ ନାଟି,
ଲାଗୁଅଛି ଯେହ୍ନେ ଛାଡ଼ିଗଲା ପରି,
'ତୁମ ପାଇଁ ରାସ୍ତା ନାଇଁ, ରାସ୍ତା ନାଇଁ ! ମୋଟେ ରାସ୍ତା ନାଇଁ,
କାନେ କାନେ ତୁହାଇ ତୁହାଇ କଏ ଛାଡ଼ୁଅଛି ରଡ଼ି !
କେ ଆମକୁ ପଛାଚୀର ଦର୍‌ବଳାପୁ ଛାଡୁ, ଏତେବେଳେ
କହିଗଲା ହେଉଚି ସ୍ମରଣ
"ଜୀବନ ପଥର ନୁହେ
ଅଗ୍ନି ଅସମ୍ଭାଳ
ଚାଲ ! ଚାଲ ! ଚାଲ !!!"

—·—·—

# ଅନ୍ଧକାରେ

ବିରାଟ ବିପୁଳ ନଭସ୍ପର୍ଶୀ ଉତ୍ତୁଙ୍ଗ ଏ ଗିରିମାଳା ମେଳେ,
କିଏ ଅଛ ? କିଏ ଅଛ ? ମୋ ନୟନ ପ୍ରଭ ବନ୍ଧୁ ଲୁଚ
ତୁମରେ କି କୁହଁଏ ନାଇଁ ତଳେ ?
ଆସ ତମେ ! ଆସ ! ଆସ ! ଆସୁନ କାହିଁକି ?

ମତେ କ'ଣ ପାରୁନାହଁ ଦେଖି ?
କାହିଁକି କହୁନ କଥା ନେଇ ଚକ୍ଷୁ ଠେକ ?
ତୁମେ ଖାଲି ରହିଥିବ ବଜନତା ମହାମୂର୍ତ୍ତି ଧରି ?
ମୁହିଁ ଏଥି ଠିଆ ହୋଇ ହୋଇ,
ଚାଲିଯିବି ମୋ ଦରିଦ୍ର-ପଥ ଅନୁସରି ?

ଓଠେ ମୋର ଫୁଟିବନି ହସ
ବକ୍ଷେ ମୋର ଜାଗିବନି ନବ ଉନ୍ମାଦନା ?
ଜୀବନର ପ୍ରତି ରନ୍ଧ୍ରେ ଜାଗିବନି ପ୍ରଦୀପ୍ତ ଚେତନା ?
ଉଠିବିନି ? ପଡ଼ିଥିବି ? ପଡ଼ି ପଡ଼ି ଚାଲିଯିବି କାହିଁ ?
କଏ ତୁମେ ବିରାଟ ପୁରୁଷ ରହିଅଛ ସବୁଜ ଏ ବନକୁଞ୍ଜ ଗେହେ
ଆସିବନି ଲବେ ମୋହ ପାଇଁ ?

ସୂର୍ଯ୍ୟ ଯାଏ ପଶ୍ଚିମ ଆକାଶେ ବୁଡ଼ି
ଯିଏ ଯହିଁ ପାନ୍ଥଜନ ଆପଣାର ନୀଡ଼େ
ଗଲେଣି ବାହୁଡ଼ି,
ମାଡ଼ିଆସେ ଦୂର ଦିଗବଳୟୁ ଖରୁ
ଘନ କୃଷ୍ଣ ମହା-ଅନ୍ଧକାର,
ମୁଁ କିନ୍ତୁ ପାରୁନି ଯାଇ, ହୋଇଅଛୁ ଠିଆ,
ନେତ୍ରପ୍ରାନ୍ତୁ ବୋହି ଆସେ ଉଷ୍ଣ ଅଶ୍ରୁଧାର ।
ପାରୁନି ମୁଁ ଯାଇ, କୁଆଡ଼େ ମୁଁ ଯିବି ?
କାହିଁ ମୋର ଆଶା ବା ଆଶ୍ରୟ ?
ତୁମେ କେହି ବୁଝିବନି ମତେ ?
ରହିଥିବ ହୋଇ କେତେ ଆକୁଳ ଅଥୟ ?
କଏ ସେ ଆସୁଚ ତମେ କାହିଁ ମତେ କିଛି ଦିଶୁନାଇଁ ?
ଏଇ ମହା ଅନ୍ଧକାରେ କୁଆଡ଼େ ମୁଁ ଯିବି କାହିଁପାଇଁ !

ଆସ ! ଆସ ! ଆସ ତମେ ହେ ଉତ୍ତୁଙ୍ଗ ଗିରି-ବନ-କୁଞ୍ଜ-ଲତା !
କେହି ତୁମେ ବୁଝିବନି ? ଏଇ ମହା ଜୀବନର ବ୍ୟଥା ?
ମତେ କ'ଣ ବୁଝିବାକୁ ତୁମର ହୃଦୟ ହୁଏ ନାଇଁ ଆକୁଳ ଅଥୟ ?
ଦେବନାଇଁ ଦେବନାଇଁ ମତେ ?
ମୋ ଦରିଦ୍ର ଜୀବନର ଯେ ଟିକିକ ଲୋଡ଼ା ?

ଫେରଯିବ ? ଏଇ ମହା-ଅନ୍ଧକାରେ ?
କେଉଁ ଆଡ଼େ ଯିବ ଅବା କାହିଁ ?
ମୋହପାଇଁ କେହି କ'ଣ ନାହିଁ ???

---

# ସ୍ୱପ୍ନ

—ଏକ—

ପ୍ରଳୟ ତୋଫାନ ଗରଜ ଆସୁଛି ଭୀମ ଭୈରବ ରବେ,
ହଜାର ହଜାର ମହା ପାରାବାର—
ଲହରୀ ଆସୁଚ ମାଡ଼ ବାର ବାର
ପ୍ରତିଶୋଧ ନେବ, କବା ଅନାଗ୍ରହ
ଘୋଟିଯାଇଛି ଏ ଭବେ,
ପ୍ରଳୟ ତୋଫାନ ଗରଜ ଆସୁଛି ଭୀମ ଭୈରବ ରବେ ।

—ଦୁଇ—

ଚତୁର୍ଦ୍ଦିଗରେ ମହା ପାରାବାର ଲହରୀ ଉଠୁଛି ବିକଟ ନୃତ୍ୟ କରି,
ଆତଙ୍କ ଛାୟା ଘେରି ରହିଅଛି ମୁକ୍ତିର ପ୍ରତି ଅନ୍ତର ତଳ ଧରି ;
ଦୁର୍ଦ୍ଦିନ ଛାୟା ମେଲିଇଛି ତାର କି ବିକଟତର କାୟା !
ଶିହରି ଉଠୁଚ ପୃଥିବୀର ଦେହ,
ମନତଳେ ଖାଲି ଜାଗେ ସନ୍ଦେହ,
କିବା ଅଘଟଣ ଘଟିବ କିଏ ସେ କହି ପାରିବ ବା ତାହା ?
ଦୁର୍ଦ୍ଦିନ ଛାୟା ମେଲିଇଚ ତାର କି ବିକଟତର କାୟା !

—ତିନି—

ଚାହିଁ ଚାହିଁ ଚାହିଁ ଆଖି ପିଛୁଳାକେ ଦେଖିଲି ନୟନ ଭରି
ଭାସୁଚ ମୋହର ଏ ବିରାଟ ମାଟି ମହା ସମୁଦ୍ରେ ବିରାଟ ବୋଇତ ପରି ।
ହିମାଚଳସମ ତରଙ୍ଗମାଳା ଉର୍ଦ୍ଧ୍ୱେ ଉଠଚ ପ୍ରଳୟ ତୋଫାନ ସହ,
ମୋ ମାଟି ଉପରେ କାହା ସନ୍ଧାନ ଖୋଜୁଚ ନ ହୋଇ ଥୟ ?

କାହା ଇଙ୍ଗିତେ କାହାର ଆଦେଶେ
ଆସିଅଛୁ ରଚି ଦୃପ୍ତ ସେ ଅଭିଯାନ !
ତାଣ୍ଡବ ରଚି ମହାନଟସମ ଗାଉଛ ରୁଦ୍ରଗାନ ।
ପୃଥ୍ୱୀର କେଉଁ ଅଜଣା ଅଶୁଣା ମହାପାରୁ ଆସି
କରୁଅଛୁ ଏଥି ପ୍ରଳୟର ଅଭିନୟ !
ଧ୍ୱଂସ କରିବ ବଂଶ କାହାର, ନିପାତ କରିବ କାହା ସମ୍ପଦ,
ପ୍ରତିହିଂସାର ପ୍ରତିଜ୍ଞା ବୁକେ ଜାଗିଛି ନ ହୋଇ ଥୟ !!
ଉଧୂଳି ଉଠୁଛି ଅସୀମ ଉର୍ଦ୍ଧ୍ୱେ, ବେଗେ ହୋଇ ଜରଜର,
ସେ ଯେ ଦୁର୍ଜୟ ସେ ଯେ ନିଃଶଙ୍କ, ସତ୍ୟର ତେଜେ ଦିଶେ କିବା
ଭାସ୍ୱର !!

—ଚାରି—

ତା'ପରେ ଦେଖିଲି ଆକାଶ ଚୁମ୍ବୀ ଅସୀମ ହର୍ମ୍ୟମାଳା,
ଦୋହଲି ଯାଉଛି ମୂଳୁ ଚୂଳ ଯାଏ,
ଗୋଟି ଗୋଟି କାହିଁ ଟଳି ପଡ଼ୁଅଛୁ କମ୍ପାଇ ଧରା ସାରା !!
ଲକ୍ଷ ଲକ୍ଷ କଳା ବେପାରୀର—
ପଇସାରେ ଯାର ଉନ୍ନତ ଶିର,
ମହା ସମୁଦ୍ରେ ପଡ଼ୁଅଛୁ ଟଳି,
ଅତଳ ଗରଭେ ସମୁଦ୍ର କାହିଁ ବୁଡ଼ାଇ ଦେଉଛି
କଳନା ହେଉନି କରି !!

—ପାଞ୍ଚ—

କାନେ କାନେ ମୋର କିଏ ଯାଉଅଛୁ ଅବୋଧ ବାଣୀ କହି
"ସତ୍ୟର ମହା ସମୁଦ୍ର ଦେଖ ଘୋର ଗର୍ଜନେ
ଆତୁର ଆସୁଛି କମ୍ପାଇ ସାରା ମହୀ ।
ଯେତେ ଲାଞ୍ଚୁଆ ଯେତେ ଘରବୁଡ଼ା ଯେତେକ ଅତ୍ୟାଚାରୀ,
ବସିଠ ଶୁଭ୍ର ଏ ମାଟି ଅଙ୍ଗେ ବୋଳୁଅଛନ୍ତି କାଳି,
ରହିବନି କାର କନକ ହର୍ମ୍ୟ ଧନ ସମ୍ପଦ ବଳ,
ରହିବନି କାର ବଂଶରେ ଜଣେ ଦେବାକୁ ଟୋପିଏ ଜଳ !
ମହା ସମୁଦ୍ର ନେଇ ଯିବ କାହିଁ,
ସତ୍ତା କାହାର ରହିବ ତ ନାହିଁ,

ଅସତ୍ୟ କରି ଉଡ଼ି ପାରିବ କେତେ କାଳ କିଏ ଦେଖାଇ ସିଂହଠାଣି ?
ଚିର ନିଃଶଙ୍କ ନିର୍ମଳ ମନେ ସ୍ୱର୍ଗର ସୁଧା ଭୁଞ୍ଜି ପାରିବ କିଏ ?
ସେଉଁଠି ରହିଛି ଜାଲ୍ ଜୁଆଚୋରର ନିର୍ମମ ସୟତାନ ।"

—ନଅ—

ତା'ପରେ ଦେଖିଲି ଦିଗ୍‌ବଳୟର ଏପାରୁ ସେପାରି ଧରି,
ମହା ସମୁଦ୍ରେ ଲକ୍ଷ ମଣିଷ ମୁଣ୍ଡ ଭାସୁଛି,
ତରଙ୍ଗେ ଥରି ଥରି ।
କିଏ କାନ୍ଦୁଛି କେ ବୁଡ଼ି ଯାଉଛି ଶୁଭେ କା' ଆର୍ତ୍ତରବ,
କନକ-ଭୂଷଣେ ମଣ୍ଡିତ ହୋଇ ଭାସୁଛି କାହାର ଶବ ।
ଉବେଇ ଟୁବେଇ ହୋଇ କେ ଯାଉଛି, ଧନ ସମ୍ପଦ ବାନ୍ଧିଛି
ଦେହେ କଷି,
ତରଙ୍ଗମାଳା ନିରେଖି ଏସବୁ, ଯାଉଛି କି ଅବା
ନିର୍ମମ ହସ ହସି !!
ସତ୍ୟ ଶୁଦ୍ଧ ଶାନ୍ତ ନିରୀହ ମହା ଜନତାରେ ଗୃହି,
ଦିଗନ୍ତବ୍ୟାପୀ ମହା ସମୁଦ୍ର କହିଯାଉଛି ବା
ଗୁରୁ ଗମ୍ଭୀର ବାଣୀ
"ଦେଖି ନିଅ ଏଇ ଅସୀମ ଜନତା ନିବିଡ଼ ପାପର,
ମହା ବିଷାକ୍ତ ପ୍ରାଣୀ !
ବିଶ୍ୱାସେ କିଏ ଢାଳିଅଛି କାହିଁ ଉତ୍କଟ ହଳାହଳ,
ଲାଞ୍ଚ ଖାଇ କେ ହଜାର ହଜାର ବୁଡ଼ାଇଛି ପର ଘର ।
ସତ୍ୟ ଉପରେ ପଦାଘାତ କରି ମିଛ ଆଶ୍ରୟ ନେଇ,
ଶତ ନିରୀହରେ ବାଟର ଭିକାରୀ କରି ଅଛି ଅବା କେହି ।
କଳା ବେପାରୀ କେ ସାଜ ଦିନକରେ ହୋଇଛି ଲକ୍ଷପତି,
ଲୁଣ୍ଠନ କରି ଶତ ନିଃସ୍ୱର ଝାଳ ବୁହା ସମ୍ପତ୍ତି ;
ସୌଧ ଉପରେ ସୌଧ ଗଢ଼ିଛି ଗୁଳିଛି ମଠର ଚଢ଼ି,
ଜନତାର ମେରୁଦଣ୍ଡ ଉପରେ କଠୋର ଆଘାତ କରି ।
ଅମୃତ ସମ ଯେ ହେଉ ଖାଦ୍ୟ ଯୋଗାଉଛି ଏଇ ମାଟି,
ବିଷାକ୍ତ କରି କିଏ ସେ ବିକୁଛି କେତେଜେ ଆଣ୍ଠ ତା' ଗୁଣ୍ଡ ?
କେତେ ନିଷ୍ଠୁର କେତେ ସୟତାନ କେତେ ସେ ଅତ୍ୟାଚାରୀ !!!
କୋଟି ଜନତାର କ୍ଷୁଦ୍ଧ ଶୋଣିତେ ବିଷ ଦିଏ ସଞ୍ଚାରି ।
କ୍ଷମତା ଦଣ୍ଡ ହାତରେ ଯାହାର ଭୁଲି ସତ୍ୟର ବାଟ,

କେ' କଳା-ବେପାରୀ ପୁଞ୍ଜିପତିଙ୍କୁ
ଲାଞ୍ଚ ନେବାରେ ବ୍ୟସ୍ତ କାହାର ହାତ ।

—ସାତ—

ଆଖି ଫେରଇ ମୁହିଁ ଯେତେ ଯେଉଁ ଚୃହେଁ
କଳା ସୂତା ପର ସୀମାସ୍ଥାନ କେଉଁ ଦଗ ଚକ୍ରର ତଳେ,
ମିଶି ଗଲା କାହିଁ ପାପ ଅନ୍ୟାୟ ରାଶି,
ଏଣେ ମୋ ସ୍ୱାଧୀନ ବହ୍ଳୁଟ ଏ ମାଟି
ସୂର୍ଯ୍ୟର ସୁନା କରଣେ ଉଠୁଛି ଥର ଥର ଉଦ୍‌ଭାସି ।
ବର୍ଷାର ସେ ଯେ ଘୋର ଗର୍ଜନ ନାହିଁ,
ପ୍ରଳୟ ତୋଫାନ ଦୂରେ ଦୂରେ ଗଲା କାହିଁ,
ମନ୍ଦ ମରୁତ ବହି ବହି ଆସେ,
ଜାଗୁଛି ମୋ ମାଟି ନବ ଉଲ୍ଲାସେ,
ନାହିଁ ଭେଦ ନାହିଁ ଦ୍ୱନ୍ଦ୍ୱ କଳହ
ଚଉଦିଗେ ଖାଲି ସାମ୍ୟଶାନ୍ତି, ମହା ସତ୍ୟର—
ଅମୃତ ଝୁଲ ଫୁଟେ,
ପ୍ରତି ଅନ୍ତର ପ୍ରତି ଅନ୍ତରେ ପ୍ରେମ ଆଶ୍ଲେଷେ ଖାଲି ଟଳପଡ଼େ
ଜୀବନ ଫୁଲର ମୋହନ ଗନ୍ଧ ଦଗ୍‌ବଦଗେ ଯେ ଛୁଟେ !!

—ଆଠ—

ପର ମନେକର ସନ୍ଦେହ ଆଖେ କେ'କାରେ ଚୃହୁଁନ ବାରେ,
ଜଣେ କାନ୍ଦିଲେ ଆନ ଜଣେ ତାରେ ଆପଣାର କରି ଭାଳେ,
ସସୀମ ଦୁଃଖ ଅସୀମ ପରଶେ
ଅମୃତ କବା ମରମେ ବରଷେ !
କାହାର ଯେପରି ଅଭାବ ଦୁଃଖ ଶୋଚନା ଟିକିଏ ନାହିଁ ।
ନୀଳ ଆକାଶର କୋଟି ତାରା ପରି
ସବୁରି ହୃଦୟେ ନିର୍ମଳ ଝୁଲ,
ମଧୁବନ୍ଧନ ସବୁରି ଭିତରେ ଅଛୁ କାଳ କାଳ ପାଇଁ ।

—ନଅ—

ବନ କାନ୍ତାର ପଥ ପ୍ରାନ୍ତର ନୀଳ ନଭତଳ ଶ୍ୟାମଳ ଶଇଳମାଳା,
ପଲ୍ଲୀ ନଗର ବିଲ ପଦା ହ୍ରଦ ସ୍ୱଚ୍ଛ ତଟିନୀଧାର,
ସବୁରି ଭିତରେ ଆନନ୍ଦମୟୀ ମଧୁ ଉଚ୍ଛ୍ୱାସ ଅମୃତ ଛଇ—
ନାଚି ନାଚି ଯାଏ, ହସି ହସି ଗାଏ କବି ଅମୃତ ଗୀତି;
ଆକୁଳ ଅଥୟ ଚିତ୍ତବିହଗ କିବା ନବ ବସନ୍ତ ସମ—
ବନ୍ଧୁ, ମଣିଷ ମନର ନିରହଙ୍କାର କଲ୍ୟାଣ ଭରା ପ୍ରୀତି ।
ଏହାରି ଭିତରେ ନଭଗୃଧ୍ର ପକ୍ଷୀସମ
କ୍ଳାନ୍ତ ନୋହି ମୁଁ ଉଡ଼ି ଯାଉଅଛି ଅମୃତ ଶିଖା କରି ଯେ ଅନ୍ୱେଷଣ ।
ଯୁଆଡ଼େ ଯାଉଛି ଯୁଆଡ଼େ ଗୁହୁଁଛି ସଙ୍ଗୀତ ମୋର ବୁକୁରୁ ଝରୁଛି
ଚତୁର୍ଦ୍ଦିଗରୁ ଧରଣୀ ମାଗୁଛି ବୁକୁଭରା ବନ୍ଧନ!!!

——

## ନାସ୍ତିକର ବିଶ୍ୱାସ !

କାହାଠି କି ଶିଖା      ରହିଛି ଗୁପତେ
    କିଏ ବା ଜାଣିଛି କାହିଁ ?
ଜାଣିବାର ବେଳ      ରହିଛି ବହୁତ
    ସରି ନାହିଁ ! ସରି ନାହିଁ !
ଗୁହା ଅନ୍ଧକାରେ      ଜନମିବ ପଛେ
    ବଢ଼ାଇବ ମୋର ବଳ
ଖୋଜା ପଡ଼ିବ ମୁଁ      ନିଶ୍ଚୟ ଦିନେ ଗୋ
    ପଦ୍ମରାଗ ହୋଇ କିବା ! *

———

* ଏ କବିତାଟି ୧୯୩୩ ମସିହାରେ ଲିଖିତ । ଏହି ଲେଖକ ଆଜକୁ ୨୫ ବର୍ଷ ତଳେ ପ୍ରକାଶ ପାଇଥିବା 'ଦୀପ୍ତି' ନାମକ କବିତା ପୁସ୍ତକରୁ ଏ କବିତାଟି ଗୃହୀତ ହୋଇଅଛି ।

# ପାହାଡ଼ୀ ବାଳିକାର ଅଭିସାର

ଏ ପାଖେ ପାହାଡ଼ — ସେ ପାଖେ ପାହାଡ଼
ଚରଆଡ଼େ ଖାଲି ପାହାଡ଼ ମାଳା,
ବୁଡ଼ିଯାଏ ରବି, — ପାହାଡ଼ ସେ ପାରେ
ଖେଳାଇ ମୋହନ ପାଟଳ ଧାର;
କିଏ ସେ ଆସୁଚ — ପାହାଡ଼ୀ ବାଳିକା !
ନବ ଯଉବନୀ କନକ ଗୋରୀ,
ବୁକୁରୁ ବସନ — ଖସି ଖସି ପଡ଼େ
ଓଠେ ଫୁଟେ ନବ କମଳ କଳି !

ଏକାକୀ ଚଳଚ — ଗୋଧୂଳି ବେଳାରେ
ପାହାଡ଼ର ପାଦେ ସବୁଜ କ୍ଷେତେ,
କାହାଲାଗି ତୁମ — ମଧୁ ଯଉବନ ?
ନୀଳ ନୟନର ଚାହାଣୀ ଯେତେ;
ତୁମ ଏଇ ଓଠ — ବାଜିବ ଯା' ଓଠେ
ଏ ବୁକୁ ବାଜିବ ଯାହାର ବୁକେ
ଏ ଆଖି କହିବ— ଯେ ଆଖିରେ କଥା
ଦିନ ତା' ବିତିବ କି ଶିଖି ସୁଖେ !!

ଚଲ ବର ବଧୂ ! — ଚଲ ଗୋ ତୁରିତେ
ତୁମ ଲାଗି କିଏ ଥିବଟି ଚାହିଁ
ମରମେ ମରମେ — ଖୋଜୁଥିବ କେତେ
ସେନେହ ପରଶ ବୋଲିବା ପାଇଁ;
ରାତି ହୋଇ ଆସେ, — ପଥ ଘାଟ ଏବେ
ନିଶୂନୁ ନିଶୂନ ହେଲାଣି ପରା,
ନୀଳ ନଭତଳେ — ଗୋଟି ଗୋଟି ହୋଇ
ପଡ଼ିଲେଣି କେତେ ହୀରକ ତାରା ।

ଚଲ ଚଲ ତୁମେ — ପାହାଡ଼ ଛଇଳୀ !
ଚହଟାଇ ତୁମ ମୋହନ ବାସ,
ସେ କେଉଁ ସୁଦୂର — ପ୍ରଣୟୀର ଓଠେ
ଫୁଟାଇବ ପରା କନକ ହାସ

ତୁମେ ଯାଉଅଛ          ଯା' ଲାଗି ଅଧୀରେ
ଆସୁଥିବ ଯେବେ ସେ ଅଧ ବାଟେ,
କେଉଁ ବଣ ଖୋଲେ          ଭେଟିବ ତାହାରେ
କିବା କୋଠି ନଈ ପାଇବ ହାଟେ !

ଯୁଗଳ ବିହାରେ          ସେ ବିପିନ ମାଳେ
ଜୋଛନା ବିଭାସେ ବୁଲିବ ତହିଁ
ପ୍ରତି ଓଠୁ ଯେଉଁ          ହସ ଫୁଟୁଥିବ
ପିଉଥିବ ବେନି, ବେନିରେ ଗୃହିଁ ;
ଏ ପାଖେ ପାହାଡ଼          ସେ ପାଖେ ପାହାଡ଼
ସେ କେଉଁ ପାହାଡ଼େ ଭେଟିବ ତାରେ
ଗୃଲ ଗୃଲ ତୁମେ          ପାହାଡ଼ୀ ବାଳିକା !
ମିଶିଯାଅ ଦୂର ପାହାଡ଼ ମାଳେ ;

ବୁକୁତଳେ କେତେ          ମୋହନ ବାସନା
ଫୁଟି ଉଠୁଥିବ ଆବେଗ ଭରେ,
କି ଭଳି ଗୃହିବ          ପହିଲ ଦେଖାରେ
କି କଥା କହିବ ଅଧର ତଳେ !
କି ଭଳି ହସିବ          ମୁଡୁକି ମୁଡୁକି,
ପ୍ରଥମ ପରଶ ବାଜିଲେ ଦେହେ
ଥର ଥର କର;          ଥରି ଉଠୁଥିବ—
ସେ ନବ ଯୁବାର ଅସୀମ ସ୍ନେହେ ;

ସୀମାହୀନ ମଧୁ—          ମମତା ଡୋରିରେ
ଯୋଡ଼ି ହୋଇଯିବ ସେ ଯୁବା ସହ
ଏ ଦେହ ମନର          ଯେତେ ବିଭବ
ଢାଳିଦେବ କା'ରେ ହୋଇ ଅଥୟ !
ହସି ହସି ପ୍ରାଣ—          ଅପର ସୁଷମା
କାହାରେ ନମିତେ ଦେବ ଗୋ ଦେଇ,
ସେ ଲାଗି ଗୃଲୁଚ          କି ମଧୁ ଆବେଶେ
ପାଦ ଅବା ତଳେ ପଡ଼ଇ ନାହିଁ !

ଦୂରୁ ଦୂରେ କା'ରେ ନିରେଖି ରହୁଁଛ
ବେଳେ ବେଳେ ମିଳ ଭ୍ରୂଲତା ଟେକି,
ପ୍ରିୟ ପର ତବ, କା ସ୍ୱରୂପ ଗୁମ୍ଫା
ସେ ବନ ପାହାଡ଼େ ଦିଶି ଯାଏ କି ?
କି ସପନ ଦେଖି ହୃଦୟ ତୁମର
ଉଲୁସି ଉଠୁଛି କି ମଧୁ ଆଶେ
ଯେତେ ବେଗି ବେଗି ଯାଉଛ ଆଗକୁ
କପାଳ ଉଜଳେ କି ନବ ଭାସେ !

ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ବହି ଆସେ ଦୂରୁ ପାହାଡ଼ୀ ବାଆ
ରଜତ ଜୋଛନା ଶୀତଳ ବଭସେ
ହସି ଉଠେ ବଲ ପଡ଼ିଆ ଗାଆଁ
ଏ ମହା ସପନ ପାଇବାରେ ତୁମେ
ଭସାଇ ତୁମର ତରୁଣୀ ତନୁ
ଭାସି ଭାସି ତୁମେ ଯାଉଛ କୁଆଡ଼େ
ସକଳ ଦଇନ ବଦୋର ମନୁ

ପରାଣ ପ୍ରେମିକ କରିଚ ଯାହାରେ
ହୃଦୟର ସୁଧା ଅଜାଡ଼ି ଦେଇ
ତା' ତହୁଁ ଧରାରେ ଏ ମଧୁ ଜୀବନେ
ଅଧିକ ଆଉ କି ଦିଶିବ କେହି ?
ମରି ଶୋଇଥିଲେ, ମଡ଼ା ହୋଇ ସେ ତ
ଦିଶିବ ମୋହନୁ ମୋହନତର
ଲୋତକେ ପଖାଳି କରିବ ଆଦର
ନିଜରୁ ନିଜର ଅସୀମ ଥର;

ମମତା ସେ କିବା ମହତ୍ୱ ତା' ଆଗେ
ମରଣେ ଯେ ଢାଳେ ଅମର ସୁଧା
ମରମରେ କି ସେ ? ଯାହା ଲାଗି ତା'ର
ଜାଗିଚ ମରମେ ମୋହନ କ୍ଷୁଧା;

ସେ ମମତା ମଧୁ— ମୋହନ ଛଇରେ
ଛଇଲୀ ତୁମେ ମୋ ଲହୁଣୀ ବାଳା
ଦୂରରୁ ଦୂରକୁ ଗୁଲଥାଅ ତୁମେ
ପାଦେ କୁଶ ଫୁଟୁ କି ଅଛୁ ଭାଳ ?

ଏ ପାଖେ ପାହାଡ଼ ସେ ପାଖେ ପାହାଡ଼
ବହିଆସେ ଦୂରୁ ପାହାଡ଼ୀ ବାଆ ;
ତୁମର କେଶର କିଆଫୁଲ ବାସ
ଉଡ଼ ଚହଟାଉ ପାହାଡ଼ ଗାଆଁ
ଜୀବନେ ଯାହାକୁ ଆପଣା କରଚ
ଆପଣା ତୁମରେ କଣସେ ନାହିଁ ?
ଯେତେ ବାଧା ଆସୁ ଏ ପାରେ ସେ ପାରେ
ଛାଡ଼ବାଡ଼ କେବେ ହେବ କି କାହିଁ ?

---

# ମୁକ୍ତି ଓ ମିଳନ

କବିତାଟି ଗଞ୍ଜାମ ଜିଲ୍ଲା ମାଳ'ଅଞ୍ଚଳର ଗୋଟିଏ କମ୍ବଦନ୍ତୀକୁ ନେଇ ଲିଖିତ । ଗଞ୍ଜାମ ମାଳ ଅଞ୍ଚଳରେ ଗୋଟିଏ ସୁନ୍ଦରୀ ଆଦିବାସୀ ବାଳିକା ଥିଲା । ସମତଳ ଅଞ୍ଚଳର ଜଣେ ତରୁଣ ସହିତ ତାହାର ଆଗରୁ ସ୍ନେହ ପରିଚୟ ଥିଲା । ବାଳିକାଟିର ବାପ, ମାଆ ଏବଂ ମାଳ ଅଞ୍ଚଳର ଆଦିବାସୀମାନଙ୍କର ଦଳପତି, ତାହାର ପ୍ରେମିକ ସହିତ ସକଳ ସମ୍ପର୍କ ଛାଡ଼ି ଦେବାକୁ କହିଲେ । ବାଳିକା ଏଥିରେ ରାଜି ହେଲା ନାହିଁ । ତାହାର ପ୍ରେମିକ ମାଳ ଅଞ୍ଚଳକୁ ଆସିବାରୁ ତାକୁ ଦଳପତି ଗୋଟିଏ ପର୍ବତ ଗୁମ୍ଫାରେ ବନ୍ଦୀକଲେ । ଆଦିବାସୀ ବାଳିକା ପର୍ବତ ଗୁମ୍ଫା ନିକଟକୁ ଆସି ତାହାର ପ୍ରେମିକକୁ ଛାଡ଼ି ଦେବାପାଇଁ ଅନୁନୟ କଲା । ତାହାର କାତର ପ୍ରାର୍ଥନା କେହି ଶୁଣିଲେ ନାହିଁ । ପ୍ରେମ ପାଗଳିନୀ ବାଳିକା ଅର୍ଦ୍ଧରାତ୍ର ସମୟରେ ଗୁମ୍ଫାର କବାଟରେ ଛନଥର ହାତ ମାରିବାରୁ କବାଟ ଆପେ ଆପେ ଫିଟିଗଲା ଏବଂ ଉଭୟଙ୍କର ମିଳନ ହେଲା !

'ପାହାଡ଼ୀ ବାଳିକାର ଅଭିସାର' କବିତାଟି ଏହି କବିତାର ଗୋଟିଏ ଅଂଶ ।

—ଏକ—

ମରବ ନାହିଁ ମୁଁ ମରବ ନାହିଁ
ବଞ୍ଚି ରହିବ ତାହାର ପାଇଁ
କିଏ ତାରେ କିଆଁ କହିଦ କଲ ?
କି ଦୋଷ ସେ ତବ କରିଚ କାହିଁ ?
ଆସିଥିଲା ସେ ତ ମୋହର ପାଇଁ
ମରୁଚ ସେ ଆଜ ମୋହର ପାଇଁ
ଛାଡ଼ିଲେ ଛାଡ଼ିବ ଧରାରେ ସବୁ
ତାରେ ଏ ବୁକୁରୁ ଛାଡ଼ିବ ନାହିଁ !

—ଦୁଇ—

ସେ ଦେହ ଏ ଦେହେ ଯାଇନି ବାଜ,
ସେ ଆଖି ଦେଖିନି ଏ ଆଖି ଠାର,
କେତେ ଆଶା ଧରି ନଥିବ ଆସି
ଡେଜୁ ଥିବ କାହି ଲୋତକଧାର !
ସେ ଓଠ ପିଇନି ଏ ଓଠ ମହୁ
ଲୋଡ଼ିଥିବ କେତେ ପିଇବା ପାଇଁ,
ସେ କେଉଁ ବିଜନ ଅନ୍ଧକାରେ
ଫିକା ପଡ଼ି ରହିଥିବ ବା କାହିଁ ।

—ତିନି—

ଭଲ ହେଉଥିବ ମାରବେ କାହିଁ,
ମୋ ପାଖେ ନପୂତ ରହିବା ପାଇଁ,
କେ ତା'ରେ ରଖିଲ କଏଦୀ କରି
ମନ କଥା ଜାଣି ପାରିଲ ନାହିଁ ।
ମନର ଆଶା ତା' ମନର ଆଶା
ବଉଳ ଥାଆନ୍ତା ଫଗୁଣ ରାତେ,
ମଉଳ ଗଲା ସେ ମଉଳ ଗଲା
କି ଅବା କୁହୁଡ଼ି ବରଷା ବାତେ !

—ଚାରି—

କିଏ ସେ ଜଗୁଆ ଜଗିଚ ତମେ !
ଦିଅ ମତେ ଆଜ ଦିଅରେ ଛାଡ଼ି ;

ସେ କେଉଁ ପାହାଡ଼ ଗୁମ୍ଫା ତଳେ,
ନିର୍ମମେ ତାରେ ଦେଇଛ ମାଡ଼ ।
ତାହାଠି ତୁମର କି ଅଧିକାର ?
ତୁମର ସେ କ'ଣ କରିଛି କ୍ଷତି ?
କାହିଁକି ରଖିଚ ବାନ୍ଧି ତାରେ ?
ହରିଚ ତୁମର କି ସମ୍ପତ୍ତି ?

—ପାଞ୍ଚ—

ବନ୍ଦୀ ହେଲେ ସେ ବନ୍ଦୀ ହେବ
ମୋହର ହୃଦୟ ପଦ୍ମ ତଳେ,
ଛନ୍ଦ ହେଲେ ସେ ଛନ୍ଦ ହେବ
ମୋ ଭୁଜ ମୃଣାଳ ବେଷ୍ଟନରେ !
ମୋହର ସେନେହ ମୋହର ପ୍ରେମ—
କି ଭଳି ବିଶାଳ ହୃଦୟ ଭିତ୍ତି ?
ଭାଙ୍ଗି ଏ କାରା-କବାଟ ପଟ—
ମୁକ୍ତି ତାହାର ଆଣିବ ଉତ୍ତି ।

—ଛଅ—

ଜାଣିନ ଜାଣିନ ଜାଣିନ ତମେ !
କାଳ କାଳ ଧରି ମୋ ବୁକୁ ତଳେ,
କାନ୍ଦୁଚି ଜଣେ ଚକୋରୀ ପରି
ତାହାକୁ ଦେଖିବା ପାଇଁ କି ଥରେ ।
ତୁମେ କି ପାରିବ ତାହାରେ ରଖି
କଳବଳ କରି ସେ କେଉଁ ଗାଡ଼େ ?
ଜାଣନା କି ମହା ଅଗ୍ନି ଜଳେ
ମୋ ଯୌବନର ଅନ୍ତରାଳେ !

—ସାତ—

କିଏ ସେ ଅଛରେ ଜଗୁଆ ତମେ !
ଏ କାରା-କବାଟ ଫିଟାରେ ଫିଟା
ଧମକ ଚମକ ଦେଖାଅ କାରେ ?
ବିରାଟ ସେନେହ ମୋ ଦେହ ପିଠା !

ଏ ବଣ ପାହାଡ଼ ଯିବରେ ଥିର,
ଧୂଳୁକ ଉଠିବ ଆକାଶ ମାଟି,
ମଧୁ ବନ୍ଧନ ତା' ଭୂଲେ ମୋର
ଯେବେ କେ' ଧୱରେ ଦେବରେ କାଟି !

—ଆଠ—

ଶୁଣରେ ପାହାଡ଼ ! ଶୁଣରେ ବଣ !
ଶୁଣରେ ନବଡ଼ ନଶିଥ ପ୍ରାନ୍ତ !
ଶୁଣ ଝର ଝର ଝରଣା ଧାର
ଶୁଣରେ ଆକାଶ ଶୁଣରେ ମାଟି !
ଗୋଟିଏ ଆତ୍ମା ପୃଥିବୀ ପରେ
ଯେ ମୋରେ ଦେଇଚି ଜୀବନ ତାଳ,
କାନ୍ଦୁଚି ସିଏ କେଉଁଠି ରହି,
ଜୀବନ୍ତେ, ତାକୁ ଦଅନା ମାର !

—ନଅ—

ମୋର ଏଇ ଓଠ ମୋର ଏ ଆଖି
ଯାହାକୁ କେବଳ ରହିଚି ଗୃହିଁ,
ଅନ୍ତର ମୋର ଯା ଅନ୍ତରେ
ଖୋଜୁଛି, ସେ ମୋର ହୋଇବ ନାହିଁ ?
ତାହାର ମୋହର ମରମ ଯେବେ
ଏକ୍ ଏକ୍ ଭନ୍ନ ନୁହେ,
ତାହାର ମୋହର ସେନେହ ଯେବେ
ପରସ୍ପରରେ ନବଡ଼େ ଛୁଏଁ,

—ଦଶ—

ତାହାର ମୋହର ଆତ୍ମା ଯେବେ
କାନ୍ଦ କାନ୍ଦ ରହିଚି ଗୃହିଁ,
ମାଟି ଉପରେ ଏଇ କ୍ଷଣେ
ତାହାର ମୋହର ମିଶିବୁ ନାହିଁ ?
ଫିଟରେ ଫିଟରେ କବାଟ ଫିଟ,
ଏଇ ହାତ ମାରେ ଫିଟରେ ଫିଟ !

ପୁଣି ହାତ ମାରେ ତୃଣପୁ ଥର,
ଦେଖିବ ସତ୍ୟ ସତ କି ମିଛ ?

—ଏଗାର—

ଫିଟିଲା ଫିଟିଲା କବାଟ ଏଇ
କିଏ ସେ ବନ୍ଦ ପାରିବ କରି ?
ସେନେହେ ଯେବେରେ ସତ୍ୟ ଥାଏ,
ଆକାଶୁ ସ୍ୱର୍ଗ ପଡ଼ିବ ଝଡ଼ି !
ମୋହର ପ୍ରାଣର ପ୍ରାଣ ହେ ତମେ !
ତୁମରେ କରିବ କେ' ହଟହଟା
ବଞ୍ଚିଥିଲେ ମୁଁ ଜୀବନ ଧରି,
ଫେରିଯିବ ସବୁ ସେ ଘନଘଟା ।

—ବାଆର——

ଆସ ମୋର ସଖା ! ଆସ ହେ ନାଥ !
ସକଳ କଣ୍ଟା ଯାଇଚି ଚୂଲି,
ଜାଣି କି ଥିଲ ମୁ ଏ ଆଖି ହନେ
ଜୀବନେ ତୁମରେ ଦେଖିବ ବୋଲି ?
ଏ ବଣ ପାହାଡ଼ ଝରଣା ଧାରେ
ତୁମର ମୋହର ବସିବା ଗୃଳ !
ମୁଁ ଗୀତ ଗାଇବ ଶୁଣିବ ତମେ
ତୁଟିବ ପ୍ରାଣର ବେଦନା ଘାର ।

—ତେର—

ଏ ବଣ ପାହାଡ଼ ବିଜନ ଭୂଇଁ
ଆମରି ପରଶେ ଉଠିବ ହସି
କିଏ ସେ କାହାର କରିବ କିସ ?
ଜଣେ ଜଣକରେ ଉଠିଲେ ରସି !
ହସି ଖେଳ ନାଚ ସୋହାଗ ଭରେ
କାଟି ନେବା ଆମ ଜୀବନ କାଳ
ଦୁଃଖ ଦଇନ୍ୟ କି ଅବା ଥାଏ ?
ଆମେ ବେନି ଯେବେ ଗଳାର ହାର !

————

# ରହିଥାଅ ତୁମେ !

ରହିଥାଅ ତୁମେ ! ରହିଥାଅ ଏଥି,
ହସି ଖେଳ ଏଇ ପାହାଡ଼ୀ ଗାଏଁ,
ଦିଅ ମୋତେ ଆଜ ଦିଅଗୋ ! ବିଦାୟ
ସୁଦୂର ମୋ ଦେଶ ମୁଁ ଚାଲିଯାଏ;
ରହିଥାଅ ତୁମେ ରହିଥାଅ ଏଥି
ଏ ବଣ ପାଦପ ଲତିକା ପରି
ମନ ପରସନେ, ମଧୁ ଆଳାପନେ,
ପ୍ରିୟଜନ ଭୁଲେ ଦିବସ ହର !
ରହିଥାଅ ତୁମେ ! ରହିଥାଅ ଏଥି;
ମୋ ପାଇଁ କାହିଁକି ଭାଳେଣି ଏତେ ?
କି ଶିଖି ବିଭବ ଦେଇଚ ତୁମରେ
ବୁଝନ କାଇଁକି କହିଲେ ଯେତେ ?

ରହିଥାଅ ତୁମେ ରହିଥାଅ ଏଥି
ଆଉ କାହିଁପାଇଁ ଆସ ମୋ ତୁଲେ ?
କେତେ ଦୂରେ ତୁମ ଗାଆଁ ରହିଲଣି
ବାଟ କାଟିଯାଅ ଆପଣା ପୁରେ ;
କେତେ ଦୂରେ ଗାଆଁ ପୋଖରୀ ଦେଉଳ
ନଈ ନାଳ ସେତୁ ଗଲଣି ରହି,
ଏକାକୀ କପରି ଯିବ ଏତେ ଦୂରେ
ରାତି ହେବ, ବେଳ ଆସୁଚ ଲଇଁ !
ଫେରିଯାଅ ଏବେ ଫେରିଯାଅ ତମେ
କୋହ ଲୁହ ହୋଇ ଚାହିଁଚ କଆଁ ?
କେଡ଼େ ନିଠୁର ମୁଁ ଚାଲିଯାଏ ଦୂରେ
ବିସୋରି ଏ ମଧୁ ମୋହନ ହିଆ !

ଫେରିଯାଅ ତୁମେ, ଫେରିଯାଅ ଗାଏଁ
ଅଧବାଟୁ ବେଶୀ ଆସିଚ ଚାଲି,
କୁଟୀରେ ତୁମର ବାପ ମାଆ ଭାଇ
ତୁମ ଲାଗି ହେଉଥିବେଟି ଭାଳ !

ମୋ ଲାଗି କାହିଁକି ଏତେ ନିର୍ଯାତନା
ସହିବ ଗୋ ତୁମେ କଅଁଳ ପ୍ରାଣେ ?
ତୁମ ମୋ ଭିତରେ ମଧୁ ଦିବା ନିବା
ତୁମେ ଜାଣ ଆଉ ମୁହିଁ ଗୋ ଜାଣେ ।
ଏ ଶିଶୁ ଟିକିକ କାଳି କାଳି ଧରି
ଅସୀମ ଗୋପନେ ଥିବ ଗୋ ରହି !
ତୁମରି ଲୋଚନୁ ଲୋତକ ବହିଲେ
ମୋ ହୃଦ କି ବାରେ ପାରିବ ସହି ?

ଫେରିଯାଅ ତୁମେ ଫେରି ଗୋ କୁଟୀରେ
କାହିଁପାଇଁ ଏତେ ରହିଚ ଚାହିଁ ?
ଏ ବଣ ପାହାଡ଼ ତଟିନୀ ସିକତା
ଭୁଲେ ତୁମେ ମନେ ପଡ଼ିବ ନାହିଁ ?
ଜାଣିତ ନ ଥିଲି, ଜୀବନେ ତୁମରେ
ଦେଖିତ ନ ଥିଲି ନୟନେ ଥରେ,
ମୋ ପାଇଁ ଗୋଟିଏ ଫୁଲ ଫୁଟି କାହିଁ
ବାସ ଚହଟାଏ ଧରଣୀ ପରେ,
ସେ ବାସ ମହକେ ଏ ଜୀବନେ ଯେବେ
ମହକି ଉଠିଚି କ୍ଷଣିକ ପାଇଁ,
କେମନେ ବରଜ- ପାରିବ ପଶୁ ?
ଚାଲିଯିବ ସିନା ସୁଦୂରେ କାହିଁ ।

ଶଇଳ କାନନ ଶ୍ୟାମ ବଇଭବେ
ତୁମରେ କେତେ ମୁଁ ଦେଖିନି ସତେ ?
କେତେ ମୁଁ ଗାଇଚି ମୋହନ କବିତା
ତୁମକୁ ବିଚିତ୍ରି ମାନସପଟେ ।
ହସିବି କେତେ ମୁଁ ବିମୋହନ ହସ
କି ଅବା ବିକଚ କୁସୁମ ସମ !
ଖାଇଚି କି ଅବା ମୋହନ ମାଧୁରୀ
କିବା ସେ ପରାଣ ଅତୁଳ ଧନ !

ଲୋତକେ ଲୋତକେ ଫୁଟିଛ ଏ ଯେଉଁ—
ଅସୀମ ବେଦନା ? ବେଦନା ସେ କି ?
ମହା ଜୀବନର ମୋହନ ବିଭବ
ଚଉଦିଗେ ହୋଇ ଯାଉଚି ଲେଖି !

ଫେରିଯାଅ ତୁମେ କୁଟୀରେ ତୁମର
ବିଲ ବର୍ନିନଙ୍କ ପାହାଡ଼ ଦେଖି
ଦେଖୁଥିବ ଗୋରୁ ଗୋଠରୁ ଫେରିବା
ଉଡ଼ିବାର ଶୁଆଶାରୀ ଓ ଏବି
ତୋଳୁଥିବ କେତେ କୁଟଜ ସୁମନ
ବଣରୁ ବଣକୁ ସୋହାଗେ ବୁଲି,
ଗାଇଥିବ କେତେ ମୋହନ କବିତା
ମଧୁ ତାନେ, ବୁକୁ ଉଠିବ ପୂରି !
ହସି ଖେଳି ଦିନ— କାଟି ନଉଥିବ
ସେଇ ହସ ଖେଳ ଜୀବନ ତଳେ,
ମୋରେ ଯେବେ ଲବେ ଅନୁଭବୁ ଥିବ,
କି ଶିଶୁ ମୋର ସେ ଧରଣୀ ପରେ !

ଫେରିଯାଅ ତୁମେ, ଫେର ଗୋ କୁଟୀରେ
ମୁଁ ଫେରିବ ମୋର ସ୍ୱଦେଶ ପଲ୍ଲୀ—
ଶାଳଆ ସାପୁଆ, ସୋଲଙ୍ଗି ଘାଲେଙ୍ଗି
ଚିଲିକା ଫୁଟାଏ ମୋହନ ଛଇ
ବିପିନୁ ବିପିନେ, କେଦାରୁ କେଦାରେ
ତଟିନୀ-ସିକତା-ରଜତ-ଶେଯେ,
ବୁଲୁଥିବ କାହିଁ କି ମଧୁ ସପନେ—
ଢଳ ଢଳ କିବା ପୁଲକ, ସେ' ଯେ !
ଏ ସବୁ ଭିତରେ ତୁମ କଥାଟିକି
ନୁହେଁତ କଦାପି ପାଶୋରିବାର,
ପବଣ ଦେଉଳେ ଦାଉ ଦାଉ ଦାଉ
ଜଳୁଥିବ କିବା କନକ ଗାର !

ଫେରଯାଅ ତୁମେ ଫେର ଗୋ କୁଟୀରେ
ଲୋଉଛି ଚାହିଁ ଚ କେତେ ଯେ ମତେ !
ମନ ତ ମାନୁନ ଫେରଯିବା ପାଇଁ
ଚାହୁଁଚ ଚାଲିବ ମୋହର ପଥେ ;
ଜଣେ ଜଣକରେ କ ମଧୁ ଧିଆନେ
ଆପଣାରେ ହଏ ସୋହାଗେ ତାଳ ;
କ ନଧି ପାଏ ସେ, ମରମେ ମରମେ
କେତେ ବାଧେ ଗଲେ ନମିଷେ ଗୁଡ଼ !
ସେ ବାଧା ଭିତରେ କ ଶିଖ ଖୋଜେ ସେ
ତନ ଭୁବନେ ଯା' ନ ଥିବ କାହିଁ,
ବସୁଧାର ଏ'ଯେ ମୋହନ ମାଧୁରୀ—
ପରଶେ ପରାଣ ଆଉ କ ମାଇଁ ?

ଫେରଯାଅ ତୁମେ, ଫେରତ ପାରୁନ
ଅଧବାଟୁ ଫେର ସେ ଗଛମୂଳେ
ଠିଆ ହୋଇ ମୋରେ, ରହଅଛ ଚାହିଁ
କ ଭଳ ରହିବ ଏତେକ ଦୂରେ ?
ମମତାର କବା ମହା ପାରାବାରେ
ଭସାଇ ଦେଇଚ ପରାଣ ତରୀ !
ଭାସି ଭାସି ତୁମେ ଯାଉଚ କୁଆଡ଼େ
ପାରଲେ ପାରୁନ କଳନା କର ।
କ ମହା ବସାରେ ବସାଉ ଦେଇଚ
ଆପଣା ଟିକକ ଅସୀମ ସହ
ଆକାଶ ଅବନୀ ଚଉଦଗ ଭର
କ ଭଳ ଦଶୁଚ ଜୀବନମୟ !

ଫେରଯାଅ ତୁମେ ! ଫେରିତ ଯାଉଚ
ସଧୀର ଚରଣେ ଅଧୀର ହୃଦେ,
ବେଳେ ବେଳେ କଆଁ ଅଟକ ଯାଉଚ
ଦୂର ବନ ନଈ ସିକତା-କୁଦେ ?
ପଛକୁ ଚାହିଁଲେ ମୁଁ ଦଶୁ ନ ଥିବ,
ଆଗକୁ ଚାହିଁଲେ କେହିତ ନାହିଁ

ଲୁହ ତେଜ ତେଜ    ମଧୁ ଅନୁଭବେ
କି ମୋହନ ଶିଖି ପାରୁଚ ପାଇ ?
ସେଇ ଅନୁଭବେ    ହସୁଥିବ ସବୁ
ଝଲସି ଝଲସି ନୟନେ ତବ ;
ମଣି ମୁକୁତାର    ଜୀବନରୁ ବଳି,
କି ବଇଠ ନୁହେ ହୃଦ ବିଭବ !!!

ଫେରିଯାଅ ତୁମେ    ଫେରିତ ଗଲଣି
ନିମିଷେ ଯିବଣି କୁଟୀରେ ଚୁଲି
ନୟନ ବିସାରି    ଯେତେ ମୁଁ ଦେଖିଲେ
ଦେଖେ ବନ ବିଲ ପାହାଡ଼ ଖାଲି ;
ତୁମେ ଦେଖୁଥିବ    ଚୁରିଆଡ଼େ ଯେବେ
ଦେଖୁଥିବ ଗାଆଁ ପାହାଡ଼ ନଈ
ମୋ ଭିତରେ ତୁମେ,    ମୁଁ ତୁମ ଭିତରେ
ବସା କରି ପରା ଯାଇଚେ ରହି !
ଦେଖିଲେ ଦେଖିବ    ତୁମକୁ ମୋହରି
ବୁକୁର ଅତଳ ମରମ ତଳେ,
ତୁମେତ ଦେଖିବ,    ତୁମ ହୃଦବେଦୀ
ମୋ ଧେନ ହସୁଚ କନକ କରେ !!

---

# ମୁଁ ଓ ଦୁନିଆ

ଏଇ ମହା ଦୁନିଆରେ ସମସ୍ତେ ତ ହସି ଖେଳ ରହିଚନ୍ତି,
ମୁହି କପାଁ ବ୍ୟର୍ଥତାର ସୀମାହୀନ ପାରାବାରେ—
ଉବେଇ ଟୁବେଇ ହୋଇ ଚୁଲିଚି ନିୟତ ?
ମୁଁ ଯେତେ ଚେଷ୍ଟା କରୁଚି ସମସ୍ତଙ୍କ ପରି ରହିବ
ରହି ପାରୁନି,
ଅନେକ ସମୟରେ ଧରଣୀର ଅତଳ ଗର୍ଭରେ
ପଡ଼ିଯାଉଚି ;
ଆଖିରୁ ଲୁହ ବୋହୁଚି,

ସେ ଲୁହର ପ୍ରତି ବିନ୍ଦୁ ପୋଛି ପୋଛି
ତଥାପି ଆଶା ରଖି ଚାଲିଛ !
ମୁଁ ତେବେ କ'ଣ ଏଇ ପୃଥିବୀର
ସକଳ ଜୀବନରୁ ଭିନ୍ନ ?
ମୁଁ ଯାହା ଚାହୁଁଛି, ଯାହା ଲୋଡ଼ୁଛି
ପାଇପାରୁନି !
ମୁଁ ଚାହୁଁନି ଦ୍ୱିତଳ କୋଠା,
ମୁଁ ଚାହୁଁନି କ୍ଷମତାର ରାଜସିଂହାସନ,
ମୁଁ ଚାହୁଁନି ଟଙ୍କା ପଇସା, ମଣି ମୁକ୍ତାର ବୁଜୁଳା ;
ମୁଁ ଚାହୁଁଛି ଗୋଟାଏ ସ୍ୱାଧୀନ ସୁନ୍ଦର ଜୀବନ !
ମୁଁ ଚାହୁଁଛି ଗୋଟାଏ ଆନନ୍ଦମୟ ରାଜ୍ୟ !
ମୁଁ ଖୋଜୁଛି ଗୋଟାଏ ହୃଦୟବାନ ଆବାସ ;
ମୁଁ ଯେଉଁଠି ଏ ସବୁର ସନ୍ଧାନ ପାଉନି
ତାକୁ ପଦାଘାତ କରିଆସିଛି ;
ମୋ ଜୀବନ ସାକ୍ଷୀ ଧରି ;
ଫଳରେ ମୁଁ ଦୁଃଖ କଷ୍ଟ, ଅଭାବ ଅସନ୍ତୋଷ ପାଇଛି ।
ମତେ ଲୋକେ କହୁଚନ୍ତି ଏ ପାଗଳ,
ଏ ଦୁର୍ବଳ, ଏ ମନୁଷ୍ୟ ସମାଜର ଅପଦାର୍ଥ ପ୍ରାଣୀ ;
ମୁଁ ସଇତାନକୁ ଗୋଇଠା ମାରି ଆସିଛି
ତା'ର ଦାସ ହୋଇ,
ସୁଖ ଶାନ୍ତିରେ ରହିବାଠୁ
ବରଂ ବାଟର ଭିକାରୀ ହୋଇ
ବଞ୍ଚି ରହିବା
ଗୌରବମୟ ବୋଲି ବିଚାରିଛି ।
ଦୁନିଆରେ ତୁମେ ଯେଉଁଠି
ଲୋକମାନଙ୍କୁ ଦେଖୁଛ
ସୀମାହୀନ ପ୍ରାଚୁର୍ଯ୍ୟ ଭିତରେ
ହସି ଖେଳି ଚାଲିଚନ୍ତି
ଏମାନେ ସମସ୍ତେ
ସଇତାନର
ପାଦ ତଳର
କୁକ୍କୁର ;

ଏମାନେ ସମସ୍ତେ ଅଇଁଠାଖିଆ
ଏମାନଙ୍କର ଯେ ବଡ଼ଲୋକି,
ଏମାନଙ୍କର ଯେ ଗର୍ବ ଆନନ୍ଦ,
ତା ଭିତରେ ଜୀବନ ନାହିଁ ;
ଏମାନେ ସମାଜର, ଦେଶର, ଜାତିର,
ରାଷ୍ଟ୍ରର, କଳଙ୍କର ବିରାଟ ପାହାଡ଼ !
ଏମାନେ ହତ୍ୟାକାରୀ, ଏମାନେ ଶଠ,
ଏମାନେ ଚୋର, ଡାକୁ,
ଏମାନଙ୍କୁ ଚହ୍ନିବା ବଡ଼ କଷ୍ଟ, ବଡ଼ ଦୁଃସାଧ୍ୟ !
ମୁଁ ମୋର ଏଇ ମାଟିର କୁଡ଼ିଆ ଭିତରେ
ଶାଗ ପେଜ ଖାଇ ବଞ୍ଚି ରହିଚି ।
ଏଠି ମୁଁ ଶାନ୍ତି ପାଏ, ଆନନ୍ଦ ପାଏ,
ଗୌରବ ଅନୁଭବ କରେ ;
ମୋର ସ୍ତ୍ରୀ, ମୋର ଝିଅ, ମୋର ନାତି
ଏମାନେ ମୋର ଦୁଃଖୀ କୁଟୀରର
ଆଦରର ସମ୍ପଦ ;
ଏମାନଙ୍କ ହସରେ କୃତ୍ରିମତା ନାହିଁ
ଏମାନଙ୍କ ହୃଦୟ ବିଷରେ ଜର୍ଜରିତ ନୁହେ
ଏମାନଙ୍କ ବସନ ଭୂଷଣ ସାଧାରଣ
ଚୋରି ଡ଼କାୟତି ଧନରେ ଏ ସବୁ କିଣା ଯାଇନ ;
ଆମର ବଡ଼ଲୋକି ଆମର ଅମୃତମୟ ଅନ୍ତର !
ମୁଁ ଦେଖେ ମୁଁ ମୋ କୁଟୀରର ସମସ୍ତେ
ପୋଖରୀ ଭିତରେ ପଦ୍ମ ପରି
ଶୁଦ୍ଧ, ସ୍ୱଚ୍ଛ, ଆନନ୍ଦ ଢଳଢଳ !
ଦୁନିଆକୁ ଠକଠାକ ଦୁନିଆର ଆଖିରେ ଧୂଳି ପକାଇ
ପଇସା କମାଇବା ଆମର କାହାର ଲକ୍ଷ୍ୟ ନୁହେ ;
ଦୁନିଆକୁ ଭଲ ପାଇବା ଆମର ଲକ୍ଷ୍ୟ
ଦୀନ, ଦୁଃସ୍ଥ, ରୁଗ୍ଣ, ପଙ୍ଗୁ, ପଦାନତ—
ଅତ୍ୟାଚାରିତ ନିଷ୍ପେଷିତଙ୍କୁ ଦେଖିଲେ
ଆମେ କାନ୍ଦପକାଉ ;
ଆମେ ତାଙ୍କୁ ହୃଦୟଭରି ସାହାଯ୍ୟ କରୁ ;
ସେଇ ଟିକକ ସାହାଯ୍ୟ କରିବାରେ ଆମର ଆନନ୍ଦ !

ନାରିକେଳର ଶ୍ୟାମଳ-ମୋହନ-କୁଞ୍ଜ ଭିତରେ
ମୁଁ ଏହିପରି ଗୋଟିଏ ଜୀବନ ଧରି
ପଡ଼ି ରହିଚି—
ଯେଉଁ ଜୀବନ ମଳୟ ପରି ଚଞ୍ଚଳ !
ଫୁଲର ଗନ୍ଧ ପରି ଉତ୍‌ଫୁଲ୍ଲ ! ;
ସୂର୍ଯ୍ୟର କିରଣ ପରି ଉଜ୍ଜ୍ୱଳ !

ମୁଁ ଜୀବନରେ ଏଇପରି ବଞ୍ଚି ଆସିଚି
ମୁଁ ଜୀବନରେ ଏଇପରି ବଞ୍ଚି ଚାହିଁ
କେତେ ଠକ ଜୁଆଚୋର ଦଳର
ଶିକାର ହୋଇଚି,
ସେମାନେ ମତେ ବହୁବାର କ୍ଷତବିକ୍ଷତ କରିଚନ୍ତି
କିନ୍ତୁ ହତ୍ୟା କରିପାରି ନାହାନ୍ତି;
ମୁଁ ଏମାନଙ୍କ ହାବୁଡ଼ରେ ବହୁବାର ପଡ଼ି
ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଚି
ତଥାପି ମୋର ଧୈର୍ଯ୍ୟ ଅଚ୍ଛି, ସାହସ ଅଚ୍ଛି,
ମୁଁ କାହାର କ୍ଷତି କରିନି;
ମୁଁ ଆନନ୍ଦମୟ, ମୁଁ ସମସ୍ତଙ୍କୁ ଆନନ୍ଦ ଅମୃତ ଦେବାକୁ ଚାହେଁ ;
ମୁଁ ଚାହେଁନା କାହାକୁ ଛନ୍ଦ ବାନ୍ଧ ରଖିବି—
ପ୍ରତାରଣ ଜାଲ ପକାଇ ;
ସେଥିପାଇଁ ମୋ ଦୁଃଖ ନାଇଁ, ମୋର ଚିନ୍ତା ନାଇଁ ।

ମତେ ହାଇରାଣ କରି, ମତେ ବିପନ୍ନ କରି
ସିଏ ଆନନ୍ଦ ପାଉଚି ପାଉ !
ମୁଁ ବିପନ୍ନ ହୋଇ ଆନନ୍ଦରେ ବଞ୍ଚି ରହିପାରେ
ମୁଁ କ୍ଷତିଗ୍ରସ୍ତ ହୋଇ ହସି ପାରେ !
ମୁଁ ମୃତ୍ୟୁକୁ ବରଣ କରି ଜୀବନର ଆସ୍ୱାଦନ ପାଇପାରେ
ତୁମର ଆନନ୍ଦ ତୁମର ଗର୍ବ
ଅନ୍ୟକୁ ବିପନ୍ନ କରି ରସାତଳଗାମୀ କରିଦେବା
ମୋର ଆନନ୍ଦ,
ପୃଥିବୀକୁ ଜୀବନ୍ତ କରି ତିଆରି କରିବା !!

———

# ମୁଁ ତୁମକୁ ନମସ୍କାର କରୁଛି !

ଆମ ଗାଁ ବାଡଗା ନାମ୍ପ ଦେଖିଲି ମୁଁ, ଯାଉଅଛି
ଏକ ଗାଉଁ ଅନ୍ୟ ଗାଏଁ
ଜୀର୍ଣ୍ଣ ଦେହେ ଆବୋରିଛି ଦରବା ଖଣ୍ଡିଏ;
ଚିରି ଯାଇଅଛି ଠାଏ ଠାଏ ।
ବାଟେ ମୋରେ ଦେଖି ପଚ୍ଚାରିଲି
'କେଉଁଆଡ଼େ ଯାଉଅଛୁ ପୁଅ !
ମୁଁ ବଡ଼ ଅନାସ୍ତ ହୋଇ ଚଲୁଛିରେ ବାବୁ !'
କହୁ କହୁ ନେତ୍ରପ୍ରାନ୍ତୁ ବୋହିଗଲି ଲୁହ !
ଠିଆ ହେଲି, ଚାହିଁଲି ଟିକଏ ତାରେ
ଆଖି ତାର ସକରୁଣେ ରହିଅଛି ଚାହିଁ !
ଦେଲି ମୁଁ ଦୁଇଟି ଟଙ୍କା
'ନେଏ ନାମ୍ପ କରିବୁ ଖରଚ
ପାଖେ ତୋର କିଛିଥିବ ନାହିଁ ।'
'ହଁ, ବାବୁ ! ତୁ ଦେଲୁ ମୁଁ ନଉଚି
ତୁ'ତ ଭାଇ ! ଦିଅନ୍ତୁ ନାଇଁକି ?
କିନ୍ତୁ କାରେ କହିବୁନି,
ଶୁଣିଲେ କହିବେ ଲୋକେ
'ଭିକ ମାଗି ଚଲୁଚି ସେ ଗୋଟେ ଭିକାରୁଣୀ'
'ନା' ନା ! କହିବିନି କା'ରେ,
କହିବା ମୋ କିବା ଲୋଡ଼ା କହ ?'
କିନ୍ତୁ ତା' ପଦକ ବାଣୀ
ମତେ କଲା ଆକୁଳ ଅଥୟ !
ଦୁଃଖିନୀ ସେ, ଅଭାଗିନୀ ସିଏ,
କିନ୍ତୁ ନୁହେ କାଙ୍ଗାଲୁଣୀ, ଭିକାରୁଣୀ, ବିପଥ ଗାମିନୀ
ଜୀବନର ମର୍ମନ୍ତୁଦ ଅଭାବ ଅନାହାର ଯନ୍ତ୍ରଣା ଭିତରେ,
ଆପଣାର ମହତ୍ତ୍ୱ ଟିକକ ଧରି,
ଚାଲିଅଛି ଜନ ସମାଜରେ ।
ମଣିଷ ହସି ହସି ମରିପାରେ;
କିନ୍ତୁ ମହତ୍ତ୍ୱ ଟିକକ ମାରିବାକୁ ରାଜି ନୁହେ !
ତା' ଅନ୍ତର ମନ !

ମାନ ମହତ୍ତ୍ୱର ଶେଷପରେ
ମଣିଷ ପାଲଟି ଯାଏ ଗୋଟାଏ ଅସ୍ପୃଶ୍ୟ ବଣ !
ସମସ୍ତ ଯାଇଚ ତୁମର ନାନ !
ଘର, ଦ୍ୱାର, ବଭବ
ଅସୀମ ଦୁଃଖରେ,
ତୁମ ସାରା ଜୀବନ ହେଉଛୁ ଛଟ ପଟ !
ସମାଜ ତୁମକୁ ଅନାଦର କରିପାରେ,
କିନ୍ତୁ ତୁମେ ପେଟ ପାଇଁ
ମାନ ମହତ୍ତ୍ୱ, ଇଜ୍ଜତ ଦକ
ଅସ୍ପୃଶ୍ୟ ବଣ ପାଲଟି ଯାଇନ ;
କିଏ ତୁମକୁ ହାତଦର କରିପାରେ ନାହିଁ !
ନଜରକୁ ହୁଏତ ନ ଆଣିପାରେ ;
କିନ୍ତୁ ତୁମକୁ, ଘୃଣା କରିବାକୁ
କାହାର କଭ ଲେଉଟିବ ନାଇଁ ନାନ ।
ଜୀବନର ସକଳ ଦୁଃଖ ଠାରୁ ବଡ଼ ଦୁଃଖ
ମାନ ମହତ୍ତ୍ୱ ଇଜ୍ଜତର ଅପମାନ,
ମୃତ୍ୟୁ ପରେ ବ,
ସେ ଅପମାନ ନଭିଯିବ ନାଇଁ ;
ତୁମର ସେ କଳଙ୍କ ନାଇଁ ;
ଭୟ କାହିଁକ ନାନ ?
ଏ ଭୀଷଣ ପୃଥିବୀ
ତୁମକୁ ଶତ ସହସ୍ର ବାର ଅନାଦର କରୁ,
ଘୃଣ୍ୟ ଆଖିରେ ଦେଖୁ,
ତୁମର ଦୁଃଖ କରିବାର କିଛୁନାଇଁ ନାନ !
ଆଖିର ଲୁହରେ ଯେ ବଞ୍ଚି ରହେ,
ନିଜର ସକଳ ମାନ ଇଜ୍ଜତ ଓ ମାନବିକତାକୁ
କ୍ଷଣିକ ପାଇଁ କି ହେଲେ ମାର ନ ଦେଇ,
ସେ ଘୃଣ୍ୟ କାହିଁକି ହେବ ନାନ !
ନାଁ !
ତୁମେ ଗୋଟିଏ ମାଟିର ଦୀପ,
ତୁମକୁ କିଏ ନ ପଚ୍ଛୁରୁ,
ତୁମେ ସ୍ନିଗ୍ଧ,

ତୁମେ ସୁନ୍ଦର,
ତୁମେ ଶୁଦ୍ଧ,
ତୁମେ କଳଙ୍କର ବହୁ ଦୂରରେ !
ତୁମେ ସକଳର ନମସ୍ୟ,
ମୁଁ ତୁମକୁ ନମସ୍କାର କରୁଚ ନାନ !!

---

## ମାଗୁଣି

ଯେ ଗାନ ଗାଇଲେ ପୃଥିବୀର ପ୍ରତି ରେଣୁରେ ରେଣୁରେ
ଏ ଜୀବନ ମିଶିଯାଏ
ଯେ ଗାନ ଗାଇଲେ ଆତ୍ମ ପର ଏ କ୍ଷୁଦ୍ର ଧାରଣା
ହୃଦେ ନାହିଁ ଥାନ ପାଏ
ଯେ ଗାନ ଗାଇଲେ ହୃଦୟେ ହୃଦୟେ ଜାଗି ଉଠେ କେତେ
ଅମୃତ ଅନୁରାଗ,
ସେଇ ଗାନ ମୋର ରସନାର ପ୍ରତି ତନ୍ତ୍ରୀ ଭିତରେ
ଖଚି ଦିଅ ମହାଭାଗ ।

ଯେ ଗାନ ଗାଇଲେ ମରଣର ମହା ଯନ୍ତ୍ରଣା ମୋରେ
ନିମିଷକେ ନାହିଁ ବାଧେ,
ଯେ ଗାନ ଗାଇଲେ ଧରଣୀର ଯେତେ ବ୍ୟଥା ଜଞ୍ଜାଳ
ଦଳି ଚୂଲେ ମୋର ପାଦେ
ଯେ ଗାନ ଗାଇଲେ ମହାସୃଷ୍ଟିର ପ୍ରତିରେଣୁ ତନ୍ତୁ
ଆଶ୍ଳେଷ ଉଠେ ଜାଗି,
ସେଇ ଗାନ ମୋର ରସନାର ପ୍ରତି ତନ୍ତ୍ରୀ ଭିତରେ
ଦିଅ ମେଲ, ଯାଏ ମାଗି !

---

# ଯେଉଁଠି

ଅପମାନ ପାଇ ମଣିଷ ଯେଉଁଠି
   ଲୁହ ପୋଛି ଫେରି ଆସେ,
ଯେଉଁଠି ତାରେ କେ ଗ୍ରହେଁ ନାଇଁ ଲବେ
   ମୁଗ୍‌ଧ ମଧୁର ହାସେ,

ଅନାଥ ପରାଏ ପଡ଼ିଥାଏ ଏକା,
ନୀରବ ଅଶ୍ରୁ ଯାଉଥାଏ ଦେଖା,
ତା ଅଧୀର ବୁକେ ଶାନ୍ତ ଦେବାକୁ
   ଯାଏ ମୁଁ ତାହାର ପାଶେ;
ଅପମାନ ପାଇ ମଣିଷ ଯେଉଁଠି
   ଲୁହ ପୋଛି ଫେରି ଆସେ ।

ହତାଶ ନୟନେ ମଣିଷ ଯେଉଁଠି
   ଜଡ଼ ପରି ରହେ ପଡ଼ି,
ଯାଏ ନାଇଁ କେହି ଆଶାର ଆଲୋକ—
   ବହି ତାହା ପାଶେ ଧରି ।

ଲାଗେ ଅନ୍ଧାର ଚଉଦ ଭୁବନ,
ଦେଖୁଥାଏ ଖାଲି ବିଷାଦ ସପନ,
ଦେଖାଏ ତା'ରେ ମୁଁ ଗତ ସୁନା ଛବି
   —ପ୍ରାଚୀ ସିନ୍ଦୂର ଭଳି
ହତାଶ ନୟନେ ମଣିଷ ଯେଉଁଠି
   ଜଡ଼ ପରି ରହେ ପଡ଼ି !

ମଣିଷ ଯେଉଁଠି ପ୍ରପୀଡ଼ିତ ହେଲେ
   ବୁଲେ ହୋଇ ଦିଗହରା
ପ୍ରତି ପଦେ ତାରେ ଜୀବନ ଲାଗଇ
   ଦୁର୍ବହ ଭାର ପରା

ଦୈନ୍ୟ ଅଭାବ ଅବସାଦ ଭୟ
ଜୀବନକୁ କରେ କଜଳ ଅଥୟ
ସମ୍ମୁଖେ ତାର ଜାଗେ ମୁହିଁ କବା
   ଉଜ୍ଜ୍ୱଳ ଧ୍ରୁବ ତାରା !
ମଣିଷ ଯେଉଁଠି ପ୍ରପୀଡ଼ିତ ହେଲେ
   ବୁଲେ ହୋଇ ଦିଗହରା !

ମଣିଷ ଯେଉଁଠି ସଇତାନ ସହ
ସଂଗ୍ରାମ କରି କରି…
ସକଳ ଶୋଣିତ ଅକାତରେ ଢାଳି,
ଯାଇଥାଏ ଥକି ପଡ଼ି
ଦିଶୁଥାଏ ମୁଖ ଉତ୍ସାହ ହୀନ,
ଦିନୁ ଦିନ ତନୁ ହେଉଥାଏ କ୍ଷୀଣ,
କୋଟି ସାହସର ସିଂହ ସୃଜେ ମୁଁ
ତାରି ବୁକୁତଳ ଭରି ।
ମଣିଷ ଯେଉଁଠି ସଇତାନ ସହ
ସଂଗ୍ରାମ କରି କରି…
ମଣିଷ ଯେଉଁଠି ନିରୁପାୟ ହୋଇ
ଡେକୁଥାଏ ତାର ପ୍ରାଣ !
ନିଭି ଯାଉଥାଏ ସକଳ ଶକତି,
ମନର ଗଭୀର ଟାଣ
ଦୁର୍ଦ୍ଦଶା ପରେ ଦୁର୍ଦ୍ଦଶାମାନ,
କାନେ ଢାଳୁଥାଏ ବ୍ୟର୍ଥର ଗାନ,
ସାର୍ଥକତାର ସଞ୍ଜିବନୀରେ
କରିଦିଏ ମୁହିଁ ସ୍ନାନ,
ମଣିଷ ଯେଉଁଠି ନିରୁପାୟ ହୋଇ
ଡେକୁଥାଏ ତାର ପ୍ରାଣ ।

---

# ସେ' ଦିନର ସେଇ ପଲ୍ଲୀ ଗାଆଁ

ସେ' ଦିନର ସେଇ ପଲ୍ଲୀ ଗାଆଁ ପାଲଟିଛି ବଡ଼ାଟ ସହର,
ବିଦ୍ୟୁତର ଆଲୋକ-ଉତ୍ସବେ ଚତୁର୍ଦ୍ଦିଗ ଦିଶେ ଝଲମଲ !
ଠାଏ ଠାଏ ମୃଣ୍ମୟ ଟେକି ଠିଆ, କେତେ କେତେ ବଡ଼ଦିନ ଦୋକାନ ;
କେତେ କାହିଁ କଲ କାରଖାନା ଗର୍ଜି ଉଠେ ଦିବସ ତମାମ

ଘାଟ ଦିନ ସବୁବେଳେ ଦେଖେ ଘୂସାଘାଟ ଜନ ଗହଳରେ—
ଭରପୂର, କେ' କାହିଁ ଯାଉଛନ୍ତି, ଚାହିଁଛୁଏ ନାହିଁ କା'ରେ ତଳେ ;

ସନ୍ଧ୍ୟା ହେଲେ ଯୁବା ଯଉବନୀ ପିନ୍ଧି କିବା ବିଚିତ୍ର ପୋଷାକ
ବୁଲୁଚନ୍ତି, ପିଚୁ ରାସ୍ତାପରେ ବସେ ବନ୍ଧୁ କି ମଧୁ ସଭାଗ !

ସେ' ଦିନର ସେଇ ପଲ୍ଲୀଗାଆଁ ପାଲଟିଚି ବିରାଟ ସହର,
ମୁଁ ଖୋଜୁଚି କି ଶିଶୁ ଏ ଥାନେ, ହଜିଅଛି କି ନିଧି ମୋହର ?
ଏ ଅନନ୍ତ ସାଜସଜା ମେଳେ, କି ସମ୍ପଦ ଯାଇଚି ମିଳାଇ,
ମନେହୁଏ ଜନ୍ମ ଜନ୍ମ ଧରି ତା'ରେ ନାଇଁ ପାରିବି ବା ପାଇ !

ସୀମାହୀନ ଏ ସୌଭାଗ୍ୟ ମେଳେ ମୁଁ ଖୋଜୁଛି ସେଇ ପଲ୍ଲୀ ଗାଆଁ
ମୋ ସମ୍ପଦେ ଉଠନ୍ତା ଯେ' ନାଚି, ଦୁଃଖେ ମୋର କରନ୍ତା ଯେ' ଆହା !

---

## ମୁଁ'ତ ଜଣେ କବି !

ଜୀବନସାରା କବିତା ଲେଖି ଲେଖି,
ଅଧ ଶଗଡ଼େ କାଗଜ ଜମା କଲି,
ବେଳ ପାଇଲେ ଟିକିଏ ଯାଏ ଦେଖି
କି ମଧୁଶିଶୁ ରହିଚି ତହିଁ ଭରି ;

କେଉଁଠି କେବେ କି ଗୀତ ଥିଲି ଲେଖି
କି ଭାବଧାରା କେଉଁଠି ଅଛି ରହି,
ଟିକିଏ ଦେଲେ ସରାଗେ ତାକୁ ପଢ଼ି,
ଓଠରେ ମୋର ଫୁଟଇ ସୁନା ଛଇ !

ଖାଇଲା ବେଳେ ଶୋଇଲାବେଳେ ପୁଣି
ବୁଲିଲାବେଳେ ପାହାଡ଼ ବଣବନେ,
କବିତା କଥା ଚିନ୍ତା କରେ ଖାଲି,
କହେ ବା କେବେ ମୋହର ବନ୍ଧୁଜନେ !

କେ' ମନ ଦେଇ ଶୁଣେ ମୋ ଗୀତ ଅବା,
କେ'ଠିକେ ଶୁଣି ମାରବେ ଯାଏ ଚାଲି,
କେ' କହେ ଏତେ ଲେଖି ବା କିସ ହେବ ?
ଚାହୁଲାଙ୍କୁ ଏ ଯୋଗ୍ୟ ନୋହେ ପାରି !

କେ କହେ କିଆଁ ଲେଖୁନ ପାଠ୍ୟ ବହି ?
ମିଳିବ ବହୁ ପଇସା ସେଇ କାମେ
ଏଭଳି ଗୀତ ସାତ ଶଗଡ଼ ଲେଖି
ପଢ଼ି ସେ ଥିବ, ଖ ଇବେ, ଢ଼ଇମାନେ !

ଆନ କେ’ କହେ ପଣ୍ଡ ପରିଶ୍ରମ
—କବିତାରେ କି ଉଠିବ ଦେଶ ଜାତି ?
କାହିଁକି ବୃଥା ଲେଖୁଚ ଏ ଲୋକଟା
ପାଗଳ ପରି ନିପୂତ ଦିବା ରାତି !

ନିଜକୁ ଦେଖେ ଦେଖେ ମୁଁ ଆନ ଜନେ
ପୋଷାକ ପତ୍ର କୋଠା ଓ ବାଡ଼ି କରି
ହାଇମି ଦେଖାଇଥାନ୍ତି କେତେ ରୂପେ
ମୁଁ ବସିଥାଏ କଲମ ଖାତା ଧରି ।

କେ କହେ ମୋର ପଢ଼ୁଚି ପୁଅ ବି. ଏ.
ଏଥର ହେବ ଡେ଼ପୁଟି ମାଜିଷ୍ଟ୍ରେଟ
କେ’ କହେ ମୋର ହେଉଚି କୋଠାତୋଳା—
ପଡ଼ିବ କାଲି ଚୂନ ଓ କଂକ୍ରେଟ !

ସଜାଏ କିଏ ତା ବଇଠକ ଖାନା
ଆସବାବ ପତ୍ର କଟକୁ ନିଏ କିଣି,
କେ’ କହେ ମୋର ନହେଲେ ଗୋଟେ ଟ୍ରକ୍
ବ୍ୟବସାୟଟା ଭଲତ ଚଳିବନି ।

ନଖିଲ ଏଇ ଦୁନିଆଟାରେ ମୁହିଁ
କବିତା ଲେଖେ କବିତା ଲେଖେ ଖାଲି
ଗୃହର ଘରେ ମୋ ଦିନ ବିତିଯାଏ
ଶୁଏ ମୁଁ ଖାଲି ସଅପଟିଏ ପାରି ।

ମୋ ପାଖେ ବେଶି ଆସନ୍ତିନି ଲୋକେ
ଟଙ୍କା ପଇସା କରେନି ଦିଆ ନିଆ
ଶାଗ ଭାତ ଯେବେ ବା ଯାହା ଥାଏ,
ସେଥିରେ ମୋ’ର ଚଳଇ ଖିଆ ପିଆ ।

ଦୁଃଖ ଅଭାବେ ରହିଲେ ମଧ ମୁହିଁ
କବିତା ଲେଖି ସୁଖୀଥାଏ ମୋ ମନ,
ଦୁନିଆ ଆଖିରେ ଗଣିତା ନୁହେ ମୁହିଁ
ମୁଁ ଯେ ଜଣେ ବିଶ୍ୱ କବିଜନ ।

ସାଙ୍ଗ ସାଥି ବନ୍ଧୁ ପରିଜନ ।
କହନ୍ତି 'ଏଟା ନପଟ ନବୁଝିଆ',
ଅକାମୀ ତୁମେ କୁ'ଥିକ ଯୋଗ୍ୟ ନୁହଁ,
କହନ୍ତି ମତେ ବେଳେ ବେଳେ ମୋ ପ୍ରିୟା;

କର୍ମକ୍ଷେତ୍ରେ କେଉଁଠୁ କେତେ ରୂପେ
ମୋ ପରେ ହୁଏ ସମାଲୋଚନା କଟୁ
ମୁଁ ଯେହେତୁ ଏ ଧରଣୀ ମାଟି ପରେ
ସକଳ କର୍ମେ ନୁହଇ ମୋଟେ ପଟୁ !

ଧଳାକୁ କଳା କରିବା ଜଣା ନାହିଁ,
ଜଣାତ ନାହିଁ କରିବା ଯୁଆଚୋରି
ମୁଁ ତ କବି କେବଳ ଜଣେ କବି
ଥାଏ ମୁଁ ବସି କଲମ ଖାତା ଧରି !

ମୋ ଜୀବନ ଦୁନିଆ ଆଖିରେ ହାଇ !
ବାଏଁ ବାଏଁ ଉଡ଼ିଯିବତ ଯାଉ,
ଦୁଃଖ ନାହିଁ ଶୋଚନା ନାହିଁ ଲବେ
ଯିଏ ବା ମତେ ଯେ ଭଳି ରୂପେ ଗ୍ରହୁଁ ।

ମୋ କବିତାର କାଟତି ପଛେ ନୋହୁ
ମୋ କବି ପ୍ରାଣର ନ ହେଉ ସମାଦାର
ଝାଟି ମାଟିର କୁଟୀରେ ଜୀବନ ବିତୁ
ପୋଷାକ ପଛେ ନଥାଉ ଆଡ଼ମ୍ବର ;

ମତେ ଯେ ଭାବେ ବା ଚିହ୍ନ କରୁ,
କ୍ଷୁଣ୍ଣ ନୁହେ ଲବେ ସେଥିରେ ମୁହିଁ,
ମୁଁ ତ କବି ମୁଁ ତ ଜଣେ କବି !
ପ୍ରିୟ ଏ ମୋର ନିଖିଳ ବିଶ୍ୱ ଭୁଇଁ ।

ଉପରେ ଆକାଶ ତଳେ ଏ ବସୁନ୍ଧରା,
ଅସୀମ ପ୍ରାଣର ମୋହନ ଲୀଳା ଧର
ଅସୀମ ଯୁଗୁ କ ମହାଲକ୍ଷ୍ୟ ବହ୍ନି
ଚୁଲିଚ କଏ ପାରିବ ଅବା କଳ ?

ମୁଁ ତାକୁ ପାଏ ହୃଦୟ ଭରି ଭଲ,
ମୁଁ ତା'ରେ ଦିଏ, ମୋହର ଯାହା ଦାନ,
ତା' ଲଗି ଢାଳେ ନୟନୁ ଅଶ୍ରୁଜଳ,
ସେଇ ଯେ ମୋର ପ୍ରାଣରୁ ବଳି ପ୍ରାଣ !

ମୁହିଁ ଯେ ତ୍ୟାଗ, ତ୍ୟାଗୀ ତାହାର ପାଇଁ
ତାହାରି ବୁକୁରେ ଦେବାକୁ ମଧୁ ଭରି
ଭୁଲିଚ ନିଜକୁ ; କେବଳ ତା'ରେ ଚୁହିଁ
ବାହି ନିଏ ମୋ ପ୍ରାଣର କାବ୍ୟ-ତରୀ !

ମୋହର ଘର ବଇଠ ଏଇ ମାଟି
ଏଇ ଯେ ମୋର ପ୍ରାଣର ଚିରସାଥି ;
ଏହାରି ପାଇଁ କବିତା ଲେଖି ଲେଖି
ପୁଣ୍ୟ ପୁଲକେ ଭରି ଉଠେ ମୋ ଛାତି !

ମୋହର ହୋଇ ନିଜର କିଛି ନାଇଁ,
ମୋର ଯେ' ସବୁ, ଧରଣୀ ଆକାଶ ଏଇ !
ନିଜରେ ଦିଏ ମୁଁ ଅସୀମ ଗଉରବ,
ମୋହର ଟିକକ ତାହାରେ ଦେଇ ଦେଇ !

---

# ଜଣେ ବନ୍ଧୁଙ୍କର ଖଣ୍ଡିଏ ଚିଠି ପଢ଼ି

ଯେତେଥର ଚିଠିପାଏ ତୁମ କାନ୍ତ କରୁ
ମୂଳରୁ ମୁଁ ଶେଷଯାଏଁ ସବୁ ପଢ଼ୁ ପଢ଼ୁ,
ଉଲ୍ଲସି ଉଠଇ ମୋର କବିର ଅନ୍ତର
କେତେ ଆଶା ଉନ୍ମାଦନା ଉତ୍ସାହ ସ୍ରୋତର
ଅମୃତ ପରଶ ଲଭି ! ମୋ ଲାଗି ତୁମ୍ଭର,
ଦୟା-ଦାନ-ଭିକ୍ଷାର ଅପରୂପ ଝରା,

ଉନ୍ମୁକ୍ତ ରହିବ ନିତ୍ୟ, ଯେତେ ଗୁରୁତର—
କାମ ଥାଉ, ମୋହ ପାଇଁ ତୁମ ଅଭ୍ୟନ୍ତର—
ସେ କେଉଁ ଗୋପନ ପୁରେ, ଫୁଟଇ ସ୍ପନ୍ଦନ,
ତାପ ଦଗ୍ଧ ଏ ହୃଦୟେ ଶୀତଳ ଚନ୍ଦନ
ବୋଳିବାକୁ ଅକୁଣ୍ଠିତେ ! କେମନ୍ତେ ମୁଁ କବି
ଭୁଲିବି ଏ ଦାନ ତବ ? କେବଳ ସମ୍ଭବ
ପାରିବ ମୋ କବିତାରେ, ଗାଇ କୀର୍ତ୍ତି ତବ ;
ନିର୍ଯ୍ୟାତିତ ପ୍ରାଣେ ତୁମେ ଅମୃତ ଆସବ !

---

# ଯେବେ ଭୁଲିଯାଏଁ ଆଉ ଥରେ

ଜୀବନର ଅନ୍ତିମ ପ୍ରୟାଣ ବେଳେ,
ମୁହିଁ ହେଲେ ରହିଥାନ୍ତି ପାଶେ !
ତୁମେତ ଉଭାଇଗଲ ଗୋଟିଏ ସପନ ପରି,
କେଉଁ ଦୂର ଅଜ୍ଞାତ ପ୍ରବାସେ !
ମୁଁ ତୁମକୁ ଦେଖିଥାନ୍ତି,
ତୁମ ପାଇଁ କାନ୍ଦିଥାନ୍ତି ନେତ୍ରୁ ଲୁହ ଢାଳି,
ତୁମ ଦୁଃଖ କଷ୍ଟ ରୋଗ ଯନ୍ତ୍ରଣାରେ
ଆପଣାକୁ କ୍ଷଣେ ପାଇଁ ଦେଇଥାନ୍ତି ଜାଳି ;
ବୈତରଣୀ ତୀରେ ଯହିଁ ତୁମ ତୁଲେ ବସି
ଶୁଣୁଥିଲି କଳକଳ ଗୀତି,
ସେଠି ତୁମ ଚିତାଅଗ୍ନି ଜଳିଥିବ,
ଚାହିଁଥାନ୍ତି ସେ ଚିତା ଅଗ୍ନିରେ
ହୃଦୟର ସମସ୍ତ ମମତା
ଆହୁରି ବଳାଇ କରି ଢାଳି ଦେଇଥାନ୍ତି
ଯେପରି ଘୃତାହୁତି ;
ତୁମରି ସେ ଚିତାନଳ ପାଖୁ
ଫେରିଥାନ୍ତି କାନ୍ଦି କାନ୍ଦି ଅଧୀରେ ଉନ୍ମନେ ;
ମଞ୍ଚ କରି ଗୃହୁଁଥାନ୍ତି କୁଞ୍ଚିତ ସେ ଧୂମାନଳେ ତବ
ପ୍ରାଣ ଯେବେ ଗଭୀର ବେଦନେ
ହୁଅନ୍ତା ସନ୍ତୁଳ, ଘନ୍ନୁ ଅତି ଘନେ ;

ତୁମ ଆତ୍ମୀୟ ସ୍ୱଜନ-ଭାଇ ବନ୍ଧୁ ବାପ ମାଆ
ପତ୍ନୀ ପୁଅ ଝିଅ ପାଖ ଓ ପଡ଼ଶା
ଯେବେ କାନ୍ଦଥିବେ ଅଶ୍ରୁସିକ୍ତ କରି—
ଏ ଧରଣୀ ମାଟି,
ସେ ସବୁରେ ମୋ ଆଖିର ତପ୍ତ ଲୁହଧାର
ଡାଳ ଦେଇଥାନ୍ତି ;
ଦୂରେ ଦୂରେ ବହୁଦୂରେ ସହସ୍ର ଯୋଜନ ପାରେ
ରହିଥିଲେ ମଧ୍ୟ,
ଯାଇଥାନ୍ତି ତୁମ ସେଇ ଝଲ ବନ ଘେରା
ଦରିଦ୍ର କୁଟୀରେ,
ବସିଥାନ୍ତି ତୁମ ସେଇ ମରଣ ଶଯ୍ୟାର ଧାରେ ;
ହାତ ଗୁଳ ତୁମ ସେଇ—
ହିମ ଜଡ଼ ନିର୍ଜୀବ ଶରୀରେ,
ପାଇଥାନ୍ତି ପରିତୃପ୍ତି
ଜୀବନର ଶେଷ ଗଉରବ,
—ହୋଇଲା ନ ସମ୍ଭବ ;

—ଦୁଇ—

ଗଙ୍ଗାଧର ! ଗଙ୍ଗାଧର !
ଜୀବନର କେଉଁ ସୁଦୂର ଅତୀତେ
ତୁମ ତୁଲେ ବାନ୍ଧିଥିଲି ବନ୍ଧନ ମୁଁ
ନିବିଡ଼ୁ ନିବିଡ଼ତର,
ତୁମପାଇଁ ଦେଖୁଥିଲି କେତେ ସ୍ୱପ୍ନ
ହବା ନଶିଥିମା ଅବିରଳ !
ତୁମେ ଗୁଲିଗଲ ! ଗୁଲିଗଲ !
ଚିରଦିନ ପାଇଁ ଗୁଲିଗଲ !
ଜୀବନର ଯୌବନ ବୟସେ
ତୁମର ଯେ ପ୍ରିୟଜନ ସହପାଠୀ
ତାଙ୍କୁ ମୁଁ ଦେଖୁଚି ସବୁବେଳେ,
ତୁମକୁ ତାଙ୍କର ମେଳେ
ଦେଖିବାକୁ ପାଇଲିନି,
ଗୋଟିଏ ନିମିଷେ !

—ତିନି—

ତୁମେ ଗଲ କେଉଁଆଡ଼େ
ଲୁଚିଗଲ ତମେ !
ତୁମ ପ୍ରାଣର ଅମୃତ ଟିକକ
ଦେଇଗଲ ମତେ
ମୁଁ ସେଇଟିକ ଧରି
ତୁମକୁ ହେଉଛି ଖୋଜି
ଦୂର ଦିଗ୍‌ଚକ୍ର ଧରି ଏଇ ଅନନ୍ତ ଜଗତେ ।
ବୈତରଣୀ ତାଉଆ ତେଉ
ତୋଳି ତୋଳି,
କଲତାନ ରଚି ରଚି
ଯାଉଥିବ ବୋହି ବୋହି
ତୁମ ସେଇ ଗାଁ ତଡ଼େ ତଡ଼େ,
ପନସ ବେତସ ଆମ୍ର ବନ କୁଞ୍ଜମାନେ ।
କେତେ ଯେ ପ୍ରଭାତ ସନ୍ଧ୍ୟା
କେତେ ଜ୍ୟୋସ୍ନା ରାତି—
ପ୍ରାଣ ବିମୋହନ ରୂପ
ଚଂଚଳ ତରଙ୍ଗେ ନାଚି
ଯାଉଥିବ ତଳି ତଳି, ଏକ ପରେ ଆନ,
ଗୋରୁ ଗୋଠ ଫେରୁଥିବେ ନଈ ତଡ଼ୁ,
କାଠୁରିଆ ହାଣୁଥିବ କାଠ,
ଟୋକାମାନେ କାହିଁ
ହସିଖେଳି ଉଦ୍ଦାମ ପୁଲକେ
କେତେ ଯେ ତରୁଣ ଯାତ୍ରୀ
ଯା' ଆସ କରୁଥିବେ ନଈ ତଡ଼େ ତଡ଼େ
ତୁମ ଗାଁ ମୁଣ୍ଡ ମାଟି ସଡ଼କରେ ।
ଫୁଟିଥିବ କନିଅର ଫୁଲ,
ତୁମ ଗାଆଁ ନଈ ତଡ଼େ ତଡ଼େ
ବର ଓହଳରେ ଧରି,
ଦୋଳି ଖେଳୁଥିବେ କେତେ
ଗାଈ-ଜଗା ପିଲେ,

ଏ ସବୁ ଭିତରେ ମୁହିଁ
ବୁଲିଥିଲି ଦିନେ ତୁମ ଭୁଲେ,
ସେ ସବୁତ ରହିଥିବ ସେଇପରି !
କା’ ଓଠେ ଫୁଟିବ ହସ ?
କାହା ପ୍ରାଣେ ଖେଳିଯିବ
ଉତ୍ସାହର ତଡ଼ିତ ପ୍ରବାହ ?
କାହା ପାଦ ପଡ଼ିବନି ତଳେ ?
ମୁହିଁ ଯେବେ ସେ ଭୂଇଁରେ
ବୁଲିଯାଏଁ ଆଉ ଥରେ !

———

# ଯିବନି ଯିବନି ଫେରି !

—ଏକ—

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି,
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ
ରହିଥାଉ ମତେ ଘେରି,
ଯିବନି ଯିବନି ଫେରି ;

ଶତେକ ଊର୍ମି ବାହୁତୋଳି କିଏ ଆଶ୍ଳେଷ କରେ ମତେ,
କାହା ନୟନର ଅସୀମ ନୀଳିମା ନିର୍ମଳ ନଭ ପଥେ—
କେଉଁଣ ଅଜଣା ଅମୃତଧାମେ, ନେଉଛି ନେଉଛି କିଏ,
କାହାର ବିଶାଳ ହୃଦୟୁ ପରଶ କିଏ ମୋରେ ଯାଚି ଦିଏ !
କଳ୍ପ ଲୋକର କନକପୁରୀରେ କିଏ ଡିଆକରେ ମତେ ।
କିଏ ସେ ବିରାଟ ଚିର ସୁନ୍ଦର ଧରି, ଧରି ନୁହେ ସତେ !

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି,
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ
ରହିଥାଉ ମତେ ଘେରି,
ଯିନନି ଯିବନି ଫେରି ;

—ଦୁଇ—

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି,
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ,
ରହିଥାଉ ମତେ ଘେରି.
ଯିବନି ଯିବନି ଫେରି ;

ମହା ବିରାଟର ମହା ଅସୀମର ସାମାନ୍ୟ ମୁହିଁ ରେଣୁ
ସେଇ ଅସୀମର ସାଥେ ହସି ଖେଳି ବଜାଏ ଅସୀମ ବେଣୁ ;
ସେହି ମହା ନଟ ସାଥେ ତାଳେ ତାଳେ ନୃତ୍ୟ ମୁଁ କରେ ଆଜ
ଛନ୍ଦେ ଛନ୍ଦେ ମହା ଅସୀମର ଗାଇ ସଙ୍ଗୀତ ରାଜ ,
ଅସୀମ ମୁଁ ଆଜ, ଅରୂପ ମୁଁ ଆଜ, ମୁହିଁ ଅମୃତ ପ୍ରାଣ
ମହା ଆଲୋକର ଉଚ୍ଛ୍ୱାସେ ଆଜ କରେ ମୁଁ ଗଭୀର ସ୍ନାନ ;

ମୁଁ ଯିବନି ଯିବନି ଯିବନି କୁଟୀରେ ଫେରି
ଏ ନୀଳ ଚିଲିକା, ଏ ନୀଳ ପାହାଡ଼, ଏ ନୀଳ ଆକାଶ,
ରହିଥାଉ ମତେ ଘେରି,
ଯିବନି ଯିବନି ଫେରି ;

---

# ସେ' ଦିନ ଆସିଲା !

ସୁଦୂର ବିଦେଶ ବାସେ ଗାଆଁ ଘର ଛାଡ଼ି,
ଆସିବାର ହେଲାଣି ମୋ ମାସୁଟିଏ ପରି ;
କେତେତ ଖୋଜିଲି ଏଥି ଦେଖନ୍ତି ତୁମରେ !
ଥିଲି ଏଥି ମୋହ ଭୁଲେ ବରଷକ ତଳେ,
ବିଲ ବଣ ପରବତ, ପାହାଡ଼ ପ୍ରାନ୍ତର
ପଥଘାଟ, ନଦୀତଟ ଝରଣାର ଝର,
ଏ ସକଳ ମେଳେ ଯେବେ ବୁଲୁଥାଏ ଏକା
ଖୋଜୁଥାଏ, ପାଆନ୍ତି ବା, କେବେ ତୁମ ଦେଖା !
ସେବେ ତୁମେ ଶଇଶବ ଚପଳ ବେଶରେ,
ହସି ଖେଳି ରହିଥିଲ ସାଙ୍ଗ ସାଥି ମେଳେ ;
ସେନେହ ସୋହାଗେ ମୋରେ କହୁଥିଲ କଥା
ଶତ ସନମାନେ ଲୋଇଁ ମୋ ଚରଣେ ମଥା !

ତରୁଣ ବୟସେ ଏବେ କେତେ ଦୂରେ ତମେ
ପଢ଼ୁଥିବ କେତେ ଆଶା ଖେଳାଇ ଜୀବନେ ;
ନିତ ନିତ ଦେଖୁଥିବ କି ମଧୁ ସପନ !
ତରୁଣ ମୋହନ ତେଜେ ସେହି ହନୁ ହନ ;
ପ୍ରାଣ ଉଠୁଥିବ ନାଚ ଅସୀମ ହସାରେ
ମିଶିଯିବା ଲଗି କେଉଁ ମହା ପାରାବାରେ ;
ଲକ୍ଷ ଲକ୍ଷ ଊର୍ମି ପହିଁ ଉଠୁଥିବେ ଫୁଟି,
ନାଚ ନାଚ ପଡ଼ୁଥିବେ ବେଳା ଭୂମେ ଲୋଟି
ସେ ମୋହନ ଶିରୀ ନାଇଁ କରେ ଆଲିଙ୍ଗନ
ଜୀବନ ହଣିବ କେବେ ଜୀବନ୍ତ ମୋହନ ?
କି ବିରାଟ ହୋମ ଶିଖା ଜଳାଇ ଜୀବନେ,
ରହିଥିବ କେତେ ଦୂରେ ଦେଖିଥାନ୍ତି ଷଣେ ।
ଏତେ ଏତେ କଥା ଭଲ ରହିଚ ଅନାଇଁ
ସେ ହନ ଆସିଲ ମୋରେ ଦେଖିବାର ପାଇଁ ।
ଅଧର ଅମୃତ ହାସେ, ସ୍ନେହ ସନମାନେ
ନିମିଷେ ମିଶାଇ ଦେଲ ଆପଣା ପରାଣେ ।
ଏକାକୀ ଜୀବନ ଧରି ମୁଁ ରହିଚ ପଡ଼ି,
ସାରା ଜୀବନଟା ମୋର ଗଲା ଏଇପରି ।
ସମ୍ମୁଖେ ଚାହିଁଲେ ଦେଖେ ଶୂନ୍ୟ ଏ ଜୀବନ
ହସିଲେକି କା'ସୁଖଶିରୀ ପୂରିଯିବ ମନ ?
କାହାର ବିଜୟ ଅବା ଗୌରବ ଦେଖି
ଠିଆହେବି ସାତ ପାଞ୍ଚେ ମୋର ମଥା ଟେକି ;
ବିପଦେ ଆପଦେ କାହିଁ ପଡ଼ିଗଲେ ଲଇଁ
ପାଶେ ପାଶେ ସବୁବେଳେ କେ' ପାରିବ ରହି ?
କାହାରେ ଭରସା କରି କାଟିନେବି କାଳ
ବାଧିବନ୍ଧ ଧରଣୀର ବିଷମ ଜଞ୍ଜାଳ !
ଯେ ହନ ଆସିଲ ଫେରି ଏ ସୁଦୂର ବାସେ,
ଲୋଚନୁ ଲୋତକ ଢାଳି, ସକରୁଣ ଭାଷେ—
କହିଲେ କୁଟୀର ରାଣୀ, "ଥିବେ କି ଯେ ନାଇଁ ?
ସେ ଥିଲେ ମୁଁ ଭଲହେବି କମ୍ପା ତମ ପାଇଁ ?
ପୁଅରୁ ଅଧିକ ସେ'ତ ଦେଖିବେ ତୁମରେ"
ନାହାନ୍ତି ସେ କେତେ ଆଶା ରଖି ତୁମ ପରେ !

ପାଦ ମୋ ପଡ଼ନ୍ତୁ ତଳେ ବଳେଇ ତୁମରେ
ଘାରଚ ନଜର ହୋଇ ମୋର ଧଗ୍‌ତଳେ !
କ ସମ୍ପଦ ଲୋଡ଼ା ମୋର ଅଧିକ ଏ ତହୁଁ,
ଏ ମୋହନ ଶିଷ୍ଟିକ ଚିର-ଦିନ ରହୁ ।
ବିଗ୍ରୁଟୁ ବିଗ୍ରଟ ହୁଅ ଅନନ୍ତ ପ୍ରସାରେ
ଏଇ ମହା ଆଶୀର୍ବାଦ ତୁମ ଶିରେ ଢାଳେ,
ତୁମ ଅଇଶ୍ୱର୍ଯ୍ୟ ଶିଶ୍ର ଚିର ଦିନ ଗୃହିଁ,
କେଉଁ ମହାଶୂନ୍ୟେ ଯାଉ ମୋ ପ୍ରାଣ ମିଳାଇ !

---

## ଚିର ଭିକ୍ଷୁକ

ସେଇ ଅମୃତଭରା ହସଟିକ,
ନିତ ଦେଖିବାକୁ ମୁହିଁ ଆସିଥାଏ ;
ମୁଁ ତ ସାରା ଦିନ ଆରେ ବୁଲି ବୁଲି
ସେଇ ନିଧିଟିକ କାହିଁ ନାଇଁ ପାଏ !

ମୋରେ ଦେଖିଲେ ତା' ଟିକି ହାତ ଟେକି,
କିବା ଆନନ୍ଦେ କୋହ କୋହ ହୋଇ,
ସେ'ତ ମୋ ବୁକୁ ଉପରେ ତଳି ପଡ଼େ,
ମୋରେ ଜୁଲୁ ଜୁଲୁ ଜୁଲୁ ରହେ ଗୃହିଁ !

ସେ'ତ ହସୁଥାଏ ଖାଲି ହସୁଥାଏ !
ନାଲି ଓଠଟି ମେଲଇ ବାର ବାର,
ମୋରେ ଜାଣୁ ନ ଜାଣୁ କି ଆସେ ଯାଏ ?
ସେ'ତ ଜୀବ, ଅମୃତ ଝରଣାର !

ମୁଁ ଗୋ ! ଗୃଲିଗଲେ ସେ'ତ ରହେ ଗୃହିଁ,
ଟିକି ଓଠେ ତା' ଖେଳାଇ ସେଇ ହାସ,
ସେଇ ଟିକି ହାତ ଦୁଇ ଥାଏ ଟେକି,
ତା'ରେ ଗୁଡ଼ିଯିବା ପାଇଁ ଲାଗେ ତ୍ରାସ ?

ତା'ରେ ଧରିବାକୁ ପୁଣି ମନ ହୁଏ
ମୁଁ ଗୋ ଧଇଲେ, ମୋ ପାଖେ ଖସି ପଡ଼େ
ନୋହି ଶଙ୍କିତ, ନୋହି ସଚକିତ,
କିବା ଭାଗ୍ୟବାନ୍ ମୁଁ ମନେ କରେ !

ମତେ, ଛୁଡ଼ିବାକୁ ସେ'ତ ରାଜି ନୁହେ
ଛାରେ ଛୁଡ଼ି ଆସିଲେ, ସେ ରହେ ଗୃହିଁ !
ତାର ସେ ଓଁଠ ହାସରୁ ଝୋପାଟିଏ,
ଅବା ଆଗ୍ରହେ ମୋରେ ଦେବା ପାଇଁ !!

ସେତ ମୁକ୍ତ ହୃଦୟେ ଦେଇ ଯାଏ,
ମୁଁ କି ନେଇପାରେ ସେଇ ନିଧିଟିକ ?
ମୁଁ ଗୋ କିବା ଦିନ ରାତି ପଡ଼ିଥାଏ,—
ହୋଇ ତା' ଦୁଆରେ ଚିର ଭିକ୍ଷୁକ !!

---

# ପଡ଼ିଛି ଏ ଶ୍ରମିକଟି ଶୋଇ !

ଦିନଯାକ ହାଡ଼ଭଙ୍ଗା କାମ କରି କରି,
କ୍ଳାନ୍ତ ଆଜ ଅବସାଦ ଭରେ,
ପଡ଼ିଛି ଏ ଶ୍ରମିକଟି ଶୋଇ,
ବିସ୍ତୀର୍ଣ୍ଣ ମୁକୁଳା ଏଇ ଘାସ ପଡ଼ିଆରେ !
ମାରୁଛି ଘୁଙ୍ଗୁଡ଼ି,
ଆରାମେ ପଡ଼ିଛି ଶୋଇ,
ସବୁ ଦୈନ୍ୟ, ଅଭାବ ଜଞ୍ଜାଳ ଜାଲା,
ଯେହେତୁ ଯାଉଅଛି ଭୁଲି !
ଶୋଉ ! ଶୋଉ ! ଆହୁରି ନିବିଡ଼ ନିଦେ ଶୋଉ ;
ସାଥୀ ! ତାରେ
ଉଠାଅନି ଉଠାଅନି କେହି ;
ପ୍ରାଣ ଦାମୀ ସୈନିକ ସେ

ଏ ମାଟିର, ଏ ଦେଶର, ଏଇ ସମାଜର
ଗୃହଁଚ କ ତାରେ,
ଅବଜ୍ଞାର ଦୃଷ୍ଟି ଡାଳ ?
ନା ! ନା ! ଶୋଉ ସିଏ, ଆହୁର ନବଡ଼ ନଦେ,
ପୃଥିବୀର ଏ ଘାସ ଶଯ୍ୟାପରେ,
ପୃଥିବୀ ତାହାର ଘର,
ଘର ତାର ବନ୍ଧା ନୁହେ
କ୍ଷୁଦ୍ର ମାଟି ଡେକକରେ ।
ଗୃହଁ ତାରେ, ପ୍ରାଣ ଭର
ହୃଦ ଭର ଗୃହଁ ତାରେ ଥରେ ;
ଯାତ୍ରି ! ତୁମେ ଯାଉଅଛ
ଏଇ ପଥପାର୍ଶ୍ୱେ, କର କୋଳାହଳ !
ଯାଅ, କନ୍ତୁ
ଭଙ୍ଗିନ ତାହାର ନଦ,
ଦଅ ତାରେ କ୍ଷଣେ ଅବସର ;
ଭଲ କର ଶୋଉ ସିଏ, ଦେଖୁଥାଉ ସ୍ୱପ୍ନ ଆନନ୍ଦର !
ଯାତ୍ରି ! ତୁମେ କରୁଚ କ ଉପହାସ ?
ତାହାର ଜୀବନ ନାହିଁ ?
ତାହାର ଆନନ୍ଦ ନାହିଁ ?
ସିଏ ଖାଲି, ଗୋଟିଏ ମାଟିର ପିଣ୍ଡୁଳା
—ପ୍ରାଣହୀନ ପ୍ରାଣୀ !
ଗାଈ ଗୋରୁ ମଇଁଷି ପରିଏ,
ପଥଧାରେ ପଡ଼ଅଛୁ ଶୋଇ
ମଶା ଓ ଡାଉଁଶ ତାରେ ରହିଛନ୍ତି ବେଢ଼ି ;
ଜୀର୍ଣ୍ଣ ବାସ ପରହିତ ହୋଇ
ବାହୁ-ଉପାଧାନେ ରହିଅଛୁ ପଡ଼ ?
ନା ! ନା ! ମନୁଷ୍ୟର ମନୁଷ୍ୟ ସେ,
ପୃଥିବୀରେ ରଖିଅଛୁ ଧର !
ଶୋଉ ସିଏ, ଟିକଏ ଆସ୍ତମେ ଶୋଉ, ଆଉ କେତେ ଘଡ଼ !

---

# ସମାଧି ମନ୍ଦିର

ଯେ'ଦିନ ମୋହର ଜୀବନର ଦୀପ ଲିଭିଯିବ ଏଇ ପଥେ,
ଯେ'ଦିନ ମୋହର ଲଳିତ ବଂଶୀ ବାଜିବନି ଅବିରତେ,
ଯେ'ଦିନ ମୋହର ଦେଖା ସାକ୍ଷାତ ହେବନାହିଁ କାହା ସହ,
ଯେ'ଦିନ ମୋହର ଶତସଖା ସାଥି ଅନ୍ତର ପରିଚୟ—
ସକଳର ସାଥେ ମଧୁ ବନ୍ଧନ ନିମିଷକେ ଯିବ କଟି,
ଯେ'ଦିନ ନୟନ ଦେଖିବନି ଏଇ ବିଲ ବନ ଗଛ ଲଟି,
ଯେ'ଦିନ ମୋହର ସକଳ ସତ୍ତା ଧରଣୀରୁ ନିଭିଯିବ,
ଆପଣାର ହୋଇ କିଏ ଯେବେ କାହିଁ ବନ୍ଧୁ ସୋଦର ଥିବ,
ଗରିବ କବିର ଏଇ ଅନୁରୋଧ ରକ୍ଷା କରିବ ତମେ
କହିବ ଯାଉଚି ମୁଁ ତୁମରି ବନ୍ଧୁ ଅତି ଆପଣାର ଜଣେ—
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ଯହିଁ ଠିଆ ହେଲେ ଦିଶଇ ସୋଲଗ୍ରି ମାଳ ନିର୍ମଳ କାୟା,
ଊର୍ମି ମୁଖର ନୀଳ ଚିଲିକାର ଦିଶଇ କାନ୍ତ ଛାୟା,
ପଶ୍ଚିମ ଦିଗ୍‌ବଳୟର ତଳେ ଧୂସର ପାହାଡ଼ ଶ୍ରେଣୀ,
ଧରଣୀ ରାଣୀ କି ପକାଇଚି ଜୁଡ଼ା, ବାନ୍ଧିଚି କଳା ବେଣୀ !
ଚଉଦିଗେ ଖାଲି ଶ୍ୟାମଳ ଶସ୍ୟ କୋମଳ ଶୀର୍ଷ ତୋଳି,
ଉଷାର ମୃଦୁଳ ବାୟୁ ସଞ୍ଚାରେ ଉଠୁଥିବ ସୁଖେ ଦୋଳି,
ଭିଦ୍‌ଭିଦିଳିଆ ଉଡ଼ି ବୁଲୁଥିବ ଲତା ପ୍ରାନ୍ତର ତଳେ,
କଜ୍ଜ୍ୱଳପାତି ଖୋଜୁଥିବ ସାଥି ଉଡ଼ି ଉଡ଼ି ଥରେ ଥରେ
ଗାଈଆଳ ପିଲି ବଂଶୀ ବଜାଇ ନେଉଥିବ ଧେନୁପଲ,
ବନ ଭୂଇଁ ଯହିଁ ଟିପାର ଶବଦେ ଲାଗୁଥିବ ସୁଖକର,
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ଫୁଟି ଉଠେ ଯହିଁ ଅଶୋକ ପଲାଶ ଜୈତ୍ର ପତାକା ପରି,
ଅଳିଗୁଞ୍ଜନ ସଞ୍ଜ ସମୀରେ ମନ୍ଦେ ଉଠଇ ଥରି,
କେତକୀ ଗନ୍ଧେ ଯେଉଁ ବନଭୂମି ବାସି ଉଠେ ମନ୍ଦ ମନ୍ଦ,
(ଯହିଁ) ଶୁଭ୍ର ଗୟୂସ ଧଳାମେଘ ପରି, ଫୁଟିଥାଏ ଅହରହ,

ବନମଲ୍ଲିକା ମାଡ଼ିଥାଏ ଯହିଁ ପାଣି ସାହାଡ଼ାର ଦେହେ,
କାଇଞ୍ଚ ପୁଞ୍ଜ ମାଣିକ୍ୟପର ଥାଏ ଯହିଁ ଲତା ଗେହେ,
ବଟତରୁ ଯହିଁ ଶ୍ୟାମ ପଲ୍ଲବ ଆପଣା ଅଙ୍ଗୁ କାଢ଼ି,
ମଣ୍ଡିତ କରେ ଧରଣୀ ବକ୍ଷ ସେନେହ ସୋହାଗ ବାଢ଼ି,
ଆକାଶ ପରଶୀ ତାଳତରୁ ଶିରେ ବାଇଆ ଚଢ଼େଇ ନୀଡ଼,
ପ୍ରତି ଅନ୍ତରେ କଉତୁକ ଆଣେ, ଆଣେ ମାୟା ସୁଗଭୀର
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ପଲ୍ଲି କିଶୋରୀ ଜଳ କାଖେ ଧରି ଯହିଁ ସଙ୍ଗିନୀ ଭୁଲେ
କଥା ଭୁଷା ହୋଇ ଫେରଇ ସୋହାଗେ ଆପଣା କୁଟୀର ପୁରେ,
ଗରିବ ବିଧବା ଇନ୍ଧନ ଯହିଁ ସଂଗ୍ରହ କରି ଆସେ ;
ଜୀବନର କଥା ଭାଳି ଭାଳି ଯହିଁ ନୀରବ ଲୋତକେ ଭାସେ,
ଗଛଛାଇ ତଳେ କାଠ ଓଜର ଦେଇ ଶ୍ରାନ୍ତ ନିମିଷେ ମାତ୍ର,
ଶୂନ୍ୟକୁ ଚାହିଁ ଅଶ୍ରୁବୁହାଇ କହେ "ମୁଁ ଅଭାଗୀ ନାରୀ—
ହାତ ଧରି ଯାରେ ବାହା ହୋଇଥିଲି ଅଧାବୟସରେ ଗଲା,
ଗାଆଁ ମାଉକାର ଜମିବାଡ଼ି ନେଇ ବୁଲାଇଲା ଘରେ କଳା
ଧର୍ମଦେବତା ଉପରେ ନିତି ହେ ଯିବା ଆସିବା ଯେ କରି ;
ବୁଝିବ ମୋହର ବିକଳ ଅଶ୍ରୁ ବେଦନା ମୋ ମରମର ।"
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

ଶାନ୍ତ ନିରୀହ କୃଷକ ଯେ ପଥେ ନିଜ ବଳମାଳେ ଚାହିଁ
ନୟନୁ ବୁହାଏ ଅଶ୍ରୁ-ଆସାର ଚାହିଁ ଚାହିଁ ପାରେ ନାହିଁ ;
ବୁକୁତଳୁ ତାର କୋହ ଫାଟି ପଡ଼େ ବଦନୁ ନ ଫୁଟେ ବାଣୀ
'ଏ ହାଡ଼ ମୁଣ୍ଡେ କେତେଥର ମୁହିଁ ବୋହିନାଇଁ ବିଲେ ପାଣି,
କେତେ ରାତି, କେତେ ସନ୍ଧ୍ୟା ସକାଳ ଶସ୍ୟ ଜଗିନି ଆସି
ଖଳାରେ ତଳରେ କାମ କରିନି ଆଠକାଳ ବାରମାସୀ ;
ମିଥ୍ୟା ମାମଲା ଯୋଡ଼ି ମୋହ ନାମେ ମୋର ଏ ଟିକକ ଭୂମି,
ନେଇଗଲା ଯେହୁ ସାତ ଜନମରେ ନାହିଁ ମିଳୁ ପେଜ ପାଣି ।
ଧରଣୀ ଉପରେ ମିଥ୍ୟାର ଆଁହା ଜୀବନ କାହିଁରେ କାହିଁ ?
କେତେ କାଳ ସେହୁ ବଞ୍ଚି ପାରିବ କିବା ସମ୍ମାନ ପାଇଁ ?'

ମୋର ସମାଧିର ମନ୍ଦିରଟିଏ ତୋଳିବ ହେ ସେଇ ଥାନେ
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ;

ଜ୍ୟୋସ୍ନା ରାତିରେ ପୁରପଲ୍ଲୀରେ ପୁରାଣ ଓ କୀର୍ତ୍ତନ ।
ଶୁଭୁଥିବ ଯହିଁ ବାୟୁହିଲ୍ଲୋଳେ ଭାସି ଭାସି ଅନୁକ୍ଷଣ,
ନୀଳ ନଭତଳେ ଧଳା ମେଘ ଯହିଁ ଯାଉଥିବ ସଞ୍ଚରି,
ସେ କେଉଁ ସରଗ ଅପସରୀ ବାଳା ଓଢ଼ଣୀ ଉଡ଼ନ୍ତି ପରି
ବନ ପର୍ବତ ଆକାଶ ଭୁବନ ରୂପାର ରାଇଜ ପରି;
ନାଚି ଉଠୁଥିବ ସପନ ପୁରୀର ମୁଗ୍‌ଧ ସୁଷମା ଧରି,
ଅଳସ ମରୁତ ବହିଯାଉଥିବ ସଞ୍ଚରି ବନେ ବନେ
ବଉଳ ଗନ୍ଧ ଭାସି ବୁଲୁଥିବ ଚଉଦିଗେ ପ୍ରତି କ୍ଷଣେ ;
ମଲ୍ଲୀ ମାଳତୀ ଝଡ଼ି ପଡ଼ୁଥିବ ଶ୍ୟାମ ବନ ଭୂଇଁ ଧାରେ
ଦର୍ପଣ ପରି ଦିଶୁଥିବ ନଈ ସ୍ୱର୍ଣ୍ଣସିକତା ଧାରେ;
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ,
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ;

ମୋର ସମାଧିର ମନ୍ଦିର ଭାଲେ ଏଇ କଥା ଦେବ ଲେଖି
ଅସୀମ କାଳର ବର୍ତ୍ତ୍ମ ଜନତା ଯାଉଥିବ ଯାହା ଦେଖି,
'ଧରଣୀର କେଉଁ ଅଜ୍ଞାତ କୋଣେ ଜନମିଥିଲି ମୁଁ କବି
କୋଟି ମରମର କାହାଣୀ ଗାଇଛି ମରମରେ ଅନୁଭବି ।
ସବୁ ଅନ୍ତର ଅନୁଭୂତ ଯେକ ଏଇ ଅନ୍ତର ମମ
ଧରଣୀର ସେବା କରି ଆସିଅଛି କବିତାରେ ଅନୁପମ ।
ସକଳ ଅଭାବ ଦୈନ୍ୟର ସହ ସଂଗ୍ରାମ କରି କରି
ଧରଣୀ ସାଗରେ ବୁଲିଛି ମୋହର କବି ଜୀବନର ତରୀ ।
ଯାହା ଯେତେବେଳେ ପାଇଚି ଦେଇଚି ଦରିଦ୍ର ମୁହିଁ କବି
ତାହାର ଭିତରେ ଯାଉଥିବ ମୋରେ ବେଳେ ବେଳେ ଅନୁଭବି ।
ମୋର ସମାଧିର ମନ୍ଦିରଟିଏ ଗଢ଼ିବ ହେ ସେଇ ଥାନେ
ଗିରି ନଦୀ ଯହିଁ ବହିଯାଏ ନିତି ମନ୍ଦ୍ର ମଧୁର ତାନେ ।

---

# ପିପାସା

ଏ ଜୀବନ ଯାଉ ଯେତେ ଦୂର
ପିପାସା ତା' ପିବନାଇଁ ମର,
ଖୋଜୁଥିବ ତୁମେ ରହିଥାନ୍ତ—
ପାଖେ ପୁଷ୍ପ କଳକାଟି ପର ।
ଏ ଜୀବନ ଯେତେ ମିଠା ପାଉ
ତୃପ୍ତି ତା'ର ଆସିବ ତ ନାଇଁ,
ତୁମ ହୃଦ ମଧୁବାଣୀ ପଦେ
ଶୁଣିବାକୁ ରହିଥିବ ଚାହିଁ !
ଏ ଜୀବନ ଯେତେ ବଡ଼ ହେଉ
ଧରଣୀର କେଉଁଠାରେ କାହିଁ,
ତୁମେ ଯେବେ ବଡ଼ ନ କରିବ
ତା' ଭିତରେ କି ଶିଖ ମୋ ପାଇଁ ?
ଲକ୍ଷ ନେତ୍ର ଚାହିଁ ଥିଲା ବେଳେ
ବୁଜ ହୋଇ ଯାଉ ନେତ୍ର ମମ
ତୁମ ନେତ୍ର ନ ଚାହିଁଲେ ମୋରେ
ପ୍ରାଣହୀନ ମୋହର ମରଣ !

———

# ଟିପ୍ପଣୀ

## ଗୋଲଦାସ

କବିଙ୍କ ଗାଁର ଜଣେ ସାହସୀ ଓ ବଳିଷ୍ଠ ବ୍ୟକ୍ତି । ତାଙ୍କ ସମ୍ବନ୍ଧରେ ବହୁ ରୋମାଞ୍ଚକର କାହାଣୀ ଲୋକ ମୁଖରେ ଶୁଣାଯାଏ ! ତାଙ୍କ ଜୀବନ ସମ୍ପର୍କୀୟ କେତୋଟି କଥାକୁ ନେଇ କବିତାଟି ଲିଖିତ ! କଂସାଶ ନଈ ବାଣପୁର ଅଞ୍ଚଳରେ ପ୍ରବାହିତ । ଆଗେ ବଢ଼ି ଆସିଲେ ଏଥିରେ ବହୁ ଲୋକ ଭସି ଯାଆନ୍ତି ବୋଲି ପ୍ରବାଦ ଅଛି । ସୋଲରୀ ବାଣପୁରର ସୁନାମ ଧନ୍ୟ ପାହାଡ଼ ।

## ଯେବେ ଭୁଲିଯାଏଁ ଆଉ ଥରେ

କବିତାଟି କବିଙ୍କର ଜଣେ ଛାତ୍ରଙ୍କ ମୃତ୍ୟୁରେ ଲିଖିତ । ତାଙ୍କ ଘର ଯାଜପୁର ପାଖେ ଗୋଟିଏ ପଲ୍ଲୀ ଗାଁରେ । କବି ବହୁଦିନ ତଳେ ଯାଜପୁର ବିରଜା ସ୍କୁଲରେ ଶିକ୍ଷକତା କରୁଥିଲେ ।

## ସେ'ଦିନ ଆସିଲ

କବି ପାରଳା ନିକଟବର୍ତ୍ତୀ ଗୁବାଣ୍ଡି ସ୍କୁଲକୁ ଦ୍ୱିତୀୟ ଥର ବଦଳି ହୋଇ ଯାଇଥିଲେ । ସେ ଅଞ୍ଚଳର ତାଙ୍କର ଜଣେ ପ୍ରିୟ ଛାତ୍ର କବିଙ୍କୁ ଦେଖା କରିବାକୁ ଆସିଥିଲେ । ଆଗେ ସେ ସେଇ ହାଇସ୍କୁଲରେ ପଢ଼ୁଥିଲେ ଏବେ ପାରଳାରେ ବି. ଏ. ପଢ଼ୁଛନ୍ତି ।

---

ଯାହାର ପଦେ ଦି'ପଦ ଉତ୍ସାହବାଣୀ
ମୋ ଦରିଦ୍ର କବି-ଜୀବନର ବହୁ ଉତ୍‌ଥାନ-
ପତନ ଭିତରେ ମତେ ସାଧନାର
ପଥରେ ଆଗେଇ ନେଇଛି
ବୋଲି, ମୋର ବିଶ୍ୱାସ ହୁଏ
ସେହି—

**ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ**

ଶ୍ରଦ୍ଧାସ୍ପଦେଷୁ

**କୃଷ୍ଣଚନ୍ଦ୍ର ତ୍ରିପାଠୀ**

ବାଣପୁର
୧-୧-୫୬

# ସୂଚନା

ସୁନ୍ଦର ଓ ମହତ୍ତ୍ୱର ପୂଜା ଯେତେବେଳେ ବ୍ୟର୍ଥତାରେ ପର୍ଯ୍ୟବସିତ, ଶିଳ୍ପ ଓ ସାହିତ୍ୟର ସୌନ୍ଦର୍ଯ୍ୟ ଯେତେବେଳେ ଅବମାନିତ, ସଭ୍ୟତା ଓ ସଂସ୍କୃତି ମଣିଷର ଦୁର୍ଗତିମୋଚନ ଲାଗି ଯେତେବେଳେ ବ୍ୟର୍ଥ, ସେତେବେଳେ ସମାଜ-ଜୀବନରେ ଅନିବାର୍ଯ୍ୟରୂପେ ଆସେ ଘୂର୍ଣ୍ଣାବର୍ତ୍ତ । କାବ୍ୟ, ଶିଳ୍ପ ଏବଂ ସମାଜବାଦୀ ଦାର୍ଶନିକ ଚିନ୍ତାରେ ପ୍ରତିବାଦର ଯୁଗ ଆରମ୍ଭ ହେଲା ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ । ଏହି ପ୍ରତିବାଦର ପଶ୍ଚାତରେ ରହିଛି ମର୍ମତଳର ଆଗ୍ନେୟବିସ୍ଫୋରଣ, ବିରାଟ ବିପ୍ଳବ । ଅର୍ଥନୀତିକ-ବୈଷମ୍ୟ, ଶୋଷଣ, ଅତ୍ୟାଚାର, ଘୋର ଦାରିଦ୍ର୍ୟ, ଭିକ୍ଷୁକର ଆର୍ତ୍ତନାଦ ଦାସତ୍ୱର ଆବେଷ୍ଟନୀ ଭିତରୁ ବିଦ୍ରୋହ ଓ ଆଲୋଡ଼ନ ସ୍ୱତଃସ୍ଫୂର୍ତ୍ତ ହୋଇ ଉଠେ । ଅବିରାମ ଇତିହାସର ଚକ୍ର ଘୂରେ । ବହୁଯୁଗର ଅବସାନ ଘଟେ । କେଉଁଠି ହିଟଲର ଭଳି ଫାସିଷ୍ଟନେତା ଦରିଦ୍ର ସାଧାରଣଙ୍କୁ ହିଂସାର ଖଡ଼୍ଗ ଧରାଇ ଶତ୍ରୁଙ୍କୁ ହତ୍ୟା କରୁ କରୁ ଶେଷରେ ମାନବିକତାକୁ ହତ୍ୟା କରିବସେ; କେଉଁଠି ବା ଶାନ୍ତି-ଅହିଂସାର ମନ୍ତ୍ରରେ ମୃତଆତ୍ମା ସଞ୍ଜୀବିତ ହୋଇଉଠେ ଏବଂ ମାନବିକତା ରକ୍ଷାପାଏ । ଯୁଗପ୍ରବର୍ତ୍ତକ, ମହାପୁରୁଷର ମହାଦାନ ସହିତ ସେବକ, କର୍ମୀ, କବି ଓ ସାହିତ୍ୟିକ ପରସ୍ପରର ସହଯୋଗରେ ଏକ ନୂତନ ଯୁଗର ସନ୍ଧାନରେ ଅଗ୍ରସର ହୁଅନ୍ତି । ଏହି ନୂତନ ଯୁଗର ସନ୍ଧାନୀ କବିର ପ୍ରାଣରେ ବିଦ୍ରୋହର ବାତ୍ୟା ପ୍ରବାହିତ ହେବା ସଙ୍ଗେ ଦରିଦ୍ର ପ୍ରତି ସମବେଦନା, ସ୍ୱାଧୀନତା ପ୍ରତି ବ୍ୟାକୁଳତା ଜାଗ୍ରତ ହୋଇ-ଥାଏ । ଏହି ସମବେଦନା ଓ ବ୍ୟାକୁଳତାର ଧାରା ଅତି ପ୍ରଖର, ସ୍ୱଚ୍ଛ ଏବଂ ଉଦ୍ଦାମ । କୌଣସି ତତ୍ତ୍ୱରେ ତାର ଚିନ୍ତାଧାରା ଅବରୁଦ୍ଧ ହୋଇ ଯାଇ ନ ପାରେ, କୌଣସି ରାଜନୀତି କପଟତାର ଶିକାର ହୋଇ ସେ ପକ୍ଷପାତୀ ହୋଇ ନ ଥାଏ । ମୁକ୍ତ ବିହଙ୍ଗ ପରି କବିର ଭାବଧାରା ଶୂନ୍ୟ ସୁନୀଳ ଆକାଶରେ ଗତି କରିଥାଏ । ନିଜର ଜୀବନକୁ ଭୁଲିଯାଇ ସେ ସାମାଜିକ ଜୀବନର ସୁଖସ୍ୱାଚ୍ଛନ୍ଦ୍ୟ କଥା ଭାବେ । ସମାଜର ସୌନ୍ଦର୍ଯ୍ୟ ଅଥବା ସ୍ୱଚ୍ଛଳତା ଲାଗି ସେ କଲମଧାରରେ ଆନ୍ଦୋଳନ କରେ ।

ପ୍ରଥମ ଓ ଦ୍ୱିତୀୟ ମହାଯୁଦ୍ଧ ପରେ ଶିଳ୍ପ ଓ ବିଜ୍ଞାନର ସମୃଦ୍ଧ ବିକାଶ ସଙ୍ଗେ ସଙ୍ଗେ ମାନବ ସମାଜ ଉପରେ ଅପଘାତ ମୃତ୍ୟୁର ଆଘାତ ଲାଗିଛି । ଅବସାଦ, କ୍ଳାନ୍ତି ଓ ନୈରାଶ୍ୟ ହିଁ ହୋଇଛି ଏହି ବିକାଶର

ଉପହାର । ପ୍ରତିପଦରେ ନିରର୍ଥକ ହିଂସା ଓ ଶୋଷଣର ନିର୍ମମ 'ଆଘାତ ସମାଜକୁ ଶ୍ମଶାନ କରିଯାଇଛି । ପ୍ରେତର ଲୋଭ ଓ ଆଶଙ୍କାର ଉତ୍ସବ-ମଞ୍ଚ ହୋଇଛି ସମାଜ । ପ୍ରଥମ ମହାଯୁଦ୍ଧ ପରେ ନିଷ୍ପାଦପ ପ୍ରାନ୍ତରକୁ ଦେଖି କବି ଏଲିଏଟ୍ ଗାଇଗଲେ—

The eyes are not here
There are no eyes here.
In this Valley of dying stars
in this hollow valley
This broken Jaw of our lost
Kingdoms.

ଏହି ଶୁଷ୍କ ପ୍ରାନ୍ତର ହିଁ ମାନବସମାଜର ବର୍ତ୍ତମାନ ରୂପ । ମଣିଷ ଭିତରର ମହତ୍ତ୍ୱ ଠିକକ କ୍ରମଶଃ ମଳିନ, ଶୁଷ୍କ ହେବାକୁ ବସୁଛି । ଟଲଷ୍ଟୟ, ଗର୍କି, ରବୀନ୍ଦ୍ରନାଥ, ଶରତ୍‌ଚନ୍ଦ୍ର ଓ ଶେଷରେ ଏହି ବର୍ଷର ନୋବେଲ ପ୍ରାଇଜ ପୁରସ୍କୃତ ଔପନ୍ୟାସିକ ଲାକ୍‌ସନେସ ଏହି ଜୀବନର ମହତ୍ତ୍ୱକୁ, ଦାରିଦ୍ର୍ୟର ଉପାଦାନକୁ ଉପଲବ୍‌ଧି କରିଛନ୍ତି । ଅସମାନତାର ଲୋପସାଧନ ଲାଗି ଚେଷ୍ଟା କରିଛନ୍ତି ।

ଲାକ୍‌ସନେସ୍‌ଙ୍କ "ସାଲ୍‌କାଭାଲ୍‌କା" ବହିର ନାୟିକା ଗରିବ ଜେଲେଣୀ ସାଲ୍‌କା ବ୍ୟାକୁଳ ହୋଇ ଈଶ୍ୱରଙ୍କୁ ପ୍ରଶ୍ନ କରିଛି— "ସମସ୍ତଙ୍କୁ ତ ତୁମେ ସୃଷ୍ଟି କରିଚ, ତେବେ ସମସ୍ତେ ଦେଖିବାକୁ ସୁନ୍ଦର ନୁହନ୍ତି କାହିଁକି ? ସମସ୍ତଙ୍କ ପାଇଁ ଭଲ କରି ମୁଠେ ଖାଇବାକୁ ମିଳେ ନା କାହିଁକି ?"

ରୁଷର ଟଲଷ୍ଟୟ, ଆଇସ୍‌ଲଣ୍ଡର ଲାକ୍‌ସନେସ, ଭାରତର ଶରତ୍‌ଚନ୍ଦ୍ର ସହିତ ସ୍ୱର ମିଳାଇ କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କର ମଧ୍ୟ ସେଇ ଏକ ପ୍ରଶ୍ନ—ସମାଜରେ ଏତେ ଅସମାନତା କାହିଁକି ? ଶୋଷଣ ଅତ୍ୟାଚାର କାହିଁକି ? ସ୍ୱାଧୀନତା ପାଇଲେ ମଣିଷ କେତେ ସୁନ୍ଦର ନ ହୁଅନ୍ତା ! "ଅଗ୍ନିଶଙ୍ଖ"ର ପ୍ରତି ବାକ୍ୟରେ ଏହି ବିଦ୍ରୋହାତ୍ମକ, ବୈପ୍ଲବିକ ଆତ୍ମଜିଜ୍ଞାସା । ସମାଜର ଯେତେକ ଠକ, ଜୁଆଚ୍ଚୋର, ପ୍ରବଞ୍ଚକ, ଯେଉଁମାନେ ଆତ୍ମସ୍ୱାର୍ଥ ଲାଗି ସମାଜକୁ ଠିକଣି କରି. ଆତ୍ମସାତ୍ କରି ନିଜକୁ ବିଷାକ୍ତ, କଳଙ୍କିତ କରିବାକୁ ଅଗ୍ରସର, ସେମାନଙ୍କୁ କବି କୃଷ୍ଣଚନ୍ଦ୍ର ତ୍ରିପାଠୀ ଏହି ସତର୍କବାଣୀ ଶୁଣାଇଛନ୍ତି—

ତୁମରି ଭିତରେ ତୁମେ ନାହିଁ
ତୁମେ ଅଛ ଛଳନାର ବିଷାକ୍ତ ଗହ୍ୱରେ

ଏକ ଭଯ଼ଙ୍କର ସରୀସୃପ ପ୍ରାଯ଼
ନିଜକୁ ଜାଣି ନ ତମେ
ଜାଣିବାକୁ ଦେଇନାହଁ ବାରେ ଅବକାଶ
କେମନ୍ତେ ଜାଣିବ ତୁମେ
ମଣିଷର ସକଳ ସଂପଦ
ତୁମଠାରୁ ହୋଇଛି ବିକାଶ ।

ସ୍ୱାର୍ଥାନ୍ଧ ମଣିଷ ନିଜର ଦୁଷ୍କୀର୍ତ୍ତିକୁ ବୁଝିପାରେ ନା । ସେ ନିଜକୁ ହରାଇ ବସେ ।

ମଣିଷ ହିଁ ପୃଥିବୀର ସର୍ବଶ୍ରେଷ୍ଠ ଶିଳ୍ପ ; କିନ୍ତୁ ସେ ନିଜେ ହିଁ ସେହି ଶିଳ୍ପକୁ ଜ୍ଞାତ ବା ଅଜ୍ଞାତସାରରେ ନଷ୍ଟ କରିଥାଏ । ଅପରର ମୃତ୍ୟୁ ହେଉ—ମୁଁ କିନ୍ତୁ ଅମୃତ ହୋଇ ରହିଥିବି, ଏଇ ଦୁର୍ବାର ଭ୍ରାନ୍ତ ଲାଳସାରେ ପଡ଼ି ଅନେକ ନିଷ୍ଠୁର କାମ କରିଯାଆନ୍ତି । ମଣିଷକୁ ମଣିଷ ଭୁଲିଯାଏ । ଯେ ଭୁଲିଯାଏ, ତା ପାଇଁ କବି କହିଛନ୍ତି—

ଜାଣ ତମେ ଜାଣ ?
ମଣିଷ ଏ ପୃଥିବୀର ସମସ୍ତ କ୍ଷମତା
ମଣିଷ ଏ ପୃଥିବୀର ଏକମାତ୍ର ଧନ
ମଣିଷ ଏ ପୃଥିବୀର ଏକାନ୍ତ ଗୌରବ—
ମଣିଷରେ ଦୂରେ ଦୂରେ ବହୁଦୂରେ
ଫିଙ୍ଗିଦେଲେ ତମେ
ଏ ଜୀବନ କେଡ଼େ ନିଃସ୍ୱ କେଡ଼େ ପ୍ରାଣହୀନ ?

ମୁକ୍ତିର ମହିମାଗାନ ହିଁ "ଅଗ୍ନିଶଙ୍ଖ"ର ଆତ୍ମା । ଉନ୍ମୁକ୍ତ ପୃଥିବୀରେ ଦ୍ୱାରବନ୍ଦ କରି ମଣିଷକୁ ବନ୍ଦୀ କରାଯାଇ ନ ପାରେ ।

"ମୋର ଏଇ ରକ୍ତ ମାଂସ ହାଡ଼
ଭିତରୁ ଛୁଟିଛି ଆଜି
ଝଡ଼ର ହୁଙ୍କାର ।
ପାଗଳ ମୁଁ ଅଥୟ ଚଞ୍ଚଳ
ନୁହେଁ ଆଜି
ନିଜେ ମୁଁ ନିଜର ।

ପୁଣି ପରାଧୀନତାକୁ ଧିକ୍କାର କରି—
କେ ଗୃହେଁରେ
କା' ଦୁଆରେ

ଚିରନ୍ଦନ ହେବାକୁ ଗୋଲାମ ?
ଯାଉଣୁ ଆସୁଣୁ ନିତ୍ତ
କରିବାକୁ ପ୍ରାଣହୀନ
ସହସ୍ର ସଲାମ ।

ଶେଷରେ—

ଦାସତ୍ୱ ଭିତରେ କାହିଁ
ଜୀବନର ମୋହନ ବିକାଶ ?

ଓଡ଼ିଆରେ କାବ୍ୟ-କବିତାର ଅଭାବ ନାହିଁ ସତ; କିନ୍ତୁ କବିତାରେ ବାସ୍ତବ ଧର୍ମକୁ ରୂପାୟିତ କରି ଭାବକୁ ପ୍ରାଞ୍ଜଳ ଭାବରେ ଫୁଟାଇବା ଭଳି ଶକ୍ତି କମ୍ କବିଙ୍କଠାରେ ରହିଛି । ସଚ୍ଚି ରାଉତରାୟଙ୍କ "ବାଜିରାଉତ" ଓ ଅନନ୍ତ ପଟ୍ଟନାୟକଙ୍କ "ଶାନ୍ତିଶିଖା"କୁ ଛାଡ଼ିଦେଲେ ଅନ୍ୟ ପ୍ରାୟ ସବୁ କାବ୍ୟ-କବିତାରେ ସମାଜରେ ଅର୍ଥନୈତିକ ବୈଷମ୍ୟରୁ ଉଦ୍ଭୂତ ଦାରିଦ୍ର୍ୟ, ଶୋଷଣ ଏବଂ ଅତ୍ୟାଚାରର ଚିତ୍ର କମ୍ ଦେଖାଯାଏ । ଯୌନଶୃଙ୍ଗାର ଭାବକୁ ହିଁ ଆଶ୍ରୟ କରି ଏକ ସହଜ ପନ୍ଥାରେ ସମସ୍ତେ ଅଯଥା ପ୍ରଶଂସା ପାଇବା ଲାଗି ଦାବୀ କରି ବସିଥାନ୍ତି । ସମାଜର ସୂକ୍ଷ୍ମ ଅଭାବଗ୍ରସ୍ତ, ପୀଡ଼ିତ ଅଙ୍ଗକୁ ସ୍ପର୍ଶ କରି ତାକୁ ସୁସ୍ଥ-ସବଳ କରିବା ଦିଗରେ ଅନେକଙ୍କ ଉଦାସୀନତା ଦେଖାଦେଇଛି ।

"ଅଗ୍ନିଶଙ୍ଖ" ଓଡ଼ିଆ ସାହିତ୍ୟରେ ଏକ ଗଳ୍ପସମ୍ପନ୍ନ କାବ୍ୟ ନ ହେଲେ ମଧ୍ୟ ଏକ ଭାବମୟ ବୈପ୍ଳବିକ ଖଣ୍ଡ, କିନ୍ତୁ ଅକ୍ଷତ କାବ୍ୟ । ଆଧୁନିକ କବିତାର ଦୁର୍ବୋଧତା ଏଥିରେ ସମ୍ପୂର୍ଣ୍ଣଭାବେ ଅନୁପସ୍ଥିତ, ରାଜନୀତିର ଔଦ୍ଧତ୍ୟକ୍ ଦୃଷ୍ଟି ନାହିଁ । "ଅଗ୍ନିଶଙ୍ଖ"ର ସବୁଠାରୁ ବଡ଼ ବିଶେଷତ୍ୱ ହେଉଛି, ଏଥିରେ କୌଣସି ଚେଷ୍ଟାକୃତ ଭାବ ବା ଛନ୍ଦ-ବନ୍ଧନର ଦୁର୍ବଳତା ନାହିଁ ; ପରନ୍ତୁ ସହଜ, ସରଳ ଓ ଆତ୍ମସ୍ଫୂର୍ତ୍ତି ହୋଇଥିବାରୁ ଏହା ସହଜେ ପାଠକ ମନକୁ ଆବିଷ୍ଟ କରି-ଦେଇପାରେ ।

କବି କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଜଣେ ପରମ ଗୁଣମୁଗ୍ଧ ଗ୍ରାହକ-ଭାବରେ ମୁଁ ଅନେକ ସମୟରେ ତାଙ୍କର କବିତା ପଂକ୍ତିର ଆସ୍ୱାଦନରେ ବିଭୋର ହୋଇ ଉଠେ, କିନ୍ତୁ ତ୍ରୁଟି ଦେଖିଲେ ସମାଲୋଚନା କରିବା ପାଇଁ କେବେହେଲେ ପଶ୍ଚାତ୍ପଦ ହୁଏ ନା ।

ସେ ଜୀବନରେ ସହସ୍ରାଧିକ କବିତା ଲେଖିଛନ୍ତି କହିଲେ ମଧ୍ୟ ଅଠିକ ହେବ ବୋଲି ମୋର ମନେହୁଏ ନା । ଓଡ଼ିଶାର ପ୍ରାୟ ଶ୍ରେଷ୍ଠ

ବଡ଼ ଐମସ୍ତ ମୁଦ୍ରିତ ଓ ଅମୁଦ୍ରିତ ପତ୍ରିକାରେ ତାଙ୍କର ଲେଖା ପ୍ରକାଶ ପାଇ ଆସୁଛି । ଅନେକ ସମୟରେ ମୁଁ ତାଙ୍କୁ ପତ୍ର ଲେଖି ଜଣାଏ, "ଆପଣ ଏଠି ସେଠି କବିତା ଦେଇ ନିଜକୁ ଶସ୍ତା ବୋଲି ଉପଲବ୍ଧି କରୁ ନାହାଁନ୍ତି ତ ?"

"କଦାପି ନୁହେଁ"—ଉତ୍ତର ମିଳେ । ବରଂ "ମୋର କବିତା ଆହୁରି ଶସ୍ତା ହେଉ ଯାହା ଫଳରେ ଜନସାଧାରଣ ଅତି ସହଜରେ ମୋ କବିତାକୁ ଜାଣିପାରିବେ, ଏହା ହିଁ ମୋର ଇଚ୍ଛା ।"

ଦରିଦ୍ରଙ୍କ ପ୍ରତି ଶ୍ରଦ୍ଧା ଓ ସହାନୁଭୂତି ଭିତର ରହିଛି ବୋଲି ସେ କାହାରି ସମାଲୋଚନାରେ ଅବନତ ନ ହୋଇ ପଡ଼ି ନିଜର ଖର୍ବକାୟ ଶରୀରର ଦୁଇ ପାଦ ଉପରେ ପୃଥିବୀ ବକ୍ଷରେ ନିର୍ଭୀକ ଭାବରେ ମାଡ଼ି ଚାଲିଛନ୍ତି । ମାଟି ପ୍ରତି ତାଙ୍କର ସମ୍ମାନ ଅସୀମ । ସେଥିପାଇଁ······

ମୋ ଆନନ୍ଦ ମୋ ଜୀବନ
ମୋହର ସହସ୍ର ସ୍ୱପ୍ନ
ସବୁ ଆଶା ସବୁ ଅଭିଳାଷ
ଏଇ ମାଟି ଏଇ ଦେଶ
ଏଇ ମୋର ବିରାଟ ଜନତା
—ଏ ସବୁରେ ନିର୍ମ୍ମମ ପିଶାଚ ପରି
ପଦତଳେ ଦଳି
କେମନ୍ତେ ଚାଲିବି କହ
କେଉଁଆଡ଼େ କି ସଂପଦ ଧରି ?

କବିଙ୍କ କବିତାସମ୍ଭାରରେ ବିଶ୍ୱ-ସାହିତ୍ୟ ବିମଣ୍ଡିତ ହେଉ, ଉତ୍କଳ-ସାହିତ୍ୟ ଉପକୃତ ହେଉ, ଏହା ହିଁ କାମନା ।

କଟକ
୧୮।୧।୫୬

**ଗୋବିନ୍ଦ ମିଶ୍ର**

---

# ଅଗ୍ନିଶଂଖ

—ଏକ—

ହୃଦୟ କବାଟ ଖୋଲି
ମଣିଷ ଯେଉଁଠି ହସୁ !
ମଣିଷକୁ ଦିଏ ନାହିଁ
ସେନେହ ସମ୍ଭାର,
ମଣିଷ ଉପରେ ଯହିଁ
ମଣିଷ କରଇ ନିତି
ଘୋର ଅତ୍ୟାଚାର,
ଯେଉଁଠାରେ ମଣିଷକୁ
ଏ ମଣିଷ ଘୃଣାକରେ
ଅବଜ୍ଞାର ଦୃଷ୍ଟି ଢାଳି
ଚହେଁ ବାର ବାର,
ସେ ମାଟିକି ମଣିଷର ମାଟି !

ପୃଥିବୀକୁ ଗ୍ରାସିବାକୁ
ଲେଲିହାନ ଜିହ୍ୱା ମେଲି
ଯେମିତି ମଣିଷ କରେ
ଶତ ଷଡ଼ଯନ୍ତ୍ର
ହତ୍ୟାରେ ଆନନ୍ଦ ଯହିଁ
ଦେଖଇ ମଣିଷ
ଗୁଳି ବୋମା
ବନ୍ଧୁକ କମାଣ,
ମଣିଷ ଯେଉଁଠି ଚଳେ

ଆଟୋପ ସମ୍ଭାରେ,
ଆଡଙ୍କର ଗୁପ୍ତ ଯହିଁ
ଘେର ରହିଥାଏ ଗୃହଆଢ଼େ
ସେ ମାଟିକ ମଣିଷର ମାଟି ?

ଜଣେ ଯହିଁ ଖାଏ ବସି
ମନ ବୋଧ କରି,
ଅନ୍ୟ ଜଣେ ରହିଥାଏ ଗୃହିଁ ;
ହିତଳ ସଉଧେ ଯହିଁ
ଜଣେ ରହେ ବିଦ୍ୟୁତ ଆଲୋକେ
ଆମୋଦ ପ୍ରମୋଦ ଆଉ
ସଙ୍ଗୀତର ରଙ୍ଗିନ୍ ଉତ୍ସବେ,
ଆନ ଜଣେ
କପାଳ ଆଦର
ଭଙ୍ଗା କୁଡ଼ିଆରେ ତାର
ରହିଥାଏ
ଶୀତ ଖରା ବର୍ଷା ସହି
ବର୍ଷ ବର୍ଷ ଧରି,
କପର ରହିଚ୍ଛ ବୋଲି
ତାରେ କେହି ପଚ୍ଛରେ ନ
ନିମିଷକ ପାଇଁ,
ବରଂ ତା'ର
ସମ୍ମୁଖେ ମଣିଷ
ବକ୍ଷ ଟେକ ଗୃଲଥାଏ
ଆପଣାର ଗୌରବ ଦେଖାଇ
ସେ ମାଟିକ ମଣିଷର ମାଟି !

ବେଦନା ଅଭାବ ଦୁଃଖ
ମଣିଷର ବୁକୁତଳେ
ଯେବେ ବହି ବହି ଯାଏ
ପ୍ରଳୟର ଝଡ଼ ପରି
ହନ ହନ ଧରି,
ତକ୍ତ ଯେବେ ଲାଗେ ତା'ରେ

ମହା ବସୁନ୍ଧରା,
ପ୍ରାଣ ଖୋଲି
କାହାକୁ କହିବ ତା'ର
ଅନ୍ତର ବେଦନ ?
ଗୋଡ଼ହାଙ୍କି ଠିଆହୁଏ
ଲକ୍ଷେ ଆଶା ଆଶ୍ରା ପାଇବାକୁ
କାହା ଦ୍ୱାରେ ଯାଇ,
ସେଠି ଯେବେ ଶୁଣେ ସେହୁ
କଟୁ ଉକ୍ତି ବାଣୀ,
ମହା ବସୁନ୍ଧରା ପରେ—
ଅଛୁ ତା'ର ଅନୁଭୂତି
ଅଛୁ ତା'ର ଜୀବନର ମାନ
ଅଛୁ ତା'ର ଦାବୀ ଅଧିକାର
ମଣିଷଠୁ ପାଇବାକୁ
ମଣିଷର ମଧୁବୋଲା—
ପୁଣ୍ୟ ବ୍ୟବହାର,
ତା'ରେ ଯଦି
ଧରଣୀ ଧୂଳିର
କ୍ଷୁଦ୍ର ପୋକ ମାଛି ପରି
ଦୂରେ ଦୂରେ
ଦିଅ ତୁମ୍ଭେ ତଡ଼ି,
ଯେ ମାଟି ଉପରେ ଚାଲେ
ଏଇ ଶତ କଦାଚିଣ ଲୀଳା
ସେ ମାଟିକି ମଣିଷର ମାଟି !

—ଦୁଇ—

ଏ ମାଟି ଉପରେ ତାର ହାଇରେ ଟିକଏ ହେଲେ
ଆସନ ତ ନାହିଁ !
ସିଏ କଣ ଆସି ନ ଏ ଧରଣୀର ଅମୃତ ସମ୍ପଦୁ
କଣିକାଏ ଭୁଞ୍ଜିବାର ପାଇଁ ?
ଯେତେ ଯେ ବସିଚ ଏଥି ଗୃହଁ ତାରେ ଗୃହଁ !
ଓଠ ତାର ମଳିନ ବିଶୁଷ୍କ

ବୃକୁର ଯୌବନ କାଠ ଦଂଷ୍ଟ୍ର ପୃଷ୍ଠ ପର—
ହତଶିଶ୍ୱ ଦଶେ ନ କ ହାସ୍ୟ !
ଖାଇ ନାଇଁ ! ଖାଇ ନାଇଁ !
ପେଟ ତାର ଯାଇଅଛି ଲଗି,
ପୃଥିବୀର ସମସ୍ତ ଅନ୍ତର
କରଚ କ ସୀମାହୀନ ଅବହେଳା ତାରେ ?
କାହାକୁ ସେ ଓଠ ଫେଇ
କଛୁ ହେଲେ ପାରୁନାଇଁ ମାଗି ! ! !

ହସିବ ସେ, ଖେଳବ ସେ
ପ୍ରାଣର ଅମୃତ ଶୋହା ଡାଳବ ସେ
ଏ ଧରଣୀ ପରେ,
ଆସିବ ଆସିବ ସିଏ
ଜୀବନ୍ତ ସମାଧି ଲଭ
ନଭ ଯିବ ବୋଲ କେଉଁ—
ଅତଳ ସାଗରେ ! !
ସମସ୍ତ ଅଭାବ ସବୁ ଉତ୍ପୀଡ଼ନ—
ତୁମେ ହିଁ ଦେଇଚ ତାରେ
ତାର ପ୍ରତି ମାଂସଖଣ୍ଡ ପ୍ରଳୟ ଗର୍ଜନ କର—
କହେ ଯେମନ୍ତେ ସେଇ କଥା ସୃଷ୍ଟି ଗୃହଆଡ଼େ ।

ମୁହିଁ ଗୃହେ ଦେଖିବାକୁ
ଅଙ୍ଗେ ଅଙ୍ଗେ ତାର
ଲାବଣ୍ୟର ସୀମାହୀନ ତେଉ,
ଗୃହେ ମୁହିଁ ଦେଖିବାକୁ
ତାର ବୁଦ୍ଧି ପ୍ରତିଭାର ବକଚ ବକାଶ
ଗୃହେ ମୁହିଁ ଦେଖିବାକୁ
ତାର ସେଇ ଅମୃତ ପ୍ରାଣର ଅମୃତ ପ୍ରକାଶ !
ମଣିଷ ଭିତରେ ବଞ୍ଚିଚ ଯେ ମଣିଷ ଠିକକ
ତାକୁ ଯେବେ ମୁହୂର୍ତ୍ତ ମୁହୂର୍ତ୍ତ ଧର
ଦେବ ତୁମେ ଢାଳ
ପୃଥିବୀର ରନ୍ଧ୍ରେ ରନ୍ଧ୍ରେ ଅମୃତର ବୀଣାତାନ
ଉଠିବ କ ମଧୁ ମନ୍ତ୍ରେ ଝର ? ?

—ତିନି—

ଯେଉଁଠାରେ ରହିଅଛି
ଅଗଣନ ଟଙ୍କା ଓ ପଇସା ;
ଯେଉଁଠାରେ ନଭସ୍ପର୍ଶୀ କୋଠାବାଡ଼ି—
ରହିଅଛି, ସୀମାହୀନ ଅହଙ୍କାର ଧରି !
ଯେଉଁଠାରେ ଅସମ୍ଭବ ଉକାପୃତ
ଧାପ୍ତ ହବାଲୋକେ ! !
ଯେଉଁଠାରେ ସପୃତାନ, ଜାଲ, ଜୁଆଘୋଷ୍ଠୀ
ପରଶିବ ତୃଡ଼ାନ୍ତ କଳ୍ପନା !
ଯେଉଁଠାରେ ଔଦ୍ଧତ୍ୟ ଓ ଅଧର୍ମିକା—
ଆଜୀବନ ରହିଅଛି,
ଗ୍ରୁଡ଼ିବାକୁ ଚରଦନ କୁଣ୍ଠିତ କାତର—
ସିଏ ପୁଣି ସୌଭାଗ୍ୟର ଲୀଳାସ୍ଥଳୀ
ସିଏ ପୁଣି କାମ୍ୟ ଜଗତର ! ! !

ଯେଉଁଠାରେ ଜୀବନର—
ସୀମାହୀନ ଆପଦେ ବିପଦେ
ଦରିଦ୍ର କୁଟୀରୁ ଆସି
କିଏ କେତେ ଅଯାଚିତେ
ହୋଇଯାଏ ସାହା,
ନୟନୁ ବୋହିଲେ ଲୁହ
କାହାର ଅନ୍ତର
ସେ ଯେ କେଉଁ ପଦ୍ମ-କୁଡ଼ିଆରୁ
କହିଯାଏ ଆହା !
ଯେଉଁଠାରେ ଦିନ ସାରା ଖଟି ଖଟି
ଆପଣାର ଧର୍ମ ତାଳ
କିଏ କାହିଁ ପ୍ରାଣଭରି କରଇ କଲ୍ୟାଣ,
ଅଥଚ ସେ ସବୁବେଳେ
ଶାନ୍ତ ଓ ବିନମ୍ରୀ
ସହିଷ୍ଣୁତା ମୂର୍ତ୍ତି ପରି ହସେ ତାର ପ୍ରାଣ !
ଯେଉଁଠାରେ ଶତ ରୂପେ ହୋଇ ନାରଖାର
ଜୀବନର ଦୀପ ଜଳେ ସ୍ୱର୍ଣ୍ଣ ଶିଖା ଧରି

ସିଏ ପୁଣି ହତଭାଗ୍ୟ ମାଟି
ଆସିବ ଜଗତ ତାରେ ଘୃଣା କରି
ପଥପ୍ରାନ୍ତେ ଦଳି ! ! !

ଏକ ସ୍ଥାନୁ ଝରୁଅଛି ହୃଦୟ ଅମୃତ
ଅନ୍ୟ ସ୍ଥାନୁ ହେଉଅଛି ବିଷ ଉଦ୍‌ଗୀରଣ,
ଅନ୍ଧ ଏ ଦୁନିଆ ହାୟ ବିଷର ସନ୍ଧାନେ
ଗୃଲିଅଛି ହୋଇ ସତେ କି ଉଚାଟ ମନ !

—ଗୃହି—

ତାରେ କିଏ ଦେବ ନାହିଁ
ସୁଯୋଗ ସୁବିଧା ପୂର୍ଣ୍ଣ ଅଧିକାର ?
ବଞ୍ଚିବାକୁ ତା'ମାନି ସମ୍ଭ୍ରମ ଧରି
ଧରି ତାର ମଧୁର ସଂସାର ?
ତା' ଅନ୍ତର ହସିବ ନି ଦେଖି ଏଇ —
ତରଳ ଚଞ୍ଚଳ ସ୍ୱଚ୍ଛ ଜହ୍ନରାତି
ଦେଖିବ ନି ପ୍ରାଣର ମଧୁର ସ୍ୱପ୍ନ
ଉଠିବ ନି ପୁଲକ ତା' ଛାତି ?
ଗାଇବନି ଗୀତ ସିଏ
ମନର ମଉଜେ
ଏ ସୁନ୍ଦର ବସୁନ୍ଧରା ପରେ ?
ପିନ୍ଧିବ ନି ସୁନ୍ଦର ପୋଷାକ
ଭ୍ରମ ଭୁଲେ ବୁଲିବ ନି ଥରେ ?
ହୃଦୟର ସୁଖ ଦୁଃଖ
କହିବନି ତୁମରେ କି
ଆପଣାର କରି ?
ଯେ ଟିକକ ପ୍ରତିଭା ତାହାର
ଯିବ ସେ କି ତା'ଭିତରେ ମରି ?

ଏ ଆକାଶ ଏ ପୃଥିବୀ
ବିଲ ବନ ପାହାଡ଼ ପ୍ରାନ୍ତର
ତା' ପାଇଁ କି ଖୋଲିବେ ନି

ମଧୁର ଅନ୍ତର ?
ବିହଗର ମଧୁକଣ୍ଠ
କାନେ ତାର ଢାଳିବ ନି ସୁଧା ?
ରହିବ ଅତୃପ୍ତ ସତେ
ତା' ଦରିଦ୍ର ଜୀବନର
ଯେତେ ଯେତେ କ୍ଷୁଧା ?
ଏ ଧରଣୀ ଲାଗିବ ନି ତାରେ
ସରଗରୁ ବଳି ମଧୁମୟ !
ଗୋଟିଏ ନିମେଷ ପିଏ
କାଟିବ ନି ହୋଇ ଏଥି ନିଃଶଙ୍କ ନିର୍ଭୟ ?
ତା' ଓଠ କି ପଡ଼ିଥିବ ଫିକା
ଯୁଗ ଯୁଗ କାଳ କାଳ ଧରି ?
ଚିରଦିନ ରହିଥିବ ସେ କି
ଜଗତରେ ଖାଲି ମରି ମରି ?
ଆନନ୍ଦର ଅମୃତର ବିଶାଳ ବସୁଧା
ଲାଗୁଥିବ ତାରେ ଖାଲି ମରୁଭୂମି ପରି ?
ଆଖି ଲୁହ ହାତ ପଛେ ପୋଛି
ଚିରଦିନ ରହିଥିବ ପଡ଼ି ?
ସୁନ୍ଦର ଜୀବନ ତାର
ଲାଗୁଥିବ ନିପୂତ ଦୁର୍ବହ
ଲାଞ୍ଛନାର ତାଡ଼ନାର ଅଭାବର କଶାଘାତେ
ହେଉଥିବ ଆକୁଳ ଅଥୟ ?
କେ' ତାରେ ବୁଝିବ ନାହିଁ ?
ଦେବ ତୁମେ ସମସ୍ତେ ଆଡ଼େଇ ?
ଠେଲିଥିବ ସେ କି ସବୁବେଳେ
ସୀମାହୀନ ଆଘାତ ଓ ପ୍ରତିଘାତ ଦେଇ ?
ସିଏ କଣ ନିଭିଯିବ ?
ଜଳିବ ନି କେବେ ହେଲେ ଥରେ ?
ସେ କି ଏଡ଼େ ତୁଚ୍ଛ ?
କିଛି ନୁହଁ ଏ ମହା ବିଶ୍ୱରେ ? ? ?

## —ପାଞ୍ଚ—

ତୁମେ ଯା'ଙ୍କୁ ଅସଭ୍ୟ ବର୍ବର ମଳମୁଣ୍ଡିଆ କହ
ପାଦ ତଳେ ଦେଉଚ ଆଡ଼େଇ
ସେମାନଙ୍କ ପ୍ରତି ବିନ୍ଦୁ ଶୋଣିତର ଦାନ ନେଇ
ବଞ୍ଚି ନ କି ତୁମେ ଧରାତଳେ ?
ସେମାନଙ୍କୁ ଗ୍ଲଡ଼ିଦେଲେ
କାହିଁ ତୁମ ଗତି ସ୍ଥିତି
କହ ଆଜି କହ ମତେ ଥରେ ! !

ତୁମେ ଆଉ ସେମାନଙ୍କ ମେଳେ
ଗଢ଼ିଅଛ କିଆଁ ଏ ପାଚେରୀ ?
ତାଙ୍କଠାରେ ନାଇଁ କିବା ବଇଭବ ଶିଖା ?
ସେମାନେ କାହିଁକି ଶ୍ରେଷ୍ଠ ?
ତୁମେ କମ୍ପା ବଡ଼ ?
କାହିଁକି ଏ ଆଭିଜାତ୍ୟ ଅଭିମାନ ରହିଚି ତୁମର !

ମୁହୂର୍ତ୍ତି ମୁହୂର୍ତ୍ତି ଧରି
ପୃଥିବୀ ଆଖିରେ ତୁମେ
ପକାଉଚ ଧୂଳି
ତୁମ ତହୁଁ ବଳ କେହି ନାଇଁ—
ବଜାଉଚ ଆପଣାର ଜୟର ଦୁନ୍ଦୁଭି
ଯୁଗ ଯୁଗ ଧରି !
ସେମାନେ ନିରୀହ ଶାନ୍ତ ନିର୍ଦ୍ଦୋଷ ଜନତା
ସେମାନଙ୍କ ପରେ କରିବାକୁ ଅତ୍ୟାଚାର
ତୁମେ ଖାଲି ଖଟାଅ କ୍ଷମତା !!

ବୁକୁ ଚାଟି ରକ୍ତ ଦେଇ
ପୃଥିବୀରେ କାମ ଯିଏ—
କରି ଚାଲେ ହୋଇ ନିସ୍ୱାପର
ତା' ଉପରେ ଯେତେ ଯାହା
ଅତ୍ୟାଚାର କର,
ଦିନେ ସେ ଜାଗିବ ଧରି
ଶତ ସିଂହ ବଳ !!!

—ଛଅ—

ଏଇତ ଦେଖୁଚ ଏବେ
ଏ ମାଟିର ଶତ ଶତ
ମୂଲିଆ ଓ ମଜୁରିଆ
ଯାଉଚନ୍ତି ବାଛିବାକୁ ଧାନ
ଦିଶୁଚନ୍ତି କ୍ଷୀର୍ଣ୍ଣ ଶୀର୍ଣ୍ଣ
କଙ୍କାଳର ମାଳା ଅଛି
ହୋଇ ତାଙ୍କ ପ୍ରାଣ !
ଜମି ସବୁ ପଡ଼ିଅଛି
ପଡ଼ିଆ ପଙ୍କାଳ
ଏଇ ବର୍ଷ ବର୍ଷା ନାହିଁ ହେଲା,
ଯାଉଚନ୍ତି ଦୂର ଗାଏଁ ।
କରିବାକୁ କାମ
ଯୁବା ଯଉବନୀ
ଭେଣ୍ଡା ପିଲା !
ଖାଇ ତ ନାହାନ୍ତି କେଛି !
ଲାଗି ଯାଇ ଅଛି ପେଟେ
ମୂଲ କାହିଁ ଆଣିଲେ ଗଣ୍ଡିଏ
ଗୁଣ୍ଡଳ କିଣିବେ ହେଲେ
କେତେ ଯେ ଅନାସ୍ଥ ହୋଇ
ଧରଣୀରେ ରହିଚନ୍ତି ସିଏ !!

ଅଭାବ ! ଅଭାବ ଖାଲି !
ଅନନ୍ତ ଅଭାବ !
ହାତ ପାଦ ଚକ୍ଷୁ ନାଶା
କପାଳ ଆବରି,
କେମନ୍ତେ ରାଜତ୍ତ କରେ,
ପ୍ରାଣର ସମସ୍ତ ଶୋଭା
ନିର୍ମମ ପିଶାଚ ସମ
ଦିଏ ଧ୍ୱଂସ କରି !!
ଜଣେ ନୁହେଁ, ନୁହେ ଦୁଇଜଣ
ହଜାର ହଜାର ଏ ଯେ—

ନଆଶ୍ରିକ ଜନ
ଚୃହିଁ ଦେଲେ ଏମାନଙ୍କୁ
ବାରେ କେ' କହିବ
ଫୁଟିବ ଏହାଙ୍କଠାରୁ
ମଣିଷର ଦୁର୍ଲ୍ଲଭ ଜୀବନ ?

କଏ ବାସି ତୋରାଣିରୁ
ଢୋକେ ପିଇ
ଯାଉଥିବ କାମେ,
କା ଘରେ ନ ଥିବ କିଛି
ମଧେ ପାଣି ପିଇ
ଚୃଲିଥିବ କାମ କରିବାକୁ
ଦୂର ଗ୍ରାମେ !
କଏ ଖାଇଥିବ ଜାଉ
ଲୁଣ ରୁଏ ନାହିଁ ଥିବ
ସାଙ୍ଗକୁ ତାହାର;
କାହା ଝିଅ କାନ୍ଦୁଥିବ
ଉପାସେ କ ଭଳ ଯିବ !
ମାଆ କହୁଥିବ
ବେଗି ଆସିବୁ ବାହାର !
କୁଢ଼ଆ ଖଣ୍ଡିଏ ଖଣ୍ଡିଏ—
ସବୁ ତାଟି କଳ ଦେଇ
କେତେ ବଣ ବୁଦା ହୋଇ ପାର
ଯାଉଚନ୍ତି କାମ ଦାମ
କରିବାର ଲଗି
ବଦନ ମଣ୍ଡଳେ ଜାଗେ
ବେଦନାର କାଳ ! !,

ଚୃହିଁ ଦେଲେ ଏମାନଙ୍କୁ
ଠିଆ ହୋଇ ପଥପ୍ରାନ୍ତେ,
ଝରିଯାଏ ମୋ ନୟନୁ
ଲୁହ ଝର ଝର ! !

ପୃଥିବୀରେ କେତେ ଦୁଃଖେ
କଏ କାହିଁ ରହିଚନ୍ତି
ମୋହର ଶୋଣିତ ଧର
ଧର ମୋ ଅନ୍ତର ! !
ଘୋଡ଼ାଇ ହେବାକୁ କା'ର
କନା ଖଣ୍ଡେ ନାହିଁ
ବୁଝିବାକୁ ପ୍ରାଣର ଦଇନ
ନାହିଁ କେହି ଆପଣାର ଜନ
ବିରାଟ ଆକାଶ ତଳେ
ଏଇ ରାଜପଥ ଧାରେ
ଚୁଲଚନ୍ତି କେଉଁ ଦୂରଗାଏଁ
କରିବାକୁ ଅନ୍ନ ଅନ୍ୱେଷଣ !

ଧିକ୍ ଧିକ୍ ଶତ ଧିକ୍ !
ଯେଉଁମାନେ ଏମାନଙ୍କୁ ଚହିଁ
ନାକ ଟେକ ଅପଦାର୍ଥ ମନେ କରି
ପାଦ ତଳେ ଦିଅନ୍ତି ଆଡ଼େଇ !
ନିତଳ ସଉଧେ ରହି
ଏସରାଜ ରେଡିଓ ଭିତରେ
ହସି ହସି ଦିନମାନ ନିଅନ୍ତି ପୁହାଇ !
ଘନ ଘୋର ଅନ୍ଧକାରେ
ଅସଭ୍ୟ ବର୍ବର କରି ମଣିଷକୁ ରଖି,
ସୀମାହୀନ ଅଭାବ ଓ ଯାତନାରେ
ମଣିଷକୁ ଚିରକାଳ ସତାଇ ସତାଇ
ସେ ଶାସନ ଚଳେ—
ମଣିଷର ଲୁହ ନିଶ୍ୱାସର ତାପେ
କେତେ ଦିନ ତିଷ୍ଠିବ ସେ ?
ଟଳି ଯିବ ଦିନେ ଅସମ୍ଭାଳେ !
ସେ ଶାସନ ଦଣ୍ଡ ଧରି
ଗର୍ବ ଗଉରବ—
ଅନୁଭବେ ଯେ ଶାସକ ଜନ
କି ବୀଭତ୍ସ ପୂତି ଗନ୍ଧମୟ
ତା ଅନ୍ତର ମନ ! ! !

ଶାସନର ଅର୍ଥ ନୁହେ
ପ୍ରଭୁତ୍ୱ, ହାକମି
ଅବା ସୀମାହୀନ ଘୋର ଅତ୍ୟାଚାର !
ପ୍ରତି ଜୀବନର ପରମ କଲ୍ୟାଣ ଲାଗି
ମୁହୂର୍ତ୍ତେ ମୁହୂର୍ତ୍ତ ଧରି, ବୁଣିଦଏ ଯାହା
ଅମୃତର ଅସରନ୍ତି ଧାର—
ସେ ଏକା ଶାସନ
ସେ ରାଇଜ ସରଗରୁ ବଳି
ସୁଖ ଶାନ୍ତି କଲ୍ୟାଣର
ପୂଣ୍ୟ ନିକେତନ ! !

—ସାତ—

ତୁମର ସେ ଅସ୍ଥି ମଜ୍ଜା
ଶୋଣିତର ପ୍ରତିବିନ୍ଦୁ ତଳେ
ଜୀବନର ଧାପ ନାହିଁ ଜଳେ
ତୁମେ ପ୍ରବଞ୍ଚକ
ତୁମେ ଯେଉଁ ଏ ମାଟିର
ଜୀବନ୍ତ ନରକ !
ତୁମର ଭିତରେ ତୁମେ ନାହିଁ
ତୁମେ ଅଛ ଛଳନାର ବିଷାକ୍ତ ଗହ୍ୱରେ
ଏକ ଭୟଙ୍କର ସରୀସୃପ ପ୍ରାୟ
ନିଜକୁ ଜାଣିନ ତମେ
ଜାଣିବାକୁ ଦେଇନାହିଁ ବାରେ ଅବକାଶ
କେମନ୍ତେ ଜାଣିବ ତୁମେ ?
ମଣିଷର ସକଳ ସମ୍ପଦ
ତୁମଠାରୁ ହୋଇଛି ବିନାଶ !

ଅଗଣିନ ଏ ମଣିଷ ଜାତି !
ସବୁରିଙ୍କୁ ଘୃଣା
ସବୁରିଙ୍କୁ ଅବିଶ୍ୱାସ
ସବୁରିଙ୍କୁ କରୁଅଛ
ଉକ୍ରଟ ସନ୍ଦେହ

ତୁମେ ଖାଲି ଛପି ଛପି
କରୁଚ ଆସିବା ଯିବା
କେମିତି ଲଗୁନ ତଳେ
ସର୍ବାଙ୍ଗ
ତୁମ ମନ ଦେହ ?

ଏ ଅନନ୍ତ ପୃଥିବୀ ଉପରେ
ଜୀବନ ଜୀବନ ସହ
ଅନ୍ତର ମିଶାଇ
ଚାଲିବାକୁ
ଆପଣାର ଯାତ୍ରା ପଥେ
ଯେବେ କୁଣ୍ଠାବୋଧ କରେ
କି କଦର୍ଯ୍ୟ ଜଘନ୍ୟ ଭିତ୍ତାରେ
ସେ' ଯେ ପାଦ ଚାଲି ଚାଲେ—
କେମନ୍ତେ ପାରିବ କହି ?
ଆସୁନ ମୋ
କଳ୍ପନାର ତଳେ ! !

ସମାଜର ସ୍ତରେ ସ୍ତରେ
ରହିଅଛ ତୁମେ ଚକାମାଡ଼ି
ତୁମରି ନିର୍ମମ ହାତ
ସୃଜନ କରୁଚ କେତେ
ଶ୍ମଶାନର ଗାତ
ଏ ମାଟିର ଚତୁର୍ଦ୍ଦିଗେ
ସୀମା ତାର କାହିଁ ?
କେଉଁ ପିଶାଚର
ନିର୍ଯାସରେ ଗଢ଼ା
ତୁମ ଦେହ ମନ ଜାଣିପାରେ ନାହିଁ ! !

କ୍ଷମତା ଓ ଧନ ଏଇତ ତୁମର ଅସ୍ତ୍ର !
ଯାହାର ବଳେ ବଡ଼ାଇଚ ତମେ
କରୁଥିବ ଚିରଦିନ ଏଥି ଧଳପଣ !
ଏହାର ବଳରେ ତୁମେ

କରିଯିବ ସବୁ ଅନାସ୍ଥର
ଏ ଟିକକ ଥିଲେ ଯେତ୍ତେ
ପୃଥିବୀ ତୁମର ହାତେ
ଗୋଟେ ଖେଳଘର ।
ତୁମେ ଖାଲ ଲୋଡ଼
ଦୁନିଆର ଆଜ ଯେ ସମସ୍ତେ
ଡର ମର ରହିଥିବେ
ତୁମ ପାଦ ତଳେ ।
ତୁମେ ଖାଲ କରୁଥିବ
ନିରଙ୍କୁଶ ରାଜପଣ
ତାଙ୍କର ଉପରେ !

ଜାଣ ତୁମେ ଜାଣ ?
ମଣିଷ ଏ ପୃଥିବୀର ସମସ୍ତ କ୍ଷମତା !
ମଣିଷ ଏ ପୃଥିବୀର ଏକମାତ୍ର ଧନ !
ମଣିଷ ଏ ପୃଥିବୀର ଏକାନ୍ତ ଗୌରବ !
ମଣିଷରେ ଦୂରେ ଦୂରେ ବହୁଦୂରେ
ଫିଙ୍ଗିଦେଲେ ତମେ
ଏ ଜୀବନ କେଡ଼େ ନିଃସ୍ୱ କେଡ଼େ ପ୍ରାଣହୀନ ! !

ଯେଉଁ ଦେଶ
ଯେଉଁ ବ୍ୟକ୍ତି
ମଣିଷକୁ ଦେଇନାହିଁ
ସେନେହ ସମ୍ମାନ,
ବୁଝିନାହିଁ ବୁଝିନାହିଁ
ମଣିଷର ପ୍ରାଣ
ଏ ମାଟିର ପରମ କଲ୍ୟାଣ
ମଣିଷର ଦରଦରେ
କାନ୍ଦନାହିଁ ଲୁହଟିଏ ତାଳ
ହୃଦୟ ସର୍ବସ୍ୱ ଦେଇ
ଆପଣାର ଶୋଣିତରେ ମଣିଷକୁ
ଆଣିନାହିଁ ପାଳ,
ସେଇ ବ୍ୟକ୍ତି ସେଇ ଦେଶ

ଆପେ ଆପେ
ଯାଇନକ ଅସ୍ତହୋଇ
ଧଗ୍‌ବଳୟ ଆର ପାରେ
ଚିରଦିନ ପାଇଁ···?

—ଆଠ—

ନାଇଁ ସଖା ! ନାଇଁ ବନ୍ଧୁ !
କରନାଇଁ ମତେ ଅନୁରୋଧ
ଯିବାପାଇଁ ସେଇ ଥାନେ ମୋର—·
ହୁଏନାଇଁ ତିଳେକ ହୃଦ୍-ବୋଧ ।
ସେଠିକି ଯିବ ନ ମୁହିଁ
ମାଡ଼ିବ ନ ଲବେ ସେଇଥାନ
ସେ ଭୂଇଁର ମୋହନ ଉତ୍ସବେ
ଫୁଟେନାଇ ମୋ ଅନ୍ତର-ଗାନ ।
ଜାଗେ ନାଇଁ ମରମେ ମୋହର
ଅମୃତର ଏକଇ ଉଚ୍ଛ୍ୱାସ
ଯେତେଦେଲେ ଅମିତ ଗୌରବ
ଅଧରେ ମୋ ଜାଗେ ନାଇଁ ହାସ ।
କ୍ଷମତା ଓ ସମ୍ପଦର ଜୟ ଜୟକାରେ
ଯେଉଁ ମାଟି ନିତ୍ୟ ମୁଖରିତ,
ବେଶ ବାସ ବଇବ ଗୌରବ
ହୁଏ ଯହିଁ ଖାଲି ସମ୍ମାନିତ,
ଯାନ ନିଃସ୍ୱ ଦାରିଦ୍ର୍ୟରେ ଗୃହିଁ
ଯେଉଁଠାରେ କା' ଅନ୍ତର
ଯାଏନାଇଁ ତିଳେହେଲେ ଦ୍ରବ,
ଦୁଃଖୀର ଅଭାବ ଦେଖି,
ନେତ୍ରୁ ଯହିଁ,
ଏକ ବିନ୍ଦୁ ଲୁଣି ଲୁହ ଉଠେ ନାଇଁ ସ୍ରବ,
ହଜାର ହଜାର ଯାନ ଦୁଃଖୀ
ନିଆଶ୍ରିକ ଜୀବନର
ଲୁହବୋଳା ମର୍ମନ୍ତୁଦ—
ଦୃଶ୍ୟ ଗୃହିଁ ଗୃହିଁ,

ଗୌରବର ଗଜଦନ୍ତ ଗାଦିପରେ ତାଙ୍କ
ଏକାଇ ନମେଷ ବସି ପାରିବ ମୁଁ ନାହିଁ !!

ମୋହଠି ରହିଛି ଯେଉଁ ରକ୍ତ ମାଂସ ହାଡ଼,
ମୋହଠି ରହିଛି ଭରି ଯେ ଅନ୍ତର ମନ,
ସେଇ ଉପାଦାନ ନେଇ
ଗଢ଼ାନିକ ? ଲକ୍ଷ ଲକ୍ଷ ଲାଞ୍ଛିତ ଜୀବନ !
ମୁଁ ଆଜ ଲୋଡ଼ୁଛି ଯେଉଁ ଅତୁଳ ଐଶ୍ୱର୍ଯ୍ୟ
ସେମାନେ କି ଲୋଡ଼ୁଥିବେ ନାହିଁ ?
ସମସ୍ତ ସୁନେଲି ସ୍ୱପ୍ନ
ସେଇ ନିଃସ୍ୱ ବୁକୁତଳେ ଉଇଁ
ଯାଉଥିବ ମରିବେ ଉଭାଇ ! !
ବଞ୍ଚି ଏ ବସୁଧାର ଅଭିଶପ୍ତ ପ୍ରାଣୀ ପରି,
କେତେ କାଳ ବଞ୍ଚିରହି,
ଦୁଃଖ ଭୋଗ ଅଗ୍ରିବର ଅନନ୍ତ ଭୂମିରେ,
ବୁଡ଼ିଯିବେ ଦିନେ କେଉଁ ମହାକାଳମାରେ !
ଧରଣୀରେ ଆସିବାର
ଜୀବନକୁ କରିବାର,
ବିଷଭରି ବାରେ ଉପଭୋଗ
ମିଳେ ନାହିଁ ଦଣ୍ଡେ ପାଇଁ ଯାହାରେ ସୁଯୋଗ ।
ସେ ମୁମୂର୍ଷୁ, ଚିର ରୁଗ୍‌ଣ, ଚିର ନିସ୍ୱ, ଚିର—
ହାହାମୟ—ଜନତାର ଲାଗି,
ବଞ୍ଚି ସହାନୁଭୂତି ବିଷଭରି ଉଠେନାହିଁ ଜାଗି—
ଯେଉଁ ଧରଣୀର,
ସେଠି ଅଛି ଯେ ମାନବିକତା,
ସେ କି ଯୁଗ ଯୁଗ ଧରି ହୋଇନାହିଁ ନତଶିର ?
ମଧ୍ୟାହ୍ନର ଗ୍ରୀଷ୍ମ ସମ
ଦୃଷ୍ଟି ରେଖା ତାଙ୍କ ଯେତେ କେତେ ସଙ୍କୁଚିତ !
ଜିବନ ନିମିଷେ ତାଙ୍କ,
ଜିବାପାଇଁ ମୋ ଅନ୍ତର ସେଇଥାନେ ସତତ କୁଣ୍ଠିତ
ଜିବି ମୁହିଁ ମାତ୍ର ସେଇ ଅପନ୍ତରା ସେ ଅରମା ବାଟ
ପୃଥ୍ୱୀର ଶତ ଦୁଃଖ

ଅମ୍ବରର ନଦାରୁଣ ବର୍ଷିକା
କରେ ଯହିଁ ଚିରନ୍ଦନ ଚିରକାଳ ସକରୁଣ ନାଟ,
କାନେ ମୋର ବାଜିଯାଏ ବୁଭୁକ୍ଷୁର ଦୈନ୍ୟବୋଳା ବାଣୀ
ତରଳାଇ ଦିଏ ମୋର ହୃଦୟର ପ୍ରସ୍ତରେଣୁ କଣା
ନିରାଶ୍ରୟ ନୟନର ତପ୍ତ ଅଶ୍ରୁ
ମରମେ ମରମେ ମୋର କି ଆଘାତ ହାଣି !
ଡାକେ ମତେ ପୃଥିବୀର
ସେଇ ଅପନ୍ତ୍ୱ
ସେ ଅରମା ଭୂଇଁ
କାଳ କାଳ ଧରି ଯିଏ
ମଣିଷ ଅନ୍ତର ସୁଧା
ଲଭେ ନାଇଁ ଛୁଇଁ !!

—ନଅ—

ଯିବନାଇଁ ?
ଯାହା ଲାଗି ଏତେ ଏତେ
ସାଧନା ଧିଆନ
ଯାହା ଲାଗି ଅକୁଣ୍ଠିତେ
ଦେବା ଲାଗି ପ୍ରାଣ
ରହିଁ ମୁଁ ବସିଚ ନିତି
ଯାହା ପାଇଁ ମମ
ବୁକୁ ତଳେ ଜାଗି ଉଠେ
ସିଂହର ବିକ୍ରମ ।
ସମସ୍ତ ବନ୍ଧନ ବାଧା
ଏଡ଼ି ଦେଇ ବାରେ
ଯିବାକୁ ମୁଁ ଉତ୍କଣ୍ଠିତ
କେମନ୍ତେ ମୁଁ ତାରେ
ପାଶୋରି ପାରିବି କହ ?
ଯିବ ମୁହିଁ ଝଡ଼ ?
କଣକାଠି ବୃନ୍ତ ଚୂଡ଼
ଝଡ଼ ଗଲା ପରି ?

ପ୍ରାଣହୀନ ମହାମରୁ
ବାଲୁସ୍ତୂପ ପରି
ମୁଁ କ ଖାଲି ପଡ଼ିଥିବ
ଯୁଗ ଯୁଗ ଧରି ?

ସୀମାହୀନ ପାରାବାରେ
ଉଚ୍ଛୃଙ୍ଖଳ ଉର୍ମିମାଳା
ଝଡ଼ର ଉତ୍ସଙ୍ଗେ
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ
ଉଠିବାର ପରି
ଅଣଗୃଶ ପବନର
ମହା ଆବର୍ତ୍ତନେ
ମେଘ ଆସେ ଯେଉଁଭଳି
ଦୂରୁ ଦୂରୁ ବହୁ ଦୂରୁ
ପ୍ରଳୟର ମହାମୂର୍ତ୍ତି ଧରି
ଆଗ୍ନେୟ ପର୍ବତ ଚୂଡ଼େ
ଅଗ୍ନିଶିଖା
ଯେସନେ ଉଠେ ଜଳି
ଚତୁର୍ଦ୍ଦିଗେ
ମୁହୁର୍ମୁହୁ
ଜଗାଇ କମ୍ପନ,
ସେଭଳି ଉଠିବ ମୁହିଁ
ଅଛି ମୋର ସୀମାହୀନ—
ଶକ୍ତି ପରାକ୍ରମ ! !

ଶତ ଓ ସହସ୍ରବାର
ମତେ କଏ ଗୃପାଦେଲେ
ପୃଥିବୀ ଅତଳ ତଳେ
ନିଭିଯିବ ନାହିଁ ! !
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ
ଆହୁରି ଅସୀମ ଊର୍ଦ୍ଧ୍ୱେ
ଉଠିବ ଉଠିବ ମୁହିଁ

ଦିନ ଦିନ ଧରି ମୁଁ ଯେ
ରହିଅଛି ଚାହିଁ ! !

ମୁଁ ଚାଲିବି ସେଇ-ପଥେ !
ଚିରଦିନ ଯେଉଁପଥ !
ଭୀଷଣ ଦୁର୍ଗମ ! !
ଯେଉଁଠି
ବିପଦ, ଭୟ,
ଦୁଃଖ ଓ ଦୁର୍ଦ୍ଦଶା
ବନ୍ୟ ହିଂସ୍ର ଜନ୍ତୁ ପରି
କରଇ ଗର୍ଜ୍ଜନ ! !
ଯେଉଁଠି ଚାଲିବା ପାଇଁ
ଥରିଯାଏ ଧରଣୀର ହିୟା !
ନିଭିଯାଏ ବୁକୁ ତଳୁ
ଦମ୍ଭ ଆଉ ସାହସର ନିଆଁ ;
ଯେଉଁଠି କେ ଚାଲେ ନାହିଁ
ଚାଲିପାରେ ନାହିଁ
ପାଦ ଚିପି ଚିପି ଚାଲେ
ଫେରିଆସେ
ଖଣ୍ଡେ ଦୂର ଯାଇ,
ଯେଉଁଠି ରହିଲେ କିଏ,
ରହିଥାଏ ଚିରଦିନ
ମଡ଼ା ଓ ମୂର୍ଦ୍ଧାର ପରି
ଜୀବନ ସର୍ବସ୍ୱ
ବଳି ଦେଇ
କାହା ପାଦତଳେ,
ଟିକିଏ ସେ
ହେଲେ ହଲଚଲ,
ପ୍ରାଣର ସଂଚାର ହେଲେ
ତା'ଭିତରେ
ଲବ୍‌ମାତରକେ
ବାଜଇ ଅଙ୍କୁଶ ତା'ଠି

ପାରେନା ପାରେନା ଉଠି
ପଡ଼ି ରହେ
ପାଟି ଭୁଣ୍ଡ ଚପି କଲବଲେ !

ସେ ଦୁର୍ଗମ ପଥେ ପଥେ
ଚ଼ାଲିବ ଚାଲିବ ମୁହିଁ
ହେବ ପଛେ ମୁଁ କ୍ଷତ ବିକ୍ଷତ
ରକ୍ତ ପଛେ
ଧାର ଧାର ହୋଇ
ବହିଯିବ
ପ୍ରତି ଅଙ୍ଗ ମମ
ଦେବ ନାହିଁ ପଛଘୁଞ୍ଚା
ଯିବ ନାହିଁ ଲଇଁ
ମୋ ଶୋଣିତ ପ୍ରତିବିନ୍ଦୁ
ଶୀତଳ ଶିଥିଳ ନୁହେଁ
ତା' ଭିତରେ
ଅଗ୍ନି ଜଳେ
ଦପ ଦପ ହୋଇ ! !

କେ ଗୃହେରେ
କା' ଦୁଆରେ
ଚିର ଦିନ
ହେବାକୁ ଗୋଲାମ ?
ଯାଉଣୁ ଆସୁଣୁ ନିତି
କରିବାକୁ ପ୍ରାଣହୀନ—
ସହସ୍ର ସଲାମ !
ହଜୁର ହଜୁର କହି
ପଛେ ପଛେ
ଚିରଦିନ ଗୋଡ଼ାଇବା ପାଇଁ
ନିଜର ସମସ୍ତ ଟିକ
ମାରି ହାଣି
ନିତି ଟିକ ଟିକ କରିଦେଇ !

ଜୀବନ ମୋହର କରେ
ଏତେ ତୁଚ୍ଛ ଏତେ ହେୟ
ତୁମେ ମନେକର ?
ଅନ୍ୟର ଆଶ୍ରୟ ବନୁ
ମୋ ପକ୍ଷେ ଚଳିବା କଣ
ଏତେ କଷ୍ଟକର ?
ବଳଥାଇ ବୀର୍ଯ୍ୟଥାଇ
ମୁହିଁ କଂପା
ହେବରେ ଗୋଲାମ !
ଅନ୍ୟ ପାଦ ଚଟି ଚଟି
ପାଇକ ପାରିବ କେବେ
ଅମୃତ ସନ୍ଧାନ ?
ମୁହୂର୍ତ୍ତ ମୁହୂର୍ତ୍ତ ଧରି
ନିଜକୁ ମୁହିଁରେ
ମାରି ମାରି ଖାଲି ମାରି ମାରି
କି ମଧୁସ୍ୱାଦ କିଶି
ପାଇବି କହନ୍ତ ଏଠି ବାଟ ଚାଲି !
ମୋହଠି ରହିଛି ଯେଉଁ
ଆଲୋକ ବର୍ତ୍ତିକା
ଜାଳେଁ ତାକୁ ଜାଳେଁ
ତାହାରେ ନିଭାଇ କପାଁ
ରହିବି ମୁଁ ନିବିଡ଼ ଅନ୍ଧାରେ ?
ମୁହିଁ ତ ଜୀବନ
ମୋହର ଭିତରେ ବ୍ୟାପ୍ତ
ସୀମାହୀନ
ମହତ୍ତ୍ୱ ଉପନ
ଠିଆହେବି
ଅନ୍ଧାଭିଡ଼
ମୃତ ଓ ମୁମୂର୍ଷୁ ପରି
ରହିବି ନ ରହିବି ନ ତଳେ ;
ଗୋଲାମିର ଘୃଣ୍ୟଶିକରେ

ପଦାଘାତ କର
ଶୃଙ୍ଖଳୁ ମୋର ଜୀବନ ଦଣ୍ଡ
ବିଜୟ ସମ୍ଭାରେ !
ଯେଉଁଠି ଟିକିଏ ଅଛି
ସତ୍ତା ଜୀବନର
କ୍ଷୁଦ୍ର ନୁହେଁ
ତୁଚ୍ଛ ନୁହେଁ ତାହା ।
ମୋହଠି ଜୀବନ ଅଛି
ପାରୁଛି ମୁଁ ଜାଣି ତାହା
ଅନ୍ତରେ ଅନ୍ତରେ ! !
ଦେଖିବ ଦେଖିବ ମୁହିଁ
କାହା ଲେଲିହାନ ଜିହ୍ୱା
ଘରପୋଡ଼ ଅଗ୍ନି ପରି
ମେଲାଇ ସହସ୍ର ଶିଖା
ନେଉଛି ଏ ଧରିତ୍ରୀରେ ଗୃହି,
ଚତୁର୍ଦ୍ଦିଗେ ପଡ଼ିଅଛି
ଚାଉଁଶ ଅଙ୍ଗାର
ଘରପୋଡ଼ା
ଶତ କୁଟାକାଠି !
ମୋର ଏଇ ରକ୍ତ ମାଂସ ହାଡ଼—
ଭିତରୁ ଛୁଟୁଛି ଆଜି
ଝଡ଼ର ହୁଂକାର ।
ପାଗଳ ମୁଁ
ଅଥୟ ଚଞ୍ଚଳ !
ନୁହେ ଆଜି
ନିଜେ ମୁଁ ନିଜର !
ବରଂଚ ଏ ଧରିତ୍ରୀର
ଯେତେ ନିଃସ୍ୱ,
ନିପୀଡ଼ିତ,
ନିଷ୍ପେଷିତ,
—ସବୁରି ପ୍ରାଣର
ମୁହିଁ ଏକ

ସତ୍ୟ ବୋଲା
ଯାଉ ଚାଲୁଆର
ପ୍ରଳୟର ମହା ଅଗ୍ନି ଭେଦ
ପୃଥ୍ୱୀରେ କରିବାକୁ
ପ୍ରାଣର ଫଗୁର
ଉଠିଛି ମୁଁ
ଆସିଛି ମୁଁ,
ଆସିନାହିଁ
ଦାସତ୍ୱ ଶୃଙ୍ଖଳେ କାହିଁ
ବନ୍ଧା ରହି,
କରିବାକୁ
ଅନୁଗ୍ରହ ଭିକ୍ଷାକାର
ପଥଗୃହୀ
ନିରନ୍ନ କୁକ୍କୁର ପରି
ଲାଙ୍ଗଳ ହଲାଇ ! ! !

—ଦଶ—

ଧରଣୀରେ ରହେ ମୁହିଁ
ସୀମାହୀନ ରାଜ ଭୋଗ ତଳେ ।
ଅଭାବର କଷାଘାତ
ନ ପରଶୁ ମୋରେ ହେଲେ ଥରେ,
ହେମ ହର୍ମ୍ୟ କୋଳେ ଥାଏ
ଐଶ୍ୱର୍ଯ୍ୟର ମଧୁସ୍ପର୍ଶ ଲଭି !
ଗୋଲାପ ଶଯ୍ୟାରେ ତଳ
ଦେଖୁଥାଏ ଶତ ସ୍ୱର୍ଣ୍ଣ ଛବି
ଦୁଃଖ ଦାରିଦ୍ର୍ୟର ସେ ଯେ—
ମର୍ମନ୍ତୁଦ ଶତ ନିଷ୍ପେଷଣ
ନ ଭୋଗି ଜୀବନେ ଲଭେ
ବିତପାଉ ମୋର ପ୍ରତିକ୍ଷଣ
ଏ ସବୁ ଭିତରେ କିନ୍ତୁ
ଯେବେ ନାହିଁ ମୋର ସ୍ୱାଧୀନତା
କେମନ୍ତେ କହିବ ମୋର ଜୀବନରେ
ଅଛି ସାର୍ଥକତା ? ?

ସବୁ ଥାଇ ଯେବେ ମୁହିଁ
ଦାସତ୍ୱର ବିବର୍ଣ୍ଣ ଶୃଙ୍ଖଳେ
ବନ୍ଧା ହୋଇ ପଡ଼ିଥିବି
ଯେତେ ଯାହା ଆଶା ବୁକୁତଳେ
—ଫୁଟାଇ ପାରିବି ନାହିଁ
ରହୁଁଥିବି କା ଆଦେଶ ପ୍ରତି,
ଆକାଶର ମୁକ୍ତ ପକ୍ଷୀ ସମ
ପାରିବିନି କରି ଅଗ୍ରଗତି,
କୁସୁମର ଗନ୍ଧ ପରି
ଯିବି ନାହିଁ ଭାସି ଦୂରଆଡ଼,
ଚତୁର୍ଦ୍ଦିଗେ ମୋର ଯେବେ
ରହିଥିବ ଶତ ବଜ୍ରବାଡ଼,
ପାଦେ ମାତ୍ର ଯିବାପାଇଁ
ଯେବେ ଲକ୍ଷ ପାଦ ଧରାହେବ,
ଧିକ୍ ଧିକ୍ ମୋ ଐଶ୍ୱର୍ଯ୍ୟେ
କାହିଁ ତହିଁ ବିରାଟ ଗୌରବ ?
ଦରିଦ୍ର କୁଟୀର ତଳେ
ବସିଥାଏ କୁଶ ଶଯ୍ୟା ପାରି,
ଦାରିଦ୍ର୍ୟର କଷାଘାତେ
ରହେ କେବେ ହୋଇ ଅନାହାରୀ,
ନ ପଚାରୁ କେହି ମୋରେ
ନ ଥାଉ ମୋ ଭୋଗ ଆଡ଼ମ୍ବର
ପଦ୍ମର ଯୁଗଳୁ ଯେବେ ଛିଣ୍ଡି ଅଛି
—ଦାସତ୍ୱ ଶୃଙ୍ଖଳ

ମୁକ୍ତ ନୀଳାମ୍ବର ପରି
ଯେବେ ମୁହିଁ
ପୂର୍ଣ୍ଣ ପ୍ରସାରିତ,
ପ୍ରାଣ ପ୍ରତି ତନ୍ତ୍ରୀ ତନ୍ତୁ ଫୁଟେ ଯେବେ
ସ୍ୱାଧୀନ ସଙ୍ଗୀତ—
ପବନ ମର୍ମରପରି ଆପେ ଆପେ,
ଧ୍ୱନି ଧ୍ୱନି ଧ୍ୱନି,

କଏ କହ ଭାଗ୍ୟବାନ ପୃଥିବୀରେ
ମୋହ ତହୁଁ ବଳ ?

ମୁହିଁ ଗୃହେ ଧ୍ୱଜା ପୃଷ୍ଟେ
ବଞ୍ଚିବଇଁ ସେ ଜୀବନ ଧରି
ଦାଉ ଦାଉ ଜଳୁଥିବ ଯାହା
ଆକାଶର ଶତ ସୂର୍ଯ୍ୟପରି ;
ଅଗ୍ନି ଶିଖାସମ ଯେହୁ
କାଳକାଳ ହେବ ଊର୍ଦ୍ଧ୍ୱଗାମୀ
ଅନନ୍ତ ପ୍ରେରଣା ବହି
ବୁକୁ ତଳେ ତଳେ ଦିବାଯାମୀ
—ଉରିବ ନି ଥରିବ ନି
ରହିଥିବ ଶୁଦ୍ଧ ସତ୍ୟ ସମ
ପୃଥିବୀରେ ଅନନ୍ତ ବିକ୍ରମେ
କରୁଥିବ ନିତ୍ୟ ବିଚରଣ !
ଏଭଳି ଜୀବନେ ଅଛି
ଶତ ଗର୍ବ ଶତ ଗଉରବ
ଯେଉଁଠାରେ ସ୍ୱାଧୀନତା
ସେଠି ଏଇ ଜୀବନ ସମ୍ଭବ !!

ମୋରେ ଯଦି ଧରଣୀରେ
କେ ପଚୃରେ କିସ ତୁମ୍ଭେ ଗୃହ ?
ସବୁ ଯାଉ, ଥାଉ ମୋର ସ୍ୱାଧୀନତା
ଏଇ ଅଭିପ୍ରାୟ—
ଜଳଦ ଗମ୍ଭୀର ସ୍ୱରେ
କହିବଇଁ ବାରବାର କରି
ସ୍ୱାଧୀନତାଠାରୁ ବଳି
ପୃଥିବୀରେ ନାଇଁ ଅବତରି,
ବିରାଟ ସଂପଦ କିଛି ମଣିଷର ।
ସ୍ୱାଧୀନତା ଧରି
ମଣିଷ ସୁନାର ସ୍ୱର୍ଗ
ପୃଥିବୀରେ ଯାଏନିକି ଗଢ଼ି ?

ନିଜକୁ ଓ ଅପରକୁ
ଗୌରବେ ଫୁଟାଇବାର
ପାଏନିକ ପୂର୍ଣ୍ଣ ଅବକାଶ
ଦାସତ୍ୱ ଭିତରେ କାହିଁ
ଜୀବନର ମୋହନ ବିକାଶ ?

## —ଏଗାର—

ବର୍ଷ ଭରି ଭଲପାଏ ମୁହିଁ
ବିରାଟ ସୁନ୍ଦର ଏଇ
ଧରଣୀରେ ମୋର
ମରିବାକୁ ତାରିଲାଗି
ତାଳମୋର ଧମନୀର
ପ୍ରତି ରକ୍ତବିନ୍ଦୁ,
ଅକୁଣ୍ଠିତେ,
ଅକାତରେ ।
ଜୀବନର ସମସ୍ତ ମୁହୂର୍ତ୍ତି ଧରି
ତହିଁରେ ମୋ ଜୀବନର
ଅନନ୍ତ ଅମୃତ ଶୋହା
ଉଠିବ ସଂଚରି !

ଯେ ମାଟି ଉପରେ ଖାଲି
ହାଡ଼ ମାଳମାଳ !
ଯେ ମାଟି ଉପରେ ଖାଲି
କରୁଣ ଚିତ୍କାର !
ଯେ ମାଟି ଉପରେ ଖାଲି
ଦୈନ୍ୟ ଅନାହାର !
ରୋଗ ଦୁଃଖ ଅଭାବରେ
ନିଯୁତ ସନ୍ତୁଳ ହୋଇ
ଯେଉଁଠି ଜୀବନ ହୁଏ
ନିତ୍ୟ କଲବଲ
ଗୃହିଁ ଦେଲେ ଚତୁର୍ଦ୍ଦିଗେ
ଦିଗ୍‌ବଳୟ ବ୍ୟାପୀ

ଚିର ଅବସାଦ ଗ୍ରସ୍ତ
ଘେରି ଅଛି
ଯହିଁ ନିରନ୍ତର
ସେ ମାଟିରେ
ଆଣିବାକୁ
ଜୀବନର ଛଇ
ମନେବନ ?
ବାଞ୍ଛିବ ମୁଁ
ଘେନି କିବା
ଆନନ୍ଦ ସମ୍ଭାର ?

ମୋ ଆନନ୍ଦ,
ମୋ ଜୀବନ,
ମୋହର ସହସ୍ର ସ୍ୱପ୍ନ,
ସବୁ ଆଶା ସବୁ ଅଭିଳାଷ
ଏଇ ମାଟି ଏଇ ଦେଶ
ଏଇ ମୋର ବିରାଟ ଜନତା ।
ଏ ସବୁରେ
ନିର୍ମମ ପିଶାଚ ପରି
ପଦତଳେ ଦଳି
କେମନ୍ତେ ଗୃଳିବ କହ
କେଉଁଆଡ଼େ
କି ସମ୍ପଦ ଧରି ?

ଜୀବନ କି ଫୁଟେ ?
ଯେବେ ଏ ମଣିଷ
ମଣିଷକୁ ଚିରଦିନ
କରେ ନାରଖାର
ସେ କି ଆନନ୍ଦ ?
ମଣିଷ ମଣିଷ ନେତ୍ରୁ
ବୁହାଇଲେ
ଉଷ୍ଣ ଅଶ୍ରୁଧାର ।
ସେଇ କଣ ଗଉରବ ?

ପାଦତଳେ ଦଳି—
ମଣିଷରେ
କରିବାକୁ
ଆପେ ଅଗ୍ରଗନ୍ତା ।
ସେଇ କଣ ତୃପ୍ତି ?
ମଣିଷର ମଡ଼ାପରେ ବସି
ବୋଲାଇବା
ଆପେ ଛତ୍ରପତି ।
ସେଇ କି କ୍ଷମତା ସତେ ?
ଖ୍ୟାତ ହସ୍ତ କରି ନିତ୍ୟ
ମଣିଷକୁ ଦୂରେ ରଖିବାର
ସେ କି ଲକ୍ଷ୍ୟ ?
ଆପେ ବଡ଼ ହୋଇ
ଖେଳାଇବା ଚତୁର୍ଦ୍ଦିଗେ
ହାଡ଼ ମାଳ ମାଳ !
ସେଇ କି ହୃଦୟ ?
କାରବାର ଯା'ର
ମଣିଷକୁ ଚିରଦିନ
ଦେବାକୁ ଯନ୍ତ୍ରଣା
ସେଇ କଣ ଆନନ୍ଦର ବସୁନ୍ଧରା ?
ମଣିଷ ମଣିଷ ମେଳେ
ଯେଉଁଠାରେ ଭେଦ ଦ୍ୱନ୍ଦ୍ୱ
ଲାଗେ ଅକଳଣା ?

—ବାର—

ମୁହିଁ ଦେଖେ ସେଇଠାରେ
ଥାଏ ସ୍ୱାଧୀନତା,
ଯେଉଁଠାରେ
ମଣିଷ ମଣିଷ ମେଳେ
ଫୁଟେ ନାହିଁ
ହିଂସା ବର୍ବରତା !
ଯେଉଁଠାରେ ପୃଥିବୀର ସମସ୍ତ ବିବେକ—

ଦେଖୁଥିବ, ପୃଥିବୀରେ କେହିନାହିଁ
ଜଣେ ହୋଇ ନିଃସ୍ୱ ବା ନିରେଖ ।
ଯେଉଁଠାରେ
ପୃଥିବୀର କୋଟି କୋଟି
ଅନ୍ତର ଭିତରେ
ସତ୍ୟ ଆଉ ନ୍ୟାୟର ତରଙ୍ଗ
ନିର୍ଭୀକ ସଙ୍ଗୀତ ପରି
ଅବିରତ ଚଳେ !
ସ୍ୱାଧୀନ ମୁଁ ବୋଲି ଯେବେ
ଅନୁଭବେ ଗର୍ବ ଗଉରବ
ତାର କିବା ଅର୍ଥ ଅଛି ?
ଚତୁର୍ଦ୍ଦିଗେ ମୋର ଯେବେ
ଫୁଟେ ଆର୍ତ୍ତରବ !
ନିରନ୍ନ ଭିକ୍ଷୁକ ଯାଏ
ପଥ ପାର୍ଶ୍ୱେ,
ଭିକ୍ଷା ଝୁଲି ଧରି
ଖାଇନାହିଁ
ଦୁଇଦିନ ହେଲା
ଅଶ୍ରୁ ତାର
ନେତ୍ରୁ ଉଠେ ଝରି !
ତା'ର ଉଷ୍ଣ ଅଶ୍ରୁ ଯେବେ
ପରଶି ପାରେନା ମୋର
ସ୍ୱାଧୀନ ଅନ୍ତର
ତା ପାଇଁ ହୁଏନା ଲବେ—
ବାଣ୍ଡି ଯେବେ
ମୋର ବକ୍ଷସ୍ଥଳ
କାହିଁ ମୋର ଗଉରବ ?
ମୋର ଜୟ ଡଣ୍ଡିମର
ପ୍ରତି ଶବ୍ଦ ତଳେ
ଶତ ଶତ ଲାଞ୍ଛିତ—
ପତିତ ନିଃସ୍ୱ ହା' ହା' ବାଣୀ
ଭାସିଆସେ

ଯେବେ ଅବରଲେ ।
ସ୍ୱାଧୀନ ଜୀବନ ଲଭି
ମୁହିଁ ଯେବେ ପୃଥିବୀର—
ଗୋଟିଏ ପ୍ରାଣକୁ ଦେଖେ
ଅବମାନନାର ନେଇ ଡାଳ,
କେମନ୍ତେ କହିବ ନାହିଁ
ବନ୍ଧୀକୁ ମୁ ଯାଇଅଛୁ ହୋଇ ?
ମୋ ସ୍ୱାଧୀନ ଜୀବନରେ
ଲଗିଅଛୁ ଘନ କୃଷ୍ଣ କାଳ ! !

ସ୍ୱାଧୀନ ମୁଁ
ମୁକ୍ତ ମୁଁ
ନିଃଶଙ୍କ ମୁଁ
ବିଶ୍ୱର ସମସ୍ତ ଅନ୍ତର
କରିବ ମୁଁ ଜୀବନର-—
ପ୍ରିୟ ନିରନ୍ତର !
ମୋ ଭିତରେ ଅଛୁ ଯେଉଁ ଅମୃତ ସଞ୍ଚିତ
କାହାରକୁ କରିବନି ଲଭେ ମୁଁ ବଞ୍ଚିତ !
ପଥେ ମୋର
ଅଛୁ କିବା ବାଧା ବା ଅର୍ଗଳ
ତଟିନୀର ମୁକ୍ତ ସ୍ରୋତ ପରି
ବହି ଯିବ ଦିଗ ଦିଗନ୍ତର
ପାଶୋରିବ ସମସ୍ତ ବିଭେଦ
ସବୁଜ ସମ୍ପଦେ ଧନ୍ୟ କରିବ ସୁନ୍ଦର !
ସକଳର ବିକାଶ ଭିତରେ
ଲୋଡେ ମୁହିଁ ବିକାଶ ମୋହର
ସକଳର ସୁଖ ଦୁଃଖ
ଆନନ୍ଦ କଲ୍ୟାଣ ମେଳେ
ମୋ ଅନ୍ତର ବେଣୁ ତାନ !
ଉଠିବ ସଞ୍ଚରି ।

## —ତେର—

ନିଃସ୍ୱ ନିପତିତ ହେ ମୋର ଜନତା !
ବଞ୍ଚି ନ ବଞ୍ଚିନ ତୁମେ
କରିଅଛ ବଞ୍ଚିବାକୁ ଚେଷ୍ଟା ବହୁବାର,
ପ୍ରାଣ ଭରି ହସିବାକୁ
କରିଛ ସାଧନା ତୁମେ
କେତେ ଆଶା ବାନ୍ଧି ଅଛ
ଥର ଥର କରି
ମନ ମତାଣିଆ ଗୀତ
ଗାଇବାକୁ ଥରେ ଏଇ ଧରଣୀ ଉପରେ,
ଜୀବନର ପ୍ରତି ମୁହୂର୍ତ୍ତକୁ
କରିବାକୁ ମଧୁମୟ
ପରିଶ୍ରମ କରିଛ ବହୁତ,
ପାରିନ ପାରିନ ତୁମେ ପାରିନ ପାରିନ !!
ତୁମର ଯେ ସମସ୍ତ ସାଧନା
ଆସିଅଛି ଫେରି
ରହିବାକୁ ବାଧ୍ୟ ହୋଇଅଛ
ସେ କଜଳ କଳା ତୁମ ଗହ୍ୱର ଭିତରେ !

ଏ ନୀଳ ଆକାଶ
ତୁମକୁ କରିଛି
ବହୁବାର ଉପହାସ
ଏଇ ବିରାଟ ପୃଥିବୀ
ପରିତ୍ୟାଗ କରିଛି ତୁମରେ !
ସମସ୍ତର ଉପହାସ
ଅବହେଳା, ଅବଜ୍ଞା ଓ ଅନାଦର
ତୁମେ ଅଙ୍ଗେ ନେଇଛ,
ଅବିରାମ ଗତି ଧରି
ଗଳିଛ ସମସ୍ତ ସୁଅ
କାଟି ସେଇ ସୁଅ
ଗଳିବାକୁ କେତେ ଚେଷ୍ଟା
କରିଅଛ ତୁମେ

କିନ୍ତୁ ପାରିନ ପାରିନ ତୁମେ
ପାରି ନାହିଁ ଗଲ !

ପକ୍ଷ ତୁମର
ଯାଇଅଛି ଛିଡ଼ି !
ଅଗ୍ନି ତୁମ ଅନ୍ତରର
ପଡ଼ିଅଛି ମଳିନ ନକ୍ଷତ୍ର ଭି,
ମରିଚି ସାଧନା,
ପ୍ରାଣର ସମସ୍ତ ସ୍ୱପ୍ନ
କେଉଁ ଅତଳ ସମୁଦ୍ର ତଳେ
ହୋଇଛି ବିଲୀନ
ଯାଇଛି ଯାଇଛି ସବୁ ଯାଇଛି ତୁମର
ରହିଛି ରହିଛି ତୁମେ କେବଳ ରହିଛି !
ବଞ୍ଚିନ ବଞ୍ଚିନ ତୁମେ
କଦାପି ବଞ୍ଚିନ ! !

ଶତ ଓ ସହସ୍ରବାର
ତୁମେ ତୁମ ଧମନୀର
ପ୍ରତି ବିନ୍ଦୁ ରକ୍ତ ତଳେ
କରୁଅଛ ଅନୁଭବ
ରହିଚ ରହିଚ ତୁମେ
କେବଳ ରହିଚ !
କେଉଁ ଦୂର ପାହାଡ଼ର
ବକ୍ଷଃ କଠିନ ଶିଳାଖଣ୍ଡ ପରି
ତୁମେ ରହିଅଛ ପଡ଼ି,
କେଉଁ ନିସ୍ତରଙ୍ଗ ସମୁଦ୍ରର
ଜଳରାଶି ପରି
ତୁମେ ଖାଲି ରହିଅଛ
ପ୍ରାଣ ଟିକି ଧରି !
କେଉଁ ଗିରି ଉପତ୍ୟକା
ଜନହୀନ ପ୍ରାଣହୀନ
ସାନ୍ଦ୍ର ଅରଣ୍ୟାନୀ ପରି
ତୁମେ ରହିଅଛ ରହିଁ !

କେଉଁ ମେରୁ ପ୍ରଦେଶର
ବରଫ ପ୍ରାନ୍ତର ପରି
ତୁମେ ପଡ଼ିଅଛ ଶୋଇ !

ତୁମେ କ ମୃତ୍ୟୁର ସହିତ
ଏଇପରି ରହିବାକୁ
ଯୁଗ ଯୁଗ କାଳ କାଳ ଧରି ?
ମୃତ୍ୟୁନ ମୃତ୍ୟୁନ ତୁମେ
କଦାପି ମୃତ୍ୟୁନ
ପ୍ରାଣ ଥାଇ
ଯିବାପାଇଁ ମରି !
ତୁମ ଜୀବନର
ପ୍ରାଣବନ୍ତ ଜୁଆରକୁ
ପଥର ମଡ଼ାଇ ବନ୍ଦ କରାହୋଇଅଛି
ତୁମର ସ୍ୱପ୍ନକୁ
ଚିକ ଚିକ କରି କାଟି ଦିଆ ହୋଇଅଛି !
ତୁମ ପାଦର ଅଗ୍ରଗତିକୁ
ବନ୍ଦ କରା ହୋଇଅଛି—
ଗାର କାଟି ବାର ବାର କରି,
ତୁମକୁ କେବଳ ଖାଲି
ରଖା ଯାଇଅଛି
ଗୃହପାଳିତ ଏକ ଜନ୍ତୁ ପରି !
ତୁମେ ରହିଚ ରହିଚ
କେବଳ ରହିଚ
ବଞ୍ଚିନ ବଞ୍ଚିନ ତୁମେ
କଦାପି ବଞ୍ଚିନ !!!

ତରଙ୍ଗ ତୁମର ନାହିଁ !
ଅଛି ଅଛି ବହୁତ ରହିଚ
ଦୂର ଦିଗ୍‌ବଳୟର
କେଉଁ ଅଜ୍ଞାତ କୋଣରୁ
ତରଙ୍ଗ ଆସୁଚି କେତେ
ଭାଙ୍ଗି ପଡ଼ୁଅଛି ସବୁ,

ଶତ ଓ ସହସ୍ର ବାର
କେତେ ଯେ ତରଙ୍ଗ ଆସି
କେଉଁ ଆଡ଼େ ଯାଉଛି ଉଭାଇ
ତାର ସୀମା କାହିଁ ?
ଦିଗ୍‌ବଳୟ ବ୍ୟାପୀ
ବିପୁଳ ଅନନ୍ତ ବେଳା !
ନୀଳ ପାରାବାର
ତା' ଉପରେ !
ସୀମାହୀନ ତରଙ୍ଗର
ନିତ୍ୟ ଓ ନୂତନ ଲୀଳା—
ଏ ସବୁ କି ସୁନ୍ଦର !
ଓ କେଡ଼େ କମନୀୟ ! !
ଏ ସବୁ ସମ୍ପଦ କାହିଁ ??
ସ୍ଥିତିରେ ଜୀବନ ନାହିଁ !!
ବ୍ୟାପ୍ତିରେ ବିକାଶ !!
ବ୍ୟପ୍ତିରେ ଜୀବନ ! !
ବ୍ୟାପ୍ତିରେ ପରିପୂର୍ଣ୍ଣତା ! !
ତୁମର ବ୍ୟାପ୍ତି ନାହିଁ
ବିକାଶ ନାହିଁ !
ତରଙ୍ଗର ନିତ୍ୟ ନୂତନ ଲୀଳା ନାହିଁ !
ତୁମେ ରହିଚ ରହିଚ ଖାଲି
ବନ୍ଧନ ବନ୍ଧନ ତୁମେ
କଦାପି ବନ୍ଧନ !

—ଚଉଦ—

ମୋର ଏଇ ଧରିତ୍ରୀର
ହେ ବିରାଟ ହେ ନିଃସ୍ୱ ଜନତା !
ତୁମରେ ମୁଁ ରହିଅଛି ଗୃହୀ
ସାଗର ଉଚ୍ଛ୍ୱାସ ପରି
ତୁମରି ଭିତରୁ

ପ୍ରାଣର ଅମୃତ ଶୋଭା
ଦେଖିବାର ପାଇଁ !

କ ବିରାଟ ଶକ୍ତିର
ସନାତନ ଉତ୍ସ ତୁମେ
ଦେଶେ ଦେଶେ ଯୁଗେ ଯୁଗେ
ବନ୍ଧାଯିବ କଲତାନ କରି
ଯାହା ରୁକ୍ଷ ଯାହା ପ୍ରାଣହୀନ
ସବୁଜ ସମ୍ପଦ ତହିଁ
ଫୁଟାଇବ କ୍ଷଣେ !
ତୁମେ ସବୁ ପାରିବ ପାରିବ କରି
ତୁମେ ନୁହ ଅପଦାର୍ଥ ଜଡ଼
ରୁଦ୍ଧ କେଉଁ କାରାର ଗହ୍ୱରେ
ତୁମରେ ରଖିଚି କଏ
ବନ୍ଦୀ କରି ଯୁଗ ଯୁଗାନ୍ତର
ପଙ୍ଗୁ କରି କ୍ଳୀବ କରି
ତୁମର ଏ ମହା ପ୍ରତିଭାରେ
କେ ନିର୍ମମ ସଏତାନ୍
ପୃଥିବୀରେ କରିଅଛି
କେତେ ନିଃସ୍ୱତର ?
ହେ ଜନତା ଅକ୍ଷୟ ସମ୍ପଦ
ଏ ମାଟିର
କେମନେ ନିଷ୍କ୍ରିୟ ହୋଇ
ରହିଅଛ ଯୁଗ ଯୁଗାନ୍ତର !

ଜାତିର ଜୀବନୀ ଶକ୍ତି
ହେ ଜନତା !
ହେ ଆତ୍ମୀୟ
ଭରି ଦିଅ
କଲ୍ୟାଣ ଏ ଭୁବନେ ଭୁବନେ
ଉଠ ତୁମେ ଉଠ ଭାଙ୍ଗି
ସେ ଅଦୃଶ୍ୟ କାରା—

ପ୍ରଚ୍ଛ ଶିଳାଖଣ୍ଡ
ଅନ୍ତରର ଅସୀମ ବନ୍ଧନେ
ତୁମଠି ଯେ ଅଗ୍ନି ଅଛି
ନିଭିବାର ନୁହେଁ ତାହା
ତାକୁ କିଏ
ମାଡ଼ି କୁଦ ଗୁଳପିବ କହ ?
ତୁମେ ଆଜି
ଶତ ଓ ସହସ୍ର ଗୁଣ ଉଠ ଜଳ
ତୁମେ ଆଜି ହୁଅ ଦୁର୍ବିସହ !

---

## ଆକାଂକ୍ଷା

ଜୀବନର କେଉଁ ଯୁଗେ କେଉଁ ମୁହୂର୍ତ୍ତରେ
ମୁଁ ତୁମକୁ ଦେଖିଥିଲି, ସେ ଦିନୁ ତୁମ୍ଭରେ,
ବର୍ଷ ବର୍ଷ ଯୁଗ ଯୁଗ କାଳ କାଳ ଧରି
ନିୟତ ଆସୁଚି ମୁହିଁ ଆରାଧନା କରି,
ଆଖିର ଅଶ୍ରୁରେ ଅବା ଓଠର ହାସ୍ୟରେ,
ଡାକୁଚି ଜୀବନ ସାରା ସବୁ ବୟସରେ
ବନକୁଞ୍ଜେ ପଥଘାଟେ, ସଜନେ ବିଜନେ,
ସ୍ୱଦେଶେ ବିଦେଶେ ଅବା କୁଟୀର ପ୍ରାଙ୍ଗଣେ,
ଅନ୍ଧାରେ ଆଲୋକେ ଅବା ଗୋଧୂଳି ଲଗନେ,
ସବୁବେଳେ ତୁମେ ଯେଉଁ ଅମର ବନ୍ଧନେ
ବନ୍ଧା ଏ ଦରିଦ୍ର ସହ, ତୁମକୁ ହିଁ ଧରି
ଅନନ୍ତ ଏ ପାରାବାରେ ବାହିନିଏ ତରୀ,
ତୁମର ବୀଣାର ଏକ ଛିନ୍ନ ତନ୍ତ୍ରୀ ତଳେ
ଟିକିଏ ବାଜିଲେ ଧନ୍ୟ ମଣିବି ନିଜରେ !!

---

## ମତେ ବଡ଼ ଭଲ ଲାଗେ !

ମତେ ବଡ଼ ଭଲ ଲାଗେ ସେଇ ପଲ୍ଲୀ ଗାଏଁ
ଯେଉଁଠି ନଈଟି ସର୍ପ ଗତି କରି ଧାଏଁ,
ଯେଉଁଠି ସବୁଜ ଶ୍ୟାମ ଗୋଟିଏ ପାହାଡ଼,
ଅମୃତ ଆନନ୍ଦ ପରି ଉଭା କାଳ କାଳ,

ଯେଉଁଠାରେ ସୀମାହୀନ ଦିଗ୍‌ବଳୟୁ ଧରି,
ସ୍ୱର୍ଣ୍ଣ ଶସ୍ୟ ନାଚି ଉଠେ ଖେଳାଇ ଲହରୀ
ମୃଦୁମନ୍ଦ ସମୀରଣେ, ଯେଉଁଠି ପ୍ରାନ୍ତର
ମେଷ ଛାଗ ମହିଷ ଓ ଗୋଧନ ଦଳର
ଟିପାନାଦେ ମୁଖରିତ, ଯେଉଁଠି ଜୀବନ
ସରଳ ସୁନ୍ଦର ସ୍ୱଚ୍ଛ ମଧୁର ପାବନ,
ଶିଖି ନାହିଁ ଧରଣୀର ଛଳ କର କରି,
ବିଭ୍ରାଟ ହେବାକୁ ଆସେ ; ଚିରଦିନ ଧରି,
ଭୁଲୁଥାନ୍ତି ! ଅମୃତର ପୁଣ୍ୟ ଅବଗାହେ
ପ୍ରକୃତି ବିଚ୍ୟୁତ ପ୍ରାଣେ କି ସମ୍ପଦ ଥାଏ ! !

———

## କବିତା

ଶିରେ ମୋର ଖଚିଦିଅ ବିଜୟ ମୁକୁଟ
ଗଳେ ପାରିଜାତ ମାଳା ଦିଅ ଗୋ ! ଲମ୍ବାଇ;
ଦାରିଦ୍ର୍ୟ ଓ ଦୈନ୍ୟ ମେଳେ ବିପଞ୍ଚୀ ବଜାଇ
ସରଜେ ମୁଁ ଧରଣୀରେ ଆନନ୍ଦ ବୈକୁଣ୍ଠ;
ବିପଦ ଓ ବେଦନାର ଅନନ୍ତ ତମିରେ
ଜଳଉଠେ ପ୍ରେୟସୀ ଲୋ ! ରତ୍ନଦୀପ ପରି
ଧୀରତ୍ୱର ସାହସର ଦୀପ୍ତି ବକ୍ଷେ ଭରି
ଚାଲେ ମୁହିଁ ବୁକୁ ଠେଲି, ଭବ-ସିନ୍ଧୁ ନୀରେ;
ନ ଲୋଡ଼ି କେ' ଧରଣୀରେ ଆପଣାର କରି
ସମ୍ଭବେ ଚାହାନ୍ତି ମୋରେ ହୀନ-ଦୃଷ୍ଟି ଦେଇ
ଗଣ୍ଠିର ଅଭାବ ମେଳେ ନ ପଚାରୁ କେହି,
ତୁମ ତୁଲେ ବାହାନାଏ, ମୋର କ୍ଷୁଦ୍ର ତରୀ
ତୁମରି ଅମୃତ ହାସେ ମୋ ଖିଲ ଅନ୍ତର
ମୁଞ୍ଜରି ଉଠୁ ଲୋ ସଖି ! ଶତ ଜନ୍ମାନ୍ତର

———

# ବାଣପୁର

ଶ୍ୟାମ ଖଣ୍ଡାଧାରା ଯାର ନବଶ୍ରୀ ଶିର,
ଚରଣ ପଖାଳେ ଯାର ଚିଲିକା ସୁନ୍ଦରୀ,
ଶୈଳଶ୍ରୀ ଭଲେରୀ ଯାର ଉଆସ ପ୍ରାଚୀର
ଶାଳୁଆ ବାଜଇ ଯାର ସ୍ୱର୍ଣ୍ଣଦ୍ୱାର ପର,
ଗୁବାକ ପନସ ଆମ୍ର ନାରିକେଳ ମାଳେ
ଶ୍ୟାମଛନ୍ଦ ଯାର ନିତ୍ୟ ହୋଇଅଛି ଟେକା
ଭଗ୍ନଦୁର୍ଗ ଦେବାଳୟେ ପ୍ରାସାଦେ ପ୍ରାକାରେ
ଅତୀତ ଗୌରବ ଯାର ହୋଇଅଛି ଲେଖା,
ସେଇ ମୋର ବାଣପୁର ପ୍ରିୟ ଜନ୍ମଭୂଇଁ
ଶ୍ୟାମାଙ୍ଗୀ ଧରଣୀ ଶିର, କବି ପ୍ରସବିନୀ
ତାହାର ମୃତ୍ତିକା ମୁଠେ ଦେଲେ ସେହ୍ନେ ଛୁଇଁ
ମରମୁ ଫୁଟଇ ମଞ୍ଜୁ କାବ୍ୟ ତରଙ୍ଗିଣୀ;
ହେ ମୋର ଜନନି ! ତୋର ପଦ ସ୍ପର୍ଶ ଲଭି,
ଯୁଗେ ଯୁଗେ ହୁଏ ମୁହିଁ ବିଶ୍ୱଜୟୀ କବି !

---

# ମୃତ୍ୟୁ

ଫୁଟିଚି ମୁଁ, ମୋରେ କମ୍ପା ଛିନ୍ନ ବୃନ୍ତ କରି
ନେଇ ଯିବ ମୃତ୍ୟୁ ତୁମ ଇଚ୍ଛା ଅନୁସରି;
ଉପରେ ଆକାଶ ତଳେ ଶ୍ୟାମା ବସୁନ୍ଧରା
ବନକୁଞ୍ଜ, ନଦ ନଦୀ ସାଗର ମେଖଳା;
କୋଟି ବନ୍ଧୁ ପ୍ରିୟଜନ ପରିଜନ ସହ
ହୋଇ ନାହିଁ ମୋର ପୂର୍ଣ୍ଣ ସ୍ନେହ ପରିଚୟ;
ଦେଇନାହିଁ ପ୍ରତିଦାନ ଅଛିକାର ବାକି
କେ ମୋରେ ମାରିବେ କେତେ ଭଲ ପାଏନା କି ?

ଦରିଦ୍ର କୁଟୀରେ କା'ର ପ୍ରତୀକ୍ଷା ମୋ ପାଇଁ
କେମନ୍ତେ କାହାରେ ଛାଡ଼ ପାରିବି ମୁଁ କାହିଁ ?

କୋଟିଏ ଅନ୍ତର ଭୁଲେ ବନ୍ଧା ଏ ଜୀବନ;
କେମନ୍ତେ ପାରିବ ନେଇ,? କୋଟି ଆକର୍ଷଣ,
ଭିତରେ ମୁଁ ଦେଖୁଥାଏ ସୁନାର ସପନ,
ସ୍ୱପ୍ନ ଶେଷେ ମାଲ୍ୟଗଲେ କରିବ ବରଣ ;

## ପଦଧୂଳି

ମୁଦ୍ରିତ ନୟନ ଦୁଇ ପଡ଼ିଅଛି ଶୋଇ
ଚିରକାଳ ପାଇଁ ଯେହ୍ନେ ଅବସନ୍ନ ନୋହି;
ଏ ପାଖେ ଭଉଜ କାନ୍ଦେ ସୌଧେ ପିଟି ଶିର
ଆର ପାଖେ ଜ୍ଞାତିଜନେ ଆକୁଳ ଅସ୍ଥିର
କ୍ଷୁବ୍ଧ ପାରିବାର ପରି ; ଶବର ସଂସ୍କାର—
କରିବାକୁ ଗାଁ ଜନେ କରନ୍ତି ବିଚାର !
କାଠର ପିତୁଳୀ ପରି ମୁଁ ରହିଚି ଚୁହିଁ
ଜଳ ଜଳ ହୋଇ, କିବା ଘଟିଯାଏ କାହିଁ
ସ୍ୱପ୍ନ ପରି ଚକ୍ଷୁ ଆଗେ, ଥର ଥର କରି,
ଅଙ୍ଗୁଳି ପରଶି ଦେଚେ ଭାଇନା ତୁମରି !
ଚୁହିଁ ରହେ, ଭାଳେ ପୁଣି ଯନ୍ତ୍ର ଶରୀରର
ଆଉକି ଚାଲିବ ନାଇଁ ? ମହା ଶ୍ମଶାନର
ଯାତ୍ରୀ ଏବେ ଯିବ ଚାଲି ! ଏଇ ମୁହୂର୍ତ୍ତକେ
ପଦଧୂଳି ବୋଳିନିଏ ମୋ ହୀନ ମସ୍ତକେ ।

## 'କେବେ ତୁ ଆସିବୁ ପୁଣି ?'

ସୁଦୂର ପ୍ରବାସ ଭୂଇଁ ଫେରିଯିବା ପାଇଁ
ଶକଟ ସଜ୍ଜିତ ଏବେ, ଭଉଜ ମୋ ଚୁହିଁ—
ରହିଛନ୍ତି ଦାଣ୍ଡଘରେ, କରି ନମସ୍କାର
ତାହାଙ୍କୁ, ପିଣ୍ଡାରେ ନାଇଁ ଦେଖେ ବସିବାର

ଭାଇନା ମୋ ଚର ପୂଜ୍ୟ ଦେବତାରୁ ବଳ;
ମାଉବେ ନପୂନୁ ଯାଏ ଅଶ୍ରୁ ଟିଏ ଗଡ଼ି !
କେତେବାର ଏଇ ଥାନେ କରି ନମସ୍କାର
ପାଇଣ ଆଶିଷ କବା ସ୍ୱର୍ଗ ସୁଧା ଧାର
ଯାଇନ ବିଦେଶ ଭୂଇଁ ? ସାନ ଭାଇଟିରେ
କେତେ ସେ କହନ୍ତ ନାଇଁ ସସ୍ନେହେ ସଧୀରେ
'କେବେ ତୁ ଆସିବୁ ପୁଣି' ? ଦୃଷ୍ଟିରୁ ଅଗତ
ହେଲାଯାଏ ଗୃହୁଁ ଥାନ୍ତି ନୋହି ବିଚଳିତ ।
ଏବେ ଯେତେ ବାର ଯିବି ମୁଁ ବିଦେଶ ଭୂମି
କା' ଠୁ ଶୁଣିବି 'କେବେ ତୁ ଆସିବୁ ପୁଣି ?'

---

# ସନ୍ଧ୍ୟାର ସ୍ୱର୍ଗ

ବୁଡ଼ିଯାଏ ସ୍ୱର୍ଣ୍ଣରବି ପ୍ରତୀଚୀ ଗଭିରେ
ତିମିର ଓଢ଼ଣା ଟାଣି ଧୀରେ ଅତିଧୀରେ
ଆସଇ ରଜନୀ ବଧୂ ଝାଉକୁଞ୍ଜ ବନେ···
ଚାଲିକାର, ବୁଲୁଥି ମୁଁ ସଖା ବନ୍ଧୁସନେ;
ଉପରେ ଅନନ୍ତ ନଭ ନୀଳ କାନ୍ତ ଶିଳା
ତଳେ ନୀଳ ଚିଲିକାର ନୀଳ ଊର୍ମିଲୀଳା
ଏ ପାଖେ ଜଟିଆ ଝାଉ ଶ୍ୟାମ ବନଭୂମି,
ସେ ପାଖେ ଭାଲେଶ୍ୱ ଚୂଳ ନଭ ବକ୍ଷ ଚୁମି,
ପ୍ରାଚୀର ପଦ୍ମାପ୍ତେ ଠିଆ ବିହୃ ଦୂର ଯାଏ,
ଗୋଟି ଗୋଟି ସ୍ୱର୍ଣ୍ଣତାରା ହେମ ହାସ୍ୟ ପ୍ରାପ୍ତେ···
କେଉଁ ସୁର ଅପ୍ସରାର ଆସିଲେଣି ଉଇଁ
ଜଳସ୍ଥଳ ବନଗିରି ବଳ ପଦା ଭୁଇଁ
ସନ୍ଧ୍ୟାର ପରଶେ ହଠେ ସ୍ୱପ୍ନ ପୁରୀ ସମ
ଏ ସ୍ୱପ୍ନ ପୁରୀରେ ମୁହିଁ ସ୍ୱପ୍ନ ନମଗନ ;

---

# ପୃଥିବୀ

ତୋ କୋଳେ ଉଦୟ ମୋର ତୋ କୋଳେ ବିଲୟ
ତୋ କୋଳେ ମୋ ଜୀବନର ଜୟ ପରାଜୟ;
କେମନ୍ତେ ଆସିଲି ଏଥି କେମନ୍ତେ ମୁଁ କାହିଁ
ତୋ କୋଳେ ବରଜ ଧନେ ଗୁଳଯିବି କାହିଁ !
ଏଇ ତୋର ବିଲ ବଣ ଶୈଳ ନଦ ନଦୀ,
ସୀମାହୀନ ନୀଳ ନଭ ଅନନ୍ତ ଜଳଧି,
ଅଗଣିତ ନର ନାରୀ କୀଟ ପଶୁ ପକ୍ଷୀ,
ଅନନ୍ତ ଲୀଳାର ଖେଳ କେ ପାରିବ ଲକ୍ଷି !
ସକଳର ସାଥେ ମୋର ମମତା ବନ୍ଧନ
ଜୀବନେ ଆଣଇ କିବା ମଧୁ ଉପାସ୍ୟନ !
କେତେ ରୂପେ, କେତେ ଭାବେ କାହାର ଅନ୍ତର
ଜୀବନ କରଛି ସିକ୍ତ ସବୁଜ ସୁନ୍ଦର !
ତୋର ପ୍ରତି ଧୂଳିମାଟି ମୋର ସ୍ୱର୍ଣମଣି,
ଯୁଗେ ଯୁଗେ ଜନ୍ମଲଭେ ତୋ କୋଳେ ଜନନି !

———

# କେତେ ଭଲ ଦେଖ !

ସୁନାର ପ୍ରତିମା ପରି ଶିଶୁଟିକ ଧରି,
କହିଲା ପ୍ରେୟସୀ ତାରେ, ଦେଖ ତୋର ନନା;
ଗୃହିଁଲା ଶିଶୁଟି ତା'ର ଗୃହାଣୀଟି ଭରି,
ବହୁ ବେଳଯାଏ, କସ ଆସିଲା ଭାବନା
ହସି ହସି ମାଆ କୋଳେ ମିଶିଗଲା ବାରେ
ପୁଣି ସେ ଗୃହିଁଲା କେତେ ଥର ତା' ଗୃହାଣୀ
ପ୍ରଭାତ ଆକାଶ ପରି ! ଖାଲି ଗୃହିଁବାରେ
ଝରି ପଡ଼ୁଥିଲା ଯେସ୍ନେ ତା' ଅନ୍ତର 'ବାଣୀ !
ଜନନୀ କହିଲା ତାରେ 'ଏତେହସ ଧନ
ରଖିଥିଲୁ କେଉଁ ଥାନେ ଏଇ ଟିକି ଓଠେ,
ନନାଙ୍କୁ ହରେଶି ମନ ଏତେ ପରସନ' !
କହୁ କହୁ ତା' ଅଧରେ ଆଉ ହସ ଫୁଟେ,

ବେନଏ ହସିଲୁ ଆମେ, ପୁଣି ଶିଶୁ ହସେ
ତନ ମୁଖେ ତନହସ କେଡ଼େ ଭଲ ଦିଶେ !

---

## ବାସନା

ସମ୍ମୁଖେ ଦିଶଇ ଶ୍ୟାମ ଗିରି ଖଣ୍ଡାହଣା ;
ପଶ୍ଚାତେ ଚିଲିକା ଖେଳେ ଶତ ଊର୍ମିମାଳେ
ତରଳ ଚଞ୍ଚଳତର, ଦୁଇପାର୍ଶ୍ୱେ ମମ
ଶୋଳଖି ଖଲେଖି ଖଜେ ମହାମହିମାରେ ।

ଅସ୍ତଗିଳା ଚୂଳେ ଆହା ସୁନ୍ଦର ତପନ
ମାରବେ ଯାଉଚି ବୁଡ଼ି, ଶୀତଳ ମରୁତ
ଥିରି ଥିରି ବହି ଆସେ, ଶ୍ୟାମଳ କେଦାରେ
ଗୁଳେ ଶାଳାବନ୍ଧ କବା ରୌପ୍ୟ ରେଖାବତ !

କେମନ୍ତେ ଲାଗଇ ଭଲ ଚାହିଁବାରେ ଏଇ
ପ୍ରକୃତି ଅନନ୍ତ ଲୀଳା, ଦୁଃଖ ହୁଏ ମମ
ଏ ମୋହନ ଶିଖିମାଳା କାହା ହସ୍ତେ ଦେଇ
ବୁଜିବ ଅନ୍ତିମ ଡୋଳା, ବରଜି ଭୁବନ ;
ହେ ଚିଲିକା ଖଣ୍ଡାହଣା ଶୋଳଖି ଖଲେଖି !
ତୁମ କୋଳେ କରୁଥାନ୍ତୁ ଚିରନ୍ତନ କେଳି ; !

---

## ନବଜାତ ବସନ୍ତରୀ ପ୍ରତି !

ସୃଷ୍ଟିର କେଉଁଣ ପୁରେ ରହିଥିଲୁ ତୁରେ !
ଖେଳୁଚୁ ବୁଲୁଚୁ ଆଜ ମୋ ଦରିଦ୍ର ପୁରେ ;
କୋମଳ ରସନା ଚୂଳ ଅମୃତ ସେନେହେ,
ବାରବାର ଚୁଟି ଦେଉ ଆସି ମୋର ଦେହେ ।

କୁଷ୍ମାଂଡ ନୟନ ଦୁଇ, କୋମଳ ଶରୀର,
ସରୁ ସରୁ ଖିଣ୍ଡଗୁଚ୍ଛ, ଲୋମ-ସ୍ନିଗ୍ଧ ଶିର,
କେମନ୍ତ ରଚଇ ମୋର ପରାଣେ କୌତୁକ,
ବକ୍ଷର ଅତଳ ତଳୁ ଯେତେ ଯହିଁ ଦୁଃଖ
ନିମିଷେ ଉଭାଇ ଯାଏ, ଚାହିଁ ରହେ ତୋରେ,
କି ଗଭୀର ଅନୁରାଗ ଦେଉନାହଁ ମୋରେ !
ତୋ ଭିତରେ ମୋ ଭିତରେ ଅଛି ଯେ ଜୀବନ
କେମନ୍ତେ ଜଣକୁ ଜଣେ କରେ ଆକର୍ଷଣ !
ଆପଣାରୁ ବଳି, ଅଛି ଆପଣାର କରି,
ମୁଁ ନୁହେ ଧରାର ଜୀବ, ତୁହି ନୁହ ଖାଲି ବଲ୍ଲରୀ ।

---

# ଅନ୍ୱେଷଣ

ବଡ଼ ଭଲ ଲାଗେ ମୋର ଦେଖିବାରେ ଏଇ
ପାହାଡ଼ ପ୍ରାନ୍ତର ପଥ ଶ୍ୟାମ ଗୁଳ୍ମ ଦେଇ ।
ବାଲ୍ୟତ ବୟସେ ଯେବେ ସହପାଠୀ ମେଳେ
ବୁଲି ଆସୁଥିଲି ଏଥି ଅବସର ବେଳେ,
ମନ ବିନୋଦନ ଭରେ ଶତଚର୍ଚ୍ଚାକରି
ସେ ମୋହନ ଦିନ କେଉଁଣେ ଗଲା ଅପସରି ; ?
ଚାହିଁ ରହେ ବାଲ୍ୟତର ଏଇ ପୁଣ୍ୟ ଥଳୀ
ଅଛି ସେ ଶଇଳ ବନ, ଯୁଗ ଯୁଗ ଧରି ।
ଚରନ୍ତି ମେଣ୍ଢା ଓ ଛେଳି ହୋଇ ଦଳ ଦଳ
ଛତା ଟେକି, ବାଡ଼ିଧରି ଚାଲେ ତରତର
ଗୋପାଳ କଠାଉମାଡ଼ି, ଶବରୁଣୀ ଝିଅ
ଇଂଧନ ସଂଗ୍ରହ କରେ ଭାଙ୍ଗି ବରି ସିଅ ।
ପ୍ରିୟ ପରିଚିତ ମୋର ଏ ପଲ୍ଲୀ ଭିତରେ
ଆନନ୍ଦର ଦିନ ଯେଉଁଣେ ଖୋଜେ ଆଉଥରେ ;

---

# ପରାଧୀନ ଭାଗ୍ୟେ କାହିଁ ଆନନ୍ଦ ପରମ ?

ଭବନ ଅଙ୍ଗନେ ବସି ଶିଶୁ କନ୍ୟାଟିରେ
ଖେଳାଉ ଖେଳାଉ ତାରେ କହିଲି ସଧୀରେ,
'କାଲି ଯେ ପାଇବ ଛୁଟି, ଯିବି ମୁଁ ସତ୍ୱର
ସୁଦୂର ପ୍ରବାସ ଭୂଇଁ, ଆଣିବ ମୁକର
ଖଜା କୋରା ତୋହ ଲଗି, କେତେ ମାସ ପରେ
କାନ୍ଦବୁନି, ଥିବୁ ସୁଖେ ଜନନୀର କୋଳେ ;।'

'ନାଇଁ ତୁମେ ଯାଅ ନାଇଁ, ଖଜା କୋରା ମୋର
ଲୋଡ଼ା ନାଇଁ, ଦେବେ ବାପା ମାଗିଲେ ସତ୍ୱର ।
କାହିଁ ଯିବ କି କରିବ ?' ଶୁଣି ତାର କଥା
ଆଖି ହେଲା ଛଳ ଛଳ, ବୁକେ ଗୁରୁ ବ୍ୟଥା
ଚୁପିଧର କହିଲଇଁ 'କି କରିବ ଏଥି ?'
'କି କରିବ, ? ରହିଥିବ, କଥା, 'ଗୀତ' ନିତି
କହୁଥିବ ପାଶେ ମୋର ; ।'
ମନେ ହେଲା ମମ
ପରାଧୀନ ଭାଗ୍ୟେ କାହିଁ ଆନନ୍ଦ ପରମ !

---

# ଯେଉଁଠାରେ ନିଭୁ !

"କହ ଅଜା ! କହ ମୋରେ ପାଣି ଫୁଟକାଳ
ଏକ ପରେ ଆନ ଆସେ ଯାଏ କାହିଁ ଚୁଲି ?
କେତେ ଆସେ କେତେ ଯାଏ, କେତେ ଅଧ ବାଟେ,
ନିଭିଯାଏ । ପୁଣି କେତେ ଆସେ ସାଥେ ସାଥେ ।
ସାଥି ପର କିଏ ଯାଏ ମିଶି କାହା ତୁଲେ,
କେତେ ବାଟ ଯାଉ କିଏ କାରେ ଛାଡ଼ି ଦୂରେ
ଚୁଲିଯାଏ କାହିଁ ପାଇଁ ? ନ ପଚାରି ତଳେ,
କେ କାରେ ଚୁଲିଚ ଖୋଜି ଉନ୍ମନେ ଅଧୀରେ ।
କେ ଫାଟି ଗଲାଣି କିଏ ଫାଟି ଫାଟି ଆସେ,
କେ ଯାଏ କା' ମାମୁଁ ଘରେ ଅବା ନିଜ ବାସେ ।

ଗୋଟି ଗୋଟି ହୋଇ ଏପେ କୋଟି ଫୁଟକାଳ
ମର ହଜ ନାଚ ଖେଳ କାହିଁ ଛନ୍ତ ଚଳ ?
ମୁଁ ଯାଆନ୍ତି ସେଇଆଡ଼େ"
"ଯାଉଚୁ ତୁ ଯିବୁ !
କବା ଦୁଃଖ ଏ ପୋଟକା ଯେଉଁଠାରେ ନବୁ !"

---

## ଯାଇତ ପାରିଲ ନାଇଁ !

ମଥାଲେଇଁ ପାଦତଳେ କରି ନମସ୍କାର
ମୋରେ ଚାହିଁ ଚାହିଁ ତମେ ଅଶୋକ କୁମାର—
ଚାଲିଗଲ ବସଷ୍ଟାଣ୍ଡେ, ବସଷ୍ଟାଣ୍ଡ ଯାଏଁ
ତୁମରେ ଛାଡ଼ିବା ପାଇଁ ମୁଁ ଅଭାଗା ହାଏ—
ଯାଇତ ପାରିଲ ନାଇଁ, ମନ ଘାଣ୍ଟି ହୁଏ,
ଥୁଣ୍ଟାପରି କପରି ଏ ପ୍ରାଣହୀନ ଦେହେ—
ଏକାକୀ ରହିଲି ବସି, ବନ୍ଧୁଜନ ଧରି
ଆଉତ ଫେରିବ ନାଇଁ; ଆପଣାର କରି,
ଏତେ କମ୍ପା ପର ପର ହେଲ ମୁଁ ନିର୍ମମ ?
ଆଉଟିକେ ଦେଇଥାନ୍ତି, ମୁହିଁ ଉଦ୍‌ବୋଧନ,
ଆଉଟିକେ ଚାହିଁ ଥାନ୍ତି ନୟନେ ନୟନ ଭରି,
ସେନେହ ଆଶିଷ ବୋଳା ଏ ହାତ ତୁମରି—
ଦେହେ ମନେ ଆଣିଥାନ୍ତି, ପରଶି, ମୁଁ ବାରେ,
ଭାଙ୍ଗି ପଡ଼େ ବକ୍ଷ କିବା ଅବଶୋଷ ଭାରେ !

---

## ଅଶ୍ରୁର ଡାକ

କାହିଁକି କାନ୍ଦୁଚ ଆଗୋ ବିଦେଶୀ ବାଳିକା !
ଚଢ଼ି ମୁଁ ବାଷ୍ପୀୟରଥ ଯିବଇଁ ସୁଦୂରେ,
ଏ କୁଟୀର ଏ ପ୍ରାଙ୍ଗଣ ଏ ବନ ବୀଥିକା
ମାଥେ ତୁମେ ମନେ ପଡ଼ୁଥିବ ମୋର ଦୂରେ ।

ପୋଛିଦିଏଁ ଲୁହ ତବ ଆସ ଏଥି ଆସ ।
କାହିଁ ଗୋ ଦୁଃଖ ଏତେ ? କହିଁ ହାତ ଧରି
କହୁଚ ଯାଅନ ଦେବ ! ଏଠି କେତେ ମାସ—
ରହ ତୁମେ, କହେ ଏତେ ଅନୁରୋଧ କରି !
ଏ ସେନେହ ବାଳକା ଗୋ ! ସରଳ ହୃଦୟା
ମୋ ପାଇଁ ରଖିଚ ଆହା ବୁକୁତଳ ଭରି
କେମନ୍ତେ ମୁରୁଛି ତୋରେ ହୋଇ ମୁଁ ନିଦୟା
ଚାଲିଯିବ ଏ ଅଶ୍ରୁର ଡାକଟିକି ଏଡ଼ି !
କେମନ୍ତେ ଚାଲିବ କହ ବୁଜିଦେଇ ଆଖି ?
ସମ୍ମୁଖେ ଯେ ପ୍ରାଣ ଯାଏ ଅଶ୍ରୁଭରେ ଡାକି ;

---

# ସବୁ ଯାଉଛି

ସବୁତ ଯାଉଛି ତୁମେ ବଞ୍ଚିବ କିପରି ?
ବସିଚ ତୁନିଟି ହୋଇ କପାଳ ଆଦରି—
ବରଷା କାଳରେ ଏଇ ନଦୀ ବନ୍ଧ ପରେ,
ଆଖିରୁ ଝରୁଛି ଲୁହ । ଖୋଲକ ଉପାସରେ
ଝିଅପିଲା କାହାକଥା ? ଘରଦ୍ୱାର ଗାଆଁ
ସମସ୍ତ ଯାଉଚି ଚାଲି, ଧାନ ବା ମାଣ୍ଡିଆ—
ଯାହା ଆଳୁ ଆମଦାମି ଯାଉଚି ସକଳ
ତୁମେହିଁ ରହିଚ ଧରି ଅସ୍ଥିର ବିକଳ—
ଏଇ ଦେହମନ ତବ । ମରଣରୁ ବଳି
ଏ ଯେ ଦୁଃଖ ଏ ଯେ କଷ୍ଟ ସହିବ କିପରି ?
ପୁଅଝିଅ ଗିରସ୍ତ ବା ଯିଏ ଯହିଁ ଗଲେ ।
ମୋହନ ସଂସାରଟିଏ ନିମିଷକ ପରେ ।
ଛିନ୍ନ ଭିନ୍ନ । ସୀମାହୀନ ଦାରୁଣ ଦୁଃଖର
—ଅନ୍ଧାରେ ପାରିବା ବଞ୍ଚି କେତେ କଷ୍ଟକର ! !

---

# ମିଶିଯିବା

ନାନାକ୍ଷେତ୍ରେ ନାନାକର୍ମେ ବୁଲିବୁଲି ମୁହିଁ,
ଦେଖିଲଇଁ ଚତୁର୍ଦ୍ଦିଗ ଏ ଧରଣୀ ଭୂଇଁ—
ସୁଖ ଦୁଃଖ ସ୍ନେହ ପ୍ରେମ ମିଥ୍ୟା ଅନାଚାର,
ବିପଦ ଆପଦ ଶାନ୍ତି ଅସନ୍ତୋଷ ଘର,
ଜୟ ପରାଜୟ ହିଁସା ହତ୍ୟା ଅମାନୁଷ,
ହସ ଖେଳ ବାଦ ବିସମ୍ବାଦ ଅପୌରୁଷ,
ଶତଦ୍ୱନ୍ଦ୍ୱ ଶତବାଧା—ସମସ୍ତ ନିବିଡ଼
ଅଙ୍ଗେ ଅଙ୍ଗେ, ଚାଲିଅଛି କ୍ଷଣେ ସ୍ତବ୍ଧ ରହି—
ପାରୁନି ସେ, ପଥପ୍ରାନ୍ତେ । ଯୁଗ ଯୁଗାନ୍ତର—
ଚାଲିଥିବ ଯେବେ ଚାରି ଲକ୍ଷ ଅନନ୍ତର;
ଏଇ ମହା ଅନନ୍ତରେ ଆମେ ତଳି ତଳି
ଚାଲିଥିବା, ସକଳରୁ ଅମୃତ ଆହରି,
ପାଳନ୍ତି କରୁଣା ପ୍ରେମ ଉତ୍ସ ଏ ଭୁବନେ
ମିଶିଯିବା ଆମେ ସେଇ ସାଗର ସଙ୍ଗମେ !

---

# ଆମ୍ବ ଓ ଜାମ୍ବ

ଆମ୍ବ କହୁଅଛି ଜାମ୍ବ ତରୁଟିରେ ଠାରି,
ପୃଥିବୀରେ ମୋ ଆଦର ରହିଅଛି ଭରି !
ରସୁଆଳ ଫଳେ ତୋଷେ ମୁଁ ସବୁରି ମନ
ଯୁଗେ ଯୁଗେ ମୋ ପ୍ରଶଂସା ଯଶ ଅକଳନ !
ଜାମ୍ବ ଯେ ବୋଲଇ ଆମ୍ବ ତରୁଟିରେ ଠାରି,
ଆଜନମୁଁ ନୁହେ ମୁହିଁ ମିଠାଫଳ-ଧାରୀ;
ଆଦରେ ବେଉସା ମତେ କରେନି କେ କାହିଁ,
ଲଗାଏନି ବାଡ଼ିଆଡ଼େ ପୁଅ ନାତି ପାଇଁ ।
ବିଧାତା ବଦେଶେ ଧରଣୀରେ ମୁହିଁ ବଢ଼ି,
ତିକ୍ତ ଫଳ ଯୁଗ ଯୁଗ ଧରି ମୁଁ ଯେ ଧରେ ।

ହେଲେ ମୋ ମହିମା ନୁହଁ ଅଳପ ଭୁବନେ,
ଆସେ ମନୁଷ୍ୟର ମୁହିଁ ବହୁ ପ୍ରୟୋଜନେ ।
ଲୋଡ଼ାବେଳେ ପ୍ରାଣଭରି କରେ ମୁହିଁ ସେବା
ଆଦର କେ କରୁ ଅନାଦର କରୁ କେ' ବା !

———

## କା' ଟିକକ ଦାନ !

ଅଛୁ ଏ କୁଟୀର ଗୋଟି, ତୁମେ କିନ୍ତୁ ନାହିଁ,
ଅଛୁ ଏଇ ଗଛପତ୍ର, ତୁମେ କିନ୍ତୁ ହାୟ—
ଉଭାଇ ଯାଇଚ କାହିଁ ? ଅଛୁ ଏ ତଡ଼ାଗ
ତୁମେ ନାହିଁ । ତୁମ ବକ୍ଷ ପୁଣ୍ୟ ଅନୁରାଗ—
ଅଛୁ ଭରି ଧରଣୀର ଏଇ ପୁଣ୍ୟ ମାଟି,
କୁସୁମର ଗନ୍ଧପରି ! ତୁମ ସାଙ୍ଗ ସାଥି—
ସତ୍ୟଏ ଅଛନ୍ତି ! କିନ୍ତୁ ତୁମେ ରହିନାହିଁ,
ଦେଇଚ ଯେ ଉନ୍ମାଦନା, ମୋହନ ଉତ୍ସାହ—
ସକଳ ରହିଚ ହାୟ ! ତୁମେ କିନ୍ତୁ କାହିଁ
କେତୋଟି ମୁହୂର୍ତ୍ତି ପରେ । ଆଜ ତୁମ୍ଭ ପାଇଁ
ଝୁରେ ହୁଏ ମୁହିଁ କେଁା ବହୁ ବର୍ଷ ପରେ ?
କେ' କାହାରେ ଚିରଦିନ ଅନନ୍ତ ବିଶ୍ୱରେ
କେତେ ହେଉଥିବ ଝୁରି । କା ଟିକକ ଦାନ
କା'ଲୁହ ଭିତରେ ତଳି, ବିରାଟ ଅମ୍ଳାନ ! !

———

## ଏ ଖଣ୍ଡିକ ଘର

କ୍ଷୁଦ୍ର ଏଇ ପଲ୍ଲୀଗ୍ରାମେ ଏ ଖଣ୍ଡିକ ଘର,
ସୁଖେ ଦୁଃଖେ ରୋଗେ ଶୋକେ ଆଶ୍ରୟ ମୋହର !
କେତେ କଳି କେତେ ଦ୍ୱନ୍ଦ୍ୱ କେତେ ପରାଭବ,
କେତେ ଯେ ସେନେହ ମାୟା ମୋହନ ବୈଭବ,

କେତେ କା ଜନମ ମୃତ୍ୟୁ ହାସ୍ୟ ଅଶ୍ରୁ ଲୀଳା,
ଅଭାବ ଓ ଅନାଟନ କେତେ ଦୈନ୍ୟ ପୀଡ଼ା,
କେତେ ମାନ ଅପମାନ କିଏ କରିବାର,
କେତେ କାର ଆଧିପତ୍ୟ ଦୁର୍ଲଙ୍ଘ୍ୟ ଦୁର୍ବାର,
ଅତୀତର କେତେ ସ୍ମୃତି କେତେ ଭବିଷ୍ୟର—
ମୋହନ୍ ଆକାଂକ୍ଷା ଫୁଟିବାର ନିରନ୍ତର,
ଚତୁର୍ଦ୍ଦିଗ ପଥ ଘାଟ ବିଲ ବନ ଭୂମି
ଦୂର ପାଖ ବନ୍ଧୁ ଜନ-ସକଳରେ ଚୁମି—
ବିଶାଳ ସଂସାରପରି ରହିଅଛି ପଡ଼ି !
ଏ ମୋ ଘର-ମୋ ଅନ୍ତରଶ୍ୱେତପଦ୍ମ କଳି !

---

## ସ୍ମୃତି

କବିତାର ଚିଟିଠି ମୁଁ ପାଇଛି ତୁମର,
ସରଳ ଅନ୍ତରୁ ତବ ପଡ଼ିଅଛି ଝରି
ମମତାର ମଧୁଦାନ ! ବହୁଦିନ ପରେ—
ମତେ କି ପାରିଲ ବୁଝି ? ବିରାଟ ବିଶ୍ୱରେ
ମୁଁ ଏକ ଦରିଦ୍ର କବି ଚିର ଅବଜ୍ଞାତ,
ସହିଚି ମୁଁ କେତେ କାହା କୁଳିଶ ସଂଘାତ ।
ମରୁପଥ ଯାତ୍ରୀ ପରି ବୁଲିଚି ଏକାକୀ,
ମୋ ଡାକ ଶୁଣିଭିନା କାରେ ଲକ୍ଷେ ଡାକି ଡାକି ;
ଅଲୋଡ଼ା ଏ ଜୀବନରେ ତୁମ କବି ପ୍ରାଣ
ମୋହଲାଗି ଆନ୍ଦୋଳିତ, ବିକ୍ଷୁବ୍ଧ-ଏମାନ
ପରମ ସୌଭାଗ୍ୟ ମୋର, ମୋର ଯାତ୍ରାପଥେ
ତୁମରି କବିତ୍ୱମୟ ସ୍ମୃତିଟିକି ମତେ—
ଦେଉଥିବ ସୀମାହୀନ ସେନେହ କଲ୍ୟାଣ,
ସବୁମଳି ଧୂଳି ଉର୍ଦ୍ଧେ କବିର ଆହ୍ୱାନ !

---

## ମୋ ଲାଗି !

ପଢୁରନ୍ତ ମୋହ କଥା ଦେଖିଲେ ଭ୍ରମରେ
ସେ କେଉଁ ସୁଦୂର ଭୂଇଁ, ଯହିଁ ମୁହିଁ ଥରେ—
ରହିଥିଲି ବରଷେ ବା ଦୁଇ ବର୍ଷ କାଳ,
ସଭିଙ୍କୁ ସେନେହ ଦେଇ କରି ଆପଣାର ।
ସେମାନେ କେଉଁଠି କିଏ ରହିଥିବେ କାହିଁ ?
ସୁଖେ ଦୁଃଖେ କେତେ ଆଶା ଆକାଂକ୍ଷା ଖେଳାଇ ;
କାହାର ଅଭାବ ଥିବ, କାହା ଅଶ୍ରୁଧାର
ଚତୁର୍ଦ୍ଦିଗେ ଦେଖୁଥିବ ନିରାଶା ଅନ୍ଧାର ;
କିଏ କାହିଁ ସାଧନାର ସ୍ୱର୍ଣ୍ଣ-ଦୀପ ଜାଳି
ଚାହିଁଥିବ ଗଉରବେ, କିଏ କୁହମାଡ଼-
ଗଲାବେଳେ ପଥ ପ୍ରାନ୍ତେ ଝୁଣ୍ଟି ବାର ବାର
ପଡ଼ିରହିଥିବ ବାରେ ନୋହି ଆଗୁସାର;
କା' ଅନ୍ତର ବୀଣାତାନ ବାଜୁଛି କି ଭଳି
ମୋ ଲାଗି ମୂର୍ଚ୍ଛନାଟିଏ ଯାଉଛି ତ ଚଳି !

---

## ନୂତନ ବର୍ଷେ

ମତେ ଆଜି ଦେଇଅଛ ଯେ ଅଭିନନ୍ଦନ,
ଆଜି ଏ ନୂତନ ବର୍ଷେ ଭରି ପ୍ରାଣ ମନ,
କରୁଛି ଗ୍ରହଣ ସଖା ! କିନ୍ତୁ କାହିଁପାଇଁ
ଏ ଦରିଦ୍ର ଅଭାଗାରେ ସୁଧା-ନେବେ ଚାହିଁ
ରହିଅଛ ବନ୍ଧୁଜନ ! ବହୁ ମାସ ପରେ
ଅଭାବ ବେଦନା ଦୁଃଖ ଝଡ଼ଝଞ୍ଜା ଘରେ—
ବଞ୍ଚି ଯାଉଥିବା ବେଳେ, ଗୁହାଣ୍ଡିରେ କାଳି—
କାର୍ଯ୍ୟରେ ଦେଇଛି ଯୋଗ । ରାଜ କର୍ମିବୃନ୍ଦ
ବୁଝିଲେନି ମୋର ଦୁଃଖ, ମୋର ନିବେଦନ ;
ମନୁଷ୍ୟ ତାଙ୍କଠି ନାହିଁ, ବିବେକ ଦଂଶନ—
କରେନି ତାହାଙ୍କୁ କେବେ । ଗଭୀର ଦୁଃଖର
ସିଏ ନୁହେ ଧରଣୀରେ ସାଥି ସହଚର—

ବିରାଟ ପ୍ରାଣର ବହୁଦୂରରେ ତାଙ୍କ ସ୍ଥିତି
ତାଙ୍କଠୁ ଜନ୍ମିତ ବିଶ୍ୱେ ସକଳ ଦୁର୍ନୀତି !

---

## ମାଇଲ-ପଥର

ରହିଚ ଏ ପଥପାର୍ଶ୍ୱେ ନୀରବ ଧିଆନେ,
ଦେଖୁଅଛ ଅଗଣନ ଯାତ୍ରୀ କେତେ କାମେ
ଯାଉଛନ୍ତି ଆସୁଛନ୍ତି, କିଏ କେତେ ଦୂର
କାହା ଓଠେ ହସ, କାହା ନେତ୍ରେ ଭରପୂର
କୋଟି ବିନ୍ଦୁ ଉଷ୍ଣ ଲୁହ । କାହା ବୁକୁ ତଳେ
ସୁନେଲି ସ୍ୱପନ ଫୁଟେ । ଅନନ୍ତ ଆଦରେ
କେ’କାରେ ଆଶ୍ଳେଷ ଦିଏ, କିଏ ଚାଲିଚାଲି
ଆଉ ପାରୁନାହିଁ ଚାଲି, କିଏସେ ସନ୍ତୁଳି-
ହୋଇ କୋଟି ଦୁଃଖେ ଚାଲେ ନିରାଶ ଲୋଚନେ,
ଏ ସବୁ ଦେଖୁଚ ତମେ ଅନନ୍ତ-ସପନେ
ବୁଡ଼ିରହି ; ଧରଣୀର ଏ ବିଶାଳ ପଥେ
ଚାଲି ଚାଲି ସୁଖେ ଦୁଃଖେ ଆପଦେ ବିପଦେ
ମୁଁ ଶେଷେ ପାଲଟିଯାନ୍ତି ମାଇଲ ପଥର
ବିଶ୍ୱ ସୁଖେ ଦୁଃଖେ ତାଳି ନିଜଠିକ ମୋର !

---

## ଅପରିଚିତାର ଦାନ,

ସାୟାହ୍ନେ ବିହାରେ ଯେବେ ଦୂର ପରବାସେ
ଆଖୁଶାଳେ ବୁଲୁଥିଲି ଏକାକୀ ଉଦାସେ,
କିଏ ସେ ଅପରିଚିତା ପକାଇ ମସିଣା
କହିଲା ସହାସେ ‘ଏଥି ବସିଯାଅ କିନା’ !
ତପ୍ତ ଓ ତରଳ ଗୁଡ଼ ନାଲି ଟହଟହ
ମଧୁଗନ୍ଧେ ବାସୁଚି ସେ ହୋଇ ମହମହ,

ସଡ଼େଇ ଝିକରେ ଆଣି ଥୋଇଦେଲ ପାଶେ,
ପକାନ୍ତୁ ପାଟିରେ ବୋଲ କହିଲ ସହାସେ ।
ଫେରିବାର ବେଳେ ହାତେ ଆଖୁ ଧଣ୍ଡାଟିଏ
ଦେଇ ମୋରେ ଆଖୁ ଶାଳେ ଲୁଚିଗଲ ପିଏ ।
ଏଇ ଆଖୁ ଏଇ ଗୁଡ଼ ସକଳରୁ ବଳ
କ ମିଠା ପଣ୍ଣ ସେହୁ ମନ୍ଦେ ନାଇଁ ଧର ?
ଆପେ ଯାଚ ଯାଚ ଦେଇ ପାରିବ କ ଦାନ ?
ଚିରଦିନ ମିଠା ହୁଦେ ଯା'ମନ ପଣ୍ଣ !

---

# ଆସିବ !

ଆସିବ ଆସିବ ତୁମେ ବହୁଦିନ ପରେ
ଦେଖିବ ତୁମର ଏଇ ପ୍ରିୟ ଜନ୍ମମାଟି,
ଦେଖିବ ଏ ବଲ ବନ ପାହାଡ଼ ପ୍ରାନ୍ତର
ଦେଖିବ ଏ ଗାଆଁ ଗଣ୍ଡା ଲଟା ବୁଦା ଘାଟି,
ଆସିବ ଆସିବ ତମେ ଆସିବ ନିଶ୍ଚୟ
ଲୁହରେ ପଖାଳ ଏଇ ବଲ ବନଭୂଇଁ,
ଫେରିଯିବ ଫେରିଯିବ ସବୁ ଗୃହ ଗୃହ
ଦେଖିବନ ନନା, ବୋଉ, ଭଉଣୀ ବା ଭାଇ !
ଦେଖିବନ ଗାଇଗୋରୁ ଘର ବା ଦୁଆର,
ଘିତ କଂସା ବାଢ଼ିଦେଇ ସେନେହ ଆଦରେ
କେ' ଡାକିବ ? କାହା ଡାକ ଶୁଣିବତ ନାଇଁ !
ବିଷଣ୍ଣା ହରିଣୀ ପରି ଚାଲିଯିବ ଘରେ;
ଆସିବ ଆସିବ ଆସିବ ତୁମେ ଆସିବ ଆସିବ,
ତୁମପାଇଁ ତୁମେ ଏକା କାନ୍ଦିବ ହସିବ ।

---

# ପାଣ୍ଡୁଲିପିଟିଏ ହଜିଗଲା ପରେ !

ଲେଖାଟି ହଜାଇ ଦେଲେ ! ଅନନ୍ତ ଆଦରେ
ଯାହାରେ ମୁଁ ରଖିଥିଲି ଗଣ୍ଠିଧନ କରି,

ତାର ପ୍ରତିରୂପ ଯେବେ ନ ପାଇବ ଥରେ
ଶ୍ମଶାନ ଚିତାରେ ମୋରେ ପୋଡ଼ିଦେଲା ପରେ—
ଲାଗିବ ଲାଗିବ ବନ୍ଧୁ ! ମନେହୁଏ ଆଜ
ଦେଇ ମୁଁ ନଥାନ୍ତି ମୋର ସବୁ ଲେଖା ଖାଜ
ପୁସ୍ତକ ଆକାରେ ହେଲେ ନୋହିଥାନ୍ତା ଛପା
ପାଖେ ରଖି ଦେଖୁଥାନ୍ତ ହେଲେ ଧନଗଦା !
ରକ୍ତ ତାଳ ଯାରେ ମୁହିଁ ଅଛି ଜନ୍ମ ଦେଇ,
କେମନ୍ତେ ରହିବ ଥିର ନ ଦେଖିଲେ ତାରେ ?
ତାରେ ଯେବେ ପାଶେ ମୋର ନ ଆଣିବେ କେହି
ମ୍ଳାନ ହେବ ଥିବ ସିଏ ବସ୍ତ୍ର ଯେଉଁଆଡ଼େ ।
ମୋର ଭାଷା, ମୋର ଭାବ, ମୋହର ଅନ୍ତର,
ଯହିଁରେ ରହିଚ, ସେ ଯେ ମୋର ରୂପାନ୍ତର !

———

# କି କଥା ପଚ୍ଛର ବୁଢ଼ି

କି କଥା ପଚ୍ଛର ବୁଢ଼ି ଦୋଦୋପାଞ୍ଚ ହୋଇ
ତରଣି ବରଡ ତଳେ ଦେଖିଥିଲି ମୋରେ,
ମୁଁ ଯେ ସେହି ସୁଖେ ଦୁଃଖେ ରହିଚ ଏ ମର୍ତ୍ତ୍ୟେ
କାହାରେ ଖୋଜୁଚ ତମେ ଗୃହିଁ ନେଣ ଡୋଳେ ?
କି କଥା ପଚ୍ଛର ବୁଢ଼ି ଗୋଟି ଗୋଟି କରି ।
ଲୁହ କଣାଁ ଢଳଆସେ କାହାର ସ୍ମରଣେ ?
ସମ୍ଭବ ତାଙ୍କର ଯାଇଛନ୍ତି ମରିହଜି,
ରହିଛୁ ଭଉଣୀଟିଏ, ଭାଇ ଅଛୁ ଜଣେ ।
କି କଥା ପଚ୍ଛର ବୁଢ଼ି ? ବଲ ବାଡ଼ ଘର
ସବୁ ଥିଲା କଏ ନେଇ, ବୁଲାଇଲା ଜଳ।
'କଏ ହେଲେ ଅଛନ୍ତି ତ, କେଉଁ ବନସ୍ଥରେ'
କି ଆଶ୍ୱସ୍ତି ଏ ଯେ ତବ, ଲୁହ ଲହୁ ଭରା !
କି କଥା ପଚ୍ଛର ବୁଢ଼ି ! ତୁମ ଅଶ୍ରୁ ଜଳ
ମନର ମନୁଷ୍ୟ ଧରି କେତେ ଢଳଢଳ !

———

## କା' ଅଭାବ ଲାଗି !

ଯିଏ ଯାହିଁ ଚାଲିଗଲେ ଯାଇନି ମୁଁ ଚାଲି,
ଏ କୁଟୀର ମତେ କିପାଁ ଲାଗେ ଖାଲି ଖାଲି ?
ଟିକିଏ ଚାହିଁଲେ ଚତୁର୍ଦ୍ଦିଗ ନେତ୍ର ଭରି
ଦେଖେ ସେଇ ବନ ବଲ୍ଲୀ ଶ୍ୟାମଳ ଶିଖରୀ ।
ଦେଖେ ସେଇ ରାଜପଥ-ଯାତ୍ରୀ ଅଗଣନ ।
ଦେଖେ ଶିରେ ନୀଳନଭ ନୀଳିମ ଅଙ୍ଗନ
ଦେଖେ କେତେ ସନ୍ଧ୍ୟା ଉଷା ରାତ୍ରି ଦ୍ୱିପ୍ରହର
ଏ ସବୁ ଭିତରେ କିନ୍ତୁ କିଆଁ ମୋ ଅନ୍ତର
ଯେତେ ଗୋଳି ହୋଇଯାଏ, ସେତେ କିପାଁ ଲୋଡ଼େ
କିଏ ଜଣେ ରହିଥାନ୍ତେ, କି ଅଧିକ ମୋରେ
ଲାଗୁଥାନ୍ତା ! ଧରଣୀର ପ୍ରତି ଧୂଳି ମାଟି
କା'ଲାଗି ମୁଁ ସର୍ବହରା ପରି ଦିନ କାଟି
ଚାଲୁଛି ନୀରବେ ଏକା । କା' ଅଭାବ ଲାଗି
ସବୁଜ ପ୍ରକୃତି ପରି ଉଠୁନି ମୁଁ ଜାଗି !

---

## ଯେଉଁପାରେ ଥାଅ

ତୁମ ସ୍ମୃତି ବେଳେ ବେଳେ ହୃଦୟ-କପାଟେ
କାହିଁକି ଆଘାତ କରେ ଯାଉଁ ବାଟେ ଘାଟେ,
ତୁମରି ସାନ୍ନିଧ୍ୟ କିପାଁ ଲୋଡ଼ିବସେ ମୁହିଁ
ଏଡ଼େ ଆପଣାର ତୁମେ ଏ ଧରଣୀ ଭୁଇଁ—
ଜାଣି ତ ନଥିଲି, ମୁହିଁ ନଥିଲି ତ ଜାଣି
ପ୍ରତିନିତି ଚାହେଁ ତୁମ ହୃଦ-ମଧୁ-ବାଣୀ—
ଶୁଣୁଥାନ୍ତି । ତୁମ ପାଇଁ ମୋ ଅନ୍ତର ତଳ
ଉଚ୍ଛନ୍ନ ଉଠିଥିଲା ଏତେ ଆକୁଳ ବିକଳ—
ହେବ ବୋଲି ସ୍ୱପ୍ନେ ହେଲେ ନାହିଁ ଥିଲି ଭାଳି,
କି ଶିକ୍ଷା ଦେଇଛ ମୋରେ ? ପାରୁନି ମୁଁ ଛାଡ଼ି
ତୁମରି ବନ୍ଧନଟିକି ପ୍ରାଣ ବିମୋହନ,
ତୁମେ ତ ରହିଲ ହୋଇ ଚିର ଗଣ୍ଠିଧନ—

ଜୀବନର ଯେଉଁ ପାରେ ତୁମେ ଥାଅ ରହି,
ମୋ ଲାଗି ଅମୃତ ପାନ ଅଛ ଯେହ୍ନେ ବହି !

---

## ଯାଇଚ ତମେ!

ବୁକୁଟର ବ୍ୟଥାଭାର କହିବାକୁ ଗଲେ
ଦେଖୁଥିବ କଏ ନାଇଁ ଏ ମଞ୍ଚମଣ୍ଡଳେ,
ସୀମାହୀନ ହତାଶାରେ ତଳେ ଗଲେ ପଡ଼ି
ଦେଖୁଥିବ କଏ ନାଇଁ ମତେ ଦେବ ଧରି ।
ପ୍ରତି ଅଙ୍ଗ ମୋର ଯେବେ ଯାଉଥିବ ଥରି
ପାଇ ଶତ କଦର୍ଥନା, ମୁଁ ଯେ ନେବି ଭରି-
ଦେଖୁଥିବ କେହି ଜଣେ ଦୟାଳୁ ଅନ୍ତର
ଆସୁନ ପରଶି ଯିବ ସାନ୍ତ୍ୱନାର କର ।
ବେଶୀ ବେଶୀ ଦୁର୍ବିସହ ହେଲେ ମୋର ବ୍ୟଥା
ଦେଖୁଥିବ କେହି ମୋରେ କହୁନାଇଁ କଥା ;
ପାଷାଣରୁ ବଳି ସବେ ମୂକ ମୋହପାଇଁ
ମୋର ଯେହ୍ନେ ଧରଣୀରେ ସ୍ଥାନ ଲଭେ ନାଇଁ !
ଯାଇଚ ଯାଇଚ ତମେ ଚିରଦିନ ଗୁଡ଼ି
ଚିରଦିନ ରହିଥିବ ଏଥି ମନମାରି ! !

---

## କେଉଁଠି ଗୃହିଁବ ନାଇଁ?

ଯାଉଚ କୁଟୀରେ ତୁମେ ! ଯାଅ କିନ୍ତୁ ମତେ
କେଉଁଠି ଗୃହିଁବ ନାହିଁ ? ମୋ ଦରିଦ୍ର ପଥେ—
ମୋର ସୁଖ ଦୁଃଖ ନେଇ ଗୃଲିଥାଏ ମୁହିଁ
ଜୀବନେ ଯା' ଦେଇଚ ମୁଁ ଯାଇଚ କି ଛୁଇଁ—
ଗମ୍ଭୀର ମରମ ତବ ? ଜାଣିଚ କି ମତେ
ହୃଦଭରି ଦେଖିଚ କି ଅନନ୍ତ ଜଗତେ

କି ମୋହନ ସୁଧା-ସ୍ନିଗ୍ଧ ଚାହାଣୀଟି ଭରି
ଦେଖିବ ତୁମରେ ମୁହିଁ ଦିନ ଦିନ ଧରି—
ଏଇ ମୃତ୍ତିକାର ପ୍ରତି ରେଣୁ ରନ୍ଧ୍ର ତଳେ
ତୁମେ ତୁମେ ଫୁଟିଉଠ ଅମୃତ ରୂପରେ,
ମୁଗ୍ଧ କରି ଦେହ ମନ ଦରିଦ୍ର-କବିର ;
ଯାଅ ତୁମେ । ମୋ ଆଖିର କୋଟି ଅଶ୍ରୁନୀର-
କିଏ ସେ ପାରିବ ପୋଛି ? ତୁମ କାନ୍ତ କର-
ବିନେ ମୁହିଁ ନିଃସହାୟ ନିଃସ୍ୱ ଓ ନିର୍ବଳ !

---

## ଲଭିନାଇଁ

ମୁଁ ଯେବେ ରହିଲି ଚାହିଁ ସେ ଚାହିଁଲା ମତେ ;
ସେ ହସିଲା ମୁଁ ହସିଲି ଗୋପନେ ଉଷତେ,
ସେ ପୁଣି ଚାହିଁଲା ମୋରେ ମୁଁ ଚାହିଁଲି ତା'ରେ
ହସିଲା ସରମେ ସିଏ ଆଢ଼ବାଙ୍କେ ବାରେ ।
ଅନନ୍ତ ସେନେହ ଭରା ହସଟିଏ ବାଢ଼ି
ଟିକିଏ ମୁଁ ଚାହିଁ ଆଉ ଚାହିଁଲିନି ପାରି;
ମଥାଟେକି କି ସେନେହ ସନମାନ ଭରି,
ହସି ହସି ଚାହିଁଲା ସେ ପୁଣି ଆଗ ପରି
କେତେବେଳ ଏହାପରି ହୃଦ ଦିଆନିଆ—
ହସେ ହସେ ଫୁଟି ଉଠି ମୁଗ୍ଧ କଲା ହିଆ;
ବିଦାୟର ବେଳ ହେଲା ଯିବଇଁ ମୁଁ ଚାଲି
ଚାହିଁଲା ସେ ପୁଣି ସେଇ ହସଟିକ ଢାଳି,
ମୋ ଟିକିକ ହସ ଦେଇ ତାରେ ଚାହିଁ ଚାହିଁ
ଫେରୁଛି ; ତା' ଓଠୁ ସେଇ ହସ ଲଭିନାଇଁ ।

## ହରାଇ ତୁମରେ

ପୃଥିବୀର ଝଡ଼ଝଞ୍ଜା ବାର ବାର କରି
ମୋରେ ଯେବେ କ୍ଷୁବ୍ଧ କରେ, ଯୋହାଠେ ସନ୍ତରି—
ପାରେ ନା ମୁଁ ଯେବେ ଏଇ ମହାସିନ୍ଧୁ ଜଳେ,
ନେତ୍ରପ୍ରାନ୍ତୁ ଅଶ୍ରୁ ଯେବେ ଝର ଝର ଝରେ,
ଚତୁର୍ଦ୍ଦିଗେ ଚାହିଁ ରହେ ହତାଶ ନୟନେ,
ସେତେବେଳେ ଏ ଅନ୍ତର ତୁମରି ଅୟନେ -
ଦୂର ଦିଗ୍‌ବଳୟ ଖାରେ ନେତ୍ରେ ଖୋଜି ବୁଲେ !
ମୁଁ ଯେବେ ଥାଆନ୍ତି ରହି ଆଜ ତୁମ ଭୁଲେ
କି ସେନେହ ସନମାନ ପାରୁଥାନ୍ତି ପାଇ
ମୋ ଲାଗି ଧରଣୀ ଶୂନ୍ୟ, ବୁଝିବାର ପାଇ
ମତେ ଏଥି କେହି ନାହିଁ । ପ୍ରତି ପଦ ପାତେ
ଲୋଡ଼ିହୁଏ, ତୁମେହେଲେ ରହିଥାନ୍ତ ସାଥେ
ପ୍ରାଣର ନିଧିଟି ପରି । ହରାଇ ତୁମରେ
ହରାଇଚି ନିଜରେ ମୁଁ ପ୍ରତି ମୁହୂର୍ତ୍ତରେ ।

---

## କା' ଲାଗି ମୁଁ…

ପାଇଚି ତୁମର ପଥ ଆଜ ଆଦ୍ୟ କରି,
ଯାହାଲାଗି କେତେଦିନ ଥିଲି ଅନୁସରି ।
ଭାଙ୍ଗୁଥିଲି ଶଠିଖଣ୍ଡେ ଦେଲେ ନାହିଁ ହାୟ
କେତେ ଦିନ ରାତି ସନ୍ଧ୍ୟା ବିତିଗଲା ପ୍ରାୟ
ଚଳଚଳ ପରି ମୋର ନୟନ ସମ୍ମୁଖେ,
ତଥାପି ଥିଲି ମୁଁ ଚାହିଁ ବସିଠ ଉତ୍ସୁକେ
ପୂରିବ ପରାଣ ଆଶା; ଜୀବନ ସାରାଟି—
ବିତିଗଲେ, ଲେଖିଅଛ ପାରିବନି କାଟି—
ମୋ ଭୁଲେ ବନ୍ଧନ ଡୋରି । ପାରିବନି ଦେଇ
ମୋ ପ୍ରେମର ପ୍ରତିଦାନ, ଏ ପଦ୍ମକ ନେଇ—

ମୁଁ ଦେଖୁଚ ମଧୁସ୍ୱପ୍ନ । କାହା ଓଠ ବାଣୀ
ମତେହିଁ ରଖିଚ ବାନ୍ଧ ବଶେ, ଦବା ଯାମୀ
ଆନନ୍ଦ ଓ କଲ୍ୟାଣର ରଚ ମଧୁତାନ,
କା' ଲଗି ମୁଁ, ମୋହଲଗି ଜାଗେ କାର ପ୍ରାଣ !

———

# ଆଉ କି ଅଧିକ !

ଏ ପୃଥିବୀ ମୋରେ ଯେବେ ଦେଇଚ ଆଡ଼େଇ
ଗର୍ବ ଆଉ ଅବଜ୍ଞାରେ; କାନ୍ତ ଓଠ ଫେଇ—
ମୋରେ ପଦେ କହିବାକୁ ଜୀବନର ବାଣୀ-
ଯେବେ ସଙ୍କୁଚିତ । ମୁହିଁ ହତଭାଗା ପ୍ରାଣୀ—
ମୁଦ୍ରିତ କଳିକା ପରି ରହିଅଛି ପଡ଼ି,
ସେତେବେଳେ ତୁମେ କିଏ ସଚଞ୍ଚଳ କରି-
ମୋରେ ଫୁଟାଇଚ ଦେଇ ବର୍ଣ୍ଣ ଗନ୍ଧ ରସ,
ଦେଖିଚ ମୋ ଶୀର୍ଣ୍ଣ ଓଠେ ମଧୁସ୍ରାବୀ ହସ !
ଦେହେ ମନ ଚେତନାର ବିଦ୍ୟୁତ ଚମକ;
ପୃଥିବୀର ଅବହେଳା ନିଷ୍ଠୁର ଧମକ—
ନିମିଷକେ ହୋଇଅଛି ମନ୍ତ୍ରେ ଅନ୍ତର୍ଦ୍ଧାନ
ପରାଜିତ ଶତ୍ରୁ ସମ । ତୁମରି କଲ୍ୟାଣ-
କର ସ୍ପର୍ଶେ ଉଠିଚି ମୁଁ ଉଠିବାର ପରି,
ଆଉ କି ଅଧିକ ମୋରେ ଦିଅନ୍ତ ବା ଭରି !

———

# କଥା

ଚନ୍ଦ୍ର ମତେ କଥା କହେ କଥା କହେ ତାରା,
କଥା କହେ ବନକୁଞ୍ଜ ତଳେ ନଦୀ ଧାରା ।
କଥା କହେ ବନ ବଲ ପାହାଡ଼ ପ୍ରାନ୍ତର,
କଥା କହେ ନୀଳକାନ୍ତ ଶଇଳ ଶିଖର

ଦୁବ ଘାସ ଲଟା ଗୁଳ୍ମ ପଥେ ପଥଧୂଳି,
କହିଯାନ୍ତି କେତେ କଥା ଅନନ୍ତ ମାଧୁରୀ—
ଢାଳି, ପ୍ରତି ମୁହୂର୍ତ୍ତରେ, ଦିନ ଆଉ ରାତି
କହିଯାନ୍ତି କେତେ କଥା ଭରି ମୋର ଗୀତି ।
ଆସି କେଉଁ ଅସୀମରୁ ଭେଜବାଜ ବତ
ସମସ୍ତ ଅନନ୍ତ ବିଶ୍ୱ ମୋ କାନେ ନପୂତ-
କଥା କହେ ଅସରନ୍ତି, ଶୁଣେ କାନ ପାରି ;
ଏ ସବୁ ମୁଁ ଶୁଣୁଥାନ୍ତି, ନ ଯାଆନ୍ତି ଗୁଡ଼ି ।
ଅନନ୍ତ ଓଠର କଥା ସମ୍ପଦ ଭିତରେ
କହୁଥାନ୍ତି କଥା ମୋର କାହା କାନ ତଳେ !

---

## କୁଣ୍ଠିତ

କହିଲି ସେ'ଦିନ ମୁହିଁ ରେଡ଼୍ ବ୍ଲୁ ପେନ୍‌ସିଲ,
ଦେଇଚ ଯା' ଲେଖିବାରେ ହେଉଚି ମୁସ୍କିଲ
କାଠପରି ଶୁଷ୍କ ଆଉ କଠିନ ସେ ଶିଶା
ନ ଆଣିଥିବା ଭଲଥିଲା । ଅଳପ ପଇସା
ଦେଲେ ମିଳେ କାଣ୍ଡୀ କୁଜ ମାଇପ ବହୁତ
ଗୁଜୁରାଣ ମେଣ୍ଟିବାରେ । ତୁମ ହାତରୁ ତ—
ଦେଉନାହିଁ ଏକ ବୋଡ଼ି । କୁଣ୍ଠିତ କପାଇଁ
ସୁନ୍ଦର ଚକ୍‌କଣ ପେଁସିଲ ଆଣିବାର ପାଇଁ ?
ପାଇଲି ଉତ୍ତର—କାମ ଯିବନକ ଚଳି
ଦାମ ସ୍ଟାର କଣ କମ୍ ? ପାରିବନି କଳି,
ଚୁରଣାର ପେଁସିଲ ଏ ? ଏ ହେବ ଆଠଣା ।
ଆମ ଆଖେ ଧୂଳି ଦେବା ତୁମକୁ ତ ଜଣା—
ବହୁରିଲି, ଅର୍ଥଗୃଧ୍ନୁ ପିଶାଚର ପ୍ରାଣ
କୁଣ୍ଠିତ ଶୁଣିବା ଲାଗି ବିଶ୍ୱ-ମଧୁତାନ !

---

# ନଅ ମୋ ଇସ୍ତଫା

ନଅ ମୋ ଇସ୍ତଫା ପତ୍ର ନଅ ବନ୍ଧୁଗଣ
ରହିବାକୁ ଚାହେଁ ନାହିଁ, ସକଳ ବନ୍ଧନ-
ଛିନ୍ନ ଆଜ ଯାଉ ହୋଇ; ପ୍ରିୟ ଗ୍ରୁପଦଳ
କାହିଁକି କାନ୍ଦୁଚ ଏତେ ? ମୁଁ ଆଉ ତୁମର—
ଭିତରୁ ମମତା କେବେ ଯିବ ନାହିଁ ଚଳ ;
ଏ ଯେଉଁ ବହୁତ ଲୁହ କେମନ୍ତେକେ ଗ୍ରୁଡ଼—
ପାରିବ କଭିଲ କହ ? ରହନ୍ତୁ କଭିଲ
ଯେଉଁ ପରଗ୍ରୁଲନାରେ ରହିଅଛୁ ଭରା—
ଖାଲି ବିଷ କଞ୍ଚା ବିଷ ଅତି ମାରାତ୍ମକ
କେତେ ଆଶା ରଖିଥିଲ, ସବୁ କି ସାର୍ଥକ
ଏଥି ମୁଁ ପାରିଲି କରି ? ବଡ଼ କଷ୍ଟ ଲାଗେ
କେହି ଯେବେ ବୁଝେ ନାହିଁ ଏ ଧରଣୀ ଭାଗେ !
ଧର୍ମ ତାଳ କରିବାର ପ୍ରାଣାନ୍ତକ ଶ୍ରମ
ନଅ ମୋ ଇସ୍ତଫା ପତ୍ର ନଅ ବନ୍ଧୁଗଣ !

———

# ତୁମେ କି କରୁଚ ଈର୍ଷା ?

କାହା ପାଦେ ଦେଲି ମୁହିଁ ସୋହାଗେ ଅଜାଡ଼ି
ଜୀବନର ମଧୁଟିକି ଥରି ଥରି କରି,
କିଏ ସେ ମୋ ଜୀବନର କି ଅମୂଲ୍ୟନିଧି
ଚାହିଁ ବସିଥିଲି କାରେ କୋଟି ଯୁଗ ଧରି;
କି ମୋହନ ସ୍ୱପ୍ନ ସିଏ କେଉଁଠାରୁ ଆସି
—ଥିଲା ଯେବେ ମୋହଲାଗି, ଏ ଧରଣୀ ଗେହେ
ରୋମାଞ୍ଚ ଉପୁଜ ଉଠେ ଦେହେ ମନେ ନିତି
ଯେବେ ସିଏ ଚାହେଁ ମୋତେ କ୍ଷଣକ ଯେନେହେ
କଭିଲ ଦିଅନ୍ତି ନାହିଁ ସର୍ବସ୍ୱ ମୁଁ ତାରେ?
କଭିଲ ମୁଁ ଗାଆନ୍ତିନ ତା'ର ଜୟଗାନ ?

ଝିଙ୍କ ପରଶେ ଯାଉ ଉଠଇ ମୁଞ୍ଜରି
ଏ ସର୍ବାଙ୍ଗେ ସ୍ୱପ୍ନବୋଳା ଅମୃତର ପ୍ରାଣ !
ତୁମେ କି କରୁଚ ଈର୍ଷା ? ମୋ ସର୍ବସ୍ୱ ଦାନେ ?
ମୋ ବକ୍ଷେ ଜାଗିବ କିଏ ଏତେ ମଞ୍ଜୁ ତାନେ ?

———

## ହାୟ ମୋର ଦେଶ!

କେତକୀ ପାରଚ ତମେ ଫୁଟି ଆପେ ଆପେ
ସେଇ ତବ ଗଉରବ ପରମ ସମ୍ମାନ !
ଆଉ ଯେବେ ଫୁଟି ଫୁଟି ପାରୁ ଫୁଟି ଉଠ
ସହି ସବୁ ଝଡ଼ ଝଞ୍ଜା ମାନ ଅପମାନ,
କଅଁଳନ ପକ୍ଷ ଯା'ର ଯିଏ ଖଣ୍ଡି ଉଡ଼ା
ଦେଇ ଦେଇ ନମିଷକେ ତଳେ ଯାଏ ପଡ଼
ପର କେତେ ଖଞ୍ଜିଦେଲେ ଆସିବ କି ବଳ ?
ଉଡ଼ିବ କି ଅନ୍ତରୀକ୍ଷେ କୁଆ ଶୁଆ ପରି !
କେତେ ଆଶା କରି ମୋରେ ଦେଇଚ ଉତ୍କୋଚ
ଆଜନମୁ ଏଇ ହାତ ଯାହା ପରଶିନ
ଦେହ ମନ ଥରି ଉଠେ ହାୟ ମୋର ଦେଶ
ଶିଶୁଠୁ ମଣିଷପାଏଁ ରସାତଳଗାମୀ !
ଏ ନିର୍ଲଜ ପ୍ରାଣ ଧରି ହେବାଠାରୁ ବଡ଼
ମୃତ୍ୟୁ ବରଂ ଶ୍ରେୟସ୍କର ଶତ ଶ୍ରେୟସ୍କର !

———

## ଯୋଜନ ଯୋଜନ ପାରେ

ଯୋଜନ ଯୋଜନ ପାରେ ସେ କେଉଁ କୁଟୀରେ
ସବୁଜ ବନାନ୍ତମଳେ ଝରଣାର ତୀରେ,
ରହିଥିବ, ମୁକୁଳାଇ, ମୁଗ୍ଧ ଯଉବନ,
ଦେଖୁଥିବ ହାତ ଗଣ୍ଠି ସ୍ୱନେଲ ସପନ !

ହସୁଥିବ ଓଠ ତଳ କୋକନଦ ପରି
ସେ ଦୂର ବିଜନ ଭୂଇଁ ତୁମରେ ଗୋ ଧରି,
ସୌଗନ୍ଧବନ୍ତି ମଣୁଥିବ ; ମୁଁ କମ୍ପା ତୁମରେ
ବୁକୁତଳେ ଅନୁଭବେ ପ୍ରତି ମୁହୂର୍ତ୍ତରେ ?
ତୁମ ଓଠ ମୋରେ କମ୍ପା ଏତେ କଥା କହେ ?
ତୁମ ଆଖି ମୋରେ କମ୍ପା ଏତେ ଗୃହ୍ଣି ରହେ ?
ତୁମ ବୁକୁ ମୋ ବୁକୁରେ ଏତେ କମ୍ପା ଦିଏ
ମୋହନ ପରଶ ବୋଳି, ତୁମେ ମୋର କିଏ ?
ଯୋଜନ ଯୋଜନ ପାରେ ମୁଁ କିଏ ତୁମର ?
ଗୋଟିଏ ଅମୃତ କ୍ଷୁଧା ଜନ୍ମ ଜନ୍ମାନ୍ତର !

———

## ବସନ୍ତ ପ୍ରତୀକ୍ଷା—

ଦୂର ଦେଶେ ଦୂର ପଥେ ରହିଲ ତ ତମେ
କେତେ ବିଲ ବନ ପାରେ ସେ କେଉଁ ଭୁବନେ !
ଇଚ୍ଛା ହୁଏ ବେଳେ ବେଳେ, ଯାଆନ୍ତି ମୁଁ ଚାଲି !
ରହନ୍ତି ତୁମରି ତୁଲେ, ଏଥି ମନ ମାରି—
କେମନ୍ତେ ରହିବ ଏକା ? କ୍ଷୁଦ୍ର ଜୀବନର
ଯେତେ ଯାହା ସୁଖ ଦୁଃଖ ହାସ୍ୟ ଲୋତକର—
ଅସର କାହାଣୀ, କିଏ ଶୁଣିବ ମୋହର ?
କାହାର ଅନ୍ତରଟିକ, ରସସିକ୍ତ କରି
ରଖିବ ମୋଲାଗି କିଏ ଚଉଦ ଭୁବନେ,
ରଖିଥିଲେ ରଖିଥିବ ତୁମେ ଏକା ଜଣେ !
ବସିଥିଲେ ବସିଥିବ ତୁମେ ମୋରେ ଗୃହ୍ଣି
ଖୋଜୁଥିଲେ ଖୋଜୁଥିବ, ଚିରଦିନ ପାଇଁ;
ଡାକୁଥିଲେ ଡାକୁଥିବ, ଅସରନ୍ତି ଡାକ,
ଛାଡଗଲେ ଛାଡଯାଉ ଜୀବନଟା ଯା'କ

———

# ବହୁ ବର୍ଷ ପରେ

ବହୁ ଦିନ ବହୁ ଯୁଗ ବହୁ ବର୍ଷ ପରେ
ଆସିବେ ପଥିକ ଦଳ, ଏ ପଥ ପାର୍ଶ୍ୱରେ—
ରହି ରହି ଚୁହି ଚୁହିଁ ଯିବେ ପାଦ ଚୁଳି,
ଦେଖୁଥିବେ ଏଇ ହ୍ରଦ ଉର୍ମିମାଳେ ତାଳ,
ସମୃଦ୍ଧ ଚୁହାଣୀ; ଚୁଲେ ନାବିକ ସୁଦୂରେ
ଫେରୁଥିବେ ଗୋରୁଗୋଠ, ଶ୍ୟାମ ଶୈଳ ଚୂଳେ,
ଶୁଭୁଥିବ କୁହୁ କେକା, ବନ କୁଞ୍ଜଭୂମି,
ଘୁମନ୍ତ ସପନେ ଥିବ, ମେଘମାଳା ଚୁମ୍ବି,
ଏ ସବୁ ଭିତରେ ଏଇ କୁଟୀର ପ୍ରାଙ୍ଗଣ
ଦିଶୁଥିବ ତାଙ୍କ ନେତ୍ରେ କେତେ ମନୋରମ !
ପ୍ରତି ରେଣୁ ତଳୁ ଯେହ୍ନେ ଏଇ ମୃତ୍ତିକାର
ଖୋଜୁଥିବେ କେତେ ସ୍ୱପ୍ନ କବି-କବିତାର—
ହୃଦୟର ଉଦ୍‌ବେଳନେ; ପୁଣ୍ୟ ତୀର୍ଥ ସେଇ
ପ୍ରାଣର ପରଶ ଯହିଁ ଜନ୍ମ ଅଛି ନେଇ ! !

---

# ନାଇଁ ଭଜେ ପରାଜୟ

ସେ ଦିନ ପ୍ରବାସ ବାସେ ସାୟାହ୍ନ ବେଳାରେ
ବସିଚି କୁଟୀରେ ମୋର, ନିବିଡ଼ ଅନ୍ଧାରେ
ମିଳାଅଛି ବାଟ ଘାଟ, ଲେଖୁଚି ଚିଠିଏ
କେତେ କାହା ପାଶେ; ଘେନି ଜୁଆଁସ ଚଉଡ
କୁଟୀରେ ପହଞ୍ଚିଗଲ ; ତୁମେ ଜଣେ କିଏ !
"କହିଲ ତୁମରିଲାଗି ଆଣିଚି ଟିକିଏ –
ସାମାନ୍ୟ, ଏ ନୁହେଁ କିଛି" ଦେଖିଲି ମୋହର
ଦରିଦ୍ର କବୀନ୍ଦ୍ର ବନ୍ଧୁ ବିନମ୍ର ଅନ୍ତର ;
ବୋଇଲି ମୋ ପାଇଁ କଣ ! ହୋଇ ହଠାହଠା
ଆଣିଚ ଏ ସବୁ ? ମୋର ନିଃସ୍ୱ ଜୀବନଟା
ପାଇନି ଏଭଳି କାହୁଁ ପୁଣ୍ୟ ଅନୁଗ୍ରହ
ତୁମେ [illegible] ରଖିଅଛ ବାନ୍ଧି ଅହରହ

ସୁଖେ ଦୁଃଖେ ତୁମ ଭୁଲେ; ବରଂ ହୃଦୟ
ଦାରିଦ୍ର୍ୟ ଭିତରେ ନାଇଁ ଭଜେ ପରାଜୟ

—————

## ଦେଉଥାନ୍ତ !

ମୁଁ ଯିବା ପ୍ରବାସ ବାସେ ଭଲ ମନ୍ଦ ଖାଏ
ଝିଅଟି ମୋ ଥିବ ସେ ଯେ କେଉଁ ଦୂର ଗାଏଁ;
ଘର ସାଙ୍ଗରୁ ତ ତାରେ ସବୁଦିନ ପାଇଁ
ତଅଣ ଟୋପାଏ କେବେ ମିଳୁଥିବ ନାଇଁ ।
କନକ ପିତୁଳୀ ପରି ଶିଶୁଟିଏ କୋଳେ
ମାଗୁଥିବ ବସ୍ତୁଟ୍ ସେ ଗୃହଁ ନେଇ ଡୋଳେ—
ଜନମରେ ତାର ଯେବେ, ତାରେ ବାଆଁରେଇ
ଦେଉଥିବ ଏଣୁ ତେଣୁ କେତେ କଥା କହି;
ବୋଲୁଥିବ "ଅଜା ଯେବେ ଫେରିବେରେ ବାବୁ !
ଖାଇବୁ ତୋ ପାଇଁ କେତେ ଆଣିଥିବେ ସବୁ",
କା' ଦୁଃଖେ ଜୀବନେ ଦୁଃଖୀ ହେଲି ନାଇଁ ବାରେ
ରହିଲି ପ୍ରବାସ ବାସେ କି ଶିଖି ସମ୍ଭାରେ ?
ଦୁଃଖୀ କୁଡ଼ିଆରେ ରହି, ଦୁଃଖୀଜନ ପରି
ଆପଣା ଟିକିକ ତହିଁ ଦେଉଥାନ୍ତ ଭରି;

—————

## ସଂପଦେ ବିପଦେ

ଟିକିଏ ଗୌରବ ମୋର ଶୁଣିବାର ଲାଗି
ବିପୁଳ ଉତ୍କଣ୍ଠା ଉଠେ ତୁମ ବକ୍ଷେ ଜାଗି,
ଟିକିଏ କେ, ଦେଲେ ମୋରେ ସ୍ନେହ ସନମାନ ।
ମୀଦ ତବ ତଳେ ପଡ଼େ ନାଇଁ ଧନମାନ ।
ଟିକିଏ ପ୍ରଶଂସା କରି କେ ମତେ କହିଲେ,
ତୁମ ମୁଖେ ସ୍ୱର୍ଗ ଆଭା ଫୁଟଇ ପହିଲେ ।

ଟିକିଏ ଆନନ୍ଦ ହାସ ଜାଗିଲେ ମୋ ଓଠେ
ସବୁ ଦୁଃଖ ସବୁ ଗ୍ଲାନି ତୁମ ମର୍ମୁ ଛୁଟେ ।
ଟିକିଏ ଜୀବନ୍ତ ପରି ମୁଁ ଉଠିଲେ ଫୁଟି
ପଲ୍ଲବ ଉଠଇ ତୁମ ଦେହ ମନ ଗୋଟି ;
ଟିକିଏ ମୁଁ ଭାଗ୍ୟବାନ୍ ହେଲେ ଧରଣୀରେ
ତୁମେ ଗୋ ଉଚ୍ଛୁଳ ଉଠ ଆନନ୍ଦେ ଅଧୀରେ
ଟିକିଏ ଦୁଃଖରେ ମୁହିଁ ହେଲେକ ଚଞ୍ଚଳ
ଆଡୁଆଳ କରି ରଖ ପାତଣି ଅଞ୍ଚଳ !

———

## ମଧୁ ମିଳନ

ସେ ଦିନ ମୁଁ ଫେରୁଥିଲି ବାଷ୍ପୀୟ ଶକଟେ
ସେ କେଉଁ ସୁଦୂର ଭୂଇଁ, ଗଭୀର ସଙ୍କଟେ
ଏ ଦରିଦ୍ର ଦେହ ମନ କ୍ଷତ ଓ ବିକ୍ଷତ—
ପରି ମତେ ଲାଗୁଥିଲା, ମୋର ଯାତ୍ରା ପଥ—
ସୁଖକର କରିବାକୁ ଖୋଲା ପ୍ରକୃତିରେ
ଘରଆଡ଼େ ଚାହୁଁ ଥିଲି, କିନ୍ତୁ ଅଶ୍ରୁ ନୀରେ—
ଯାଉଥିଲି ବୁଡ଼ି ମୁହିଁ, ଠିକ୍ ସେ ସମୟେ
ଦେଖିଲି କବିଙ୍କୁ ଜଣେ, ଅମୃତ ହୃଦୟେ
ଡାକି ନେଲେ ପାଶେ ତାଙ୍କ, ହେଲା କଥା ଭାଷା
ମୁଞ୍ଜରି ଉଠିଲା ପ୍ରାଣେ ଉନ୍ମାଦନା ଆଶା;
ନିଭିଲା ନୟନୁ ଅଶ୍ରୁ, ପ୍ରାଣୁ ଅବସାଦ,
ଦୀର୍ଘତର ହୁଅନ୍ତା ଏ ଯାତ୍ରାର ଆହ୍ଲାଦ
ଜାଗିଲା ପିପାସା ପ୍ରାଣେ; ପ୍ରାଣବନ୍ତ ସାଥି
ଜଗାଏ ଜୀବନେ ଏକା ସୁବର୍ଣ୍ଣ ପ୍ରଭାତି;

———

# ଏ ପତାକା ତଳେ !

ହେ ମୋହର ଶିଶୁଦଳ ! ଆଜ ତୁମେମାନେ
ସ୍ୱାଧୀନ ମାଟିର ଆତ୍ମା ପରି ସନମାନେ—
ଖେଳୁଚ ବୁଲୁଚ ଏଥି, ଏ ପତାକା ତଳେ
ଦେଶ କୀର୍ତ୍ତି ଗାଥା ଗାଇ, ରୋମାଞ୍ଚ ଅନ୍ତରେ
କରୁଅଛ ଅନୁଭବ, କିନ୍ତୁ ଜାଣିଚନା ?
ବୁକୁତଳେ ବହୁ କୋଟି ଅଗ୍ନି ଉନ୍ମାଦନା—
କେତେ ନେତା କେତେ କର୍ମୀ, କେତେ ବଙ୍କଜନ
ମରିଚନ୍ତି, ହଜିଚନ୍ତି, ବେଢ଼ର ବନ୍ଧନ—
ପରାଧୀନ ଭାରତର ଚରଣୁ ଖସାଇ
ସେମାନଙ୍କୁ ନମି ଚାଲ, ହର୍ଷ ଓ ହସାଇ
ଲକ୍ଷ କୋଟି ଜନତାରେ, ନିଜ ପାଇଁ ତମେ
ଆସିନ ଆସିନ୍ କେବେ, ନିଖିଳ ଭୁବନେ
ତୁମେ କିଏ ? ସୀମାହୀନ ମହା ଜନତାର
ତୁମେ ହିଁ ମଙ୍ଗଳ ଦୀପ ଜଳ ବାର ବାର ।

———

# ଉତ୍ସର୍ଗ

ମୋ ଜନ୍ମମାଟି ବାଣପୁରର ପ୍ରିୟ ସନ୍ତାନ
ଓଡ଼ଆ ଶିଶୁ-ସାହିତ୍ୟର
ଅନ୍ୟତମ ପ୍ରବୀଣ ସ୍ରଷ୍ଟା
ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ରଙ୍କ
କାନ୍ତ କରେଷୁ !

# ସାଧକର ସ୍ୱପ୍ନ

ହେ ମୋର ପୃଥିବି ! ନ ବୁଝ ନ ବୁଝ ମୋର ସାଧନାର ମୂଲ୍ୟ !
ସକଳର ତଳେ ରହିଥାଏ ମୁହିଁ ନ ହୁଏ କାହାର ତୁଲ୍ୟ ;
ମତେ ମନେକର ତୁଚ୍ଛ ଓ ହେୟ
ନ ଦିଅ ନ ଦିଅ ତୁମର ଯା ଦେୟ,
ବୁକୁ ପରେ ମୋର ଭୁସିଦିଅ ଶତ ଅବମାନନାର ଶଲ୍ୟ,
ହେ ମୋର ପୃଥିବି ! ନ ବୁଝ ନ ବୁଝ ମୋର ସାଧନାର ମୂଲ୍ୟ ;

ତୁମରି ପାଇଁ ମୁଁ ଅଶ୍ରୁ ଝରାଏ ଫଟାଇ ମୋହର ବକ୍ଷ
ତୁମରି ସେବାରେ ପୂରିଉଠୁ ମୋର ଜୀବନର ମହାଲକ୍ଷ୍ୟ;
ତୁମ ମଙ୍ଗଳ କରେ ଅବିରଳ
ଯେତେ ପାରେ ତହିଁ ମୋର ବଳକଳ,
ତୁମରି ପାଇଁ ମୁଁ ଉଡ଼ିଉଠେ ନଭେ ବିସ୍ତାରି ଶ୍ରେଷ୍ଠ ପକ୍ଷ,
ତୁମରି ପାଇଁ ମୁଁ ଅଶ୍ରୁ ଝରାଏ ଫଟାଇ ମୋହର ବକ୍ଷ।

ଅନ୍ତର ଭରି ହେ ମୋର ପୃଥିବି ! ତୁମରେ ଦିଏ ମୁଁ ଶ୍ରଦ୍ଧା
ତୁମ ଅନ୍ତରେ ଅନ୍ତର ଭରି ନିଶିଦିନ ଥାଏ ବନ୍ଧା,
ଘନ ଅନ୍ଧାରେ ହୁଏ ଆଶ୍ରୟ,
ତିଆଗି ସକଳ ସ୍ୱାର୍ଥ ଓ ଭୟ,
ତୁମ ଆନନ୍ଦେ କଳ ଗୀତ ଗାଇ ବହେ ମୁଁ ଅଳକାନନ୍ଦା,
ଅନ୍ତର ଭରି ହେ ମୋର ପୃଥିବି ! ତୁମରେ ଦିଏ ମୁଁ ଶ୍ରଦ୍ଧା ।

ଦିଅନା ଦିଅନା ପୌରୁଷ ମୋରେ ଦିଅନା ଦିଅନା ଗର୍ବ,
ସାଧନାର ମୁଁ ଯେ ନିତ୍ୟ ପୂଜାରୀ ସାଧନାହିଁ ମୋର ସର୍ବ,

ସାଧନାରୁ ମୋର ଅମୃତ ଝରେ
ପିଏ ଆନନ୍ଦେ ମୋ କୁଟୀର-ଘରେ,
ସାଧନାର କୋଳେ ଯେବେ ମୁହିଁ ବୋଲେ ସେ ମୋର ମଧୁର ପର୍ବ
ଦଅନା ଦଅନା ପୌରୁଷ ମୋରେ ଦଅନା ଦଅନା ଗର୍ବ ।

---

## ଶୂନ୍ୟ ନୀଡ଼

ପ୍ରାଣଭରା ଅଭିମାନ କରିବି କା' ପାଶେ ?
ବକ୍ଷ ତଳ କ୍ଷତଚିହ୍ନ ଦେଖାଇବ କାରେ ?
ଜୀବନର ଦୁର୍ବିସହ ଅନନ୍ତ ବେଦନା
ଝର ଝର ଆସେ ଯେବେ ତପ୍ତଲୁହ ଧାରେ ।

ପୃଥିବୀର ସୀମାହୀନ ମହାଅନ୍ଧକାରେ
ଲୁଚି ମୁଁ ଯାଆନ୍ତି ହେଲେ ନ ଆସନ୍ତି ଫେରି,
ମତେ କିମ୍ପା କଲବଲ କରୁଅଛ ତମେ ?
ପାରୁନ ଧରାରେ ମୁହିଁ ଲବେ ହସିଖେଳ !

ତୁମକୁ ମୁଁ ଦେଇନି କି ? ପରମ ସମ୍ମାନ
ଗୌରବର ସିଂହାସନେ ନାହିଁ କି ବସାଇ ?
ତୁମକୁ ମୁଁ ପ୍ରାଣଭରି ପାଇନି କି ଭଲ ?
ପ୍ରାଣର ଅନନ୍ତ ମାୟା ସମୁଦ୍ରେ ଭସାଇ ।

ତୁମର ମଙ୍ଗଳ ପାଇଁ ମୋ ଅନ୍ତରତନ୍ତ୍ରୁ
ଫୁଟିନି କି ? ଚିରନ୍ତନ ବାଣୀ ଶୁଭଙ୍କର,
ତୁମର ବେଦନା ଦୁଃଖ ଟିକିକ ଦେଖିଲେ
ଉଠିନି କି କମ୍ପି ମୋର ମହା ଅଭ୍ୟନ୍ତର ?

ତୁମର ପ୍ରାଣର ପ୍ରାଣ ନ ଥିଲି କି ମୁହିଁ ?
ତୁମ ବୁକୁ ଶୋଣିତର ପ୍ରତି ବିନ୍ଦୁ ତଳେ,
ସୁଖ ଦୁଃଖ ଅନୁଭୂତି ଦେଖୁଥିଲି ନକି ?
ମତେ କିମ୍ପା ଗୃହିଁ ଆଜ ଏତେ ହତାଦରେ ?

କୁକ୍କୁର ମାଙ୍କଡ଼ ପରି, ମୋ ବ୍ୟକ୍ତିତ୍ୱ ପରେ
ତୁମେ କିମ୍ପା ଆଣିଦିଅ ଗୁରୁକଷାଘାତ ?
ତୁମେ ସେଇ, ଗୃହୁଁ ଥିଲ ଅମୃତ ନୟନେ,
ଆଜି କିମ୍ପା ରହିଅଛ କରିଣ ପଶ୍ଚାତ୍ ।

ସାତ ଭଗାରିରୁ ବଳି ନିଠୁର ନିର୍ମମ
ତୁମେ କିମ୍ପା ହେଲ ଆଜି କହ ମୋହ ପରେ ?
କି ବିଷ କଣିକା କିଏ ଅମୃତର ଘଟେ—
ମିଶାଇଲା, ମୋ ନୟନୁ ଆଜି ଅଶ୍ରୁ ଝରେ !

ଏ ଦରିଦ୍ର ଜୀବନରେ ଦିନେ ଦଣ୍ଡେ ପାଇଁ,
ସ୍ୱପ୍ନେ ଜାଗରଣେ ମୁହିଁ ନ ଥିଲି ବିଚ୍ଛିନ୍ନ,
ତୁମେ ସେଇ, ଦିନେ ମତେ ପଚ୍ଛିବ ନାହିଁ;
ଭୁଲିଯିବ ମୂର୍ଖ ମୋର ବୋଲି ଦେଇ ଦିନ;

ଏ ବନ ପ୍ରାନ୍ତର ପଥ ସାଗର ସରିତ,
ଏ ସବୁରେ ଏକା ଆଜି ବୁଲିଗଲିବେଳେ,
ବୁଲି ତ ପାରୁ ନି ମୁହିଁ ମନ ବିନୋଦନେ
ପ୍ରତି ପଦ ପାତେ ସେଇ ସ୍ମୃତି ଟିକି ଖେଳେ ।

ଏ ପରାଣୁ ବଳି ଯେତେ ଦେଇଥିଲ ମମତା
ସେ ସମସ୍ତ ଭୁଲିଗଲ କେଉଁଆଡ଼େ କାହିଁ ?
ଟିକିଏ ଟିକିଏ ଖାଲି କ୍ଷଣିକ ବିରାମେ
ତୁମ ମନ ତଳେ ଲିବେ ଜାଗିଲା ତ ନାହିଁ ?

ଏକବାର ପୋଛିଦେଲ ପୋଛିଦେଲ ତମେ !
ମୋ ଅସହ୍ୟ କ୍ଷତ ପାଇଁ ରଚିଲ ସଂଗ୍ରାମ !
ମୁଁ ତଳାତଳାନ୍ତ ହେଲେ ଦିନ ଦିନ ଧରି,
ତୁମର ଫୁଟିବ ଯେହ୍ନେ ବିଜୟର ବାଣ !!

ପୃଥିବୀର ବକ୍ଷପଟୁ ମୁଁ ନିଶ୍ଚିହ୍ନ ହେଲେ
ତୁମର ଆନନ୍ଦ ହେବ ଫୁଟିବ କଲ୍ୟାଣ,
କାହିଁକି ମା ଏତେ ଏତେ ଅହନ୍ତା ମୋ' ପରେ
ଏତେ ଆପଣାର, ହେଲ ମହାଶତ୍ରୁ ମମ !!

ଆଜ ମୁଁ ତୁମକୁ ଗୃହଁ ବସିବ ତ ନାଇଁ
ଫେରଯିବ ଜୀବନର ମହାଶୂନ୍ୟ ମଝେ ।
ସମ୍ଭାଳ ପାରିବ ରହ ? ହୁଏ ନ ପରତେ
କାରେ ନେଇ ବଞ୍ଚିବ ମୁଁ ମହାସୃଷ୍ଟି ଝରେ ?

ଆଗକୁ ପଛକୁ ଆଉ କଏ ଥିଲା ମୋର ?
ତୁମକୁ ହିଁ କରଥିଲି ପରମ ଆଶ୍ରୟ,
ଗଛ ଯେବେ କଟାହୋଇ ପଡ଼ିଗଲା ତଳେ
ରୁଦ୍ର ମରୁ ଗରଜିବ ତହିଁ ଅହରହ ।

ତମେ-ମୁହିଁ ଥିବା ଆଜ ଯେଉଁ ଦୁଇଆଡ଼େ
କେ କାହାରେ ଗୃହିଁବାନ କ୍ଷଣେ ଦଣ୍ଡେ ପାଇଁ
ଜୀବନେ କ ଜାଗୁଥିବ ତୀବ୍ର ପ୍ରତିଶୋଧ ?
କା' ଉପରେ ପଡ଼ିଗଲେ କାହାର ବା ଗ୍ଲାଇ !

ଏଇ ହେଲା ପରିଣାମ ଏତେ ମମତାର
ଏଇ ହେଲା ଶେଷ ଗତି ତୁମ ମୋ ଭିତରେ,
ମୋ ଭିତର ଉଠିଲେକ କାନ୍ଦ ଶତବାର
କମ୍ପନ ଆସେନ ଲବେ ତୁମ ବୁକୁତଳେ ?

କଠୋର ପାଷାଣେ ଯେବେ ଗଢ଼ିଥାନ୍ତ ହିଆ,
ଏ ତୀବ୍ର ବେଦନା ଅବା ପାରିଥାନ୍ତ ସହ,
ପିଶାଚର ନର୍ମମତା ଥିଲେ ଅବା ମୋର,
ଏତେ କଦର୍ଥନା ପାଇ ନୋହୁଥାନ୍ତ ଦହ ।

ମୋ ଦେହ ମନର ଶତ ସୂକ୍ଷ୍ମ ସ୍ନାୟୁମାଳା
ଲୁହା ଶିକୁଳିରେ ଯେବେ ହୋଇଥାନ୍ତା ଗଢ଼ା,
ଏତେ ଦୁଃଖ ଏତେ କଷ୍ଟ ଏତେ ଯେ ଚାଞ୍ଚଲ୍ୟ
ଲବ ମାତରକେ ନାଇଁ ଛୁଉଁଥାନ୍ତା ପରା !

କଵର ଅନ୍ତର ଧରି ଏ ମାଟି ଉପରେ
ମୁଁ ଗୃଲି ଆସିଚ ଯେବେ ଶୈଶବୁ ଏ ଯାଏଁ
ଟିକଏ ଆଘାତ ହେଲେ ସହି ନାଇଁ ପାରେ
ଦରିଦ୍ର କୁଟୀରେ କାନ୍ଦେ ଶିଶୁ ପରି ପ୍ରାୟେ ।

ମୋ'ର ଏ ଯେ ଦୁର୍ବଳତା ମହା ଦୁର୍ବଳତା
ମନେ ହୁଏ ମତେ ପଙ୍ଗୁ ଦେଇଅଛୁ କରି
ଆଶ୍ଚର୍ଯ୍ୟ ମୁଁ ହୋଇଯାଏ ଦେଖି ଧରଣୀରେ
କେମନ୍ତେ ଅଛନ୍ତି ଜନେ ପାଷାଣରୁ ବଳି ।

ଶ୍ୟାମଳ ସବୁଜ ବନ ପ୍ରାନ୍ତର ପଲ୍ଲବେ
ଦଶୁନି ଅନ୍ତର କା'ର ବାରେ ଛନ ଛନ,
କୁସୁମର ଗନ୍ଧ ପରି ଯିବାକୁ ପ୍ରସରି
ନିମିଷକ ପାଇଁ କେହୁ କରୁନାହିଁ ମନ ।

ସାଗର ଉଚ୍ଛ୍ୱାସ ପରି ପ୍ରାଣର ମମତା
କେ କାହାରେ ଅଯାଚିତେ ଦେଉନାହିଁ ଢାଳି,
ଅନନ୍ତ ଆକାଶ ପରି ଲକ୍ଷ ଜୀବନରେ
କେ କାହାରେ ଗୃହୁଁନାହିଁ ହୃଦୟ ପ୍ରସାରି ।

ସୃଷ୍ଟିର ଏ ପ୍ରାଣହୀନ ଜୀବନ ବିଳୋକି,
ଏତେ କଷ୍ଟ ଏତେ ବାଧା ମତେ କିମ୍ପା ଲଗେ ?
ଏ ସୃଷ୍ଟିକୁ ପ୍ରାଣଭରି ଭଲ ପାଇବାରେ
ଏ ଦୁଃଖ ଦୁର୍ଦ୍ଦଶା କିମ୍ପା ପ୍ରତି ନିତି ଜାଗେ ?

କହ ସୃଷ୍ଟି ! କହ ମତେ କହ ବାର ବାର
କାହାରେ ମୁଁ ଦେଇଚି ବା ନିର୍ମମ ଆଘାତ ?
କା ଆଖିରୁ ଅଶ୍ରୁ କାଢ଼ି କାହା ଶିରେ ଅବା
କରିଚି ମୁଁ ସୀମାହୀନ ଉତ୍କଟ ଉତ୍ପାତ ।

ମୋର ଯେଣ୍ଠେ ମନେ ହୁଏ ଏଇ ମାଟି ପରେ
ସକଳ ବିଭେଦ ଭୁଲି ସକଳର ସଙ୍ଗ
ହସି ଖେଳି ଗୃଲଚି ମୁଁ ଦିନ ଦିନ ଧରି
ସଭିଏଁ ମୋ ଜୀବନର ସାଥୀ ପରିଚୟ !

ସବୁରି ଐଶ୍ୱର୍ଯ୍ୟ ସୁଖ ମୋହନ ସମ୍ପଦେ
ନାଚି ଉଠେ ମୋ ଅନ୍ତର ଅନନ୍ତ ଆବେଶେ
କେହୁ କି ବୁଝିଁଇ ମତେ ଜଣେ ହେଲେ ଲୋକ ?
ଗୃଲଚି ମୁଁ ଧରଣୀରେ କି ମଧୁ ଉଦ୍ଦେଶେ ।

ଟିକିଏ ତ ଆସିଲନ କହିଲନ ମତେ
କାହିଁକି ମୋ ପାଇଁ ତମେ ହୋଇଚ ପାଷାଣ ?
ଟିକିଏ ତ ବୃଝିଲନ କ ବ୍ୟଥା କର,
ମୁଁ ତୁମକୁ ଦେଖୁଥିଲି ଭରି ମୋର ପ୍ରାଣ ।

ରହିଲ ରହିଲ ତୁମେ ଦୂରେ ବହୁଦୂରେ
ପ୍ରାଣର ଏକାନ୍ତ ପ୍ରିୟ ଅତି ଆପଣାର
କା' ପେଇଁ ଆନନ୍ଦ ମୋର କା' ପେଇଁ ଜୀବନ ?
କା'ପେଇଁ ଏ ଆକାଶ ଅବନୀ, ଗଛପତ୍ରମାଳ !!

---

## ମୁଁ ଗୋ ଶୁଣୁଥିବି କଳ-କଳ-ରବ !

ମୁଁ ଗୋ ଶୁଣୁଥିବି କଳ-କଳ-ରବ !
ମୋର ଜୀବନର ସେ 'ଯେ ବଇଭବ ।
ମୁଁ ଗୋ ସବୁଜ ବିଲର ହିଡ଼ ତଳେ,
କାନ ପାତି ବସିଥିବି କୁତୁହଳେ !

ଶିରେ ଶୁଭ୍ର ବାଦଲ ଭାସିଯାଉ,
ଗିରି, ଚୂଳେ ଚୂଳେ କାହିଁ ଚରୁଥାଉ,
ନଈ ବହି ଯାଉଥାଉ ଦୂରୁ ଦୂରେ,
କରି ଗୁରୁଗରଜନ କୂଳେ କୂଳେ ;

କାହିଁ କୃଷକ କଣ୍ଠୋତ୍ଥ ଗୀତ ତାନ—
କରୁ ଆକୁଳ ଧରଣୀ ମନ ପ୍ରାଣ ।
ଫେରୁ ଗୋରୁଗୋଠ ଦୂର ବଣ ତଳୁ,
ଟିପା ଶବଦେ କାନନ ପଦା ଭରୁ ;

କାହିଁ ବଂଶୀ ବଜାଇ ଗାଈଆଳ,
ଛତା ଟେକି ହେଉଥାଉ ନଈ ପାର,
ଦୂର ପାହାଡ଼ର ଯାଏଁ ଧାନ ଖେତ
ଥାଉ, ଉଡ଼ାଇ ସୋହାଗେ ନୀଳ ନେତ ;

ମୁଁ ଗୋ ଶୁଣୁଥିବ ଜଳ-କଳ-ରବ !
ମୋର ଜୀବନର ସେ, ଯେ ବଇଭବ ।
ମୁଁ ଗୋ ସବୁଜ ବିଲର ହୁଡ଼ ତଳେ,
କାନ, ପାତି ବସିଥିବ କୁତୁହଳେ ।

ଦୂରେ ଠିଆ ହୋଇଥାଉ ତାଳବଣ,
କବା, କେଉଁ ରାଇଜର ସେନାଗଣ !
ନଈ ଆରପାରେ ସେଇ ବଟ ତଳେ,
ଠିଆ ହୁଅନ୍ତୁ ବାଟୋଇ ଖରାବେଳେ,

କେଉଁ ପଲ୍ଲୀ କଶୋରୀ ସୁକୁମାରୀ,
ଯାଉ, ଶାଶୁଘର ପଥେ ଚାଲି ଚାଲି,
ଭାଇ ଆଗରେ ତାହାର ଚାଲିଥାଉ,
ଭାଳ, କେତେ କୋଶ ବାଟ ଅଛି ଆଉ !

ବଲେ, କୃଷକ ବାପୁଡ଼ା ଦେଉ ମଇ,
ଗୀତ ଗାଉଥାଉ କେବେ ରହି ରହି,
ଧାନ ରୋଉଥାନ୍ତୁ ବଲେ ଶଅରୁଣୀ,
ସୁଖ ଦୁଃଖ ନଜର ଗୁଣି ଗୁଣି !

ପିଲେ ଯାଉଥାନ୍ତୁ ଗୋ ପାଠ ପଢ଼ି,
କେତେ ଅଣ୍ଟିରେ ମୁଢ଼ି ଚୂଡ଼ା ଭରି ।
କେଉଁ ଗରବ ଘରର ପିଲାଟିଏ
ଭୁଜା, ନାଇଁ ନରାଶେ ବ ଚାଲିଥାଏ !

ମୁଁ ଗୋ ଶୁଣୁଥିବ ଜଳ-କଳ-ରବ !
ମୋର ଜୀବନର ସେ' ଯେ ବଇଭବ !
ମୁଁ ଗୋ ସବୁଜ ବଲର ହୁଡ଼ ତଳେ
କାନ ପାତି ବସିଥିବ କୁତୁହଳେ ;

ମୋର ଅସୀମ ଅଭାବ ରହୁଛି ଗୋ !
ମୋର ନୟନୁ ଲୋତକ ବହୁଛି ଗୋ !
ମୋର କେହି ତ ନାହିଁ ଗୋ ଜଣେ ସାହା !
ମୋର ଦୁଃଖେ କରିବ କେହି ଆହା !

ମୁଁ ଗୋ   ଅସୀମ ଅଭାବ ସମୁଦ୍ରରେ,
ନିତି   ମଜ୍ଜନେ ମରିବେ ବୁଡ଼ି ମରେ ;
ମୁଁ ତ,   ମଣିଷ ବୋଲି ଗୋ ନୁହେ ଗଣା !
ମୋର   କାହିଁବା ବିଭବ ଅକଳନା ?

ମୋରେ   ନ ଲୋଡ଼ୁ କଏସେ ବଡ଼ କରି,
ମୁଁ ଗୋ   ଦରିଦ୍ର ହୋଇ ଥାଏ ପଡ଼ି
ମୋର   ନୟନୁ ଅଶ୍ରୁ ଯାଉ ବହି,
କଏ   ପୋଛୁ ନ ଦେଉ ଗୋ ଦୟାବହି;

ମୁଁ ଗୋ   ଶୁଣୁଥିବ ଜଳ-କଳ-ରବ !
ମୋର   ଜୀବନର ସେ'ଯେ ବଇଭବ !
ମୁଁ ଗୋ   ସବୁଜ ବିଲର ହିଡ଼ ତଳେ,
କାନ   ପାତି ବସିଥିବ କୁତୁହଳେ ।

ମୋର   ସବୁ ହୋଇଯାଉ ନିଃଶେଷ,
ମୋରେ   ନ ମିଳୁ ଗୋ ହେଲେ ଭକ୍ତ ଲେଶ,
ମୁଁ ଗୋ   ଅସହାୟ ହୋଇଯାଏ ଅନ୍ତ,
ମୋର   ଯେତେ ଯାହା ଅଛୁ ହେଉ କ୍ଷତ,

ମୋର,   କୁଆଡ଼କ ନାଇଁ ଲକ୍ଷ୍ୟ ଗୋ,
ମୋର   ଏ ଯେ ରୂପପାୟୀ ବକ୍ଷ ଗୋ,
ଏଇ   ସୀମା ହୀନ ମହାବିଶ୍ୱରେ
ଗୀତ   ଶୁଣୁଥାଉ ମହାହର୍ଷରେ !!

ଏଇ   ଶାରଦ ଶ୍ୟାମଳ କିଆରୀରେ ।
ପାଣି   ଲମ୍ଫ ଦେଉ ଗୋ ଧୀରେ ଧୀରେ,
ଖାଲ   କୁଳୁ କୁଳୁ କୁଳୁ ମଧୁତାନ
ଫୁଟି   ଆସୁଥାଉ ନୋହି ଅବସାନ ।

ମୁଁ ଗୋ   କାନପାତି ଖାଲି ଶୁଣେ ରହି
କେଉଁ   ଅଜଣାରୁ ସେହୁ ଆସେ ବହି !!
ମୋର   ଶତ ସମ୍ପଦ ତହିଁ ଠୁଳ
ମୋର   ମଣିଷ ଜୀବନ ଭରପୁର !

ମୁଁ ଗୋ,　ଶୁଣୁଥିବ ଜଳ-କଳ-ରବ,
ମୋର　ଜୀବନର ସେ'ଯେ ବଇଭବ,
ମୁଁ ଗୋ　ସବୁଜ ବିଲର ହିଡ଼ ତଳେ
କାନ　ପାତି ବସିଥିବ କୁତୁହଳେ !!

---

## ମାଟି ସରଗ

ଏଠି ମୁଁ ରଚିଛୁ କୁଟୀର ମୋର
ସେନେହ ଶରଧା ସୋହାଗ ବହି
ଯେତେ ଯହିଁ ଦେଖେ ପାହାଡ଼, ନଈ,
ଗାଆଁ ବିଲ, ବଣ, ପଡ଼ିଆ ପଥ,
ସରିତ-ସାଗର ଉରମି ଶତ,
ଉପରେ ଆକାଶ ଧରଣୀ ତଳେ
କାହାରେ କେତେ ମୁଁ ସେନେହ କରେ !

ଏଠି ମୁଁ ସତତ କରଇ ଲୀଳା,
ହସି ଖେଳ ବନ ନଏ ମୁଁ ବାନ୍ଧି,
କେତେ ସଖା ସାଥି ସୋଦର ନାହିଁ !
ଉଷାର ଅଙ୍କେ ତପନ ଫୁଟେ,
ଧଶି ଧଶି ଧୀର ସମୀର ଛୁଟେ,
ରଜତ ଚନ୍ଦ୍ର ଆସଇ ଉଇଁ
ବୁକୁତଳ ଯାଏ ଗଙ୍ଗରେ ଛୁଇଁ !

ଏଠି ମୋ ବକ୍ଷ ଉଠଇ ନାଚ !
ମେଘ ଯେବେ ଚରେ ପାହାଡ଼ ଖୋଲେ,
ଫୁଲ ଯେବେ ଧୀର ସମୀରେ ଦୋଳେ,
ଇନ୍ଦ୍ର ଧନୁର ବରଣ ବଣ୍ଟ
ସପନପୁରୀ ସେ ରଚଇ କିବା ?
ଝର ଝର ଯେବେ ଝରଣା ଝରେ
ଝିଲା ବନ୍ଧୁର ଉପଳ ପରେ,

ଏଠି ମୋ ଜୀବନ ଫୁଟାଏ ଛଳ,
ପ୍ରିୟଜନ ହସି କହିଲେ କଥା
ତୁଟଇ ବୁକୁର ଗଭୀର ବ୍ୟଥା
ଅଭିମାନେ ଯେବେ ନୀରବ ରହେ,
କାହା ଓଠ ହସି ବାରତା କହେ ।
କାହା ଚମ୍ପକ ଅଙ୍ଗୁଳର—
ପରଶେ, ମରମୁ ଫୁଟଇ ଗୀତ !

ଏଠି ଅଭିଳାଷ ଲକ୍ଷ୍ୟ ମମ
କି ବିଶାଳ କିବା ମହତ ନୁହେଁ !
ଧାଏଁ କି ସୌମ୍ୟ ସାଧନା ସୁଏ !
ମୋ କାନେ କିଏ କି ମନ୍ତ୍ର ଦିଏ,
ଦୂରେ ଦୂରେ କିଏ ନୀରବେ ନିଏ
ସକଳ ଝଞ୍ଜା ଚରଣେ ଦଳି,
ମୋ ବାଟ ମୁଁ କାଟେ ସିଂହ ପରି !

ଏଠି ମୁଁ କାନ୍ଦେ ଏଠି ମୁଁ ହସେ,
କେତେ ଲୁହ ଏଥି ପଡ଼ିନି ଝରି !
ଦେଖିଛ ଏ ବଣ ପାହାଡ଼ ଦରୀ
କେତେ କାହା ପାଇଁ ପରାଣ ମମ
ଆକୁଳେ କରିଛ ଅନ୍ୱେଷଣ !
କେତେ କାହା ମୁହଁ ପାଏନି ଚିହ୍ନି !
ଭଲ ହୁଏ ସବୁ ଦିବସ ଗଣି;

ଏଠି ଏ ମାଟିରେ ପଡ଼ିବ ଡଳି
ଆସିବ ଯେଉଁଦିନ ଡ଼ାକରା କାହିଁ,
ଲୋଡ଼ିଲେ କି ରହି ପାରିବ ଆଉ ?
କି ବିଶାଳ ମୋର ସରଗଟିଏ
ଛାଡ଼ିଯିବ ବାରେ ଭାଳିଛ କିଏ ?
ଏତେ ଆପଣାର ସରଗ ଏଇ
କେମନେ ଯିବ ମୁଁ କାହାରେ ଦେଇ ?

ଏଠି ଏ ମାଟିରେ ମୋହର ବେଣୁ
ବାଜିବନି ଆଉ ନିମେଷ ପାଇଁ !
ଯାଇଥିବ କେଉଁ ସୁଦୂରେ କାହିଁ ?
ଏତେ ମରମର ସେନେହ ମାୟା
ଏତେ ସୁଷମାର ଧରଣୀ ଆହା !
ରହିବ ସକଳ ରହିବ ଦୂରେ
ଫେରିବନି ଆଉ ଛଳେ ଏ ପୁରେ !

ଏଠି ଏ ମାଟିରେ ଜୀବନ ଧରି,
ଯେତେ ଦିନ ଥିବ ଥାଏ ମୁଁ ରହି ।
ସକଳର ପ୍ରୀତି ସେନେହ ବହି;
ସବୁରି ମରମେ ମରମ ଢାଳି,
ଗୋଳି ହୋଇଯାଏ ଭେଦ ନ ବାରି ।
ସେ ଦିନ ବୁଜିବ ନୟନ ଦୁଇ
ମନେ ପଡ଼ୁଥିବ ଧରଣୀ ଭୂଇଁ !

ଛାଡ଼ି ଯିବା ପାଇଁ ହୁଏ କି ମନ ?
ପ୍ରତି ରେଣୁକଣା ଏଇ ମାଟିର
କେତେ ଭଲ କେତେ ଦିଶେ ରୁଚିର !
ଆଜି ଏଥି କେତେ ମମତା ଥାଏ
କାଲି ଯିବ କେଉଁ ଅଜଣା ଗାଏଁ !
କାଲି ଲିଭିଯିବ ମରିବେ କାହିଁ
ମୋ ପାଇଁ କଏ କି ଭାଳିବ ନାଇଁ ?

ଏଇ ଯେ ପାହାଡ଼ ରହିଛି ଉଭା !
ତାହାରେ ଗୁହିଁ ମୁଁ କବିତା ଗାଏ,
ଚଇତ ଫଗୁଣ ମଳୟ ବାଏ ;
ଏଇ ଯେ ସରସୀ ସଲିଳ ଘାଟ,
ପଲ୍ଲି କିଶୋରୀ ପିନ୍ଧି ପାଟ,
ଲଦିପଦ ଗୃଳ କୁଟୀରେ ଫେରେ ;
ତା' ଓଠ ହାସ ମୋ ବୁକୁରେ ଖେଳେ !

ଏଇ ଯେ କ୍ଷୁଦ୍ର ପଲ୍ଲୀ ଗାଆଁ
ଆମ୍ର ବେତସ କୁଞ୍ଜ କୋଳେ
ସୁଖେ ଦୁଃଖେ ତା’ ମାଟିବେ ଦୋଳେ;
ଜନମକାଳରୁ ତା’ ଭୂଲେ ମୋର
ପରିଚୟ କେବା ନିବିଡ଼ତର !
ତା’ ପାଣି ପବନେ ଏ ଦେହ ଗଢ଼ା ?
କିଭଳି ତାହାକୁ ଭୁଲିବି ଭଲା ?

ଏଇ ଆମ ଘର ପାଖକୁ ଲାଗି,
ଗରିବ ମୂଲିଆ କୁଟୀରମାଳା
ଯହୁଁ ଫୁଟେ ଲୁହ-ବେଦନା ଧାରା ;
କିଏ ସେ ଖାଇଛି କିଏ ସେ ନାଇଁ
ଯାଉ ଦେଖା ସୂଝି ଜୀବନ ଯାଇ ।
ଅଭାବ ଭିତରେ ଜୀବନ ଚଳେ,
କା, ବ୍ୟଥା କେ ବୁଝେ ଧରଣୀ ତଳେ !

ତେଲ ଟୋପେ ନାଇଁନ ଖୁରୁବୁ ବାଳ
ଚିରା ଲୁଗାଟିରେ ବରଷେ ଯାଏ,
ଦେହ ଦିଶେ ପ୍ରେତ ପ୍ରତିମା ପ୍ରାୟେ ।
ମୁଠିଏ ଶାଗ ଜାଉ, ଲୁଣ ରୁଆଏ—
ଖାଇ କେ ଜୀବନ ଗୋଟି ବିତାଏ ;
ଘରୁ ପାଣି ଗଳେ ରହିବା ପାଇଁ
ଓଦା ଗୁହଆଡ଼ ଥାନ ବି ନାଇଁ ;

ସବୁରି ଦୁଃଖ, ବେଦନା, ହାସ,
ଶୋଣିତେ ଶୋଣିତେ ରହିଛି ଲେଖା
ଖୋଜି ଗଲେ କାଲି ଦଦିକ ଦେଖା;
କିଏ ସେ କି ଭଲ କାଟିବ କାଳ !
ବହୁଥିବ କାର ନୟନୁ ଧାର !
କା’ ଲୁହ ବେଦନା ବୁଝିବ ନାଇଁ
ଯାଉଥିବ କେଉଁ ସୁଦୂରେ କାହିଁ !

କାହାର ବିଜୟ ଗରବ ଗାଥା
ହସି ହସି କଏ କହିବ କାହେ
ଶୁଣି ପାରିବିନି ଜୀବନେ ବାରେ ;
ମିଶିଯିବ କେଉଁ ଅସୀମେ କାହିଁ ?
ଝୁରି ହେବ ମାଟି ଟିକକ ପାଇଁ;
ନ ଆସେ ଏଥି ମୁଁ ଲେଉଟି ଆଉ
ମୋ ମାଟି-ସରଗ ସୋହାଗେ ଥାଉ !

---

## ସୋରଡ଼ା ଘାଇର ବନ୍ଧ ଉପରେ........

ବନ୍ଧୁ ହେ ମୋର ! ସୋରଡ଼ା ଘାଇର ବନ୍ଧ ଉପରେ
ଟିକଏ ବୁଲିବା ପାଇଁ
ତୁମରେ ମୁଁ ଥିଲି ଡାକି,
ଜ୍ୟୋସ୍ନା ରାତ୍ରିରେ ତୁମେ ମୁହିଁ ଦୁଇଜଣ,
ବସିଅଛେ ଏଇ ବନ୍ଧ ଉପରେ
ଜ୍ୟୋସ୍ନାର ରେଣୁ ଏଇ ଦେହେମନେ ମାଖି;
ଅତୀତ ଆଉ ଯେ ଭବିଷ୍ୟତର ଅନ୍ତରଭରା କଥା
ପରସ୍ପରରେ କହି
ଏଇ ମୁହୂର୍ତ୍ତିକ ସୋହାଗେ ନଉଚେ ବାହି !
ମୁଁ ଯେ ଫେରିଯିବ କାଆଲି ସକାଳେ
ମୋହର କୁଟୀରପୁରେ,
ତୁମେ ଫେରିଯିବ ତୁମର କୁଟୀରେ
ଏଇ ନମେଷର ଏ ଯେ ସଂପଦ,
ଆଉ ତ ମିଳିବ ନାଇଁ !!

କେତେ ଯୁଗ ପରେ ତୁମେ କାହିଁ ଥିବ
ମୁଁ ବା ରହିଥିବ କାହିଁ !
ଦେଖା ସାକ୍ଷାତ ଜୀବନରେ କେବେ
ନୋହିପାରେ ନୋହିପାରେ !!
ଏ ନୀଳ ଆକାଶ,
ଏ ନୀଳ ପାହାଡ଼,

ଏ ଯେ ନୀଳ ଜଳରାଶି,
ଏଇ ଯେ ଜ୍ୟୋସ୍ନା,
ଏ ଯେ ମହା ବିଜନତା,
ଏଇ ଯେ ମଳୟ-ଗନ୍ଧ-ଆକୁଳ,
ଏ ଯେ ଦାର୍ଶନିକର ମୁଗ୍‌ଧ-ଗୃହାଣି ଭରା
ସୁଦୂର ଚକ୍ରବାଳ,
ଆମ ଜୀବନର ପ୍ରତି ତନ୍ତ୍ରୀରେ
କିବା ଅମୃତମାୟା
ନିମିଷ୍‌ ନିମିଷେ ଢାଳେ ।

ସୋରଡ଼ା ଘାଇର ବନ୍ଧ ଉପରେ
ଆମେ ଯେ ବନ୍ଧୁ ଦୁଇଜଣ ଦୁଇଜଣ,
ଅନ୍ତରେ ଭରି ଅନ୍ତରଟିକ
ଦେଖୁଅଛେ କିବା ମୁଗଧ ସପନ
ସୁନ୍ଦର ଅନୁପମ !
ଏଇ ଜୀବନର ବହୁ ଶତାବ୍ଦୀ ପରେ
ଆମେ ମରି ହଜି ମିଶିଯାଇଥିବା
କେଉଁ ଅସୀମର ବିରାଟ ବକ୍ଷ ତଳେ !
ଆମକୁ କିଏ ସେ ଜାଣିବେ ତ ନାହିଁ
ଦେଖିବେ ତ ନାହିଁ ସତେ !
ବୁଝିବେ ତ ନାହିଁ
ଥିବ ଏ ସୋରଡ଼ା ଘାଇ,
ଥିବ ଏ ଆକାଶ,
ଥିବ ଏ ଜ୍ୟୋସ୍ନା,
ଥିବ ଏ ମଳୟ—
ଦୂର ଦିଗନ୍ତ ପଥେ ;
କିଏ କେତେ ଆସି ସାନ୍ଧ୍ୟ ବିହାରେ,
ମନ ବିନୋଦନେ ଦିନ ନେଉଥିବେ କାଟି,
ଆମେ ଯେ ବନ୍ଧୁ ବସିଥିଲେ ଏଇ ମାଟି ଚେକକରେ,
କାହାର ସ୍ମୃତିରେ କାହିଁକି ବା ଯିବ ନାଚ ?

ଜୀବନର କେତେ ଜୟ ପରାଜୟ,
ସୁଖ ଓ ଦୁଃଖ କେତେ ମାନ ଅପମାନ ;

ତୁମେ ମୁହିଁ ଆମେ କେଉଁଠାରେ ଥିଲେ
ଗୋଟିଏ ବୃନ୍ତେ ଯୁଗଳ କଳିକା ପରି,
କଏସେ କଉଳ ବଚ୍ୟୁତ ହେଲେ
ହେଲେ କେତେ ହଇରାଣ,—
ଆଜ ପଡ଼ଯାଏ ମନେ,
ସେ ଦିନର ସବୁ କଥା,
ପଥରର ଗାର ପରି,
ରହିବ ବନ୍ଧୁ ରହିଥିବ ସବୁଦିନେ !

ଧମକ ଉପରେ ଧମକ କଉଳ ମେଘ ଗର୍ଜନ ପରି
ଆମର ଉପରେ ବୃଷ୍ଟି ସେ'ଦିନ ହେଲା,
ଆମେ କେଉଁଭଳ ବଜ୍ର ପଡ଼ିଏ
ଅଚଳ ଅଟଳ ରହି
ଯାଇ ତ ନ ଥିଲେ ଥରି !
ଆମକୁ କପର ଗୋଟି ଗୋଟି କର ହତ୍ୟା ଯେ କରାହେଲା
ଆମକୁ ଠିକଏ ବୁଝିବା ପାଇଁକ
ଆମର କଏ ସେ ସାହା ଭରସା ବା ଥିଲା ?
ସଭିଏ ରହିଲେ ମୂକ ଓ ମଉନ ଅକର୍ମ ଶିଳା ଭଳ,
ସଭିଏ ରହିଲେ ନିଜ ସ୍ୱାର୍ଥକୁ ନବଡ଼େ ଯାବୁଡ଼ି ଧରି,
ସଭିଏ ରହିଲେ ମସ୍ତକ ପୋତି ନ କହି ପଦିଏ କଥା,
କାହାର ଭିତରୁ ଅଗ୍ନିର ଝୁଲ ପରି ଠିକଏ ତ ସ୍ୱାଧୀନତା
ବାଭ୍ରମେ ହେଲେ କମେଷେ ଫୁଟିଲା ନାହିଁ !
ସବୁ ଭୟଠାରୁ ଜୀବନର ଲାଗି, ଜୀବକାର ଲାଗି,
ଯାହାଠି ରହିଚ ଭୟ
କବା ଶିଶୁସମ୍ପଦ ତାହ ଠୁ ପାରିବ ପାଇ ?

ଆମେ ଗୃଲଥିଲେ ବନ୍ଧୁ ଦ'ଜଣ ବୀରବକ୍ରମ ମଦେ,
ଧରଣୀର ଯେତେ ପାପ ଅନାଗୃର ଦଳ ଠେଲ ପ୍ରଚଣ୍ଡପଦେ ;
ଅମାନିଆ ହୋଇ ଗୃଲଥିଲେ ଆମେ
ଝଡ଼ ଝଞ୍ଜାର ଭିତରେ ଭିତରେ ଖାତିର ନ କର କା'ରେ
ସେଇଟିକ ଥିଲା ଆମର ସାହସ ଆମର ଶକ୍ତି,
ଆମର ଯେ ତେଜବଳ,

କେତେ ଅଦ୍ଭୁତ କଳକାରେ ଆମେ
ବର୍ଣ୍ଣ ଗନ୍ଧ ଦେଇ
ଫୁଟାଇ ଫୁଟାଇ ଚାଲିଥିଲେ ଅବିରତ !
ନାଚି ଉଠୁଥିଲା ଆମ ଅନ୍ତର ଅସୀମ ପୁଲକେ
ଜ୍ୟୋତ୍ସ୍ନାର କିବା ମହାପାରାବାର ପରି,
ଘନ ଅନ୍ଧାର ତଳେ, ଟିକିଏ ଆଲୋକ କେଉଁଠି ଫୁଟିଲେ,
ଆମରି ପରଶ ଧରି ।
ଜୀବନ୍ତ କରି ଗଢ଼ି ଚାଲିବାରେ ମହା ପୃଥିବୀରେ
ଯେଉଁ ଆନନ୍ଦ ମିଳେ,
ଯେତେ ବାଧା ଯେତେ ବନ୍ଧନ ଆସୁ
ଏ ଦେହମନକୁ
ସ୍ପର୍ଶ କରେନା ତିଳେ ।

ଆମ ଅନ୍ତରତଳେ କିଏ କହିଯାଏ କାହିଁ,
"ମହାସୃଷ୍ଟିର ଆମେ ଯେ ଗୋଟିଏ ଜୀବ
ଆମେ ଫୁଟିଅଛୁ
ଅସୀମ ଜୀବନ ପାଇଁ ।
ଧକ୍କା ଉପରେ ଧକ୍କା କିଏସେ
ଆମକୁ ଦେଉଛି ଦେଉ,
ଆମେ ଚାଲିଥିବୁ ଧରଣୀକୁ କରି
ଚିରସୁନ୍ଦର ପ୍ରିୟ ।
ନର୍କ ଭିତରେ ଫୁଟାଇବୁ ଆମେ
ସ୍ୱର୍ଗର ପାରିଜାତ,
ସେଇ ତ ଆମରି ଜୀବନର ବାହାଦୁରି,
ସେଥିପାଇଁ ପରା,
ମହାସୃଷ୍ଟିରେ ଗଢ଼ିଛି ଆମକୁ
ସ୍ରଷ୍ଟାର ବେନହାତ !
ଯେଉଁ ଆଡ଼େ ଆମେ ମାଡ଼ି ଚାଲିଯିବୁ
ଆମରି ଶୋଣିତ ପ୍ରତି ବିନ୍ଦୁରେ
ଜୀବନର ଲୀଳା ଖେଳାଇ ଚାଲିବୁ ଆମେ,
ଲୁହ ବ୍ୟର୍ଥତାର ଭ୍ରମ ଅନାଚାର
ସକଳ ଦର୍ପ ଭାଙ୍ଗି ଚାଲିବୁ

ସଂଗ୍ରାମ କର ଚାଲେ ।"
ଆମେ ଯେ ବନ୍ଧୁ ଯୁଗଳ ଜୀବନେ
ଏଇପରି ଥିଲେ ଚାଲି,
ସେ ଶିଶୁଟିକକ ଆମର ଜୀବନେ
ସବୁ ଗଉରବୁ ବଡ଼ ଗଉରବ, ଅମୃତ ଘଙ୍ଗାଳ !

ତୁମେ ତ ଆସିଲ ଛଡ଼ାଇ ସେ ମାଟି,
ମୁହିଁ ବ ଆସିଲ ଚାଲି,
ତୁମେ ମୁହିଁ ଥିଲେ, ସେ ଯେଉଁ କୁଟୀରେ
ଶୂନ୍ୟ ପଡ଼ିଚ ଖାଲି ।
ବାଟେ ଘାଟେ ଉହିଁ ଚାଲିଗଲାବେଳେ
ପଚାରନ୍ତ କେ' ମତେ,
"ତୁମେ ଆଉ ସିଏ
ଆସିବନ ଏଇ ପଥେ ?
ତୁମେ ଦୁଇଜଣ ଚାଲିଗଲ ଦୂରେ ଚାଲିଗଲ ! ଚାଲିଗଲ !
ମନେ ପଡ଼ୁନ ଏ ମାଲୁଆ ପାହାଡ଼ ?
ମନେ ପଡ଼ୁନ ଏ ବନକନ୍ଦର ମାଳ ନିର୍ମଳଝର ?
ମନେ ପଡ଼ୁନ ଏ ଅରକ୍ଷ ଶିଶୁଦଳ
କେଉଁ ପୁରପଲ୍ଲୀରୁ ଆସୁଥିଲେ ଏଥି
ତୁମର ଆଲୋକ ପାଇଁ ?
କିଏସେ କଉଳ ତୁମକୁ ଠେଲିଲା ଦୂରେ ?
କ ଶିଖ ବଭବ
ତୁମ ପାଖେ ଥିଲା
ଟିକଏ ବୁଝିଲା ନାଇଁ !
ଯାହା ସୁନ୍ଦର, ଯାହା ନିର୍ମଳ, ଯାହା ଉଜ୍ଜ୍ୱଳ
ଜୀବନୀଶକ୍ତି ସୂର୍ଯ୍ୟର ତେଜପୁଞ୍ଜ ପରିଏ
ଯେଉଁଠି ରହିଚ ଭରି,
ମୂର୍ଖ ଦୁନିଆ ଲଗିଚ ତା' ଭୁଲେ
ସାତ ସଉତୁଣୀ ପରି !"

ଆମେ ସେଇ ଦୁଇ ଜଣ ବସିଅଛେ
ଏ ଯୋରଡ଼ା ଘାଇର ବନ୍ଧ ଉପରେ

ସେ ଦିନ ସେ କଥା ଗଲା,
ଗ୍ଭଲିବାକୁ ହେବ ଆମକୁ ଏଭଳି
ଆମର ବିରାଟ ଲକ୍ଷ୍ୟ ଚିକକ ଧରି;
ବନ୍ଧୁ ହେ ମୋର ! ଗୃହଁ ଗ୍ଭରଆଡ଼େ
ଏଇ ପୋରଡ଼ା ଘାଇର ବନ୍ଧ ଉପରେ ବସି
ଆକାଶ ପୃଥିବୀ ଅମୃତଭରି ଆନନ୍ଦସୁଏ
କଭଳି ଉଠୁଚି ହସି !
ନଚ୍ଚଇ ନଚ୍ଚଇ ଫେନିଳ ଊର୍ମି
ଦୂର ପାହାଡ଼ର ଘନଜଙ୍ଗଲ ପାଦେ,
ବିରାଟ ଏ ଜଳରାଶି
ଯାଉଁଚି କଭଳି ନାଚି !

ଦୂରେ ବହୁଦୂରେ ମହା ବିଜନତା
ଜ୍ୟୋତ୍ସ୍ନାରେ ଅବଗାହି,
କଭଳି ଆମକୁ
ମୁଗ୍‌ଧ ଚକିତ
ଆଶ୍ଳେଷ ଦେବା ପାଇଁ
ସୋହାଗେ ରହିଚି ଚାକି !!
"ସୁନ୍ଦର ହୁଅ ! ବିରାଟ ହୁଅ ! ଶୁଦ୍ଧ-ସ୍ୱଚ୍ଛ-ଶାନ୍ତ-ସୁବିପୁଳ ହୁଅ !
ମୁଗ୍‌ଧ ମଧୁର ଅମୃତମୟ ହୁଅ !
ଗ୍ଭରଆଡ଼େ ଖାଲି ବିଛୁଡ଼ି ପଡ଼ି
ବିସାରି ତୁମରି
ହୃଦୟତଳର ପୁଣ୍ୟ ପୁଲକ ସୁଅ ।"
ଏଇ ବିମୁଗ୍‌ଧ ବିଜନତା ବୁକୁତଳୁ
କଏସେ ଆମକୁ, କହୁଚି ଯେପରି ଡାକି !
"ପୃଥିବୀର ଯେତେ ଜାଳାଯନ୍ତ୍ରଣା
ସବୁ ଅପସାରି ଗ୍ଭଲ !
ଆହୁରି ଆହୁରି ଗ୍ଭଲ !
ଯେତେ ଦିନ ଆଉ ଧରଣୀ ଉପରେ
ରହିବାକୁ ଅଛୁ ବାକୀ;
ଅନନ୍ତ ହୁଅ ! ଅସୀମ ହୁଅ ! ଆନନ୍ଦମୟ ହୁଅ !
ଆକାଶ ପୃଥିବୀ ଆଶ୍ଳେଷ କରି !

ଚାଲ ଚାଲ ତୁମେ ଚାଲ ।"
ସୋରଡ଼ା ଘାଟର ବନ୍ଧ ଉପରେ ବନ୍ଧୁ ଦ'ଜଣ ଆମେ—
ଶୁଣୁଅଛେ କାନ ପାରି,
ଜୀବନର କେବା ଅମୃତ ସମାଚାର !!

---

## ବୋଇଷ୍ଟ-ବାୟାଣୀ

କ ଶୀତ ବରଷା ଖରା ସବୁଦିନ ବୁଢ଼ୀ,
କମ୍ପାଇଁ ଏ ପଥପ୍ରାନ୍ତେ ରହିଛ ଗୋ ପଡ଼ି ?
ଶମୁଚ ଉଦରଜାଳା ମାଗିଯାଚ ଆଣି,
ପଇସା ଚାଉଳ ଯିଏ ଯାହା ଦେଲା ପୁଣି ;
ନ ପାଇଲେ କେଉଁଦିନ ଖାଡ଼ା ଉପବାସେ,
ରହୁଚ ନୀରବେ ପଡ଼ି ଏଇ ଦୁବଘାସେ;
ହେଲେ ବି ପରାଣେ ତବ ଦୁଃଖ ନାହିଁ ତିଳେ,
କ ମାଧନା ସାଧି ତୁମେ ରହିଚ ମହୀରେ !
ସେ ଚିରା ଦରବା ଖଣ୍ଡି ବିନୁ ଆନ ବାସ
ନାହିଛି, ଚଳୁଚ ସେ ଖଣ୍ଡିକେ ମାସ ମାସ ;
କା' ପିଣ୍ଡା ଉପରେ କାହା ଚାଳଆର ତଳେ,
ଆଶ୍ରା ତ ନେଉନ ବୁଢ଼ୀ ଭ୍ରମେ ହେଲେ ଥରେ !
ଯେ ମାଟି ଟିକକେ ନିତି ରହିଅଛ ପଡ଼ି,
ବଣ ବୁଦା ଲଟା ତହିଁ ରହିଅଛି ଭରି,
ସାପ ବେଙ୍ଗ ଚରିଭୂଇଁ ସେ'ତ ସବୁକାଳେ,
ଭୟ ନାଇଁ ସେ'ତ ତୁମ ସାଥୀ ଏ ସଂସାରେ ।
କା କୁଟୀର କଣେ ଦିନେ ଥିବ ତ ଜନମି !
ପାଳିଥିବେ କଏ ତବ ଜନକ ଜନନୀ ;
ପ୍ରାଣର ତନୟା ବୋଲି ସେନେହ ଆଦରେ,
କୋଳେ ଧରି ଚୁମିଥିବେ ଅଧର କପୋଳେ ;
ଦେଇଥିବେ ଟିକି ହାତେ କୋହି ବା କଦଳୀ
ସେ' ଦିନ ସମ୍ପଦ କିବା ଅଛି ଅପସରି ।

ଜୀବନେ ତ ଆସିଥିବ ମଧୁ ଯଉବନ,
ଦେଖିଥିବ କେତେ କେତେ ସୁନେଲି ସପନ ;
ହସିଥିବ ଓଠତଳ ଅନନ୍ତ ସରାଗେ,
କଣ୍ଠୁ ଫୁଟିଥିବ ଗୀତ ନବ ନବ ରାଗେ ;
କେଉଁ ପ୍ରିୟତମ ଲାଗି ହୃଦ-ସିଂହାସନ,
ରଖିଥିବ ପାତି ଧନେ ମୋହନ ବନ୍ଧନ—
ଧନୁ ଧନ କରି କବା ନିବଡ଼ୁ ନିବଡ଼,
କା ବିରହେ ନେତ୍ରପ୍ରାନ୍ତୁ ଢାଳୁଥିବ ନୀର ।
ଏ ଆଖିର ଭାଷା ଶୁଣୁଥିବ କାହା ଆଖି,
ଏ ଦେହ କା ଦେହେ ଧନେ ପାଇଥିବ ଲାଖି,
ଅଭିମାନେ କାହା ପାଶୁ ବଦନ ଫେରାଇ
ଆଡ଼ବାଙ୍କେ ବେଳେ ବେଳେ ରହୁଥିବ ଚାହିଁ !
ଚରଣ ପରଶମଣି କରିଥିବ କାରେ,
ଢଳ ଢଳ ଯଉବନ ପ୍ରଥମ ବିହାରେ—
ବୁଲୁଥିବ ରାଜପଥେ ଗିରି-ବନ-ତଳେ,
ହାତେ ହାତ ଭରି କବା ପୀୟୂଷ ଅନ୍ତରେ !
ସେଇ ସ୍ୱର୍ଣ୍ଣ ଅତୀତର ପରେ ପରେ ତମେ,
ପଥ ଭିଖାରୁଣୀ କେହ୍ନେ ହେଲ ଗୋ ଜୀବନେ ।
ଅଧରୁ ଲିଭିଲ ହାସ ନୟନୁ ଚାହାଁଣୀ,
ଓଠ ଫୁଟୁ ମରିଗଲା ଅମୃତର ବାଣୀ ।
ମଉଳିଲା ନିମିଷକେ ଗଣ୍ଡର ଗୋଲାପ,
ବାଜି କେଉଁ ଅପଦେବତାର ଅଭିଶାପ ।
କପାଳ କନକ ଜ୍ୟୋତି ନିଭିଗଲା କାହିଁ,
ଥରେ ଚାହିଁ ଆସେ ନାହିଁ ତୃପ୍ତି ଯାହା ପାଇଁ ।
ହୃଦ-ସିନ୍ଧୁ ଆଉ ନାହିଁ ଉଚ୍ଛୁଳିଲା ଲବେ
ଗୋଟିଏ ତରଙ୍ଗ ନାହିଁ ଖେଳିଲା ମୀରବେ ।
ସବୁ ସିନା ଚାଲିଗଲା କେଉଁ ପରପାରେ,
ବଞ୍ଚି ରହିବାର ଦୁଃଖ ନିଭିଲା କି ବାରେ ?
ଦେହ ଦେଇ ସ୍ନେହ ଦେଇ କଲ ଯା'ରେ ସାଥି,
ବୁଝିଲା କି ତୁମରି ଏ ବୁକୁତଳ ଛାତି ?
ମରିବା ବଞ୍ଚିବା ଆଜି ସମାନ ତୁମରି
କି ଆଶା ପରାଣେ ଆଉ ଉଠିବ ମୁଞ୍ଜରି ?

ମରିଲେ ମରିବ ପଡ଼ିଥିଲେ ଥିବ ପଡ଼ି,
କଏ ଅଛୁ ଭ୍ରମର ବା ଯିବ ଦୁଃଖକରି ?
ସେ ଲାଗି ଆଦରିଅଛ ଏଇ ତରୁତଳ
ଶୀତ, ଖରା, ବରଷାରେ କରିଛ ନିଜର !
ସାପ, ବିଛା, ବେଙ୍ଗ, ଜନ୍ଦା ପିମ୍ପୁଡ଼ିରେ ତମେ,
ସାଥି କରି ନେଇଅଛ ଏ ମହା ଭୁବନେ !
ନିବିଡ଼ ନିଶିଥ ରାତେ ମହା ଅନ୍ଧକାରେ,
ବିଜନତା ଭୁଲେ କଥା ହେଉଥିବ ବାରେ ।
ବେଦନାର ମହାସିନ୍ଧୁ ଯାଇଚ ପାଲଟି
ଆଉ କ ଭାଳେଣି ବୁକୁ ପାରିବ କରତି ?
ନିଜ ରାଜ୍ୟ ଗଢ଼ି ତବ ରହିଅଛ ନିଜେ
କଏ ଅଛୁ ଯିବ ଗୁଳ ସେ ମହା ରାଇଜେ ?
ବତାସୀ ଅନ୍ଧାରେ କିଏ ଧାପଟିଏ ପରି
ଶିଖା ଟେକି ମହାଉର୍ଦ୍ଧ୍ୱେ ପାରିବ ବା ଜଳି ?

---

## ଜୀବନର ପ୍ରିୟା ଚଲକା

ବୁକୁତଳେ ମୋର ଦୁଃଖ ଯାତନା ଗଭୀରୁ ଗଭୀର ହେଲେ ଗୋ !
ଉଷ୍ଣ ଲୋତକ ଝରି ଉଠେ ଯେବେ ନୟନରୁ ବେଳେ ବେଳେ ଗୋ !
କାହାକୁ କହିବ ମୋ ଗଭୀର ବ୍ୟଥା
ଖୋଲିବ କା ଆଗେ ଅନ୍ତର କଥା ।
ଆସେ ତୋର ଖରେ କହିବା ପାଇଁକ ଜୀବନର ବ୍ୟଥା ମାଳକା
ଚଲକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚଲକା !

ଏ ଧରଣୀ ପରେ ମଣିଷ ଯେବେଟି ମଣିଷରେ ଆଜ ଗୁହେଁ ଗୋ !
ଆପଣାର କରି ଅନ୍ତର ଭରି ଲବେ ଭଲ ନାଇଁପାଏ ଗୋ !
ଅବିଶ୍ୱାସ ଓ ସନ୍ଦେହ ଭରି
ଦେଖେନ କ ତାରେ ଥରି ଥରି କରି ?
ମଣିଷଠୁ ଆଜ ଝଡ଼ିଚ ପ୍ରାଣର ଗନ୍ଧ-ମଧୁର କଳକା ।
ଚଲକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚଲକା !

କଳ୍ପନା ଆଖି ଫେଇ ଯାଏ ଦେଖି ତୋର ଖୀର ବନ ତଳେ ଗୋ !
ଯୋଲଖି ଶିଖରୁ ଆସୁଥିବେ କେତେ ସନ୍ନ୍ୟାସୀ କୁତୁହଳେ ଗୋ
ଦେହେ ପରଧାନ ଗୈରିକ ବାସ
ଓଠ ଫୁଟୁଥିବ ମଞ୍ଜୁଳ ହାସ
ସତ୍ୟର ତେଜେ ଜଳ ଉଠୁଥିବ ଜୀବନ-କୁଞ୍ଜ ସାରିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଦେଖିନି ଏ ଆଜି ତୋହର ଏ ଖୀର ଏ ନୀଳ ଶଇଳ ଚୂଳେ ଗୋ
ହରିଚନ୍ଦନ ଘାଜନ ସେ'ଦିନ ଶୁଣିଲେ ଶ୍ରବଣ ମୂଳେ ଗୋ
ଘାଇଜେ ତାଙ୍କ ହୁଏ ଅନାଗ୍ରହ
ଜାଗିଥିବ ବୁକୁତଳେ ହାହାକାର
ଫାଟିଯା ପାହାଡ଼ ! ଫାଟିଯା ପାହାଡ଼ ! କହୁଥିବେ ଥରଥରକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ମନେହୁଏ ମୋର ସେଦିନ ଘାଜନ ବୁଝିଥିବେ ମନେ ମନେ ଗୋ !
ମଣିଷ ଯେଉଁଠି ମଣିଷକୁ ଆହା କନ୍ଦାଏ ପ୍ରତିକ୍ଷଣେ ଗୋ !
ତଡ଼ଲା ନରକ ପରି ସେ ଭୁବନ
କେମନେ ଦଂଶଇ ଖୀଷଣୁ ଖୀଷଣ,
ମଣିଷର ଆଖି ଥାଇ ସେ ଭାବେନା ବଞ୍ଚିବା କେଉଁ ଭଳକା ।
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଦାସିଆ ବାଉରୀ ତୋର ଖୀର ବାଲି ଉପରେ ଆଙ୍କି ଦେଉଳ
ଜଗନ୍ନାଥରେ କରୁଥିବ ପୂଜା ଭକ୍ତି ଦେଖାଇ ବହୁଳ ।
ଦେବତା ଜାଣେନା ଜାତି ବା ଅଜାତି
ଭକ୍ତର ଧନ ନେବେ ହାତ ପାତି
'ନ ନେଲେ ଫେରାଇ ଆଣିବ ଗୋସାଇଁ' କହୁଥିବ ହାତ ଯୋଡ଼ିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ସେଦିନ ମଣିଡ ଯାଉଡ ନ ଥିବ ପେଟ ପାଇଁ ବହୁ ଦୂରେ ଗୋ !
ଗୃହିଣୀ ତାହାର କାନ୍ଦୁ ନ ଥିବ ଏକାକୀ କୁଟୀର ପୁରେ ଗୋ ।
ଆସୁ ତ ନ ଥିବ କାହା ମନଚଠି
କାନ୍ଦ ନ ଥିବ ବଧୂ ବାହା ପିଠି,

ଘରୁ କାହିଁପାଇଁ ଦୂରେ ଠେଲିଦେଲ ଉର୍ଦ୍ଧ୍ୱଣୀ ମୁହିଁ କାଳିକା ।
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ସେଦିନ ମଣିଷ ଶ୍ରେଷ୍ଠବଜାରର ବିକ୍ରେତା ହୋଇ ଜଣେ ଗୋ
କନକ ହର୍ମ୍ୟ ତୋଳୁ ତ ନ ଥିବ ଗୁଡ଼ ଚେକ ବଡ଼ପଣେ ଗୋ
ଶତ ଅନ୍ୟାୟ ଜୁଆ ଲୋଗ ତଳେ
କେତେ ଧନ କଏ ସୁଖ ଭୋଗ କରେ ?
ଜୀବନ ଫୁଲରେ ବିଷାକ୍ତ ରେଣୁ ରହିଅଛି କେତେ ଭଳିକା !
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ସନ୍ଧ୍ୟାରେ ବାହି ତରଣୀ ମୁଁ ଆଜ ବୁଲଇ ତୋହରି ଉରସେ
ଉଲ୍ଲସି ଉଠେ ଅନ୍ତର ମୋର ମଧୁର ମଳୟ ପରଶେ ;
କଳ କଳ କଳ ଶୁଭେ ଅବିରଳ
ଚଉଦିଗେ ମୋର ଖାଲି ନୀଳଜଳ ।
ନାଚି ନାଚି ଆସେ ଦୂର ଦିଗନ୍ତୁ ସୁନୀଳ ଉର୍ମିମାଳିକା,
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ପ୍ରତି ଉର୍ମିର କଳ ବେଣୁ ତାନେ ମଧୁର ଦୃଶ୍ୟ ଛଇରେ
କାଣି ହୋଇଯାଏ, ଲୁହିଁ, ଲୁହି ଥାଏ, ମୁଗ୍ଧ ଆବେଶ ବହି ରେ !
ଚଉଦିଗେ ମୋର ଉର୍ମିର ଲୀଳା
ଦୂରେ ଗିରିବନ ପ୍ରାନ୍ତର ଶିଳା,
ଶିରେ ତାରକିତ ନୀଳ ନଭ ନାଚେ ନୀଳ ଚନ୍ଦ୍ରଆଭିଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ତରଣୀ ଉପରେ ଠିଆ ହୋଇ ଯେବେ ଚଉଦିଗ ମୁହିଁ ଦେଖଇ
ବନ ପ୍ରାନ୍ତର ଆକାଶ ବତାଶ ଆପଣାର କରି ଡାକଇ;
ଡାକଇ ଜଟିଆ ଡାକେ କାଳିଜାଇ
ଡାକେ ନଳ ବଣ ଦୂରେ ଦୂରେ ଥାଇ
ହସି ହସି ଡାକେ ଜ୍ୟୋସ୍ନାରେ ମତେ ଲକ୍ଷ ଲହରୀମାଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଜ୍ୟୋତ୍ସ୍ନା ଧବଳ ଶାନ୍ତ ଶୀତଳ ସୁନ୍ଦର ଏଇ ରାଇଜେ
ନାଚ ନାଚ ଯାଏ ଅନ୍ତର ତଳ ଶତ ସଙ୍ଗୀତ ଗାଇ ଯେ;
ପ୍ରାନ୍ତ ଦ୍ୱୀପ ଟାପୁ ପର୍ବତେ ଗୃହେଁ
ଆପଣାକୁ ଆପେ ଭୁଲିଯାଏ କାହିଁ
କେଉଁ ରାଇଜରେ ବୁଲୁଚି ମୁଁ ସତେ ନାଚ ନାଚ ଦୋଳଦୋଳକା,
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଜୀବନର ପରିପୂର୍ଣ୍ଣ ସେନେହ ଏଇ ରାଇଜରୁ ପାଏ ଗୋ !
ସକଳର ଭୁଲେ ମଧୁବନ୍ଧନ ରଚ ରଚ ଆଜ ଯାଏ ଗୋ !
କଳ କଳ କଳ ଏଇ ନୀଳଜଳ
ଦ୍ୱୀପ ଟାପୁ ବନ ଶଇଳ ଶ୍ୟାମଳ
ସବୁରି ଭିତରେ ଉଡ଼ି ବୁଲେ ମୋର ଜୀବନ-କୁଞ୍ଜ-ଶାରିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଏଥି ବୁଲୁଥିଲେ ଜୀବନ ମରଣ ସମାନ ଗୋ ମୋରେ ଲାଗଇ
ଏଥି ବୁଲୁଥିଲେ ପୃଥିବୀ ବେଦନା ବୁକୁତଳେ ନାହିଁ ଜାଗଇ
ସପନର ଏକ ଚିର ଲୀଳା ଭୂଇଁ ?
ପ୍ରାଣେ ପ୍ରାଣେ ହଏ ସୁନାକାଠି ଛୁଇଁ !
ଯେସନେ ସେ କେଉଁ ଚିର ସୁନ୍ଦରୀ ନବ ଯଉବନୀ ବାଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

ଆସିଛି ମୁଁ ଏଥି ଆସିଛି ମୋହର ଚିର ଇପ୍ସିତ ରାଇଜେ
ଯହିଁ ଗୃହେଁ ଓଠ ହାସେ ମଧୁ କଥା କଏ ମୋରେ ଯାଏ କହି ଯେ;
ସପନ ଦୋଳାରେ ଯାଏ ଦୋଳି ଦୋଳି
କାହା ବୁକୁତଳେ ହୋଇଯାଏ ଗୋଳି
କାହାରେ ମୁଁ ଆଜ ଛାଡ଼ି ପାରୁନାହିଁ ଚୁମ୍ବକ ଶିଳା ଭଳିକା
ଚିଲିକା ଗୋ ମୋର ! ଆଜନମ ସାଥି ଜୀବନର ପ୍ରିୟା ଚିଲିକା !

———

# ମାଟି ଓ ମଣିଷ

ଗୁଡ଼ଦଅ ଗୁଡ଼ଦଅ ଗୁଡ଼ଦଅ ମତେ ରେ
ଗୁଳିଯିବ ବଗ୍ରାଠ ଏ ଧରଣୀର ପଥେ ରେ
ଯେତେ ଶ୍ରେଷ୍ଠ ସ୍ୱାର୍ଥ, ଯେତେ ଶ୍ରେଷ୍ଠ ବେଷ୍ଟନୀ,
ରଖନା ରଖନା ଭିଡ଼
ମାଟିର ମୁଁ ସ୍ୱାର୍ଥ, ମାଟିର ମୁଁ ସମ୍ପଦ
ବଗ୍ରାଠର ଜୀବନ ମୁଁ
ବଗ୍ରାଠରେ ମିଶିଯିବ ଭାସିଯିବ ସତେ ରେ
ଗୁଡ଼ଦଅ ଗୁଡ଼ଦଅ ଗୁଡ଼ଦଅ ମତେ ରେ !

ଅସୀମର କେନ୍ଦ୍ରରୁ ଆସିଛି ମୁଁ ଖସିରେ
ମତେ ଭଲ ଲାଗୁନାଇଁ ଏଥି ବସି ବସିରେ
ମୋର ଧନଜନ ଗୋପଲକ୍ଷ୍ମୀ ଏ ମଣିଷ ଓ ମାଟିରେ
ଏଦ୍ୱାର ଭିତରେ ନେବ ମୋ ଜୀବନ କାଟିରେ;
ପାରିବନ କାହାରେ ମୁଁ ଗୁଡ଼ ତ
ସଭିଏ ମୋ ଜୀବନର ନାଡ଼ ତ !
ସବୁର ଓଠରେ ମୋର ଭାଷା ରେ
ସବୁର ବୁକୁରେ ମୋର ଆଶା ରେ !
କଏ କାହିଁ କାନ୍ଦୁଚି କଏ କାହିଁ ପଡ଼ିଅଛି
ଅନାଦରେ ଅନାହାରେ କାହିଁ ରେ
ଯିବ ମୁହିଁ ତାହା ପାଶେ ଧାଇଁ ରେ;
ମୁଁ ସବୁର ପାଇଁ ରେ
ଜାଗ୍ରତ ଉତ୍ଥିତ ନଭଯିବ ନାଇଁରେ !!
ମଣିଷର ଉଆସ ମୁଁ ରଚିବ ମୋ ଭିତରେ
ମଣିଷ ମୋ ବୁକୁତଳ ହୃତପିଣ୍ଡ ସତ ରେ !
ମଣିଷ ହସିଲେ ମୋର ହସି ଉଠେ ଦେହ ମନ
ପ୍ରତି ରେଣୁ ତଳରେ
ମଣିଷ ଜାଗିଲେ ମୋର ଜାଗିଉଠେ ସିଂହର ବଳରେ ।
ମଣିଷ ଉଠିଲେ ମୁହିଁ ଉଠିଯାଏ ଉଠିଯାଏ
ସୀମାହୀନ ଆକାଶେ
ଅନନ୍ତ ବିକାଶେ !

ସ୍ମିତ ମୋର ମଣ୍ଡିତ ସୁନ୍ଦର ଉଜ୍ଜ୍ୱଳ
ଏ ମଣିଷ ସକାଶେ !!
ମଣିଷଠୁ ଭିନ୍ନ ମୁଁ ହୋଇ ରେ
ପାରିବିନି ପାରିବିନି ପାରିବିନି ରହିରେ !
ମଣିଷ ମଣିଷ ଖାଲି ମଣିଷ ମୋ ଜୀବନର
ସମ୍ପଦ ପରମ,
ମତେ ଖାଲି ଭଲ ଲାଗେ ମଣିଷର କଥା ଭାଷା
ମଣିଷର ସେନେହ
ମଣିଷର ଅମୃତ ମରମ !

ମତେ କହ ମଣିଷର ସୁଖ ଦୁଃଖ ବେଦନା
ମତେ କହ ମଣିଷର ଅଦ୍ଭୁତ ସୀମାହୀନ ସାଧନା !
ମତେ କହ ମଣିଷର ଯେତେ ଯାହା ବିଚିତ୍ରକରଣୀ
ଯାହା ଘେନି ହସି ଉଠେ ମାଟିର ଏ ଧରଣୀ
ମତେ କହ ମଣିଷର ଦୟା କ୍ଷମା କରୁଣାର କଥା ହେ
ମତେ କହ ମଣିଷ କେଉଁଠି କେବେ ଟେକିଅଛି ଗରବେ
ଉନ୍ନତ କରି ତା'ର ମଥା ହେ !
ମତେ କହ ମଣିଷକୁ କିଏ କାହିଁ ନିନ୍ଦୁରେ ମାରିଲା
ମତେ କହ ମଣିଷକୁ ସାତହାତମାନ କରି
କିଏ କାହିଁ ଥୋଇଲା !
କହ ମୋର କାନେ କାନେ ଦୁଃସହ
ପୀଡ଼ାବାଜି କାହାର
ମଣିଷ ହୋଇଛି ତନପାଞ୍ଜିରୁ ବାହାର !

ମଣିଷକୁ ଭଲପାଏ ମୁହିଁ ଭଲପାଏ ହେ
ଠିକ ନଥି ସବୁ ତାର ଜାଣିବାକୁ ଚାହେଁ ହେ !
ମଣିଷ ଜୀବକୁ କିଏ ଶ୍ରେଷ୍ଠ କରି ଦେଖେ ରେ ?
ଏତେ ଅପରାଧ କିଏ ନିଜ ଶିରେ ଲେଖେ ରେ ?
ମଣିଷର ଜୀବ ଆହା ମଣିଷର ଜୀବ ସେ
ଏ ମାଟିର ସତ୍ୟ ଓ ଶିବ ସେ !
ମଣିଷଠୁ ଭିନ୍ନ ମୁଁ ହୋଇ ରେ
ପାରିବିନି ରହି ରେ
ମୋ ଭିତରେ ବାହାରେ

ମଣିଷ ଜୀବନ ଲୀଳା ଲଗିଥାଉ ଚିରଦିନ
ସୀମାହୀନ ଶୋଭାରେ ! !

ଏତେ ବଡ଼ ସମ୍ପଦ ମଣିଷ
ଚଉଦିଗେ ଅଛି ମୋର ଘେରି ରେ !
ବୁକୁତଳେ ତାର ମୁହିଁ
ଯିବି ଖେଳ ଖେଳି ରେ !
ଏ ଜୀବନ ମୋର ସତେ
କେତେ ଭଲ ଲଗିବ !
କେତେ ଅମୃତ ଶିଖା
ବୁକୁତଳେ ଜାଗିବ ।
ପୃଥିବୀର କେଉଁ କଣେ
କେତେ ସମ୍ପଦ ଧରି କଏ ରହିନ !
ସତେ ଏ ମୋ ସମ୍ପଦ ସତେ ଏ ମୋ କୋଟିନିଧି
ଏ ବିରାଟ ଧରଣୀର ସତେ ଏ ତ ଅମୃତ ବାହିନୀ ! !

---

# ଚାଲିବୁ, କିନ୍ତୁ......

## —ଏକ—

ଜୀବନ-ପଥ ପରେ ଚାଲିବୁ ମୀତ
କିନ୍ତୁ ପାଇବୁନି ସେନେହ ପ୍ରୀତ ;
ଚାଲିବୁ ଚାରିଆଡ଼ ଧରଣୀ ଭୂଇଁ
ଜୀବନ ମଧୁମୟ ଲଗିବ ନାହିଁ !
କରୁଣ ଚାହାଣୀଟି ମାରବେ ତାଳ,
ତୁ ଚାଲିଥିବୁ ବଣ ପଡ଼ିଆ ମାଡ଼ ;
ଏଭଳି ଜୀବନେ କି ବିଭବ ଥାଏ ?
ଜୀବନ ମରଣ ତା' ସମାନ ପ୍ରାୟେ !

—ଦୁଇ—

ଜୀବନ-ପଥ ପରେ ଚାଲିବୁ ମୀତ
ଯାବତ ରହିଚି ତୋ' ଟିକକ ସ୍ଥିତ ;
ତୋ' ମନକଥା ଅବା କହିବୁ କା'ରେ
ବୁଝିବ କିଏ ପ୍ରାଣହୀନ ସଂସାରେ ?
ସଭିଏ ହସି ଖେଳି ଚାଲିବେ ପଥେ
ସକଳ ବଇଭବେ ଶୋହି ନିଯୁତେ ;
ମରି କି ଯିବୁ ? ମରି ପାରିବୁ ନାହିଁ !
ଜିଇବା ଜୀବନେ କି ମାୟା ଯେ ଥାଇ !

—ତିନି—

କିଏସେ ତୋତେ ଖୋଜେ କିଏ ବା ଚାହେଁ ?
କା' ମଥା ତୋହ ଲାଗି ଅବା ବଥାଏ ?
ତୋ ଲାଗି ଘାସ କେତେ କେ' ଦେବ ଆଣି ?
କାହିଁକି ଦେବା ଅବା ପାଣି ତୋରାଣି ?
ଚାଲିଚୁ ଚାଲିଥିବୁ ଦଇନ ସହି,
ମାରିବେ ଯାଉଥିବ ଲୋତକ ବହି ।
ମରମ ଦୁଃଖ ଥିବ ମରମତଳେ
ମରଣ ନେଇଯିବ କେବେ ଯେ ଥରେ

—ଚାରି—

ଫେରିଲେ ନ ଫେରିଲେ ସଞ୍ଜେ କୁଟୀରେ
କିଏସେ ଲୋଡ଼ିବାକୁ ନାହିଁଟି ଭିଳେ ;
ସେ କେଉଁ ବାଟେ ଘାଟେ ବା ଗଛତଳେ,
ଜୀବନ କଳବଳେ ଚାଲି ବା ଗଲେ,
ଟିକିଏ ଆହା ଅବା କରିବା ଲାଗି
କାହା ହୃଦୟୁ ନାହିଁ ଉଠିବ ଜାଗି ?
କି ହୀନମାନେ ଯିବ ଜୀବନ ଗୁଡ଼ି
ନ ଗଲେ ଶେଷବେଳେ ଜଣେ ପଚାରି !!

—ପାଞ୍ଚ—

ଜୀବନପଥ ପରେ ଚାଲିବ ମୀତ
ବହି ତୋ' ଜୀବନର ସକଳ ଅର୍ଥ ;
କଏ ନଟୁର ନାଇଁ ବୁଝିଲା ସାରେ
ନଳଗୋଡ଼ରେ ଦେଲା ଟାଣ ପାହାରେ ।
ସାରା ଜୀବନ ତୋର ସଅର୍ଥେ ଯାଏ,
ତୋ ଲାଗି କବି ମୁହିଁ କବିତା ଗାଏ !
ତୋରେ ଚାହିଁଲେ ଯେତେ ପାରୁନ ଚାହିଁ,
ତୋଲାଗି କୋହ ବୁକେ ଜାଗେ କପାଇଁ ?

—ଛଅ—

ଜୀବନ ପଥପରେ ଚାଲିବୁ ନିତ
କ ନାରଖାରେ ଯିବ ସମସ୍ତ ସତ !
ହାଇ ରେ ! ହାଇ ! ହାଇ ! ହାଇରେ ହାଇ !
କାହାରେ ବେଳେ ବେଳେ ଦେଉଛୁ ଚାହିଁ ?
ମୂକ ପଶୁଣୁ ସିନା ଫୁଟେନି ବାଣୀ
ଚାହାଣୀ ତୋର କରେ ପଥର ପାଣି
ଟିକଏ ଘାସ ଚର ଟିକଏ ଚାହୁଁ,
କେ' ଅଛୁ ଯିବୁ କାହା ପାଖକୁ ଆଉ ?

—ସାତ—

ଲୋଡ଼ୁଛୁ ବେଳେ ବେଳେ କହିବୁ ବୋଲ
କଏ ନଟୁର ତୋରେ କଲା ଏ ଭଳ,
ସେ କେଉଁ ଲଟା ବୁଦା ଗୋରଡ଼ା ଛଳେ,
କଭଳ ପଡ଼ିଗଲୁ ପ୍ରାଣ ସକଳେ !
କଭଳ ଖୋଲା ମାର ଆଖି ତରଳି
ପାଇଲୁ କେତେ ବାଧା ନ ପାର ଉଠି—
କଭଳ ଆସିଥିବୁ ଜୀବନ ଧରି,
କୋଶକ ଲାଗିଥିବ ଯୋଜନ ସରି

—ଆଠ—

ନଖିହ ନଦୋଷୀର ଦୁଃଖ ବକଳ
ତାହାଠି ଉଇଁ ତା' ଠି ମରେ କେବଳ !
ପାଷାଣ ତାହାଲଗି ସବୁର ହୃଆ
ତା' ଘର ନୁହେ ଅବା ଏଇ ଦୁନଆ !
ମଲେ ସେ ମରୁ ଅବା ରହିଲେ ରହୁ
ଜୀବନେ ତାର ଅଛୁ କ ଅବା ମହୁ ?
ତା ଆଖି ଲୁହଧାର ପୋଛିବା ପାଇଁ
କଏସେ ହାତ ଲବେ ବଢ଼ାଏ ନାଇଁ !

—ନଅ—

ଗୃଲବୁ ଗୃଲଥିବୁ ନତ ଏପର
କେଉଁଠି ଘାସ କୁଟା ମିରବେ ଚର ।
ପରଣେ ତୋର ଅବା କ ସନମାନ ?
ଗୃଲବୁ ଧର କବା ମଧୁ ଧିଆନ ?
ସଭଏ ଗୃଲଛନ୍ତ ଗୃଲବୁ ତୁହ
ତୋ' ଦୁଃଖେ ଓଦାକର ନଖିଳ ଭୂଇଁ !
ତୋରେ କେ ବୁଝୁ ଅବା ନ ବୁଝୁ ଲବେ,
ଭଲ କ ହେବୁ ଆଉ ନଖିଳ ଭବେ ?

—ଦଶ—

ଗୃଲବୁ ଗୃଲଥାଅ ଜୀବନ ସାରା
କୋହ୍ନ ତୋ ଜୀବନର ଅସୀମ ଭରା ।
ବାଧିବ ? ବାଧ ଯେତେ କବା ଗୃଲେଣି ?
ହୃଦୟ ନାଇଁ ଯେବେ ଛଲେ ତୋ ଘେନ;
ଏଇ ଆକାଶ ଏଇ ଧରଣୀ ତଳ,
ପାହାଡ଼ ବଲ ବନ ନଦୀ ପ୍ରାନ୍ତର—
ମବୁର କାନେ କାନେ ଯାଉଥା କହ,
ମୁଁ ଏକା ମୋ ପାଇଁ କେ' ନାହାନ୍ତ ରହ !

—ଏଗାର—

ଚାଲିବୁ ଚାଲିଥାଆ ଯୋସାର ଯୋଇ,
ଯାବତ ଅଛି ପିଣ୍ଡେ ପବନ ରହି !
ଅସୀମ ବେଦନାରେ ତୋ ବୁକୁତଳ
ନିଠୁରେ ଦୁହିଁ ହେଉ ଥରକୁ ଥର ।
ଯାଆନା ଯାଆନା ତୁ ଯାଆନା ମରି
ଚାଲିଥା ବାହି ତୋର ବ୍ୟଥାର ତରୀ
ପୂରିବ ତୋ' ଜୀବନ ମହାସପନ
ଜାଗିଲେ ଏ ମରୁରେ ଟିକେ ଜୀବନ !

— —

# ବିଶ୍ୱନାଥ ବ୍ରହ୍ମା

କ୍ଷୁଧାର୍ତ୍ତ ନମେଷେ ଅନ୍ନ ବଢ଼ାହେଲ ବେଳେ,
ଆମଣାର ଅନ୍ନଥାଳ ପୁଲକ ଉଦ୍‌ବେଳେ,
ଆନରେ ବିତରିବାର ପ୍ରତିଦ୍ୱନ ଧରି ;
ତା' ଭିତରୁ ବିଶ୍ୱଶିଳ୍ପ ସଂପଦ ଆହରି
ଚାଲିବା ଧରଣୀ ପରେ ବିଜୟ ସଂଗରେ
ଏ ସକଳ ଅକୁଣ୍ଠିତେ କିଏ କରିପାରେ ?
ଯାହାର ଅନ୍ତର ମହା ପାରାବାର ପରି
ଦୟା ଦାନ କରୁଣାରେ ନ ପଡ଼େ ଉଚ୍ଛୁଳି
ଜନମରୁ ମୃତ୍ୟୁଯାଏଁ, ବ୍ରହ୍ମା ବିଶ୍ୱନାଥ
ମୁଁ ତୁମରେ ହୃଦ ଭରି କରେ ପ୍ରଣିପାତ
ତୁମରି ଅନ୍ତର ତଳୁ ଯେ ତରଙ୍ଗ ଫୁଟେ
ଶତାଂଶୁ ଏକାଂଶ ହାୟ କାହା ବକ୍ଷେ ଫୁଟେ
ଆଜି ହେଲେ ଫୁଟିଥାନ୍ତା ! ଯଦି ଉଠେ ହାୟ
—ଦେଖିବାକୁ ଜୀବନର ଅମୃତ ବିଳାସ !

———

# ଜୀବନର ସତ୍ୟ

ସ୍ରୋତ ବଡ଼ ସୀମାହୀନ ଘଟଣା ଭିତରେ
ଚାଲିଛି ମୁଁ, କେଉଁ ବନ କେଉଁ ଅନନ୍ତରେ
ମିଶିଯିବ, ନମିଷକେ । ସତ୍ୟ ଜୀବନର
କିବା କଲ ଅନୁଭବ ? ଭାଲେ ନିରନ୍ତର
ମାଟି କୁଡ଼ିଆରେ ବସି, ଶୟନେ ଭୋଜନେ
ସତ୍ୟ କି ଫୁଟଇ ସତେ ? ଅର୍ଥ ଅରଜନେ,
ସୌଧ ରଚିବାରେ ଅବା ଈଶ୍ୱର ଚିନ୍ତନେ
ସତ୍ୟ ହୁଏ ଅନୁଭୂତ ? କ୍ଷମତା ଆସନେ
ବସି ଚକ୍ରବର୍ତ୍ତୀ ଗତ ସତ୍ୟ କିଏ ଜାଣେ ?
ଏ ସବୁ କାହିଁରେ ମୋର ଆତ୍ମା ନାହିଁ ମାନେ;
ଜୀବନର ସତ୍ୟ ଏକା ଆନନ୍ଦ ପରମ,
ବ୍ୟୋମ ବସୁନ୍ଧରା ଭରି ଅମୃତ ବନ୍ଧନ—
ଭିତରେ ବିକାଶ ତା'ର; ସେ ବିକାଶ ଲାଗି
କ୍ଷୁଧାର୍ତ୍ତ ଏ ଆତ୍ମା ମୋର ରହିଅଛି ଜାଗି !!

---

# ପଛକୁ ଆସିବ

କାହା କୋଳର ସଞ୍ଜାଳ ସେ କେଉଁ କୁଟୀର ଶିଶୁ,
ସବୁଜ ଏଇ ପଡ଼ିଆଟିରେ ଖେଳୁଛି ଥିର ଥିର !
ବୟସ ତାର ପାଞ୍ଚ ଛଅ,
ସବୁର ଭୁଲେ ତା ପରିଚୟ !
ଅଭିଙ୍କି ସେ ସିନାଅ ଅବା ଦେଉଛି ବୁଲୁଚିର,
କାହା କୋଳର ସଞ୍ଜାଳ ସେ କେଉଁ କୁଟୀର ଶିଶୁ ।

ଦେଖି ସେ ମୋତେ ଖଣ୍ଡେ ଦୂରୁ ଧରିଲା ମୋର ହାତ
"ମୁଁ ଆଜ୍ଞେ ଯିବ, ଯିବ ହେ ମୁହିଁ ତୁମର ସାଥ ସାଥ"
ସେଇ ତା' ଓଠ ସ୍ୱର୍ଣ୍ଣ-ହାସେ
କହିଲା ଆସି ମୋହର ପାଶେ ;

କହିଲ ମୁହିଁ "ତୁମର ଘରେ ଯିବଇଁ ଆଜ ରାତ !"
ଦେଖି ସେ ମୋରେ ଖଣ୍ଡେଦୂରୁ ଧଇଲା ମୋର ହାତ !

"ଖାଇବା ପାଇଁ କଅଣ ଦେବୁ ? ଗଲେ ମୁଁ ତୁମ ଘରେ
ଶୁଣି ତୋ ବୋଉ ବାଡ଼େଇ ମୋରେ ତଡ଼ିବ ତରତରେ ।"
"ନାଇଁ ମୋ ବୋଉ ଭାରି ଭଲ,
ଦେବ କଦଳୀ ଦୁଧ ଓ ସର,
ଆସ ଆସ ଆସ ତମେ ମୋହର ତୁଲେ ଥରେ" ।
"ଖାଇବା ପାଇଁ କଅଣ ଦେବୁ ଗଲେ ମୁଁ ତୁମ ଘରେ ।"

"ଆଚ୍ଛା ତେବେ, ଆମର ଘରେ ରହିବୁ ଝିଅ ହୋଇ,
ହଅଁ ତୁ କଲେ ଏଇଲେ ବୋଲେ ଏଇଲେ ଯିବ ନେଇ
ନାହାନ୍ତି ପିଲା ଆମର ଘରେ
ରହିବୁ ତୁ ଲୋ ! ସୋହାଗ ଭରେ,
ବୁଲିବୁ ଆମ୍ଭ ନଡ଼ିଆ ତୋଟା ପଡ଼ିବୁ ଖଟେ ଶୋଇ,
ଆଚ୍ଛା ତେବେ, ଆମର ଘରେ ରହିବୁ ଝିଅ ହୋଇ ।"

ତୋହର ଶିଶୁ ହସ ଖେଳର ମୋହନ ମାୟା ଧର
କୁଟୀର ମୋର ଉଠିବ ନାଚ ସୁନାର ସ୍ୱର୍ଗ ଭଳ !
ହସିବୁ ତୁହି, ହସିବ ମୁହିଁ,
ହସିବ ମୋର କୁଟୀର ଭୂଇଁ,
ହସିବ ଆଉ ଜଣେ ତୋହର ହେବ ଯେ ମାଆ ପର,
ତୋହର ଶିଶୁ ହସ ଖେଳର ମୋହନ ମାୟା ଧର ।

ନାହିଁ ମୋର କୁଟୀର କଣେ କାନ୍ଦେ ବସି ଜଣେ,
ତୋ ଭଳି ସ୍ୱର୍ଣ୍ଣ ପିତୁଳଟିଏ ଦେଖିବ ହ' ନୟନେ !
ସନ୍ଧ୍ୟା ହେଲେ ଅଶ୍ରୁ ଧାରେ
ସେ କେଉଁ ଶୂନ୍ୟେ ଡାକଇ ହାରେ !
"ମୋ ପରେ କଏ ନିଷ୍ଠୁର ହେ ହେଉଚ ପ୍ରତିକ୍ଷଣେ"
ନାହିଁ ମୋର କୁଟୀର କଣେ କାନ୍ଦେ ବସି ଜଣେ ।

ତୋହର ଏଇ ସୁନାର ହାତ କୁଞ୍ଚ କୁଞ୍ଚ ବାଳ,
ତୋହର ଓଠର ଦନ୍ତୁରି ବାଣୀ ପୀୟୂଷ ସଞ୍ଚାର,
ଏ ଟିକ ଟିକ ଦୁଇଟି ଆଖି
ଝରଣା ଅବା ରହିଚ ଲଖି !
କେତେ ସେ ଖୋଜେ ଦିବସାନ୍ତ ହୋଇଣ ଅସମ୍ଭାଳ,
ତୋହର ଏହି ସୁନାର ହାତ କୁଞ୍ଚ କୁଞ୍ଚ ବାଳ ।

ସେ ତତେ ଗୃହେଁ ସେ ତତେ ଗୃହେଁ ସେ ତତେ ଖାଲି ଗୃହେଁ
ଦେଖିଲେ ଥରେ ତୋ ଓଠ ଚୁମ୍ବି, ଗୁଡ଼ବ ନାଇଁ ହାସ୍ୟେ
ମହା ସମୁଦ୍ର ଦେବ ସେ ମେଲି !
ତୋ ତଟ୍ଟ ବାହି ଉଠିବୁ ଖେଳି ।
ବକ୍ଷ ତା'ର ପଡ଼ିଚ ଶୁଖି ବର୍ଷାନ୍ତ ମରୁପ୍ରାୟେ,
ସେ ତତେ ଗୃହେଁ ସେ ତତେ ଗୃହେଁ ସେ ତତେ ଖାଲି ଗୃହେଁ !

କେହି ନାହିଁରେ କୁଟୀରେ ମୋର ! ଶୂନ୍ୟ ଗୃହଆଡ଼,
ଶୂନ୍ୟପୁରେ ଫୁଟିବ କାହିଁ ପ୍ରାଣର ମଧୁଧାର ?
ଜୀବନ ଗୃହେ ପଡ଼ିବ ତଳି,
ଆପଣାଟିକ କାହାରେ ଭରି,
ଜୁଲ୍ଲି ହୋଇ ପାରିବ ନାଇଁ ରହି ଟିକଏ କାଳ,
କେହି ନାଇଁରେ କୁଟୀରେ ମୋର ! ଶୂନ୍ୟ ଗୃହଆଡ଼ !

ଆଜଠୁ ତୁହି ନଜର ମୋର ସବୁଠୁ ଆପଣାର !
ଗୃହାଁ ରେ ଗୃହାଁ ଟିକଏ ଗୃହାଁ ଆଁ'ରେ ମାଖେ ମୋର,
ଆଉଁସିଦିଏ ଏ ହାତ ଗୃଳି,
ସକଳ ଜ୍ୱାଳା ଯିବ ବା ଗୃଲି !
ଆଜ ତୁ ମୋର ବକ୍ଷ ତଳେ ଗୋଟିଏ ସୁନାଗାର,
ଆଜଠୁ ତୁହି ନଜର ମୋର ସବୁଠୁ ଆପଣାର ।

ସ୍ୱନ୍ଦେ ମୋର ପଡ଼ି ରେ ଲୋଟି ଖେଳ ଆଜ ମୋ ଭୁଲେ
ମାଆଗେ ଯାହା ମାଗୁଚ ଆଣି ଦେବି ମୁଁ ଯାଇ ଦୂରେ !
ବୁକୁରେ ତୋରେ ମୁଁ ଯାକ ଧରି
କହିବ କହ "ମୁଁ ତୁମ୍ଭରି"

ଶୁଣିବ ଯେତେ ବାୟୁ ଗୀତ ଗାଇବୁ ମୋର ଘୁରେ,
ସ୍କନ୍ଧେ ମୋର ପଡ଼ ରେ ଲୋଟି ଖେଳ ଆଜ ମୋ ଭୁଲେ ।

"ପଛକୁ ମୁହିଁ ଆସିବ" କହି ହାତଟି ମୋର ଧର,
ଗଲ ସେ ଗଲ ଗୃହିଁଚ ତାରେ ଏ ଦୁଇ ଆଖି ଭର ;
ପଛକୁ ସିଏ ଅସିବ ସତେ ?
ଗୃହିଚ ମୁହିଁ ତାହାର ପଥେ,
କେତେ କଅଁଳ କଥାଟି ତା'ର କବା-ଲହୁଣୀ ଭଳ
"ପଛକୁ ମୁହିଁ ଆସିବ" କହି ହାତଟି ମୋର ଧର ।

ଠିଆ ହୋଇ ରହିଚ ଗୃହିଁ ଚଉଦିଗେ ମୁହିଁ,
ଦେଖୁଚ ମାଡ଼ ଆସୁଚ ସେହି ଶୂନ୍ୟ ଶୁଷ୍କ ଭୂଇଁ ;
ଓଠରୁ ମୋର ଭୁଟୁଚ ହାସ,
ମରମେ ଖେଳ ଯାଉଚ ତ୍ରାସ
"ପଛକୁ ମୁହିଁ ଆସିବ" ସେ ତ ଯାଇଚି ମୋରେ କହି
ଠିଆ ହୋଇ ରହିଚି ଗୃହିଁ ଚଉଦିଗେ ମୁହିଁ !!

ଆସନା ଆରେ ଶୁଷ୍କ ପ୍ରାଣ ! ଆସନା ଆଉ ବାରେ
ପଛକୁ ସେ ତ ଆସିବ ବୋଲ କହିଚି ଶରଧାରେ,
ହାଇରେ ହାଇ ସେ ପାଖେ ନାଇଁ
ମୁଁ ଯାହା ଖାଲି ରହିଚି ଗୃହିଁ !
ଅଶ୍ରୁଟିଏ ନଗିଡ଼ ଯାହା ରହିଚି ଆଖି ଧାରେ
ଆସନା ଆରେ ଶୁଷ୍କ ପ୍ରାଣ ! ଆସନା ଆଉ ବାରେ !!

———

## ବନ ବନକର କଥା

କେଉଁ ବନ ବକ୍ଷେ ତବ ଯାକଧର,
ମଧୁର ଅନ୍ତର ଫେଇ,
କହିଅଛ ସୁକୋମଳ ବାଣୀ ;

କେଉଁ ଦିନ ଦେଇଚ ଚୁମ୍ବନ ମତେ
ପ୍ରାଣରୁ ଅଧିକ କରି
ଦେଖିଅଛ ମୋ କୁଟୀର ଘରି !
କେଉଁ ଦିନ ମୋ ଦରିଦ୍ର ଜୀବନର
ଦୈନ୍ୟ ଓ ଅଭାବ ଦେଖି,
ଦେଖି ମୋର ସୀମାହୀନ ବ୍ୟଥା,
ଲୁହ ସିକ୍ତ ନୟନରେ
କହିଅଛ ସାନ୍ତ୍ୱନାର କଥା ;
କେଉଁ ଦିନ ଶୁଣି ମୋ ବିଜୟ
ଆନନ୍ଦେ ଅଧୀର ହୋଇ
କରିଅଛ ମତେ ଆଲିଙ୍ଗନ
କେବେ ଅବା ମୋ ପାର୍ଶ୍ୱ ବିରହେ
ଏକାକୀ କୁଟୀର କଣେ
କରିଅଛ ଅଶ୍ରୁ ବିସର୍ଜନ !
କେବେ ମୋରେ ହସାଇଚ,
କେବେ ମୋରେ ରସାଇଚ,
କେବେ ମୋରେ କରିଚ ଭର୍ତ୍ସନା,
ଏ ଜୀବନେ ଭୁଲ୍ ଯେବେ
ଥାଏ କାହିଁ କରି,
କେବେ ମୋରେ ଦୂରେ ଫିଙ୍ଗିଦେଇ
ନିର୍ମମେ ନିଠୁରେ
ପୁଣି ମୋତେ ଦ୍ୱିଗୁଣ ସେନେହେ
ନେଇଅଛ କାନ୍ତ କରେ ଧରି !
ବିଦେଶେ ବିଦାୟ ଦେଇ ଗଲିଲେ ମୁଁ,
ହେଲେ ତୁମ ଆଖି ଆଡ଼ୁଆଳ,
ଗବାକ୍ଷ ଅୟନେ ମୋ'ରେ
ସୁଦୂର ଦିଗନ୍ତେ ଚାହିଁ
ଚାହିଁ ରହିଥାଅ
କେତେବେଳ ଯାଏଁ,
ସ୍ମୃତି ମୋର ବୁକୁତଳେ
ଆଙ୍କି ବାର ବାର !
ଅଭାଗା ମୁଁ କବିଜନ

ନିର୍ଦ୍ଦୟ ଅନ୍ତରେ ତବ
ଆଘାତର ବହ୍ନି ଯେବେ
ଦେଇ ଥାଏ ଜାଳ,
କରିଅଛ କ୍ଷମା ମୋରେ
କହୁ ନ ବଚନ !

କେବେ ମୋରେ ଦେଇଅଛ
ସୀମାହୀନ ଉତ୍ସାହ ପ୍ରେରଣା,
ଯାହା ବଳେ
ଏଇ ମୃତ ଜଡ଼ ମୋର ଦରିଦ୍ର ଅନ୍ତର
ହୋଇଅଛି ବହ୍ନି ସମ ଉର୍ଦ୍ଧ୍ୱଗାମୀ
ଉଠିଛି ମୁଁ ଦୂର ଦୂରାନ୍ତର !
ମାନିନାହିଁ ବାଧା ଓ ବନ୍ଧନ
ବିଜୟୀ ସୈନିକ ପରି
ଚାଲିଅଛି ଲକ୍ଷ୍ୟପଥେ ମୋର !

ଦିନ ଦିନକରକଥା,
ତା'ର ଯେଣ୍ଣେ ନାହିଁ ଶେଷ !
ଅସରନ୍ତି ଉପନ୍ୟାସ ପରି
ସୁଦୂର ଅତୀତୁ ଆଜଯାଏଁ
ମୋ ଅନ୍ତର ପ୍ରତି ଅଣୁପରମାଣୁ ତଳେ,
ଲୀଳାୟିତ ଅମୃତର ବଇଭବ ଧରି ।

କେଉଁଦିନ ଜୋଛନା ନିଶୀଥେ
ସୀମାହୀନ ଆକାଶର ତଳେ,
ମୋର କ୍ଷୁଦ୍ର କୁଟୀର ଅଙ୍ଗନେ
ମୋର ନେଣେ ନେଣ ତାଳ
ପ୍ରେମ ଉତ୍ସବେ
ପଚାରିଚ ପଚାରିଚ
ଆଗୋ ପ୍ରିୟତମା
'ତୁମର ଏ ସୌମ୍ୟ ଅଙ୍ଗେ
ଜଡ଼ାଇ ଏ ଦେହ ମୋର
ଚିରଦିନ ଆଖିବୁଜ

ପୃଥିବୀରୁ ହୁଅନ୍ତୁ ଅନ୍ତର ।'
ଶୁଣି ତବ ଏ ପଦ୍ଦକ ବାଣୀ
ନେତ୍ର ଯେବେ ଅଶ୍ରୁ ତାଳ
ଭୂମରେ ମୁଁ ଅବସନ୍ନ
ରହିଁଲଇଁ ରାଣି !
'ବ୍ୟଥିତ ହୁଅନ ତୁମେ
ତୁମକୁ ମୋ ରାଣ'
କେମନ୍ତେ କହିତ ମୋରେ
ନବଡ଼ ଆଶ୍ଳେଷ ଦେଇ
ନେଇଅଛ ଟାଣି ମୋରେ
ଦୂରେ ବହୁଦୂରେ ।
ଜୀବନ ଯେଉଁଠି ଗାହେଁ
ସୀମାହୀନ ଆନନ୍ଦର ଗାନ ।

ଏ ଜୀବନେ କେତେ ଦୁଃଖ ।
କେତେ କଷ୍ଟ କେତେ ହାହାକାର ।
କେତେ ଅଶ୍ରୁ କେତେ ନର୍ଯ୍ୟାତନା ।
ରୋଗ ଶୋକ ଦୁଃସହ ଜଞ୍ଜାଳ !
ବପଦର କେତେ ବଜ୍ର
ଯାଇନାଇଁ ଗୃଳ !
ସମସ୍ତ ଭିତରେ କନ୍ତୁ
ପ୍ରାଣର ସଙ୍ଗୀଳ କର
ରଖିଅଛ ପାଣନାହିଁ ଗ୍ରୁଡ଼ !

ଜଟିଳ ଦୁର୍ଭେଦ୍ୟ ପଥ
କରଅଛ ସହଜ ସୁଗମ,
ବପଦରେ ଦେଇଅଛ
ବୀର ପରାକ୍ରମ,
ଅଶାନ୍ତ-ନରକେ ତୁମେ
ଫୁଟାଇଛ ପାରଜାତ କଳି ;
ସଂଗ୍ରାମେ ହୋଇଚ ଠିଆ,
ସୀମାହୀନ ସାହସର ଅଗ୍ନି
ମୋର ବୁକୁ ତଳେ ଭର !

ଏ ଧରଣୀ ପାନ୍ଥଶାଳା
ମୋର ଆନନ୍ଦର
ଲୀଳା ନିକେତନ
ତୁମର ପରଶ ଯେନ
ଯେନ ତୁମ ହୃଦୟ ବନ୍ଧନ !

---

## କବିର ଜବାବ

ପୃଥିବୀର କବି ମୁହିଁ, ପୃଥିବୀର ଅନ୍ତର୍ଦାହ, ପୃଥିବୀର ଆଶା ଅଭିଳାଷ,
ପୃଥିବୀର ଅଭାବ ଓ ଅଭିଯୋଗ,
ପୃଥିବୀର ଆନନ୍ଦ, କଲ୍ୟାଣ,
ସକଳକୁ ରୂପ ଦେବା ପାଇଁ, ଜନ୍ମ ମୋର ଧରଣୀ ଉପରେ
କିଏ ଅଛୁ ଏଡ଼େ ବଳଆର ପୁଅ !
ମତେ ଏ ସବୁରୁ ଧମକ ଚମକ ଦେଇ, ଦେବ ନିବର୍ତ୍ତାଇ ?
ଏ ବିରାଟ ପୃଥିବୀ ବିଲ ବଣ ନଦୀ ସିନ୍ଧୁ ଉପତ୍ୟକା ଧରି
ମୋର ଏକାନ୍ତ ନିଜର,
ବନ୍ଧା ମୋର ହୃଦୟର ପ୍ରତିତନ୍ତ୍ରୀ ସହ
ଦରିଦ୍ର କୃଷକ ଠାରୁ ରାଜାଧିରାଜ ଯାଏଁ
ବିରାଟ ନଗରୀଠାରୁ ପୁରପଲ୍ଲୀ ଯାଏଁ
ସକଳର ସହ, ସବୁଠି ମୁଁ ପରିଚିତ,
ସକଳର ଆଘାତ ଓ ପ୍ରତିଘାତ
ସକଳର ଜୟ ପରାଜୟ
ସକଳର ଆପଦ ବିପଦ ସକଳର ଦ୍ୱନ୍ଦ୍ୱ
ମୋ ଭିତରେ ସୃଷ୍ଟିକରେ ଆଜ ଏକ ସୃଷ୍ଟି ପ୍ରାଣମୟ !

ଏ ମହା ଧରଣୀ ସହ ଓତପ୍ରୋତ ହୋଇ
ଏତେ ମୁହିଁ ବିଜଡ଼ିତ,
ଏକଇ ମୁହୂର୍ତ୍ତେ ଏଥୁ ଛିନ୍ନବିଚ୍ଛିନ୍ନ ହୋଇ ରହିଯିବା
ମୋହ ପକ୍ଷେ ଅତୀବ ଦୁଃସହ !
ପୃଥିବୀ ହସିଲେ ମୁହିଁ ହସେ, ପୃଥିବୀ କାନ୍ଦିଲେ ମୁହିଁ କାନ୍ଦେ,
ପୃଥିବୀ ଛିନ୍ନଭିନ୍ନ ହୋଇଗଲେ କେଉଁ ରାକ୍ଷସର ଅନାଚାର ଧରି

ତାତ ଉଠେ ଅନ୍ତରତଳ ତପ୍ତ ଲୌହଖଣ୍ଡ ପରି ;
ପୃଥିବୀର ଅନ୍ତରେ ଅନ୍ତରେ ବୋଳିଦେବା ପାଇଁ
ଜୀବନର ବିଦ୍ୟୁତ ଚମକ
ସୃଷ୍ଟି ମୋର ; ମୋରେ କେ ପାରିବ ରୋକ ?
ଖାତିର କରିନ ମୁହିଁ କାହାର ଧମକ
ମତେ ତମେ ଜେଲ୍ ଦେବ ? ମୋରେ ତୁମେ ଜୋରିମାନା କରି
ମୋ ଇଜ୍ଜତ ସନମାନେ ବୋଳିଦେବ ଘନକୃଷ୍ଣ ମସୀ ?
ମତେ ତୁମେ କରିବ କଅଣ ?
ମୁଁ ଯେ କବି ପୃଥିବୀର ଆତ୍ମା ଅବିନାଶୀ !!

ମତେ ତମେ ଏ ସାମାନ୍ୟ ଶୃଙ୍ଖଳ ଖଣ୍ଡକରୁ
ବାହାର କରିଦେଇ,
ବିଶୃଙ୍ଖଳ କରିଦେବ ପଥର କାଙ୍ଗାଳ ?
ମାରିଦେବ ମୋ ଭିତରୁ ଯେଉଁ କବିତାର କଲତାନ ଝରି ଝରି ଆସେ
ଅଥବା ଓ ପଙ୍କ ପରି ପୃଥିବୀରେ ରହିଥିବ ?
ନେଇ ପ୍ରାନ୍ତୁ ଝରୁଥିବ ଶତ ଅଶ୍ରୁଧାର ?
ତୁମରି ଏ ଷଡ଼ଯନ୍ତ୍ର, ତୁମରି ଏ କୁଟିଳ ମନ୍ତ୍ରଣା, ତୁମରି ଏ ଅନାଚାର
ମୋ ଭିତରେ ସୃଷ୍ଟି କରିବ ଯେ ଝଡ଼,
ତା' ଭିତରେ ତୁମେ କେଉଁଠି ବିଲୀନ ହେବ,
ମିଳିବନି ସତ୍ତା ଯେ ତୁମର,
ମୁହିଁ କିନ୍ତୁ ରହିଥିବ ବିରାଟରୁ ବିରାଟ ହୋଇ ଯୁଗଯୁଗାନ୍ତର !

ପଥର କାଙ୍ଗାଳ ମତେ କରିଦେବା
ହୋଇପାରେ ତୁମ ପକ୍ଷେ ସହଜ ସୁଗମ,
ମଥାରୁ ମୁକୁଟ ମୋର ପାରିବା ଖସାଇ
ତୁମ ପକ୍ଷେ ସାଧାରଣତ ବିଡ଼ମ୍ବୁ ବିଭ୍ରମ !
ମୋରେ ତୁମେ ସୀମାହୀନ ହଇରାଣ କରିପାର
ରାକ୍ଷସର ଆସ୍ପର୍ଦ୍ଧା ଦେଖାଇ
ଧରଣୀର ରାଜପଥ ପରେ,
କିନ୍ତୁ ବସିଛି ମୁଁ ଯେଉଁ ସିଂହାସନ ପରେ
ପାରିବନି ମୋରେ ଏକ ବିନ୍ଦୁ ବି ହଟାଇ
ବସିଥିବ ସୀମାହୀନ ଗୌରବର ପୁଣ୍ୟ ଆଡ଼ମ୍ବରେ !

ଅନନ୍ତରେ ସ୍ଥିତି ମୋର, ଅନନ୍ତରେ ଗତି ମୋର,
ଅନନ୍ତରେ ଲୀଳା ଖେଳା ମୋର,
ଅନନ୍ତରେ ଅମୃତ ପ୍ରୟାଣ ମୋର
ଅନନ୍ତର ପୂଜାରୀ ମୁଁ ଜନ୍ମ ଜନ୍ମ ଧରି,
ମୁଁ ଯାହା କହେ ଯାହା ଲେଖେ ଯାହା ଗାଏ—
ସେ'ଯେ ସତ୍ୟ, ବିରାଟ ଠାରୁ ସତ୍ୟ,
କଳ୍ପନାର ଯାଦୁସ୍ପର୍ଶ ଅଙ୍ଗେ ଅଙ୍ଗେ ବୋଳି;
ମୋର ଯେବେ ସୃଷ୍ଟି ହୋଇ ନ ଥାନ୍ତା ଏ ପୃଥିବୀ ଉପରେ,
ଅନନ୍ତ ଅନୁଭୂତିର ସୁବିପୁଳ ଅଧିକାର
ମୋର ଯେବେ ନାଇଁ ଥାନ୍ତା
ଏ ବିରାଟ ବସୁନ୍ଧରା ପାଇଁ,
ତୃଣ ପରି ଫୁଟି ଯେବେ କେଉଁ ଅଜ୍ଞାତ କୋଣରେ
ତୃଣ ପରି ଯାଆନ୍ତି ମିଳାଇ,
ଉପରେ ଥାଆନ୍ତା ଏ ଆକାଶ, ତଳେ ଥାନ୍ତା ଏଇ ବସୁନ୍ଧରା,
କିନ୍ତୁ ସୀମାହୀନ ଜନତା ଭିତରେ
ଜୀବନର କଳତାନ ଯାଇଥାନ୍ତା ମରି !!
ଜୀବନ୍ତ ପୃଥିବୀ ନ ହୋଇ
ନିର୍ମମ ଠାରୁ କେତେ ଗୁଡାଏ ସଇତାନର
ହୋଇଥାନ୍ତା ଇଏ ଏକ ପ୍ରିୟ ରାସସ୍ଥଳୀ !

ଏଇ ମହା ପୃଥିବୀରେ ଜଣେ ଅତ୍ୟାଚାରିତର—
ସୀମାହୀନ ବେଦନାରେ
କାନ୍ଦି କାନ୍ଦି ଯେବେ ମୁହିଁ
ସର୍ବସ୍ୱାନ୍ତ ହୋଇଯାଏ,
ତାହା ପାଇଁ ପନ୍ଥା ଖୋଜି ଖୋଜି
ତାହାର ଅନ୍ତର ବାଣୀ
ସକଳର ମର୍ମେ ମର୍ମେ ବାନ୍ଧି କରି କରି
ମୁହିଁ ଯେବେ ନିର୍ଯ୍ୟାତନା ପାଏ,
ସେ ଯେ ମୋର ପରମ ସୌଭାଗ୍ୟ,
ସେ ଯେ ମୋର ପୁଣ୍ୟ ରାଜଯୋଗ,
ସେ ଯେ ମୋର ଜୀବନର ଅନନ୍ତ ଗୌରବ !!

ସେ ସମ୍ପଦଟିକ ଧରି
ହସି ହସି ଅନନ୍ତ ସୋହାଗେ
ପାରିବ ମୁଁ ଚାଲି, ମୋର ଗନ୍ତପଥ ଆପେ ଆପେ ଗଢ଼ି ;
ମୁଁ ଯେବେ ହୋଇଥାନ୍ତି କେବଳ ନଜର ମୋର
ବାଧନ୍ତା ବାଧନ୍ତା ମୋରେ
ଶତ ଓ ସହସ୍ର ଗୁଣ ବାଧନ୍ତା
ହୃତ୍‌ପିଣ୍ଡର ସକଳ ସ୍ପନ୍ଦନ ଥମିଥାନ୍ତା ମୋର
ପଡ଼ିଥାନ୍ତି ତଳେ !
କିନ୍ତୁ
ଅନନ୍ତ ପ୍ରାଣର ମୁହିଁ ବିରାଟ ଆଧାର
ଅନନ୍ତ ଭିତରେ ମୁହିଁ ଛନ୍ଦହୋଇ ରହିଅଛି ଯୁଗଯୁଗାନ୍ତର
ଭଗ୍ନ ପ୍ରାଣ ନତଜାନୁ ହୋଇ ପଡ଼ିଯିବା
ମୋହ ପକ୍ଷେ ଅସମ୍ଭବ ଅଟେ ।
ବିରାଟ ଏ ମହାବିଶ୍ୱ ଧରି ରଖିଅଛି ମତେ
ମୁଁ ତା'ରେ ରଖିଚି ଧରି ପ୍ରତି ମୁହୂର୍ତ୍ତରେ
ବାଢ଼ି କିବା ଅମୃତ ଶକତି !

---

# ଧୂସର ଗୋଠର ବାଳକ !

ନଇଁଲା ସନ୍ଧ୍ୟାରେ ଧୂସର ଗୋଠ ଧରି,
କୁଟୀରେ ଫେରିଯାଏ ସେଇ ସେ ବାଳକଟି !
କୁଟୀର ପାଖେ ମୋର ଟିକଏ ଠିଆ ହୁଏ,
ବଳକା ଭାତ ମୁଠେ ମୁଁ ଯେବେ ତା'ରେ ଦିଏ,
ତା କାନଟିକ ପାତି
କେମନ୍ତେ ଖାଇ ବସେ,
ଓଠରେ ହସଟିଏ
କେମନ୍ତେ ଫୁଟିଦିଶେ !
କା' ଘର ସଙ୍ଗାଳ ସାଥିରେ ନାହିଁ ତାର
କେହି ତ ଜଣେ ସାଥୀ

କୁଟୀରେ ଫେରିଯାଏ
ସେଇ ସେ ବାଳକାଟି !

ନ ଥାଏ ଯେଉଁ ଦିନ ବଳକା ଭାତ ମୋର,
ଆସି ସେ ଠିଆ ହେଲେ କୁଟୀର ପାଖେ ପାଖେ,
ମନା ମୁଁ କରିବାକୁ ଲେଉଟେ ନାହିଁ ଜିଭ,
ବିରାଟ ଆଶା ତା'ର ନିମିଷେ ଭାଙ୍ଗି ଯିବ !!
ଆମ୍ବ କଦଳୀ ବା ସରାଗେ କିଣି ଆଣି
ତା' ହାତେ ଦେଇଦିଏ ତା' ମନ କଥା ଜାଣି ;
ସରାଗେ ହସି ହସି କୁଟୀରେ ଫେରିଯାଏ
ଘୁଷୁରି ଗୋଠ ଧରି
ମୁଁ ବସି ଦେଖୁଥାଏ
କି ମଧୁ ସମ୍ପଦ
ତା' ଟିକି ବୁକୁତଳେ ଉଠୁଚି ଥରି ଥରି !

ବହୁତ ଦିନ ପରେ ଛାଡ଼ି ସେ କୁଟୀର ମୁଁ,
ସୁଦୂରେ ଗଲି କାହିଁ,
ଆନ କେ ବସା କରି ବନ୍ଧୁଜନ ଧରି
ରହିଲେ ସେଠି,
ମୁଁ ତ କେଉଁହିଁ ଜାଣି ନାଇ !
ଦିନେ ମୁଁ ସନ୍ଧ୍ୟାରେ
ଦେଖିଲି ପଥପାରେ
ଘୁଷୁରି ଗୋଠ ଧରି
ଫେରୁଚି ବାଳକାଟି

ସେଇ ସେ କୁଟୀରର କାନ୍ଥ ବାଡ଼େ ଚୁହିଁ
ଖୋଜୁଚି କାହାରେ ବା
କହୁନ ଫେଇ ପାଟି !
ନିଆଶା ଲୁହ ଟିଏ
ଲୋଚନୁ ଝରି ଝରି
ଧରଣୀ ତଳେ ଅବା
ମରିବେ ଯାଏ ପଡ଼ି ;

ସେ ଲୁହଟିକ ପୋଛୁ ନ କହ୍ଵ କାରେ କହୁ
ଫେରୁଚ କ ଉଦାସେ
ସେଇ ସେ ବାଳକାଟି,
ଏଭଳି କେତେ ଆହା ବିଜନ ସନ୍ଧ୍ୟାରେ
ତା' ଟିକ ବୁକୁତଳ
ଯାଉ ଚ ଥିବ ଫାଟି !!

ଦେଖି ତ ଥିବ ସେଇ କାହ୍ନୁ ବାଡ଼ି ମାଟି,
ଦେଖି ତ ଥିବ ସେଇ ଘ୍ର୍ଷର ଗୋଠ ଗୋଟି,
ଦେଖି ତ ଥିବ ସେଇ ପାହାଡ଼ ଲଟାବୁଦା,
ତା'ଟିକ ଜୀବନର ଥିବ ସେ ଟିକଷ୍ଧା !
ଜୀବନେ ଏଇପରି
ଝରିବେ କେତେ ଲୁହ
କାହାର ବହ୍ଵଯାଏ ?
କଏ ସେ କେଉଁଭଳି
କେଉଁଠି ଆସେ ଯାଏ !
ସେଇ ସେ ବାଳକାଟି
ମୋହର ମନେ ଥାଏ
ମୁଁ ତାର ମନେ ଥିବ
ଜୀବନ ଶେଷ ଯାଏ !!

———

# ବଞ୍ଚିତର ବାଣୀ

—ଏକ—

ଜୀବନେ ଯେତେ ଯେତେ ସେନେହ ଦେଇଥିଲି
ନାଜର କରିଥିଲି ମୁହିଁ,
ସବୁ କି ହେଲା ଯତେ ମିଥ୍ୟା ଛଳନାର
କଜଳକଳା ପୋଡ଼ା ଭୂଇଁ ?
ନିସ୍ପୃତ ଯାଉଥିଲି ତୁମର କୁଟୀରେ ମୁଁ

ପର୍ବାଣ ପରଖନେ ନିତ୍ତ,
କହୁ ମୁଁ ଯାଉଥିଲି, ମନର ବ୍ୟଥାମାନ,
ପ୍ରାଣର ସୁଖ ଦୁଃଖ ପ୍ରୀତି;
ମତେ ମୁଁ ଦିନେ ହେଲେ ଲୁଚାଇ ନ ଥିଲି ତ
ତୁମର ପାଖେ ପାଖେ ରହି,
ସରଳ ସମ୍ପଦେ ମୁଁ ଫୁଟି ଉଠୁଥିଲି,
ଫୁଟାଇ ମୋର ମଧୁ ଛଇ ;
ଆଖିରୁ ଲୁହ ଦେଇ ଓଠରୁ ଭାଷା ଦେଇ
ମମତା ମନତଳୁ ଢାଳି;
ତୁମକୁ କରିଥିଲି ନିଜରୁ ନିଜର ମୁଁ,
ଶେଷକୁ ଦେଲ ମୋରେ ଗାଳି;—

—ଦୁଇ—

ଛଳନା ହଳାହଳେ ସିକ୍ତ ଏ ଧରଣୀ
ନଥିଲି ନଥିଲି ମୁଁ ଜାଣି,
ବାଧୁଛି ମତେ ଆଜ ବାଧୁଛି ବହୁବାର
ତୁମର ଏ କୁଟିଳ ବାଣୀ ;
ଟିକଏ ବୁଝିଲନି ? ଟିକଏ ଦେଖିଲନି ?
ଟିକଏ ଗୁହାଁଲନି ହେଲେ
ତୁମକୁ ପ୍ରାଣ ଦେଲି ତୁମକୁ ହୃଦ ଦେଲି
ଖାଲକୁ ଠେଲି ଦେଲ ମୋରେ !
ପାରୁନି ସମ୍ଭାଳି, ବାଧୁଛି ବେଶୀ ବେଶୀ
ନେତ୍ରୁ ଲୁହ ପଡ଼େ ଖସି,
କଭଲି ନର୍ମମେ କଭଲି ନିଷ୍ଠୁରେ
ମୁହେଁ ମୋ ବୋଳି ଦେଲ ମସି !
ଜୀବନେ ଯେତେ ଯେତେ ମାଧୁରୀ ଢାଆନଥ
ସବୁର ହେଲା ଅବସାନ,
ମୁଁ ଆଜ ଲୁହେ ତବ ପରାଣ ସମ୍ପଦ,
ଆନରୁ ବଳି ମୁହିଁ ଆନ !!

—ତାନ—

ମୋର ଏ ତରଣୀଟି ଭାସିବ ଏକା ଏକା
ଆଜ ଏ ଜଳଧିର ଜଳେ,
ତୁମକୁ ଖୋଜୁଥିବ ତୁମକୁ ଡାକୁଥିବ,
ନ ଶୁଣି ଥିବ ତୁମେ ଦୂରେ ?
ପାରିବ ତୁମେ ରହି, ପଥର ବୁକୁ ବହି ?
ପାରିବ ପାରିବ ତ ତମେ,
ପାଷାଣ ପାଖେ କାହିଁ ପ୍ରାଣର ହଆନଆ ?
କବତା ବୁଝେ ସେ ହ ଷଣେ ?
ପାଷାଣ ପାଲଟିବ ଜୀବନ ଟିକ ମୋର,
ହାଇରେ ! ହାଇ ! ହାଇ ! ହାଇ !
କାହାକୁ ଭଲ ଲାଗେ ବଜନ ମରୁ ପର
ନପୂତ ପଡ଼ିଥିବା ପାଇଁ ?
ଆଜ ଏ ଦୁର୍ବହ ଜୀବନ-ଜାଲାଟିକ
ମରମେ ମରି ମରି ଯାଏ,
କାହାକୁ କହିବ ସେ କାହାକୁ ଚାହିଁବ ସେ
ଧରାରେ କା'ରେ ନାଇଁ ପାଏ !!

—ସ୍ୱର—

ମୁଁ ଶ୍ରେଷ୍ଠ କବଟିଏ ନିଖିଳ ଧରଣୀରେ
ସଭିଙ୍କୁ ଦିଏ ସନମାନ;
ସଭିଙ୍କୁ ଆପଣାର ବୁକୁରେ ତୋଳି ନିଏ,
କାହାକୁ ନାଇଁ କରି ସାନ;
ସବୁରି ଆଖି ଲୁହେ ସିକ୍ତ କରି ଆଖି
ସଭିଙ୍କୁ ଚାହିଁ ରହିଥାଏ,
ସବୁରି ଗଉରବେ ଉଚ୍ଛୁଳ ଉଠେ ମୁହିଁ
ଅସୀମ ପାରାବାର ପ୍ରାୟେ !
ସବୁରି ଜୀବନର ଘାତ ଓ ପ୍ରତିଘାତ,
ମୋହରି ବୁକୁତଳେ ବାଜେ,
ସବୁରି ଅନ୍ତର-ମୋହନ ହାସଟିକ,
ମୋ ଓଠେ ଦୁଇଗୁଣ ହସେ !

ପରସ୍ତୁ ପର କରି ଫିଙ୍ଗି ଦେଲ ମତେ,
କହିବି କାହାକୁ ବା ଯାଇ !
ଅସୀମ ଶୂନ୍ୟ ମୁଁ ହତାଶ ନୟନରେ
ନୀରବେ ରହିଥିବି ଗୁହିଁ !!

## —ପାଞ୍ଚ—

ବନ୍ଧୁ ବୋଲି ତମେ ମୋର ଏ ବୁକୁତଳେ
କରିବ ନାହିଁ ଅନୁଭବ,
ଯିବନ ଯିବନ ମୁଁ ତୁମର ସେ କୁଟୀରେ
ପଦ୍ଭଣେ ଭରି ଗଉରବ !
ନିଃସ୍ୱ ଏ ମରମ ନବଜ୍ଞ ବେଦନାରେ
ବନ୍ଧ କେବେ ହୋଇଗଲେ,
ଯିବନ ଯିବନ ମୁଁ ତୁମର ପାଶେ ସଖା !
ଥିବ ମୁଁ ପଡ଼ି କଲବଲେ ;
କାହିଁକି କାହିଁକି ମୁଁ ତୁମକୁ ଭଲ ହେବ,
ମୋହର ଯାବାର ପଥେ
ଏକାକୀ ଗୃଲି ଗୃଲି ମୁଁ ଗୃଲଥିବ ପଥ
କାହାର ମୁହିଁ ନୁହେଁ ସତେ ?
କାହାର ମୁହିଁ ନୁହେ ? ମୋହର ନୁହେ କେହି ?
ଭିନ୍ନ ଏଥି ଜଣୁ ଜଣେ !
ବଗୁରି ଦେଲବେଳେ ଅଶ୍ରୁ କାହିଁପାଇଁ
ନୟନେ ଜାଗେ ପ୍ରତିକ୍ଷଣେ !

## —ଛଅ—

କାହାକୁ ନେଇ ଆମେ କାହାକୁ ଧରି ଆମେ
ଗୃଲିବା ଏତେ ଏତେ କାଳ ?
କାହିଁକି ଆମେ ଏଥି ଆସିଚେ ଜଣେ ଜଣେ
କେ ଯେବେ ନୁହେ ଏଥିକାର ?
କେ ଯେବେ କାହା ପାଇଁ ଟାଳିବ ନାହିଁ ଲୁହ
ଅସୀମ ବେଦନାର ତଳେ,
କା ଗଉରବେ କଏ ଉଲୁସି ନ ଉଠିଲେ,

ଜୀବନ କାହିଁ ଧରା ପରେ ?
ଜଣକୁ ଜଣେ ଛାଡ଼ି ପାରିବ ଏଥି ରହି
ଗୋଟିଏ ନିମେଷ କି ସତେ ?
କୋଟିଏ ଜୀବନର ପରଶ ବାଜିନ କି
ଜଣକ ଚାଲିବାର ପଥେ ?
କାହାର ମୁହିଁ ନୁହେ, ମୋହର ନୁହେ କେହି
ଭିନ୍ନ ଏଥି ଜଣୁ ଜଣେ
ବିଚ୍ଛୁର ଦେଲାବେଳେ, ଅଶ୍ରୁ କାହିଁ ପାଇଁ
ନୟନେ ଜାଗେ ପ୍ରତିକ୍ଷଣେ ।

---

## ସେ'ତ ମୋହର ସାଥି

ସେ'ତ ମୋହର ସାଥି ମହାଧରଣୀ ପରେ
ତା'ରେ ଆଡ଼େଇ ଦେଇ, ମୁଁ ତ ନିୟତ ମରେ !
ତା'ର ବନ୍ଧୁ ମୁହିଁ, ତା'ର ପ୍ରିୟ ଯେ ମୁହିଁ
ମୁଁ ଗୋ ଚାଲିଛି କେଉଁ ଦୂର ଅଜଣା ଭୂଇଁ ?

ମୁଁ ଗୋ ଯୁଆଡ଼େ ଯାଏ ମୋର ଶାନ୍ତି କାହିଁ ?
ଯେବେ, ଟିକିଏ କ୍ଷଣ, ସେ ମୋ ପାଖରେ ନାହିଁ ;
ତା'ର ପରାଣ ବ୍ୟଥାଟିକ ମତେ ହିଁ ଲାଗେ,
ତାରେ ଫିଙ୍ଗି ଦେଲି କେଉଁ ଜଳଧି ଭଗେ !

ତା'ରେ ବକ୍ଷ ଖୋଲି ନାହିଁ କହିଲି କଥା
ତା'ରେ ଫିଙ୍ଗି ଦେଲି, ଦେଇ ଦାରୁଣ ବ୍ୟଥା !
ସେ'ତ କାନ୍ଦୁଅଛି ଖାଲି ଅଶ୍ରୁ ଢାଳି
ମୁହିଁ ଦେଖୁଚି ଜଳ ଜଳ ନୟନ ବାଡ଼ି ।

ତା'ରେ ଚରଣେ ଠେଲି ଦେଇ ଚାଲିଲି ଏକା
କାହିଁ ପାଇବ ବୋଲି ମଧୁମୋହନ ରେଖା;
କାହିଁ କିଛି ତ ହାୟ ମତେ ମିଳିଲା ନାହିଁ
ମୋର, ସବୁ ତ ଅଛି ଖାଲି ତାହାରି ଠାଇଁ

ସେ ଯେ ହୃଦୟ ଭରି ମତେ ସେନେହ ଦିଏ
ତାକୁ ଚରଣେ ଦଳଦେଲି କି ଭଲ କହେ ?
ସେ'ତ ମୋହର ସାଥି ସେ'ତ ମୋହର ସାଥି
ତା'ରେ ଦେଖୁଚ କିଆଁ କରି ଭିନ୍ନ ଜାତି !

ନଭ ଯାଇଚ ଜ୍ୟୋତି ମୋର କପାଳତଳୁ
ମୋର ବକ୍ଷ ପାଲଟିଛି ଭୀଷଣ ମରୁ !
ମୋର ଭିତରେ ମୁହିଁ, ଯେଉଁ ଚିଜକ ଖାଲି
ମରି ଯାଇଚ ତା'ର ସବୁ ଅନ୍ତ ନାଡ଼ି ।

ସେଇ ଶାନ୍ତ ଦବ, ସେଇ ସଚ୍ଚାଗ ଦବ,
ମୋର ଆନନ୍ଦର ସେଇ କେନ୍ଦ୍ର ହବ;
ତା'ରେ ଗୁଡ଼ିଚ ନାଇଁ ତା'ରେ ଗୁଡ଼ିବ ନାଇଁ
ମୋର ଜୀବନ ଗୋଟି ଖାଲି ତାହାରି ପାଇଁ ।

ମୁଁ ଗୋ, ମୋହଠି ଆଉ ନାଇଁ ଗୁଡ଼େଇ ହେବ
ମୋର, ସମସ୍ତ ମୁହିଁ ତାହାରେ ଦେବ,
ତା'ର ପରଶ ପାଇ ଯିବ ସଚ୍ଚାଗେ ଫିଟି
ମୁଁ ଯେ ତାହାର ସେ'ଯେ ମୋର ପରାଣପ୍ରୀତି ।

———

## ବିଦାୟ ! ଆଲମ !

ବିଦାୟ ! ଆଲମ ! ବିଦାୟ ବିଦାୟ ଆଜ
ଗୁଡ଼ିଯାଅ ଦେଇ କିବା ସମ୍ପଦ ରାଜ !
ତୁମେ ଯାଉଅଛ ପଛେ ମୁଁ ରହିଲି ତବ
ଆଉ କି ଦଭବ ମତେ ଅବା ଭରି ଦବ ?

ଯାଉଚ ଆଲମ ! ଯାଉଚ କୁଟୀରେ ରହିଲି
ଫେରି ରହିବି କି ? ଆଉ ଆସିବନି କାଲି ?
ଯାଉଚ ଆଲମ ! ଏ ପଥେ ଦଣ୍ଡେ ରହ
ବ୍ୟଥା ମୋର କିଆଁ ହୁଏ ଏତେ ଦୁଃସହ ?

ଯାଉଚ ଆଲମ ! ହାତ ରଖି ତୁମ ହାତେ
ଆଉ ଟିକେ ମୁହିଁ ଚୂଲବ ତୁମର ସାଥେ
ଆଉ ଟିକେ ମୁହିଁ ତୁମରେ ରହିବ ଚାହିଁ !
କାନ୍ଦିବ ଟିକେ ଲୋଚନୁ ଲୋତକ ବାହି;

ଯାଉଚ ଆଲମ ! ଯାଉଚ କୁଟୀରେ ତବ
ତୁମରେ ଆଉ ମୁଁ କରେ ଟିକେ ଅନୁଭବ;
ଆଉ କେବେ ଦେଖା ଜୀବନେ ହେବ କି ନାହିଁ
ଦଣ୍ଡେ ରହ ହେ ଏଇ ପଥେ ମୋହ ପାଇଁ !

ଯାଉଚ ଆଲମ ! ପଲ୍ଲୀ କୁଟୀରେ ତବ
ସକଳ ମମତା ମାୟା କି ବର୍ଜ ଦବ ?
ମୋ ପାଇଁ ଯାଣି ହେବନି କି ତୁମ ମନ ?
ଭଲ ହେବନି ମୁଁ ଥିଲି ତୁମ ପ୍ରିୟଜନ !

ଯାଉଚ ଆଲମ ! ଏଇ ଆମ୍ବ ଚୂକ୍ଷେତ ତଳେ
ତୁମର ପଲ୍ଲୀ କୁଟୀର ଦଶଇ ମୋରେ;
ମିଶିଯିବ ସେଇ ବନ ବଲ ଚୋଟାମାଳ
ଲେଉଟି ଆଉ କି ଚୁହିଁବନି ମତେ ବାରେ ?

ଯାଉଚ ଆଲମ ! ଦରିଦ୍ର ଏଇ କବି,
ତୁମରେ କାହିଁକି ? ଯାଏ ଏତେ ଅନୁଭବ ?
ଜୀବନେ ତୁମକୁ ଏତେ ପାଇବାର ଭଲ
ବୁଝିପାରେ ଆଜ ହୋଇଗଲୁ ଅନ୍ତର !

ଯାଉଚ ଆଲମ ! ଏ ବାଟ ବୁଲଣି ମୋତେ
ମୁହିଁ ଛାଡ଼ିଯିବ, ତୁମେ ଛାଡ଼ିଯିବ ମୋରେ;
ତୁମେ ମୁହିଁ ଦହେଁ ପରସ୍ପରକୁ ଚାହିଁ
କାନ୍ଦିବା ଟିକେ ଲୋଚନୁ ଲୋତକ ବାହି !

ହେ ମୋର ଆଲମ ! ସ୍ନେହର ଆଲମ ମୋର !
ନବଢ଼ୁ ନବଢ଼ ହୁଏ ବନ୍ଧନ ଡୋର !
ଗଭୀରୁ ଗଭୀର ମମତା ଘନାଇ ଆସେ
ତୁମେ ମୋହ ପାଶେ, ମୁହିଁ ଯେ ତୁମର ପାଶେ !

• •  ଲୁହରେ ଲୁହରେ କଥା କହୁ କହୁ ଖାଲି
ତୁମେ ବୁଡ଼ି ଯିବ; ମୁଁ ତୁମରେ ଯିବ ବୁଡ଼ି !
କେହୁ କାହା ଲୁହ ଆଉ ନ ଦେଖିବା ନାଇଁ,
ଆକାଶ ଧରଣୀ ରହୁଥିବ ଯାହା ଚାହିଁ !!

ହେ ମୋର ଆଲମ ! ପ୍ରାଣର ଆଲମ ମୋର !
ମମତା ଉପରେ ମମତା ବଢ଼ଇ ଘୋର !
ମରମେ ମରମେ ଆଶ୍ଲେଷ ଜାଗି ଉଠେ,
ବୁକୁ ତଳେ ତଳେ କୋହ କମ୍ପନ ଫୁଟେ ।

ହେ ମୋର ଆଲମ ! ହେ ମୋର ଆଲମ ! ପ୍ରିୟ !
ମିଶିଯାଏ ଆଜ ମୋ ଲୁହରେ ତୁମ ଲୁହ !
ମୋ ଆଖିରେ ଟିକେ ମିଶାଇ ତୁମର ଆଖି
"ବୁଡ଼ ତ ପାରୁନ" କହ ହେଲେ ବାରେ ଡାକ !

ଯାଉଚ ଆଲମ ! ଯାଅ ! ମୁ ଲେଉଟି ଯାଏଁ
ପଥପ୍ରାନ୍ତେ ମୁଁ ଅଟକ କମ୍ପା ଚାହେଁ ?
ତମେ ଚାଲିଅଛ ଦୂର ଆଖୁକ୍ଷେତ ଧାରେ
ଫେରିପଡ଼ି କଆଁ ଚାହେଁ ମୁହଁ ତମ ଆଡ଼େ !

ଚାଲିଚ ଆଲମ । ଦୂରୁ ଦିଶିଯାଏ ମତେ
ଠିଆ ହୋଇ ଚାହେଁ ଏ ମାଳ ଝରଣା ତଟେ ;
ଆଖୁକ୍ଷେତ ଧାରେ ସୁଦୂର ପଲ୍ଲୀ ଗାଏଁ
ଅଧେ ଲୁଚ ଅଧେ ଦିଶି ଯାଅ ତୁମେ ପ୍ରାୟେ !

ଚାଲିଚ ଆଲମ ! ଚାଲିଚ କୁଟୀର ଘୁରେ
ରହିଲଣି ଏବେ ମୋହଠାରୁ କେତେ ଦୂରେ !
ତୁମେ ତ ଚାଲିଚ ! ମୁଁ ତ ଫେରି ପାରୁନାଇଁ
ଏ ଝରଣା ତଟେ ରହିଚି ତୁମରେ ଚାହିଁ !!

———

# ସୃଷ୍ଟି

କାହାର ଏଇ ବିପୁଳ ସୃଷ୍ଟି ବୁଲୁଚି ଏଥି ଉଦାସେ ମୁହିଁ
ଦେଖୁଚି ନୀଳ, ପାହାଡ଼ମାଳା ଦେଖୁଚି ନୀଳ କାନନ ଭୂଇଁ ।
ଦେଖୁଚି ଫୁଲ କାନନେ ଫୁଟେ, ଶଇଳ ଚୂଳେ ବାଦଲ ଚରେ
ସନ୍ଧ୍ୟା ହେଲେ ତାରକା ସୋଭି ବସଇ ନୀଳ ଆକାଶ ତଳେ ।
ବର୍ଷା ଆସେ, ବିଜୁଳି ମାରେ, ତପ୍ତଧରା ଶାନ୍ତ ହୁଏ,
ଶରତ ଋତୁ ସ୍ୱପ୍ନପୁରୀ ଧରଣୀପରେ ରଚି ଯାଏ ।
ବସନ୍ତର ସ୍ପର୍ଶ ଲଭି ଫୁଟଇ ପିକ ମଧୁର ଗାନ,
ମଳୟ କେଉଁ ସୁଦୂରୁ ଆସି ମୁଗ୍ଧ କରେ ସବୁରି ପ୍ରାଣ ।

କେତେ ଯେ ସଖା ବନ୍ଧୁ ଏଥି କାହାର ତୁଳେ ଆଳାପ କରେ,
ସେ କେଉଁ ପ୍ରିୟା ବକ୍ଷେ ତଳି ପୀୟୁଷ ପିଏ ସରାଗ ଭରେ !
କିଏସେ ମତେ ନିନ୍ଦା କରେ ସମ୍ମାନ ଭରି ପାଏ କେ ଭଲ
କାହାର ମୁହିଁ ଅବଜ୍ଞାର ପାତ୍ର ହୁଏ ନିରନ୍ତର !
ଉଷ୍ଣ କାର ଅଶ୍ରୁଧାରେ ସିକ୍ତ ହୁଏ ଧରଣୀ ତଳ,
କାହାର ଓଠେ ହାସ୍ୟ ଫୁଟେ ଆନନ୍ଦ ଓ ଗୌରବର ।
କାହାର ଏଇ ବିପୁଳ ସୃଷ୍ଟି ବୁଲୁଚି ଏଥି ଉଦାସେ ମୁହିଁ
ଲକ୍ଷ ଶୋଭା ମର୍ତ୍ତ୍ୟତଳ ନୀରବେ ଯାଏ ନୟନେ ଛୁଇଁ

ପ୍ରଶ୍ନ ଉଠେ ବକ୍ଷତଳେ କାହିଁକି ମୁହିଁ ଏଇଠି ବୁଲେ ?
ଶୁଣଇ ବନ କାକଳି ଧ୍ୱନି, ବସଇ ଦୂର ପାହାଡ଼ ଚୂଳେ
ସାଗରକୂଳେ କାହିଁକି ବସେ ଦେଖଇ ନୀଳ ଊର୍ମିମାଳା
ଫୁଟିଲେ ଫୁଲ ଗନ୍ଧେ ତାର ବିସୋରି ନିଏ ଦୁଃଖ ଜ୍ୱାଳା ।
ନିଶୀଥ ନୀଳ ଗଗନେ ମୁହିଁ କେଉଁ ତାରାରେ ରହେ ଯେ ରୁହି
ସେ ମହାଦୂରେ ବନ୍ଧନ କି ମୋହର ଅଛି ମୁଁ ଜାଣେ ନାହିଁ !
ଶରତ ରାତି କାହିଁକି ମତେ ଲାଗଇ ସତେ ଏଭଳି ଭଲ
ଇଚ୍ଛା ହୁଏ ଜ୍ୟୋତ୍ସ୍ନାଲୋକେ ସନ୍ତରିବି ମୁଁ ଅବିରଳ ।

ଜୀବନେ ଯାରେ କରିଚି ସାଥି ତାହାରି ହାସ ତାହାରି କଥା
କାହିଁକି ମତେ ଲାଗଇ ଭଲ କାହିଁକି ଦିଏ ଏ ମାଦକତା ।
ନିରନ୍ତର ନୟନତଳୁ ଦୈନ୍ୟବୋଳା ଯେ ଲୁହ ବହେ
ତାହାରେ ରୁହିଁ ନୀରବ ହୋଇ କମ୍ପା ମୁହିଁ ଅଟକି ରହେ ?

ଆପଣା ବ୍ୟଥା ବଖାଣି କଏ କହିଲେ ମୋତେ ପଢଏ ବାଣୀ
ମୋହର ନେତ୍ର-ଯୁଗଳୁ କମ୍ପା ବହଇ ଅସରାନ୍ତ ପାଣି ?
ପ୍ରଶ୍ନ ଉଠେ ବକ୍ଷତଳେ କାହିଁକି ମୁହିଁ ଏଇଠି ବୁଲେ !
ଅସୀମ ଭୁଲେ ଛନ୍ଦହୋଇ କି ଶିଶୁ ପାଏ ସୃଷ୍ଟିକୂଳେ ?
ଏ ମହା ସୃଷ୍ଟି କାହିଁକି ମତେ ଲାଗଇ ଏତେ ନିଜର ପର
ଏ ମହା ସୃଷ୍ଟି ପ୍ରତି ରେଣୁରେ ସେନେହ କମ୍ପା ଦିଏ ମୁଁ ଭର ?
ଏତେ ଯେ ଏହୁ ନିଜର ମୋର ଇଚ୍ଛା ନୁହେ ଯିବ ମୁଁ ଛାଡ଼ି
ସୃଷ୍ଟି ପ୍ରତି ରେଣୁରେ କହା ବନ୍ଧା ମୋର ଜୀବନ ନାଡ଼ି !!
ପୃଥକ୍ ମୁହିଁ ଭିନ୍ନ ମୁହିଁ ନମିଷେ ମୁଁ ତ ପାରୁନି ଭଳି
ଭିତରେ ମୋର ସୃଷ୍ଟି-ବୀଣା ନିତ୍ୟ ବାଜେ ପୀୟୂଷ ଢାଳି ?
ସୃଷ୍ଟି ପ୍ରତି ଅନ୍ତରେ ମୁଁ କରୁଚି ନିତି ଆଲିଙ୍ଗନ
ମୋହର ଏଇ ସୃଷ୍ଟି ସାଥି—ଆକାଶ ବଳ ପାହାଡ଼ ବନ !

ମୋହର ଏଇ ସୂର୍ଯ୍ୟ ଚନ୍ଦ୍ର ମୋହର ଏଇ ସାଗର ହ୍ରଦ
ଅସୀମ ଏଇ ଜନତା ମୋର ବକ୍ଷେ ଢାଳେ କି ଆନନ୍ଦ !
ସବୁରି ଭୁଲେ ବନ୍ଧା ମୁହିଁ ଛନ୍ଦା ମୁହିଁ ଅସୀମ କାଳ
ଯୁଆଡ଼େ ବୁଲେ ଦେଖଇ ଯେଣ୍ଣେ ମୋହର ବୁକୁ ରକ୍ତଧାର ।
ଏହାର କୋଳେ ଯାଏ ମୁଁ ହଜ ଅସୀମ କେଉଁ ସମୟ ପାଇଁ
ସୃଷ୍ଟି ତହୁଁ ବଳ ତ ବଡ଼ ମୋହର ଆଉ କେହି ନାହିଁ ।
ଏ ମହା ସୃଷ୍ଟି କି ଭଲ ମତେ ଲାଗଇ ଏତେ ନିଜର ପର
ଏ ମହା ସୃଷ୍ଟି ପ୍ରତି ରେଣୁରେ ସେନେହ କେତେ ଦିଏ ମୁଁ ଭର !!

---

# ହୋଟେଲ-ପିଲା

କାହାର କୁଟୀରନିଧି କାମ କରେ ପ୍ରତିନିତି ହୋଟେଲ ଭିତରେ,
ପାଖ ଦୁଇ ମାସ ହେଲା ମତେ ସେ ପାରନି ଦେଖି,
ମୋ କଥା ସେ ଭାଲେ ବେଳେ ବେଳେ,
ମତେ ମନେ ପକାଏ ସେ ଅନ୍ତରେ ଅନ୍ତରେ ।
ଦୁଇ ମାସ ପରେ ଯେବେ ଆସି ଏଥି ପହଞ୍ଚିଲି ମୁହିଁ
ମୋରେ ଦେଖି କୋଟିନିଧି ପାଇବାର ପରି

ଊଷରେ ଅମୃତ ହାସ ଓଠତଳେ ଉଠିଲା ସଞ୍ଚରି !
ପଚାରିଲି "ଭଲ ସବୁ ତୋର ? କାହିଁକି ଯାଇଚୁ ଝଡ଼ି ?
ଦେହ କି ଖରାପ ଥିଲା ?"
ମୋର ଏଇ ଟିକିକ ସଙ୍ଖୋଳା ପଚରା ଭିତରେ
ତା'ଟିକି ଅନ୍ତର ତଳେ
କିବା ସୀମାହୀନ ଆନନ୍ଦର ମାୟା କରୁଥିଲା ଲୀଳା !
ଦରିଦ୍ର ଗରିବ ଅରକ୍ଷ ପିଲାଟିଏ ସତ !
କିନ୍ତୁ ତା' ହୃଦୟ ତଳେ ଅମୃତର ମଧୁ ଧାରା
କଳତାନ ରଚି ଯେମନ୍ତେ ଚାଲିଚି ସତତ !
ମତେ ସିଏ ଭଲପାଉଏ, ମତେ ସେ ପଚାରେ,
କେବେ ମୁଁ ଫେରିବ ବୋଲି
ଚାହିଁ ଥାଏ ଆଖିଫେଇ ଯେମନ୍ତେ ଚାର ଆଡ଼େ !

ଏ ଅନନ୍ତ ପୃଥିବୀ ଭିତରେ ମୋର କେତେ ସାଙ୍ଗ ସାଥି,
ମୋର କେତେ ପ୍ରିୟ ପରିଜନ,
ମୋର କେତେ ଆତ୍ମୀୟ ସୋଦର,
ସକଳର ଅବଜ୍ଞା ଓ ଅବହେଳା
ମୁହୂର୍ତ୍ତ ମୁହୂର୍ତ୍ତ ଧରି
ମତେ ସୀମାହୀନ କଲବଲ କରୁଥିଲା ବେଳେ,
କେଉଁ ଅଜ୍ଞାତ କୋଣର ଅମୃତ ଅନ୍ତରଟିଏ
ମତେ କେମନ୍ତେ ରଖିଅଛି ଧରି
ଆପଣାରୁ ଆପଣାର କରି !!
ଏକଇ ମୁହୂର୍ତ୍ତ ଛିନ୍ନ-ଭିନ୍ନ ହୋଇ ରହିବାକୁ
ରାଜି ନୁହେ ତାର ସେଇ ଅତଳ ଅନ୍ତର !
କି ମଧୁ ସମ୍ପଦ କରିବଇଁ ଆଶା
ଏଇ ଟିକିକରୁ କିନା ?
ଜୀବନ ଯେଉଁଠି ପ୍ରାଣର ଆଶ୍ଳେଷ ଦେଇ
ଜୀବନରେ ଖାଲି ଭଲ ପାଏ
ସେଇଠି ବିଶ୍ୱର କି, ଅନନ୍ତ ଶିଖା
ପଡ଼ିନାଇଁ ଝଡ଼ି !!
ଟିକିଏ ସ୍ନେହ ମମତା,
ଟିକିଏ ଆଶା ଆଶ୍ୱାସନା,

ପ୍ରାଣବୋଲା ଟିକଏ ସହାନୁଭୂତି;
ଯେବେ କଏ ପ୍ରାଣଭରି ଏଥି
ଦବନାହିଁ ଢ଼ାଳି
ଏଇ ମହା ପୃଥିବୀରେ ବଞ୍ଚି ରହିବାର
ଅଭିଶାପ ଅଭିଶାପ ଖାଲି !!

ହେ ମୋର ବାଳକ !
କିପରି ବୁଝିଲ ଅବା ତମେ
ମୋ ଦରିଦ୍ର ଜୀବନର ଯେତେ ମାନ ଅପମାନ
ଝଡ଼ ଝଞ୍ଜା ବା ଯେତେକ ;
କିପରି ବୁଝିଲ ତମେ ସରଳ ଅନ୍ତର ତବ
ମୋ ଲୁହର ପ୍ରତି ବିନ୍ଦୁ ତଳେ
କି ସମ୍ପଦ କି ଐଶ୍ୱର୍ଯ୍ୟ ଟିକିକେ
ଖୋଜୁଥିଲି ମୁହିଁ,
ଏତେ ଦିନ ଧରି,
ନ ପାଇ ନ ପାଇ କେବେହେ
ଯାଉଥିଲି ହତାଶାର ଅନନ୍ତ ସମୁଦ୍ର ତଳେ ବୁଡ଼ି !
କେଉଁ ସୁଦୂର ପଲୀର ଅବୋଧ ବାଳକ ତମେ !
କିପରି ଜାଣିଲ ମୋର
ହୃଦୟ ତଳର ଗୋପନ ଯନ୍ତ୍ରଣା !
ଦେବା ପାଇଁ ଯାରେ ଅପସାରି,
ଶତ ଚେଷ୍ଟାକରି ପାରିନାଇଁ ମୁହିଁ,
ଗୃଲିଚି ବିପନ୍ନ ପଥିକ ପରି ଭୁଟଳିଗେ
ଆତୁରତା ଭରା କରଯୁଗଳ ପ୍ରସାରି ।
କି ସମ୍ପଦ ତୁମରେ ମୁଁ ଦେବି ?
କିଛୁ ପାରିବିନି ଦେଇ,
ସୀମାହୀନ ମମତାର
କାହିଁ ପୁରସ୍କାର ।
ତୁମେ ରଖିଗଲ ଯେଉଁ ସ୍ୱର୍ଣ୍ଣଗୋର
ମୋ ହୃଦୟ ବେଦିକାର ପରେ,
ରହିଥିବ ଯୁଗ ଯୁଗାନ୍ତର ।
ସେଇ ଟିକି ଧରି,

ପ୍ରାଣର ଅମୃତ ହାସ
ବୁକୁତଳୁ ଉଠୁଥିବ ଝରି;
ଜୀବନରେ ସେଇଟିକ ଗୃହେ
ତା' ଭିତରେ ପ୍ରାଣର ଯେ
ସାର୍ଥକତା ସବୁଟିକ ପାଏ !!

——

# ଆଶ୍ରୟ

ସବୁ କାହିଁ ଲୁଚିଗଲ, ତୁମେ କନ୍ତୁ ପାରିଲନ ଲୁଚି,
ଆଲୁଅ ଭିତରେ ତମେ, ଅନ୍ଧାର ଭିତରେ ତମେ,
ଆଲୁଅ ଓ ଅନ୍ଧାରର ଲୁଚକାଳି ଖେଳରେ ବି ତମେ,
ଏ ଜୀବନର ଏ ପାରରେ ତମେ, ଆର ପାରରେ ବି ତମେ !
ଆନନ୍ଦର, ଅମୃତର, କଲ୍ୟାଣର, ସବୁ ଆଶା ଭରସାର,
ସକଳ ସ୍ୱପ୍ନର
ଗୋଟିଏ ସୁନ୍ଦର ପ୍ରାଣବନ୍ତ ଛବି ପରି
ରହିଅଛ ମୋ'ର ହୋଇ ଜଣେ !!

ମୁଁ ରାଜ-ରାଜେଶ୍ୱର ହୁଏ, ଦାଣ୍ଡର ଭିକାରୀ ହୁଏ,
ସାଧାରଣ ନଗଣ୍ୟ ଜୀବ ହୁଏ,
ଅଥବା ପୋକ ମାଛି ପରି, ରାଜପଥର କେଉଁ କଡ଼େ ପଡ଼ି
ଧରା ପୃଷ୍ଠରୁ ନିଶ୍ଚିହ୍ନ ହୋଇ ଯାଏଁ ;
ମୋର ସେଥିରେ ଆନନ୍ଦ ବା ଦୁଃଖ ନାହିଁ ;
ମୁଁ ଗୋଟିଏ ସବୁଜ ଘାସ ପତ୍ର ପରି
ତୁମ ବୁକୁର କେଉଁ ଅଜଣା କୋଣରେ ଟିକଏ—
ହଲି ଯାଉଥାଏଁ,
ମତେ ସେଇ ଗଉରବ ଟିକକ ଦିଅ !
ସେଇତ ମୋର ପୃଥିବୀରେ ଅନନ୍ତ ଆଶ୍ରୟ !!

——

# ଟିପ୍ପଣୀ

## ସୋରଡ଼ା ଘାଇର ବନ୍ଧ ଉପରେ

ଗଞ୍ଜାମ ଜିଲ୍ଲାରେ ସୋରଡ଼ା ଘାଇର ଦୃଶ୍ୟ ଅତ୍ୟନ୍ତ ରମଣୀୟ ! ଆସିକା ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ କବି ଥରେ ସୋରଡ଼ା ବୁଲି ଯାଇଥିଲେ । କବି ତାଙ୍କର ଜଣେ ସାହିତ୍ୟିକ ବନ୍ଧୁ ଶ୍ରୀମାନ ବୃନ୍ଦାବନ ପାଢ଼ୀଙ୍କ ସହିତ ସୋରଡ଼ା ଘାଇର ବନ୍ଧ ଉପରେ ବସି ଜ୍ୟୋତ୍ସ୍ନା ରାତିରେ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ଏହା ପୂର୍ବରୁ କବି ଓ ତାଙ୍କର ଉକ୍ତ ବନ୍ଧୁ ଗଞ୍ଜାମ ଜିଲ୍ଲାର କୌଣସି ଗୋଟିଏ ଶିକ୍ଷାନୁଷ୍ଠାନରେ ଏକତ୍ର ଶିକ୍ଷକତା କରୁଥିଲେ ଏବଂ ଛାତ୍ର-ସମାଜର ସାଂସ୍କୃତିକ ଦିଗର ବିକାଶ ପାଇଁ ଯଥେଷ୍ଟ ଧ୍ୟାନ ଦେଉ-ଥିଲେ । ଫଳରେ ଛାତ୍ରସମାଜ ଓ ଜନସମାଜରେ ଉଭୟ ବନ୍ଧୁଙ୍କର ଯଥେଷ୍ଟ ଆଦର ଥିଲା । ସ୍ୱାଧୀନଚେତା କବି ଓ କବିବନ୍ଧୁ ଶ୍ରୀମାନ୍ ବୃନ୍ଦାବନ ଉକ୍ତ ଶିକ୍ଷାନୁଷ୍ଠାନରେ ଅସତ୍ୟ ଅନ୍ୟାୟ ଅଧର୍ମ ଦେଖିଲେ ସହି ପାରୁ ନ ଥିଲେ । ଏଥିଲାଗି କବି ଓ ତାଙ୍କର ବନ୍ଧୁ ଉକ୍ତ ଶିକ୍ଷାନୁଷ୍ଠାନର ପ୍ରଧାନ କର୍ମକର୍ତ୍ତାଙ୍କର ଚକ୍ଷୁଶୂଳ ହେଲେ ଏବଂ ସେଇ ପ୍ରଧାନ କର୍ମକର୍ତ୍ତା କବି ଓ ତାଙ୍କ ବନ୍ଧୁଙ୍କୁ ନାନା ଭାବରେ ହଇରାଣ କରି ବହୁ ଦୂର ଜାଗାକୁ ବଦଳି କରିଦେଲେ । 'ମାରୁଆ' ପାହାଡ଼ ଖଲିକୋଟର ସ୍ୱନାମଧନ୍ୟ ପାହାଡ଼ ଓ 'ନର୍ମଳଝର' ନାମକ ଗୋଟିଏ ଝରଣା ମାରୁଆର ପାଦତଳେ ବହି ଯାଉଛି । କବି ଓ ତାଙ୍କ ବନ୍ଧୁ ସେଠି ଶିକ୍ଷକତା କରୁଥିବା ବେଳେ ଗୋଟିଏ ବସାରେ ରହୁଥିଲେ ।

## ଗୋଲିବୁ କାନ୍ଦ·········

ଖଲିକୋଟ ହାଇସ୍କୁଲରେ ଶିକ୍ଷକତା କରୁଥିବାବେଳେ ଏ କବିତାଟି ଲେଖାଯାଇଛି । ଖଲିକୋଟରେ କବିଙ୍କ ବସା ପାଖରେ ଗୋଟିଏ ଗାଈ ଚରୁଥାଏ । ତାର ଗୋଡ଼କୁ କିଏ ଜୋରରେ ବାଡ଼େଇ ଦେଇଥିବାରୁ ଗାଈଟି ମର୍ମନ୍ତୁଦ କଷ୍ଟ ପାଉଥାଏ ଏବଂ ଏଣେ ତେଣେ ବଡ଼ କଷ୍ଟରେ ବୁଲି ଚରୁଥାଏ । ଗାଈଟିର ଏଇ ଅସହାୟ ଓ କରୁଣ ଅବସ୍ଥା କବିଙ୍କ ଲେଖନୀରେ ରୂପାୟିତ ହୋଇଛି ।

## ବିଶ୍ୱନାଥ ବ୍ରହ୍ମା

ଶ୍ରୀମୁକୁନ୍ଦପୁର ପୁରୀ ଜିଲ୍ଲାରେ ଗୋଟିଏ ପ୍ରଧାନ ବ୍ରାହ୍ମଣ ଶାସନ । ଏଇ ଶାସନରେ ବିଶ୍ୱନାଥ ବ୍ରହ୍ମା ବୋଲି ଜଣେ ସାମନ୍ତ ବ୍ରାହ୍ମଣ ଥିଲେ । ପ୍ରତିଦିନ ତାଙ୍କ ପାଇଁ ଭାତ ବଢ଼ାହେଲାବେଳେ ସେ ତାହା ନିଜେ ଭୋଜନ ନ କରି ଗୋଟିଏ ଗରିବ ଅତିଥିକୁ ଡାକି ଦେଇ ଦିଅନ୍ତି । ସେ ଏପରି ପ୍ରାୟ ପ୍ରତିଦିନ କରନ୍ତି ଏବଂ ଘରେ ଯାହା କିଛି ଅଳ୍ପ ଭାତ ତର୍କାରି ଥାଏ, ତାକୁ ଆନନ୍ଦରେ ଖାଇ ଚଳିଯାନ୍ତି ।

## କବିର ଜବାବ,

କବିଙ୍କର ଗୋଟିଏ ଉଚ୍ଚକୋଟୀର କବିତା 'ମୃଣ୍ମୟୀ ହାଡ଼' 'ରୂପାୟନ' କବିତା ପୁସ୍ତକରେ ପ୍ରକାଶ ପାଇବା ପରେ ଗଞ୍ଜାମ ଅଞ୍ଚଳର କୌଣସି ସ୍କୁଲର ଜଣେ ପ୍ରଧାନ ଶିକ୍ଷକ 'ମୃଣ୍ମୟୀ ହାଡ଼' ର କେତେକ ପଂକ୍ତି ତାଙ୍କ ପ୍ରତି ଆକ୍ଷେପ କରି ଲେଖା ଯାଇଛି ବୋଲି, କବିଙ୍କ ବିରୋଧରେ ଅଭିଯୋଗ ଆଣିଥିଲେ । କବିଙ୍କୁ କର୍ମକ୍ଷେତ୍ରରୁ ବାହାର କରିଦେବା ପାଇଁ ଭୂମ୍ମଳ ଚେଷ୍ଟା ଲଗାଇଥିଲେ । ଏ ସବୁ ଦେଖି କବିଙ୍କ ପ୍ରାଣରେ ସେତେବେଳେ ଯେ ଭାବ ଆସିଥିଲା, 'କବିର ଜବାବ' କବିତାରେ ତାହା ରୂପାୟିତ ହୋଇଛି ।

## ବିଦାୟ ! ଆଲମ !

କବି ଗୁରଣ୍ଡି ହାଇସ୍କୁଲରେ ଶିକ୍ଷକତା କରିବା ସମୟରେ କବିତାଟିର ସୃଷ୍ଟି । ଆଲମ କବିଙ୍କର ଜଣେ ପ୍ରିୟତମ ଛାତ୍ର । ଆଲମ ମାଟ୍ରିକ ପରୀକ୍ଷା ପରେ ସ୍କୁଲରୁ ବିଦାୟ ନେଇ ଗଲାବେଳେ, କବି ତାଙ୍କୁ ଅଧବାଟ ଯାଏ ଛାଡ଼ିବାକୁ ଯାଇଥିଲେ । କବି ଭାବିଥିଲେ ତାଙ୍କ ପ୍ରିୟ ଛାତ୍ରଙ୍କ ସହ ବୋଧହୁଏ ଆଉ ଦେଖା ହେବନି । ଗୁରଣ୍ଡିର ବହୁସ୍ଥାନରେ ଆଖୁକ୍ଷେତମାନ ଦେଖାଯାଏ ।

———

# ଗୋଟିଏ ମତ

ଓଳସିଂହରୁ କଟକ, ଭଦ୍ରକ, ଆଠମଲ୍ଲିକ ଇତ୍ୟାଦି ବିଭିନ୍ନ ସ୍ଥାନରେ ମୁଁ କୃଷ୍ଣଚନ୍ଦ୍ରଙ୍କୁ ଦେଖି ସୁଖୀ ହୁଏ। ଅନେକ ସମୟରେ ସେ ଚିନ୍ତାଶୀଳ ବା ବିଷଣ୍ଣ ଦେଖାଯାନ୍ତି। ସେଟା time spirit ବା ସମୟର ଭୂତ ହୋଇପାରେ। ଯେତେବେଳେ କବି ତ୍ରିପାଠୀଙ୍କୁ ମୁଁ ଦେଖେ, ସେତେବେଳେ ତାଙ୍କ କବିତା ଶୁଣିବାର ସୁଯୋଗ ପାଏ । ସେ ସ୍ଥିର ଜୀବନରୁ କବିତା ଲେଖି ଆସୁଛନ୍ତି !

ଅନେକ ତାଙ୍କୁ ଗଳ୍ପ ଲେଖ, ଉପନ୍ୟାସ ଲେଖ, ନାଟକ ଲେଖ ବୋଲି କହିଥାନ୍ତି। କିନ୍ତୁ କୋଇଲି ଯେପରି ଗାଏ ମୟୂର ସେପରି ଗାଏ ନାହିଁ । କିମ୍ବା ମୟୂର ଯେପରି ନାଚେ କୋଇଲି ସେପରି ନାଚେ ନାହିଁ। ଏହା କାମ ସେ କରିପାରିବ ନାହିଁ ବା ତାହା କାମ ଏ କରିପାରିବ ନାହିଁ । ତେଣୁ କୃଷ୍ଣଚନ୍ଦ୍ରଙ୍କୁ ଏପରି ଲେଖ, ସେପରି ଲେଖ କହିବାର ଆବଶ୍ୟକତା କିଛି ନାହିଁ । ସେ କବି, କେବଳ କବି, ସେ ଜୀବନ ସାରା କେବଳ କବିତା ହିଁ ଲେଖିବେ !

କବି କୃଷ୍ଣଚନ୍ଦ୍ରଙ୍କର କବିତା ପଢ଼ିଲାବେଳେ ପାଠକକୁ ବହୁ ପଂକ୍ତି ପାଖରେ ରହିଯିବାକୁ ହୁଏ, ଭାବିବାକୁ ପଡ଼େ । ସାମୟିକ ନାନା ଘଟଣାରୁ ଚିରନ୍ତନ ସତ୍ୟ ପ୍ରକାଶ ପାଏ ! ଏହି ଚିରନ୍ତନ ସତ୍ୟ ତାଙ୍କ କବିତାକୁ ଅମରତ୍ୱ ଦାନ କରିଛି—

କବି ଗୂଢ଼ବାଦୀ ନୁହନ୍ତି । ତାଙ୍କ ଭାବ ପାଠ ମାତ୍ରେ ସ୍ପଷ୍ଟ ବୁଝାପଡ଼େ । କବି କୃଷ୍ଣଚନ୍ଦ୍ରଙ୍କର ଚିନ୍ତା ସବୁବେଳେ ଅନ୍ତର୍ମୁଖୀ । ଗୋଟିଏ କଥା ମୁଁ ଆମଦେଶର ସବୁ କବିମାନଙ୍କର ଥିବାର ଲକ୍ଷ୍ୟ କରିଚି— ସେଟା ହେଉଚି ଦୁଃଖର କଥା, ବେଦନାର କଥା—କବି କୃଷ୍ଣଚନ୍ଦ୍ରଙ୍କର କବିତା ସରସ, ତାହା ଅଶ୍ରୁସିକ୍ତ, ଲବଣାକ୍ତ । ଏହି ଅଶ୍ରୁସିକ୍ତ ଲବଣାକ୍ତ କବିତା ମତେ ଭଲ ଲାଗେ, ସମସ୍ତଙ୍କୁ ଭଲ ଲାଗେ । ଦୁଃଖରେ ସହାନୁଭୂତି ସମସ୍ତେ ଲୋଡ଼ନ୍ତି । କବି କୃଷ୍ଣଚନ୍ଦ୍ର ସେଥିପାଇଁ ଦୁଃଖୀ ଦରିଦ୍ର, ପାପୀ ତାପୀ ସମସ୍ତଙ୍କୁ ଆପଣାର ବୁକୁରେ ଟେକି ନେଇଛନ୍ତି !

କୃଷ୍ଣଚନ୍ଦ୍ରଙ୍କ ଭାଷାରେ ସରସତା ଅଛି, ଓ ଓଜ ଅଛି । ତାଙ୍କର ଜୀବନ-ନିସୃତ ବହୁ କବିତା ଓଡ଼ିଆ ସାହିତ୍ୟରେ ଅମର ସମ୍ପଦ ହୋଇ ରହିବ !

୧୯୩୮

**ଲକ୍ଷ୍ମୀ ନାରାୟଣ ସାହୁ**
ଭାରତ ସେବକ ସମିତି, ସଭ୍ୟ

# ମୁଁ

ମୋର ଜୀବନ ନୁହଇ ଆଜର ଗୋ ପାଣି ଫୋଟକା,
ମୁଁ ତ ଅସୀମ କାଳର କପାଳେ ଯିବନ ନଭ ଗୋ !
ମୁଁ ଗୋ ଏତେ କାହିଁ ପାଇଁ ହେବ ଅତରଙ୍କ ତାଠକା ?
ମୁଁ ଗୋ ମୋହର କାମଠି ହସି ହସି କରୁଥିବ ଗୋ !

ମୁଁ ଗୋ ଚିରସନାତନ ଶାଶ୍ୱତ ଅବିନାଶୀ ଗୋ,
ମୋର ଜୀବନ ଗୋ ଖାଲି ଜୀବନ ଜୀବନ ଜୀବନ;
ମୁଁ ତ ମହାବିଶ୍ୱର ଆଲୋକେ ଉଠିବ ଭାସି ଭାସି ଗୋ,
ମୁଁ ଗୋ ମହା ମହାବିଶ୍ୱରେ ମୁକ୍ତ ମଧୁର ପାବନ !

ମୋର ଉଜ୍ଜ୍ୱଳରେ ଖାଲି ଅମୃତ ଝର ଝରଇ,
ମୁଁ ଗୋ କ୍ଷୁଦ୍ର ନୁହଇ ବିରାଟ, ଉଦାର ମହାନ,
କୋଟି ଅମୃତ ଆଶା ବୁକୁତଳେ ମୋର ଭରଇ,
ମୁଁ ଗୋ ଆନନ୍ଦ ଜଳେ କରୁଥିବ ନିତ ସ୍ନାନ !

ମୋର ଦୁଃଖ ବେଦନା ପୁଲକ ଗୋ ସବୁ ସମାନ,
ମୁଁ ଗୋ ସବୁରେ ଦେଖିବ ଜୀବନ ମୋହନ ବିଳାସ,
ମୁଁ ଗୋ ମୋହର ଭିତରେ ଦେଖିବ ବିଶ୍ୱ-ବିତାନ
ମୋର ନାଇଁ ନାଇଁ ନାଇଁ ଦାରୁଣ ଦୁଃଖ ପରିହାସ ।

ମୁଁ ଗୋ ସତ୍ୟ, ଚିରସୁନ୍ଦର ଶିବ ଶୁଦ୍ଧ,
ମୁଁ ଗୋ ସକଳର ଲାଗି ଜାଗିଛି ଏ ମହାଭୁବନେ,
ମୁଁ ଗୋ ସବୁରି ଭିତରେ ହୋଇ ଉଠେ ଉଦ୍‌ବୁଦ୍ଧ,
ମୁଁ ଗୋ କଲ୍ଲୋଳ ଉଠେ ବିଶ୍ୱ ଆକାଶ ପବନେ !!

---

# ଜୀବନ ପଥ

ଯେ ମାଟି ଉପରେ ଭିକ୍ଷୁକ ମାଗେ ଭିକ
ଦୁଆରୁ ଦୁଆରେ ଶତ ନାରଖାରେ ବୁଲି,
ସେଇ ପଥେ ମତେ କରିଦଅ ହେ ପଥିକ
ତା' ଘାବ ଦଇନ ବୁକୁ ପରେ ନିଏ ତୋଳି ।

ଯେ ମାଟି ଉପରେ ଚଷା ଋଣଭାର ସହି,
ଘରଛାଡ଼ି ବୁଲେ ସାଉର ନିର୍ଯ୍ୟାତନେ,
ନୟନେ ଲୋତକ ବକ୍ଷେ ବେଦନା ବହି
ଏ ଧରଣୀ ପରେ ଗଣାହୁଏ ନାହିଁ ଜଣେ ।

ସେଇ ଥାନେ ମୋତେ ଜନମ ଦିଅ ଆହେ ନାଥ !
ତାହାର ପାଇଁ ମୁଁ ରୁଧିର ଦିଗାଡ଼ି ଗୃଲେ
ଲକ୍ଷ ପ୍ରାଣୀରେ ପୋଷିତ ଯାହାର ହାତ
ବକ୍ଷ ସହେ ନା ତା' ଅଙ୍କୁର ହାହାକାରେ ।

ଯେ ମାଟି ଉପରେ ପଙ୍ଗୁ ଓ ପଦାନତ
ଅପମାନ ଭରେ ଗୃଲି ନ ପାରଇ ପଥ,
ପଲକେ ପଲକେ ତା' ମରମ ମନୋରଥ
ପ୍ରତି ପଦେ ନତ ହୋଇ ଉଠେ ପ୍ରତିହତ,

ତାହାର ବକ୍ଷେ ଆଣେ ମୁହିଁ ଜାଗରଣ
ଉନ୍ମାଦନାର ବହ୍ନି ଗରବେ ଜାଳେ
ସେ ଘନ ଗ୍ରଇଜେ ପଡ଼ୁ ଏ ଚରଣ ମମ
ତା' ଲଗି ଜୀବନ ହସି ହସି ଦେଇପାରେ ।

ଯେ ମାଟି ଉପରେ ଶତ ପୀଡ଼ିତର ଓଠ
ଆକୁଳେ ମାଗଇ ଭିକ୍ଷା ଦିବସ ରାତି
ବୃଲେ ମୁଁ ହେ ସଖା । ନିତ୍ତ ସେ ଗ୍ରଇଜ ତଟ
ସକଳର ହୁଏ ଅମରଣ ସଖା ସାଥି ।

———

# ପରଶ

ନୀଳ କୁବଳୟ ପରି ଏ ନୟନ ଦୁଇ
ମତେ ଭଲ ଲାଗେ ଚାହିଁ ରହୁଥିବ ମୁହିଁ ;
ଧରଣୀର ଯେତେ ଜ୍ଞାନବିଜ୍ଞାନ କଥା,
ଲୋଡ଼ା ନାଇଁ ତହିଁ, ନାଇଁ ମୋ ସାର୍ଥକତା ।

ଏଇ ଯେ ତୁମର ଭୁଜ-ବଲୟ ବାଳା !
କଣ୍ଠେ ବେଢ଼ାଇ, ଗାଇବ କବିତାଧାରା;
ତା’ ତହୁଁ ମୋହର ଅଧିକ ବିଭବ କାହିଁ ?
ସେ ଯେ ସଖି ! ବଡ଼ ସମାନ ମୋହ ପାଇଁ ।

ଏଇ ଯେ ତୁମର ଗଣ୍ଡଯୁଗଳ ସହି !
ପାରିଜାତ-ଫୁଲ-ପଖେ ଗଢ଼ିଛି ବିହି,
ମରମ ଭରି ମୁଁ ଦେଉଥିବ ଚୁମ୍ବନ
ନିବଡ଼ ନିବଡ଼ କରି ପ୍ରାଣ ବନ୍ଧନ ;

ଓଠପୁଟେ ତବ ଲଳିତ ମାଣିକ-ହାସ
ସୃଷ୍ଟିର ସବୁ ଶିରୀ ଯହିଁ ପରକାଶ;
ପିଉଥାଏଁ ମୁହିଁ ରକ୍ତ ମଦିରା ପରି
ବିରତ ନ ହୋଇ ଜନମ ଜନମ ଭରି ;

ଚରଣର ଏ ଯେ ମୃଦୁ ମନ୍ଥର ଗତି
ଚାହିଁଥାଏ ମୁହିଁ ଅପଲକ ଆଖି ତାଳ ;
ପ୍ରତି ପଦ ପାତେ ଫୁଟାଉ ପଦ୍ମକଳ
ଦିନ ବିତୁ ସେଇ ସୁଷମା ଲକ୍ଷ୍ୟ କରି ।

ଓଠର ଏ ଯେଉଁ ମୁଗ୍ଧ ମଧୁର ବାଣୀ
ଟିକି ପାପିଆର କଣ୍ଠେ ନ ଥିବ ରାଣୀ !
ସେଇ ବାଣୀ ମୋର କାନ ଶୁଣୁ ଅବିରତ
ସେଇ ଯେ ମୋହର ପ୍ରାଣର ପୀୟୂଷ ପଥ ।

ତୁମ ବୁକୁତଳେ ସଞ୍ଚିତ ମୋହପାଇଁ
ଯେ ସେନେହଟିକ, ଭୁବନେ ନ ଥିବ କାହିଁ !
ବକ୍ଷେ ବକ୍ଷ ଭରି ଆଗୋ ମଦାଳସି !
ସେ ସେନେହ ମୋରେ ଦେଉଥାଅ ହସି ହସି ।

ତୁମରି ରୂପର ଜୁଆରେ ମୁଁ ଯାଏ ଭାସି
ତୁମରି ସେନେହେ ଉଠେ ମୁଁ ଉଦ୍‌ଭାସି ।
ତୁମରି ସକଳ ଅଙ୍ଗେ ବଳସି ଉଠେ,
ତୁମରି ପରଶେ ସୁନ୍ଦର ହୋଇ ଫୁଟେ ।

---

# ନେଇଯାଅ ସେଇ ରାଇଜେ

ଯହିଁ ମାଳ ଧାନକ୍ଷେତ ନୃତ୍ତ ମାଳ ନେତ ଉଡ଼ାଏ,
ଯହିଁ ଆଷାଢ଼ ବରଷା ବଳବାଡ଼ ଜଳେ ବୁଡ଼ାଏ,
ଯହିଁ ଚଷାପୁଅ ଗୀତ ଛନ୍ଦେ ପବନେ ଭାସଇ,
ଯହିଁ କୁସୁମ ଗନ୍ଧ ସମୀରଣେ ଥରି ଆସଇ,
ଯହିଁ କୂଳ ଭରି ନଈ କୁଳୁ କୁଳୁ ତାନେ ବହଇ,
ଯହିଁ ଫୁଲ କାନେ ଅଳି ଗୁନ ଗୁନ କଥା କହଇ,
ଯହିଁ ସବୁଜ ଶଇଳ କପାଳେ ଉଡ଼ଇ ବଳାକା,
ଯହିଁ ବିଦ୍ୟୁତ ହାସେ ଜଳଦ ଧୀପ୍ତ ଶଳାକା ।
ଯହିଁ ନିଜ'ର ବହେ ଡେଇଁଣ ଶିଳାରୁ ଶିଳାରେ,
ଯହିଁ ନୃତ୍ୟ କରଇ ମୟୂର ଅମର ଲୀଳାରେ,
ଯହିଁ ସ୍ୱର୍ଣ୍ଣ ଶିଶୁର ଦରୋଟି ବଚନ ଫୁଟଇ,
ଯହିଁ ପଲ୍ଲୀ-ବାଳାର ସରଳ ସେନେହ ଉଠଇ,
ଯହିଁ ଧନୀ-କାଙ୍ଗାଳ ସମାସୀନ ସମ ଆସନେ,
ଯହିଁ ଧରଣୀ ଗୃଳତ ସତ୍ୟ ଓ ନ୍ୟାୟ ଆସନେ,
ଯହିଁ ସ୍ୱାଧୀନ-ତୂର୍ଯ୍ୟ ବାଜଇ ମତ୍ତ ଗରବେ,
ଯହିଁ ସଂଯମ ସହ ସାଧନା ଖେଳଇ ନୀରବେ—
ତହିଁ ରହିଥିବ ମୁହିଁ କୋଟି ଦିନ ଯିବ ବହି ଯେ,
ମୋରେ ନେଇଯାଅ ମୋର ସେଇ ଇପ୍‌ସିତ ରାଇଜେ ।

---

# ସେଇଟି

ନିତ ବୁଲି ଆସେ ଏ ନଈ ପୁଳିନେ କାହିଁକି ?
କିବା ସମ୍ପଦ ଅଛି ଏଥି ମୋହ ପାଇଁକି ?
ସକାଳେ ଆସେ ମୁଁ, ଆସେ ସନ୍ଧ୍ୟାରେ ନିସୂତେ
ନିଶୀଥେ ଆକାଶେ ଗୁହେଁ ଏଥି ବୁଲି କିସୂତେ
ବୁଦାରୁ ବୁଦାକୁ ଲଠାରୁ ଲଠାକୁ ବୁଲଇ
କଣ୍ଢେଇକୋଳି ଶିଶୁ ସମ କାହିଁ ତୋଳଇ ;

ଗୁହେଁ କାହିଁ ବସି ତୃଷ୍ଣା ଜଡ଼ିତ ନୟନେ
ମାଳ ଦୁବଘାସ ଦୋଳିବା ପବନ ଅୟନେ ।
ତ୍ରସ୍ତ ବାଲିକୁଦେ ଚଢ଼ି ଠିଆହୁଏ ଧୂଳିକେ-
ଲାଗେ ମୁଁ ବୁଲୁଚି କି ଅବା ନୂତନ ମୁଲକେ !
ବନ୍ଧ ଗଡରେ ଗୁଳଚି ଏ ନଈ ସୁଦୂରେ
ଦୁଇ କୂଳେ ଘଞ୍ଜେ ବନ ପ୍ରାନ୍ତର ମଧୁରେ

ଭଦଭଦଳିଆ ତରୁଡାଳେ କାହିଁ ଉଡ଼ିଲେ
ନାଚିଉଠେ ମୋର ଅନ୍ତର କେତେ ଭଙ୍ଗୀରେ ।
ଶାନ୍ତ ଶୀତଳ ସାହାଡ଼ ପବନ ପରଶି—
ମୋ ଦେହେ କି ଅବା ଅମୃତ ଦ୍ରବ ବରଷି ;
ଯେତେଥର ବୁଲେ ସେତେଥର ଜାଗେ ବାସନା,
ଏଥି ବୁଲନ୍ତି ନ ମାନି କାହାର ଶାସନା ।

ବାଲୁତର ସାଥି ଏଇ ମୋର ଠିକ ନଈଟି
ଦେଖି ମୁଁ ଆସୁଚି ଏଭଳି ଯାଉଚି ବହିଟି !
ତା'ବୁକୁର ପ୍ରତି କନକ ସିକତା ରେଣୁରେ
ବାଜି ଉଠେ ମୋର ଅନ୍ତର-ସ୍ମୃତି ବେଣୁରେ !
ତା' ପ୍ରତି ଢେଉରେ ବନ୍ଧା ମୋହର ହୃଦୟ
ମୋ ବ୍ୟଥା ବୁଝେ ତା' କଳତାନ ହୋଇ ସଦୟ :

ସନ୍ଧ୍ୟାରୁ ମୁଁ ଯେ ଘେନି ଅଧଯାଏ ଏଇଟି
ମନ କଥା ମୋର କହେ ଯା'ରଖି' ଥିଏ ଯାଇଛି

ପ୍ରତି ଲହରୀରେ ପ୍ରତି ବାଲିକୁଦେ ଗୃହ୍ନିଁ ଯେ
ବେଦନାର ଗାଥା ମାରବେ ମୁଁ ଯାଏ ଗାଇଯେ !
ଏ ଧରଣୀ ପରେ କିଏ କେତେ କଥା କହିଲେ—
ନାକ ଛୁଆଡ଼, ସବୁ ଆସି କହେ ପହିଲେ ।

ଝର ଝର ଝର ମୋ ଆଖିର ଲୁହ ଝରଣା
ବୁଝେ ଏଇ ନଈ କନକ-ସିକତା-ବରଣା !
ଏଇ ଘାସ ଶେଯ ଏଇ ବାଲିକୁଦ ଭିତରେ
ଗୋଟି ଗୋଟି ମୋର ରହିଚ ଜୀବନ ଗୀତରେ !
ବାଲ୍ୟତର ସାଥୀ ଏଇ ମୋର ଠିକି ନଈଟି
ଦେଖି ମୁଁ ଆସୁଚ ଏଭଳି ଯାଉଚ ବହିଟି ;

ବହି ସେ ଚାଲିଚ, ବହି ଚାଲିଥିବ ସୁଦୂରେ
କାଳ କାଳ ଧରି, କଳତାନ ତୋଳି ମଧୁରେ !
କୂଳେ କୂଳେ ତାର ବୁଲି କେ ପାହାଡ଼ ବାଳିକା
ତୋଳୁଥିବ ଶାଗ, ମଞ୍ଜୁ-କୁସୁମ କଳିକା,
ନଡ଼ା କାଟୁଥିବ ଗଉଡର ପୁଅ କାହିଁ ଯେ
ପଧାନ ଝିଅରେ ଆଖି ମାରୁଥିବ ଗୃହ୍ନିଁ ଯେ ;

ଦୁଃଖିନୀ କିଏ ଆସୁଥିବ ଘସି ଗୋଡାଇ
କହୁଥିବ "ସେ' ଯେ ଚାଲିଗଲେ ସବୁ ତୁଟାଇ,
ଭିତରଟା ଯାକ ବେଦନାରେ ଯାଏ କହଳି
ବଞ୍ଚିଛୁ ଯାହା ଗୃହ୍ନିଁ ଏ ବାଲ୍ୟତେ ମୋହରି ।"
କ୍ଲାନ୍ତ ପଥିକ ଗଣ୍ଠିଲି ଥୋଇ କୂଳରେ
ତୃଷା ମେଣ୍ଟାଇ ବସିଥିବ ତରୁ ମୂଳରେ ;

କୂଳବଧୂ କାହିଁ ନେଉଥିବ ଜଳ-କଳସୀ
ବାସ ଉଡ଼ୁଥିବ ମନ୍ଦ ମରୁତ ପରଶି ।
କୃଷକ ବାଳିକା ମିଳି ଦଶ ବାର ସରକ
ତୋଳୁଥିବେ ତାର ଝାରେ ଝାରେ ଦୁଧ ଖରକ (୧)
ଚରବାନ ଲାଗିଥିବ କେତେ ଲୀଳାଖେଳା ଯେ
ବଢ଼ୁଥିବ ମଧୁମୟ ତା'ର ବାଳିବେଳା ଯେ ;

---

(୧) ଏକ ପ୍ରକାର ଶାଗ

କେତେଦିନ ପରେ ଗୁଡ଼ିବ ନିଖିଳ ଧରଣୀ
ମନେ ପଡ଼ୁଥିବ ମାତ୍ର ତାର ଘର ସରଣୀ ।
ଦିଶି ଯାଉଥିବ ତା' କୂଳ ପାଦପ-ଲତିକା
କେଉଁ ବିହଗଟି ଗାଇବାର କେଉଁ ଗୀତିକା ।
ମନେ ପଡ଼ୁଥିବ ଠିକ ଠିକ ନୀଳ ଲହରୀ
ମନେ ପଡ଼ୁଥିବ ଘର ତୃଣ ଶିବା କଅଁଳା ।

ମନେ ପଡ଼ୁଥିବ ମରମର କଥା କହୁଁ ତ
କେଉଁଠି ଝରିତ ନୟନର ଲୁହ ବହୁତ !
ମନେ ହେଉଥିବ ସବୁରେ ହୃଦୟ ମିଶାଇ
କିଏ ନେଉଥିଲା କେଉଁ ଦିନ ମତେ ରସାଇ ।
ମନେ ହେଉଥିବ ବିରାଟ ପୃଥିବୀ ମାଟିରେ
ବନ୍ଧନ ତାର ପାରୁନି ନିମେଷେ କାଟିରେ ।

କଳତାନ ତାର କାନେ ଯାଉଥିବ ବାଜି'ତ
ଦିଶି ଯାଉଥିବ କନକ ସିକତା ରାଜିତ !
ସୁନ୍ଦର ମୋର ଅମର ଭୁବନ ସେଇଠି
କଳତାନେ ଯହିଁ ବହେ ମୋର ସେଇ ନଈଟି,
ମରଣର ପରେ ଅଦେହ ଆତ୍ମା ମୋହର
ଉଡ଼ି ଯାଉ ତହିଁ, ଦେଖୁ ତାର ନୀଳ ଲହରୀ !

---

## ପାରିବନି ଚାହିଁ

ଗୋଟିଏ ମୁହୂର୍ତ୍ତ ପାଇଁ,
ପାରିବନି ଚାହିଁ ଆଉ ପାରିବନି ଚାହିଁ !
କିଏ ସେ ସେଠାରେ ଅଛି ?
କିଏ ସେ ଖୋଜୁଛି ସେଠି ମତେ ?
କିଏ ସେ ଚାହିଁଛି ରହି ମତେ
ଉତ୍ପଙ୍କ୍ଷ ନୟନେ ?
କିଏ ସେ ଡାକୁଛି ମତେ

ନଜରୁ ନଜର କର
କିଏ ସେ ଆସୁଚ ମୋ ପାଖକୁ
ମୋରେ ଦୂରୁ ଲକ୍ଷ୍ୟକର ?
ଗୋଟିଏ ମୁହୂର୍ତ୍ତ ପାଇଁ
ପରିବନ ଗୃହ ଆଉ-
ପାରିବନ ଗୃହଁ,
ରହିଥାଉ ସେ କୁଟୀର
ଥାଉ ସେଇ ଭୂଇଁ !

ଗୋଟିଏ ମୁହୂର୍ତ୍ତ ପାଇଁ
ପାରିବନ ଗୃହଁ ଆଉ
ପାରିବନ ଗୃହଁ,
ଭୁଲରେ ବି ଯିବନାହିଁ ମାଦେ ହେଲେ
ମୋହଲାଗି ଶୂନ୍ୟ ସେଇ—
କୁଟୀର ପ୍ରାଙ୍ଗଣ,
ମୋହଲାଗି ହସେ ନାଇଁ କାନ୍ଦେ ନାଇଁ
କ୍ଷଣେ ପାଇଁ ଭବେ ନାଇଁ
ସେ ଭୂଇଁର ମାଟି ଗୋଡ଼
ସୌଧ ବାତାୟନ !
କିଏ ସେ ସେଠାରେ ତୁମେ
ମୋହଲାଗି କରିଚ ପ୍ରତୀକ୍ଷା ?
କିଏ ସେ ସେଠାରେ ତୁମେ
ମୋହ ପାଇଁ ହେଉଅଛ
ଆକୁଳ ଉନ୍ମାନ ?
କିଏ ସେ ତମେ ରହିଚ ସେଠାରେ ସତେ
ବାନ୍ଧି ମୋହ ଭୁଲେ
ମମତା ବନ୍ଧନ ?
କିଏ ତମେ ?
ତମ ଆଖିର ପ୍ରତି ଗୃହାଣୀ ଭିତରେ
ମୋହଲଗି
ଜାଗି ଉଠେ ପିୟୂଷ କମ୍ପନ ?
ଗୋଟିଏ ମୁହୂର୍ତ୍ତ ପାଇଁ ହେଉ
ପାରିବନ ଗୃହଁ ଆଉ

ପାରବନା ଗୃହିଁ
ରହିଥାଉ ସେ କୁଟୀର
ଆଉ ସେଇ ଭୂଇଁ !

ଗୋଟିଏ ମୁହୂର୍ତ୍ତ ପାଇଁ ହେଲେ
ପାରିବନ ଗୃହିଁ ଆଉ
ପାରିବନ ଗୃହିଁ,
କଣ୍ଠ ରୁଦ୍ଧ ହୋଇ ଆସେ,
ଓଠରୁ ଫୁଟେନା ବାଣୀ,
ଦେହେ ମନେ ଜାଗି ଉଠେ
ଅବସାଦ ଗ୍ଲାନି;
ମୋର ହୋଇ, ମୋର ଆପଣାର ହୋଇ
କିଏ ସେଠି ଅଛ ?
ଅଛ କେହିହେଲେ ଜଣେ
ପାଦ ତବ ପଡ଼ୁନାହିଁ ଚଳେ
ଏ ରାଜ ରାସ୍ତାରେ ବାରେ
ଗୃହିଁଦେଲେ ମୋରେ ?
ହୃତ୍ପିଣ୍ଡର ପ୍ରତି ରକ୍ତବିନ୍ଦୁ ଭିତରେ
ମତେ କିଏ ଅନୁଭବ-
କରୁଅଛ, ସେଠି ତମେ ସତେ ?
ସତେ କିବା ରହିଅଛ
ଖାଲି ମୋହ ଲାଗି
ଯାଇ ନାହିଁ ସେ ଭୂଇଁ ଛାଡ଼ି,
ଗୋଟିଏ ମୁହୂର୍ତ୍ତ ହେଲେ
ପାରିବନ ଗୃହିଁ ଆଉ
ପାରିବନ ଗୃହିଁ,
ରହିଥାଉ ସେ କୁଟୀର
ଆଉ ସେଇ ଭୂଇଁ !

ଗୋଟିଏ ମୁହୂର୍ତ୍ତ ପାଇଁ ହେଲେ
ପାରିବନ ଗୃହିଁ ଆଉ
ପାରିବନ ଗୃହିଁ ;
ଧୂସର ପାହାଡ଼ ଚୂଳେ ରକ୍ତିମ ରବିର

ରକ୍ତ ରାଗେ,
ହସୁଥିବ ସେଇ ଭୂଇଁ,
କୁଟୀର ପ୍ରାଙ୍ଗଣ,
ଫେରୁଥିବେ ଗୋରୁ ଗୋଠ
ଟିପାର ମୋହନ ତାନେ
ହେଉଥିବ ମୁଖରିତ
ସେ ଭୂଇଁର ବିଲ, ପଦା, ବନ;
ମାରୁଆର ବନ କୁଞ୍ଜତଳୁ
ବୋହି ଆସୁଥିବ
ଶାନ୍ତ ସମୀରଣ,
ଜୋଛନାରେ ଅବଗାହି
ସେ ଭୂଇଁର ପ୍ରତି ଧୂଳି ମାଟି
ପଲକେ ପଲକେ କେତେ
ରଚୁଥିବ ସ୍ୱପ୍ନିଲ କମ୍ପନ ।
ତୁମେ କଣ ଏ ସବୁ ଭିତରେ
ଅଛ ସେ କୁଟୀରେ
ମତେ ସାଥୀ କରି, ପ୍ରିୟ କରି,
ଆପଣାର କରି,
ଜୀବନର ସେ ସମ୍ପଦ ମେଳେ
ଯିବାକୁ ବାହାରି ?

ମତେ କଣ ସେଠି ତମେ
ଖୋଜୁ ଅଛ ସତେ ?
ମୁଁ ତୁମର, ତୁମେ ମୋର
ଏକାନ୍ତ ଜଗତେ
ଭାବୁଅଛ ବସି ?
ମୋ ପାଇଁ ରୋମାଞ୍ଚ
ତୁମ ଦେହେ ମନେ ଉଠୁଛି ସଞ୍ଚରି ?
ଯାଉଛି କି ମନ୍ଦରାଗେ ଉଲ୍ଲସି ?
ଗୋଟିଏ ମୁହୂର୍ତ୍ତ ପାଇଁ ହେଲେ
ପାରିବନି ପାରିବନି ଭୁଲି
ତୁମେ କଣ ସେଠି ଅଛ ?

ଆଉ ସେ କୁଟୀର
ଥାଉ ସେଇ ଭୂଇଁ ;

ଗୋଟିଏ ମୁହୂର୍ତ୍ତି ହେଲେ ପାରବନ ଗୃହ ଁ !
ଜୀବନର ଖଣା ତାନ ଯେଉଁଠି ଯାଇଛ ମରି
ଚିରଦିନ ଧରି ମୋହ ପାଇଁ,
ମୋତେ ତୁମେ ଦେବା ପାଇଁ
ପ୍ରାଣର ଆଶ୍ଲେଷ
ସେଠି ସେଇ ପ୍ରାଙ୍ଗଣ ପାହାଚେ
ହୋଇଛ କି ଉଭା ?
ମୋତେ ତୁମେ କହିବାକୁ
ହୃଦୟର ଅକୁହା ବାରତା
ଅଧର କମ୍ପନେ
ହଉଚ କି ଆଗଭର ?
ମୋ ଦରିଦ୍ର ମସ୍ତକରେ
ଦେବାକୁ ପିନ୍ଧାଇ
ଗୌରବର ସୁବର୍ଣ୍ଣ ମୁକୁଟ

ତୁମେ କି ପ୍ରସାରି କର ଗୃହ ଁ ରହିଅଛ
ଯୁଗ ଯୁଗାନ୍ତର ?
ପ୍ରାଣର ପିପାସା ମୋର
ଶମିବାକୁ
ତୁମେ କି ରହିଚ ଆଉ
ସେଠି ମୋହପାଇଁ ?
ଗୋଟିଏ ମୁହୂର୍ତ୍ତି ହେଲେ
ପାରବନ ଗୃହ ଁ
ରହିଥାଉ ସେ କୁଟୀର
ଆଉ ସେଇ ଭୂଇଁ !

---

# ସତୀର ଲୁହ

ଅଙ୍ଗ ସକଳ ସ୍ୱର୍ଣ୍ଣ ଆଭରଣ,
ମୋହର ଲାଗି କରିବ ବିସର୍ଜନ ;
ଏଥିରେ ଯେବେ ଯାଏ ମୁଁ ହୋଇ ଭଲ
ସେଇତ ତୁମର କାମ୍ୟ ଜୀବନର ।
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାରି !
କହୁଚ ମୋରେ ଅଶ୍ରୁ ଭରି ଆଖେ,
ମୋହର ଏଇ ଦୁର୍ଦ୍ଦଶାରେ
ଯାଉଛୁ ଥରି ତୁମର ଅନ୍ତନାଡ଼ି !

ଜୀବନ ଦେବି ଜୀବନ ଦେବି ଜୀବନ ଗୋଟି ଦେବି,
ବଞ୍ଚି ରହେ ବଞ୍ଚି ରହେ ମୁହିଁ
ସେଇତ ତୁମର ସକଳ ଗଉରବ ।
ମୃତ୍ୟୁ ମୋର ଆସିବ ଯେବେ
କି ଶିଖି ତବ ରହିବ ତେବେ ?
କହୁଚ ମୋରେ ନୟନ ପ୍ରାନ୍ତୁ
କୋଟିଏ ବିନ୍ଦୁ ତପ୍ତ ଲୁହ ଢାଳି !
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାରି !

ଜୀବନେ ତୁମେ ରହିନ ଦିନେ ସୁଖେ
ହୋଇଚ ମ୍ଳାନମାନ,
ମୋହର ଲାଗି ବାଧିନ କଷ୍ଟ
ରହିଚ ଧରି ପ୍ରାଣ ;
ମତେ ହିଁ ଦେଖି ମତେ ହିଁ ଗୁହିଁ
ସକଳ ଦୁଃଖ ଫିଙ୍ଗି ଦୂରେ
ରହିଚ ତୁମେ ନଉକା ଗୋଟି ବାହି ;
ଛିନ୍ନ ହୋଇ ମୁଁ ଯେବେ ଆହା
ବୁଡ଼ିବି ଏଇ ମହାସାଗର ଜଳେ,
ପାରିବ ନାହିଁ ସହି ଗୋ ତମେ ;
ପାରିବ ନାହିଁ ରହି,
ଗୋଟିଏ କ୍ଷଣ ଜୀବନ ଧରି
ଏ ମହା ଆବର୍ତ୍ତରେ ।

କହୁଚ ତମେ କୁଟୀର କଣେ ମତେ
ଅଶ୍ରୁ ଭରା ଆଲିଙ୍ଗନ ବାଢ଼ି
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାରୀ !

କେତେ ଯେ ଦାରୁଣ ଦୁଃଖ ମୋର
ବଢ଼ିଚି ତୁମ ଆଗେ,
ଯାଇଚି ସବୁ ଯାଇଚି ଅପସରି,
ତୁମରି ବିନୁ କିଏ ସେ ଜଣେ
ମୁହୂର୍ତ୍ତିକ ପାଇଁ
ଯାଇନି ଆହା କରି !
ଥରକୁ ଥର ଅନାଇ ମତେ
କରୁଣ ଦୃଷ୍ଟି ପାତେ,
ଡାକିଚି କେତେ ଦେବତା ଦିଅଁ
ନୟନୁ ଢାଳି ତପ୍ତ ଲୁହ ;
ସେ କେଉଁ ମହାଶୂନ୍ୟ କିଏ
କରିଚି ଆଡ଼ୁଆଳ,
ଜୀବନ ପାଇ ଜାଗିଚି ମୁହିଁ,
ଗୁଲିଚି ପୁଣି ତୁମରି ହାତ ଧରି,
କହୁଚ ତୁମେ କହୁଚ ମୋତେ
ସୁଦୂରେ ହାତ ଠାରି !
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାରୀ !

ସାହା ଭରସା ତୁମରି କିଏ ଅଛୁ
ଆଗକୁ ପଛକୁ ଟିକିଏ ହେବ ଠିଆ ?
ନିଆଶ୍ରିକ ଜୀବନ ଗୋଟି ତବ
ଏଭଳି ଯେବେ ହେବ ହେ କଲବଲ
କେମନେ ସହି ପାରିବ ମୋର ହିଆ ?
ସୁଦୂରରେ ତମେ ସୁଦୂରେ ମୁହିଁ
କିଏ ସେ ଦେଲା ଦୁଇ ଜଣରେ ଯୋଡ଼ ?
ଦୁଇଟି ବଣ ଚଢ଼େଇ ପରି
ଟିକିଏ ବସି ହେଲେନି କଥାଭାଷା,
ମରମ ମୋର କେତେ ଯେ ଯାଏ ପୋଡ଼ି !

ଅନାଥିନୀ ଏ ଜୀବନ ଗୋଟି
ରହିଛି ଯାହା ଆଗହୁଁ ନାହିଁ ମର,
କହୁଛ ତମେ କହୁଛ ମତେ
ବକ୍ଷ ଫଟାଇ ତବ
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାର !!

ତୁମର ଏଇ ଆଖିର ଏଯେ
ତପ୍ତ-ଲୁହ ଧାର,
ମୋହର ଲଗି ଯାଉଛି ଝରି
ହୋଇ କି ଅସମ୍ଭାଳ !
ତାହାର ପ୍ରତି ବିନ୍ଦୁ ତଳେ
ସେ କେଉଁ ମହାଶୂନ୍ୟ ଗୁହାଁ
ପାତିଛ ଅବା ମୋହରି ଲଗି ଥାଳ !
ତୁମର ଭଲ ସଞ୍ଚିର ଏଯେ
ସତ୍ୟ-ଭରା ଲୁହ,
ବ୍ୟର୍ଥ ଯେବେ ଯିବଗୋ ହୋଇ,
ପାରିବ ରହି ନିମେଷ ପାଇଁ

ଏ ମହା ସୃଷ୍ଟି ସୁଅ ?
କେତେ ଶକ୍ତି ସାଧନା ଭରା
ଅଶ୍ରୁ ଏ ଯେ ତବ,
କିଏ ସେ କେଉଁ ଅନ୍ତରାଳେ
ଦେଖୁଛି ନିଷ୍ଠେ,
ଶୁଣୁଛି ତବ ବିକଳ ବାଣୀ
ସୁଦୂରେ କାନ ପାରି,
ଆଗୋ ମୋର କୁଟୀର ପ୍ରିୟା ସରଳା ସୁକୁମାର !

---

# ବରଷା-ସନ୍ଧ୍ୟା

କେଉଁଠି କାହାରେ ମୁଁ
ସୋହାଗେ ଭେଟିଥିଲି
କେ ମୋରେ କହିଥିଲା
ମୋହନ-ବାଣୀ,

ସେ କଥା ପଦ ତାର
ବରଷା ସନ୍ଧ୍ୟାରେ
କିଏ ସେ ଥୋଇ ଦିଏ
ମରମେ ଆଣି ;

କେ ମୋରେ ଖୋଜିଥିଲା
ନଜର କରି ଏଡ଼େ
ପାଇଲା ନାହିଁ ଦେଖା
ଜୀବନେ ଥରେ,

ସେ କାହିଁ ? ମୁହିଁ କାହିଁ ?
ତାହାର କଥାଟିକ
କାହିଁକି ଭଲ ଭଲ
ଲୋତକ ଝରେ ?

କାହାକୁ ଦେଇଥିଲି
ହୃଦୟ ଭରି ମଧୁ
କିଏ ସେ ନ ପଚାରି
ରହିଲା କାହିଁ ?

ନୟନେ ଢଳ ଢଳ
ହୁଏ ସେ ବାରବାର
ତାହାର ହୋଇ ମୁହିଁ
ଅଛି କି ନାହିଁ ?

କିଏ ସେ କେତେ ଦୂରେ
କେଉଁଠି କଲବଲେ
ନୟନ କାନ୍ଦୁଥିଲେ
ଜୀବନ କାଳ,

ମୋରେ ବା ଖୋଜୁଥିବ
ମୋରେ ବା ଡାକୁଥିବ
କ ଆଶା, ଆଶା ମୁଁ
ଭୁବନେ ତାର !

କଏ ସେ ସାଥୀମେଳେ
ବୁଲବା ଗଲାବେଳେ
ମୋହର ସ୍ମୃତିଟିକ
କାହାରେ କହି,

କ ଶିଖ ପାଉଥିବ,
ସୋହାଗେ ଅନୁଭବ,
ମୋରେ କେ ବୁଝୁଥିଲେ
ଅଛି ତ ବହି ।

ମୋହର ବାଟ ଚାହିଁ
କଏ ସେ ଥିବ ରହି
କା ହିଆ ପୂରି ଯିବ
ଦେଖିଲେ ମୋରେ,

ବରଷା ରାତେ ଏଥି
ମୁଁ ତାରେ ପାରେ ଦେଖି
ଉଷ୍ମ ଲୁହ ବୋଳା
ଏ ଆଖି ଡୋଳେ ।

କଏ ସେ ଦିନେ ପାଇଁ
ନିରାଶ କରି ନାହିଁ
ଦେଇଛି ଭରି ତାର
ମମତା-ମହୁ,

ବିରାଟ ହିଆ ତାର
କି ମଧୁ ପାରାବାର
ନଇଁଛି ମଥା ମୋର
ତା' କୂଳ ହଉଁ ।

କ ଭଳି ଆସିଚି ମୁଁ
କେତେ ଯେ ଦୂର ବାଟ
କେତେ ଯେ କାହା ଭୁଲି
ଅଁସିଚି ମିଶି ।

କଏ ସେ ପାଖେ ଅବା
କଏ ସେ କେତେ ଦୂରେ
ସଭିଏଁ ଥାଆନ୍ତି
ମୋ ଆଖିରେ ଦିଶି ।

ସବୁରି ଭିତରେ ମୁଁ
ରହିଚି କେତେ କାହା
ଆଖିର ଲୁହ ଅବା
ଓଠର ହସ ହୋଇ,

ସବୁରି ଭିତରେ ମୁଁ
ନଇଡ ଫୁଟି ଉଠେ
କା ଲାଗି କେତେ ଆଶା
ପହଣେ ବହି ।

———

# କବିପ୍ରାଣ ବିଚ୍ଛନ୍ଦଚରଣ ..

କବି ତା' ଜୀବନରେ କବିତା ଲେଖିଯାଏ,
ଆଖିର ଲୁହ ଅବା ଓଠର ହସ ଦେଇ,
ଧରଣୀତଳେ ତା'ର କି ଶିଳ୍ପ ବଇଭବ?
ସୋହାଗେ ତାରେ ଯେବେ ପଚ୍ଛରେ ନାହି କେହି!
କବି ତା' ଜୀବନର କବିତା ଗାଇଯାଏ;
ପାହାଡ଼ୀ ଝରଣାର ମଧୁର ତାନପରି,
ପାନ୍ଥ କିଏ ଯେବେ ଟିକିଏ ନାହିଁ ଶୁଣେ,
କି ଲାଗି ଫୁଟେ ସେହି ମୋହନ ସୁଧାଭରି?

କବି ତା' ଜୀବନରେ କବିତା ଯା' ଫୁଟାଏ,
ବସି ତା' ସାଧନାର ବିଜନ ବେଦୀପରେ,
ତାହାରେ ନ ଅନାଇ କେ ଭୁଲିଗଲେ ହାୟ!
କେଡ଼େ ସେ ଭୁଲ. ଆହା ଜୀବନେ ନାହିଁ କରେ?
କବି ତ ମାଗେନାହିଁ ଟଙ୍କା, ସୁନା, ରୁପା,
କବି ତ ମାଗେ ନାହିଁ ହର୍ମ୍ୟ ଭବନ ତାଲ,
କବି ତ ମାଗେନାହିଁ କାହାଠୁ ହାତୀ ଘୋଡ଼ା
ରହିବ ରାଜବେଶେ ବିଂସାର ସବୁ ଘେରି!

ସେ ଖାଲି ଖୋଜୁଥାଏ, ସେ କେଉଁ ଯୁଗେ କିଏ,
ତା' ମଧୁ-କବିତାରେ ମୁଗ୍ଧ ହେଲେ ବାରେ,
ସକଳ ସମ୍ପଦ ପାଇବ ପାଇ ସେହି
ସେ ମର ରହିଥାଉ ସୁଦୂର କେଉଁ ପାରେ।
ଜୀବନ ବାଣୀ ତାର, ହୃଦୟ ବାଣୀ ତାର
କା' ବୁକୁତଳେ ଯେବେ ପକାଇ ପାରେ ଗାର,
ସେଇ ତା' ଜୀବନର ପରମକୋଟିନିଧି
ତା' ତହୁଁ କି ଅଧିକ ଥାଏ ତା' ପାଇବାର!!

ଧରଣୀ ରସମୟ କରିବାପାଇଁ ହାୟ
କି ମହାଧିଆନ ତା' ଜୀବନସାରା ଧରି

ଦୁଃଖ ନାହିଁ ତାର, ଖାତିର ନାହିଁ ତାର
ଅଭାବ ଅନାହାରେ ରହି ସେ ପଛେ ପଡ଼ି !
ଏ ଭଳି କେତେ କବି ଜୀବନ ବୀଣାତାନ—
ସୋହାଗେ ତାଳଦେଇ ଉଭାଇ ଗଲେ କାହିଁ,
ଅଶାନ୍ତ ଅନ୍ଧାରେ କାଳର ପାରାବାରେ
ତୁମରି ପାଇଁ ଅବା ସେମାନେ ଥିଲେ ରହି !

ଦେଖିଛି ଜାଣିଛି ମୁଁ କରିଛି ଅନୁଭବ
ସେ ଓଲସିଂହର * ସେ ମାଟି ବକ୍ଷରେ
ଏ ଦେଶ କବି ମହାକବିର କାବ୍ୟ ଯେ
ଶୁଣାଉଥିଲ ତୁମେ କାହାର ଡାକରାରେ !
ସେ ଶ୍ରେଷ୍ଠ ପଲ୍ଲୀର ପାହାଡ଼, ବିଲ ବନ,
ଟାଙ୍ଗି ପ୍ରାନ୍ତର ମନ୍ଦିର ପଥଘାଟ ।
ସେ ମଧୁ ଗୀତ ତାନେ ଜୀବନ ପାଇ ଅବା
କି ଭଳି ହସୁଥିଲେ ମୋହନ ଉଲ୍ଲାଟ !

ହସି, ଆଗେ ତୁମେ ଏ ଦେଶ କବିଗଣେ
ଦେବାକୁ ଚହଲାଇ ଲେଖନୀ ହାତେ ଧରି,
ନପୂତ ଲେଖୁଥିଲ କି ମହା-ଅବେଗରେ
କି ଓଜସ୍ୱ ଲେଖା ସିଂହଶିଶୁ ପରି ।
ସେ ଠିକ ଥିଲ ତବ ସ୍ୱପ୍ନ ଜୀବନର
ତାକୁହିଁ ଫୁଟାଇଛ ଜୀବନ ସାଥେ ତମେ
ଜୀବନେ ଧନେ ମାନେ ଶ୍ରେଷ୍ଠ ହେବାପାଇଁ
କେବେତ ଲୋଡ଼ ନାହିଁ ଧରଣୀ ଅଙ୍ଗନେ !

---

* ଆଜକୁ ପ୍ରାୟ ୩୨ ବର୍ଷ ତଳେ ଓଲସିଂହ ହା. ଇ. ସ୍କୁଲରେ ଏ ଲେଖକ ଛାତ୍ର ଥିବାବେଳେ ବଚ୍ଛନ୍ଦବାବୁ ସେଠାକୁ ଶିକ୍ଷକ ହୋଇ ଆସିଥିଲେ ଏବଂ ଛାତ୍ରାବାସର ଗୋଟିଏ ଛୋଟ ଚାଳଘରେ ରହୁଥିଲେ । ସେଠାରେ ବଚ୍ଛନ୍ଦବାବୁ ପ୍ରାଚୀନ କବିମାନଙ୍କର କାବ୍ୟ ଆଲୋଚନା କରନ୍ତି ଏବଂ ଛାତ୍ର-ସମାଜକୁ ପ୍ରାଚୀନ ସାହିତ୍ୟର ଭାବଧାରାରେ ଅନୁପ୍ରାଣିତ କରନ୍ତି । ବହୁ ବିସ୍ମୃତ ପ୍ରାଚୀନ କବିମାନଙ୍କର ଲେଖା ମଧ୍ୟ ସଂଗ୍ରହ କରି ଛାତ୍ରମାନଙ୍କ ଦ୍ୱାରା ତାଳପତ୍ର ପୋଥିରୁ କାଗଜରେ ଉଦ୍ଧାରନ୍ତି । ବହୁ ସମୟ ପ୍ରାଚୀନ କବିମାନଙ୍କ ଲେଖାର ଉତ୍କୃଷ୍ଟତମ ଅଂଶ ଛାତ୍ରମାନଙ୍କୁ ପଢ଼ି ଶୁଣାନ୍ତି ।

ସ୍ୱଦେଶ ସ୍ୱଜାତିର ଗୋଟିଏ ବିସ୍ମୃତ—
କବିର ସନ୍ଧାନ କାହାଠୁ ପାଇଗଲେ !
ହୀରକ ଖଣ୍ଡେ କି ମିଳିଲା ପଥ ଲାଗେ !
ତା' ତହୁଁ ବଡ଼ଧନ ଜାଣିନ ଜୀବନରେ !
ଅଭାବ ଅନାଟନ ସହିଚ ବହୁବାର
ସହିଚ ବିଦ୍ରୂପ କାହାର କେତେ ତୁମେ,
ତଥାପି ଲକ୍ଷ୍ୟରୁ ହୋଇନ ବିଚ୍ୟୁତ
ଝଞ୍ଜା-ଝଡ଼ ବହୁ ପ୍ରଳୟ ଗରଜନେ !

ସ୍ୱଦେଶ ସ୍ୱଜାତିର କବିରେ ପୂଜା କରି
ପରାଣେ ଗଉରବ, ଯେ ଅନୁଭବ କରେ,
କବିର ନିନ୍ଦା ଯେ କି ଦେଶେ, କି ବିଦେଶେ
—ଶୁଣିଲେ ଶୋଣିତ ଯା' ତାତଇ ବୁକୁତଳେ ।
କବିରେ ଦେବାପାଇଁ ବିପୁଳ ସମାଦର
ଅନ୍ତରର କେଉଁ ଅନ୍ତଃପୁରୁ କାଢ଼ି,
ପାଗଳପରି ଯିଏ ନିୟତ ତନ୍ମୟ
ଜାତିର ସମ୍ପଦ ତା' ତହୁଁ କିଏ ବଳି ?

ସେଭଳି ସଂପଦ ତୁମେ ତ ଏ ଜାତିର !
ତୁମରି ଭଳି ଜଣେ ବିରାଟ ବୀର ହିଆ
କେଉଁଠି ଲୁଚିଗଲା, କେଉଁଠି ଛପିଗଲା !
ତା' ଲାଗି ଖୋଜିହୁଏ ଆଜିର ଏ ଦୁନିଆ ।
ତୁମରି ଭଳି ଜଣେ ଜ୍ଞାନୀ ଓ ପଣ୍ଡିତ
ତୁମରି ଭଳି ଜଣେ ସରସ କବିପ୍ରାଣ,
ଏ ଦେଶେ ଜଳୁଥିଲା, ଆଲୋକଶିଖା ପରି,
କି ଭୀମବତ୍ୟାସେ ତା' ହେଲାକି ଅବସାନ;

ଯାଇଛ ତୁମେ ସିନା ସୁଦୂର ପରପାରେ,
ତୁମରି ଭୁଲେ ତୁମ ସ୍ୱପ୍ନ ଯାଇନାହିଁ,
ବିଞ୍ଚିରହିଛ ସେ ଅସୀମ ମହିମାରେ
ବର୍ଷି ଗନ୍ଧ ଯେ ସବୁରେ ମୁକୁଳାଇ !

ସାଗର ଶୁଖିପାରେ, ମେରୁ ବି ଟଳିପାରେ
ମନ୍ତ୍ର ତ ପାରିବନି ଭୁମନ୍ତ୍ର ମହାଦାନ,
ଜୀବନେ ଯା' ଦେବାର ଜାଣିକି ଦେଇଅଛ
ଏକାକୀ ପଥେ ତୁମେ ପଥିକ ମହାପ୍ରାଣ !
କାନରେ ଭୁଲି ଯିଏ ମାଟିର ଗଉରବ—
ଫୁଟାଇ ଗ୍ଲଲିଅଛି ଜୀବନସାର୍ଥ ଧନ,
ମାଟିର ବକ୍ଷରେ ଗୋଲାପ ଗଛପରି
ସେ ଚଳି ରହିଥିବ ମଳୟେ ଥରିଥରି ।

———

# ରୁକ୍ଷ ପାହାଡ଼ ଓ ନୀଳ ଝରଣା

ହେ କବି ସେ'ଦିନ ବୁଲିଲି କପରି
 ସେ ମରୁ ବିଜନ ପଥେ,
  ତୃଷ୍ଣା କାତର-କଣ୍ଠେ ମାଗିଲି
   "ଜଳ ମଧୁଏ
    ଦିଅ କିଏ ହେଲେ ମତେ ।"
     ଉପରୁ ଛୁଟୁଛି ଭୀଷଣ ରୌଦ୍ର
      ଗ୍ଲଲି ହେଉନାହିଁ ପଥ,
       ବସିଲେ କେଉଁଠି ବସି ହେଉ ନାଇଁ
        ପଥ ପ୍ରାନ୍ତରେ ନାଇଁ ବି ଗୋଟିଏ
         ଗଛ ।
          ବିରାଟ ରୁକ୍ଷ ପାହାଡ଼ ଦେଖିଲି
           ଦୂରେ ବହୁଦୂରେ ଠିଆ,
            ତା' ଦେହରୁ ଖାଲି ବାହାରୁଛି ତାତି
             ଜଳୁଛି ଅବା ତା'
              ଦେହଯାକ ଖାଲି କିଆଁ !

ଚାହିଁଲେ ତାହାରେ
ପାରୁ ନାହିଁ ଚାହିଁ
ଗଲେ ତାହା ପାଖେ
ଆଶ୍ରୟ ପାଇଁ
ତଡ଼ି ସେ ଦେଉଚ ଦୂରେ,
ସନ୍ଦେହ ଖାଲି
ଉଠୁଚି କୁହୁଳି
ତାର ଗହ୍ୱର ପୁରେ ।
ପାଷାଣ ପାଷାଣ
କଠୋର ପାଷାଣ
ଗୃହଆଡ଼ ମାଡ଼ି
ରହିଚି ଆବଦ୍ଧ କାନ୍ଥ,
ଘାସ ପତ୍ର ବି
ଗୋଟିଏ ନାଇଁଛି
ଖୋଜିଯିବ ଯେବେ
ତାହାର ତଳପା ତାନ୍ତ ।

କି ଶିରୀ ବିଭବ
ପାରିବ ସେ ଦେଇ ?
ପାରିବ ଯେ ଦେଇ ?
କି ମାଗୁଣି ତାରେ
ମାଗିଲ ବା ଯାଇ ?
ସ୍ୱାର୍ଥ କପଟ କଠୋରତା ମେଳେ
ଜନ୍ମ ଯାହାର
ଆତଯାତ ଯା'ର
ପ୍ରାଣର ଅଭୟ ଫୁଟାଇ ପାରିବ କାହିଁ ?

ଦୁସ୍ତର ମରୁ ଦୁର୍ଗମ ମରୁ
ପ୍ରସାରିତ କିବା ଯୋଜନ ଯୋଜନ ଧରି,
କିଏ ଅଛି ଯାହା ଭରସା ତୁମର
ଯିବ ଆପଣାର କରି;
ବାନ୍ଧିଥିଲେ ଦେବ ବୋଧାଇ ତୁମରେ

ହଜିଥିଲେ ଦେବ ଖୋଜାଇ ଭୂରତେ,
ଭଜିଥିଲେ ଦେବ ଗତି ଅବିକଳ
କିଏ ଅଛୁ ଏତେ ନିଜରୁ ନିଜର ?

'କେହି ନାହିଁ କେହି ନାହିଁ'
ରୁକ୍ଷ ପାହାଡ଼ କର୍କଶ ଶିଳା—
ଭିତରୁ ଆସିଲା, ପ୍ରତିବାଣୀ
ତୁମ ପାଇଁ ।

ଚମକି ଉଠିଲ ପ୍ରିୟକବି ମୋର
ଜାତିର ଦେଶର ଗଉରବ ଧନ ତମେ
ଗୃହିଁଲ ଆକାଶ, ଗୃହିଁଲ ପୃଥିବୀ
ଗୃହିଁଲ ନିଜକୁ ବାରବାର ପ୍ରତିକ୍ଷଣେ ।

ନିପୀଡ଼ିତ ଲାଗି କେହି ଜଣ ନାହିଁ
ଡାକ ତା'ର ଯିବ ଶୂନ୍ୟେ ଉଭାଇ ?
ହସିବନି ଦିନେ ତାର ଓଠ ତଳ
ଫୁଟିବନି କଥା
ଭୁଟିବନି ବଥା
ଚିର ଦିନ ଥିବ ହୋଇ କଲବଲ ?
ଏ ଆକାଶ ମାଟି ସହିବ କପର
ଜଣେ ଯେବେଁ ଯାଏ
ଚିରଦିନ ପୋଡ଼ ;
ଚିରଦିନ ମର ।

ସୃଷ୍ଟିରେ ଦିନେ ତା' ପାଇଁ ଫୁଟିବ ଫୁଲ
ନିର୍ଝର ଝର ଆସିବ ଆସିବ
ପିପାସା ତା' ହେବ ଦୂର,
କିଏ କହିଗଲ କାନେ କାନେ କବି
ଆଶା ଆଲୋକର
ଛନ୍ଦ କବିତା ଟାଇ
ଦେଖିଲ ଗୋଟିଏ ମାଳ ନିର୍ଝର
ହଠାତ୍ ତୁମର ଚରଣ ପ୍ରାନ୍ତେ
ସୋହାଗେ ଆସୁଛ ବୋହି ।

ଢେଉ ଢେଉ କରି କେତେ ଢେଉ ଜଳ
ପିଇ ଗଲ ତୁମେ ସ୍ୱପ୍ନ-ବିଭୋର ;
ବସିଲ ସେ ଝିର ତରୁଗୁଛ ତଳେ,
ଶୁଣିଲ ତାହାର ଉଦାସ ପୁଲକ ଗୀତ
ପ୍ରତି ଉର୍ମୀରୁ ଫୁଟି ଫୁଟି ଆସେ ନିତ !

ହସିଲ ଟିକିଏ ହସି ନ ଥିଲ ଯା
ପ୍ରାଣ ପୂରି ହସ ଜନମ ଜନମ ଧରି,
ବସିଲ ଟିକେ ବସି ନଥିଲ ଯା
ସେ ମରୁ ବିଜନ ବୁକେ
ସକଳ କ୍ଲାନ୍ତ ସବୁ ଅବସାଦ ଭିତରେ ନିପ୍ଲୁତ ମରି;
ଚୁହିଁଲ ଟିକିଏ
ଅମୃତଭରା ଚୁହାଣୀ ଟିକକ ଢାଳି ;
କିଏ ସେ ତୁମରେ ଆଶ୍ଳେଷ ଦେବାଲାଗି
ଡାକୁଅଛି ହାତ ଠାରି ।

ବୁଝିଲ କିଏ ସେ ବୁଝିବାର ଲାଗି
ତୁମରେ ରହିଚ ଚୁହିଁ,
ଜାଣିଲ କିଏସେ ଜୀବନ-ବୀଣାରେ
ମୂର୍ଚ୍ଛନା ଦେବା ଲାଗି,
ହସି ହସି ଆସେ ନାଚି ନାଚି ଆସେ
ପର ଆପଣାର
ବିଭେଦ ପାଶୋରି ଦେଇ,
ଦେଖିଲ କିଏ ସେ ଦେଖୁଚି ତୁମରେ
ଏତେ ଆପଣାର କରି,
ଜାଣିଲ କିଏ ସେ ଜଗାଇବା ଲାଗି
ଆସିଚି ଆସିଚି
ଉଷା ଆକାଶର
ନବ ଅରୁଣିମା ପରି ।

ଡାକିଲ କାହାରେ
କାହା ପ୍ରତି ଡାକ

. . ଭ୍ରମରେ କରୁଚ ଉନ୍ମନ ଚଞ୍ଚଳ,
ମାଗିଲ କାହାରେ କ ଅବା ମାଗୁଣି !

ନ ମାଗୁ ନ ମାଗୁ କରପୁଟେ ଆସି
ହେଉଅଛୁ ଡଳ ଡଳ !
ପ୍ରପୀଡ଼ିତ କବ ! ନିପୀଡ଼ିତ କବ,
ନିପତିତ କବ
ଉଠିଲ ଉଠିଲ ଆତୁର ଉଠିଲ
ଉଠାଇବା ଲାଗି ଭ୍ରମରେ କଏ ସେ

ଆସିଚ ଭ୍ରମର
ଏତେ ଆପଣାର ଜନ !

କବା ଗୃହଁ କବ ଆଉ କବା ଗୃହଁ ?
ପ୍ରାଣର ପୁଷ୍ପ ଫୁଟୁଚ ଯେଉଁଣି ,
ସେଇତ ସ୍ୱର୍ଗ , ସେଇତ ଭ୍ରମର
ଚିର ଆଦରର ଧନ !

---

## ଫୁଟି ପାରିଲାନି ?

ଏକାକୀ କୁଟୀରେ ବସି ମୁଁ ରହିଚ
ଗୃହଁ ବନ ବଲ ପାହାଡ଼ ମାଳା,
କାହା କଥାଟିକ ପଡ଼ଯାଏ ମନେ
ନୟନୁ ବହେ ମୋ ଲୋତକ ଧାର !
କାହାରେ ଦେଇଚ ପରାଣୁ ପାସୋର
ପୁଣି କଥା ପଡ଼ ଯାଉଚ ମନେ
କେତେ ନିଯାତନେ ଥିବ ସେ କେଉଁଠି
ମୋ ସେନେହ ସାଥି ସୋଦର ଜଣେ ;

ନାଇଁ ଥିବ ତା'ର ସେ ରୂପ ମାଧୁରୀ
ନାଇଁ ଥିବ ଯେଉଁ ବିଭବ ମାଳା,

କେତେ ଦୁଃଖେ ଥିବ ସେ କେଉଁ ସୁଦୂରେ
ବୋହୁଥିବ ନିତି ଲୋତକ ଧାରା ।
ବୋହିଲେ ବୋହିବ ପୋଛୁ ଦେଉଥିବ
କୁଞ୍ଜ କାନନରେ ଶୋଚନା ଭରେ,
ତା'ବିନୁ ତା'ଦୁଃଖ କିଏ ଦେଖୁଥିବ ?
ଏତେ ନିକର ତା' କେ ଧାରା ତଳେ ?

ଏକାକୀ କୁଟୀରେ ବସି ମୁଁ ରହିଚି
ଚାହିଁ ବନ ସ୍ଥଳ ପାହାଡ଼ ମାଳା,
ଖରାରେ ତରାରେ ବୁଲୁଥିବ କାହିଁ
ଶମିବାକୁ ତା'ର ଜୀବନ ଜାଳା !
ନଥିବ ତାହାର ସେଇ ଠାଣି ପଣ
ଲଇଁ ପଡୁଥିବ କେବେ ବା କାହିଁ ?
ବାଧୁଥିବ ତାରେ ମରମେ ମରମେ
ତଳ ଉପରକୁ ଥିବ ସେ ଚାହିଁ !

ଏକାକୀ କୁଟୀରେ ବସି ମୁଁ ରହିଚି
ଚାହିଁ ବନ ସ୍ଥଳ ପାହାଡ଼ ମାଳା,
ତାହା ଭୁଲେ କେତେ ବୁଲି ମୁଁ ଆସିଚି
ଗୋଟି ଗୋଟି ମନେ ପଡ଼ଇ ପରା !
ଏ ନଈ ପୁଳିନେ ବୁଲିଚି ମୁଁ କେତେ
ବସିଚି ତା' ଭୁଲେ ଏ ଗିରି ଚୂଳେ
ମଧୁ ଆଳାପନେ କେତେ ନିଶିଥିମୀ
କାଟିଚି ମୁଁ ଏଇ ସରସୀ କୂଳେ;

ଏକାକୀ କୁଟୀରେ ବସି ମୁଁ ରହିଚି
ଚାହିଁ ବନ ସ୍ଥଳ ପାହାଡ଼ ମାଳା
ମରମେ ମରମେ କି ଆଘାତ ହାଣେ
ତାରି ସେ ଠିକଣା ପରାଣ ଭରା !
ରସନାରୁ ତାର ଫୁଟିତ ନଥିବ
ପ୍ରାଣବୋଲା ସେ ଯେ ମୋହନ କଥା,
ମୁହଁ ମାଡ଼ କାହିଁ ପଡ଼ୁଥିବ ଶୋଇ
ଘନୁ ଘନ ହେଲେ ମରମ ବ୍ୟଥା !

ଏକାକୀ କୁଟୀରେ ବସି ମୁଁ ରହିବି
ଚାହିଁ ବନ ବଲ ପାହାଡ଼ ମାଳା,
ଏଇ କାଲି ପରି ହସି ଖେଳି ସେ'ତ
ମେଲିଥିଲା ତା'ର ଜୀବନ ଧାରା ।
ଏବେ ସେ କେଉଁଠି କାହା ପାଦତଳେ
ରହିଥିବ ନିକି ? ପତାଇ ହାତ,
ବାନ୍ଧିଥିବ ତା'ରେ ନିବିଡ଼୍ ନିବିଡ଼େ
ରହିଥିବ କିବା ପାଲଟି କାଠ ?

ଏକାକୀ କୁଟୀରେ ବସି ମୁଁ ରହିବି
ଚାହିଁ ବନ ବଲ ପାହାଡ଼ ମାଳା,
ଠିକଏ ଦେଖନ୍ତ, ପଚାରି ବୁଝନ୍ତ
କିଭଳି ସେ ଅଛି ଜୀବନ ସାଥି ?
କେତେ ଆଶା କେତେ ମଧୁ-କଳପନା
ପ୍ରାଣେ ଫୁଟି ପ୍ରାଣୁ ଯିବଣି ଝଡ଼ି,
ବିଜନ ନିମିଷେ ବସିଥିଲେ ଏକା
ଯାଉଥିବ ମୋତେ ବିକଳେ ଡାକି ।

ଏକାକୀ କୁଟୀରେ ବସି ମୁଁ ରହିବି
ଚାହିଁ ବନ ବଲ ପାହାଡ଼ ମାଳା,
ଆଉ ତ ତାହାରେ ଦେଖିବି ନାହିଁ ମୁଁ,
ଦେଖିଲେ ଦେଖିବି ତା' ହୃଦ ଜାଳା ।
ଦେଖିବିନି ତାର ମୃଦୁ ମଧୁ ହାସ,
ଦେଖିବିନି ତା'ର କେଶରୀ ଠାଣି,
ଦେଖିଲେ ଦେଖିବି ପ୍ରାଣହୀନ ପରି
ତା' ରୂପ ତା' ତେଜ, ତା' ଓଠ ବାଣୀ !

ଏକାକୀ କୁଟୀରେ ବସି ମୁଁ ରହିବି
ଚାହିଁ ବନ ବଲ ପାହାଡ଼ ମାଳା,
କି ଲଭି ତା' ପାଇଁ ନୟନୁ ବରଷି
ସୀମାହୀନ ଏତେ ଲୋତକ ଧାରା ।
ଫେରିଲେ ଫେରିବ ଫେରିବାର ଘର ?
ଆଉ କି ଫେରିବ ଅଛି କି ଆଶ ?

ଫେରିଲେ ଫେରିବ, ସେଇ ଫେରିବାରେ
ଦିନୁ ଦିନ ସିନା ବଢ଼ିବ ପ୍ରାଣ ।

ଏକାକୀ କୁଟୀରେ ବସି ମୁଁ ରହିଛି
ଚାହିଁ ବନ ବଲ ପାହାଡ଼ ମାଳା,
କାହା ଆଶାରେ କଭଳି ଥିବଟି ?
ସହି ସେ ପାରେନା ଟିକଏ ଜାଳା !
କଏ ହତାଦର କରୁଥିବେ ଯେବେ
ବୋଲୁଥିବେ ଯେବେ କଠୋର ବାଣୀ,
କାନ୍ଦ କାନ୍ଦ ହୋଇ ଚାହିଁ ରହିଥିବ
ଧୈର୍ଯ୍ୟରେ କେଡ଼େ ସେ ଅଭାଗୀ ପ୍ରାଣୀ !

ଏକାକୀ କୁଟୀରେ ବସି ମୁଁ ରହିଛି
ଚାହିଁ ବନ ବଲ ପାହାଡ଼ ମାଳା,
ଯିବା ଦିନୁ ତା'ରେ ଦେଖିନି ନିମିଷେ
ଜାଣିଛି ମୁଁ ତା'ର ପରାଣ-ବ୍ୟଥା ।
ବଡ଼ ଭଲ ସିଏ ତାହାଭଳି ଜଣେ
ମହି ମଣ୍ଡଳେ ନାହିଁତ କେହି
ସୁଖେ ଦୁଃଖେ ସେ ତ ସବୁରି ସାହକ
ହୃଦ ଚିରି ମଧୁ ପାରିଛି ଦେଇ;

ଏକାକୀ କୁଟୀରେ ଚାହିଁ ମୁଁ ରହିଛି
ଚାହିଁ ବନ ବଲ ପାହାଡ଼ ମାଳା,
ଦେଖା ଦେଖି କେବେ ହେବ ଏ ଜୀବନେ
ତହିଁରେ କି ଥିବ ସୋହାଗ ଧାରା ?
ଗଲାବେଳେ ତାରେ ପଦଏ କହିନି
ଦେଖିନି କେବେ ସେ କଭଳି ଗଲା
କି ଥିଲା ବା ଏଥି ପଡ଼ି ରହିବାକୁ
ନ ଯିବାରୁ ବଳ କି ଥିଲା ଚାରା ?

ଏକାକୀ କୁଟୀରେ ବସି ମୁଁ ରହିଛି
ଚାହିଁ ବନ ବଲ ପାହାଡ଼ ମାଳା

ଲୁହ ଡାଳ ଡାଳ ଗୁଡ଼ାଚ କୁଟୀର
ପୁଣି ଲୁହ ଆଖେ ଫେରବ ପଥ !
କଭଳ ତାହାରେ ପାରବ ମୁଁ ଗୃହିଁ
କ ବାରତା ସିଏ କହବ ମତେ,
ଗୋଟିଏତ ଫୁଲ ଫୁଟି ପାରଲାନ
ଗୃଲ ସେ ଆସିଚ ସେ ଯେଉଁ ପଥେ ।

———

## ସ୍ୱଜନ-କୁଟୀରେ

କପର ଆଜ ଏ ସ୍ୱଜନ କୁଟୀରେ ଏକାକୀ ପାରବ ରହି ?
କଏ କାହିଁ ଗଲ ଜୀବନ ଦୋସର ଏତେ ଯେ ମମତା ବନ୍ଧି !
ଗୋଟିଏ ଗୋଟିକ ବଳ ମୋ ନଜର ଶୋଣିତରୁ ବଳ ବଢ଼ି !
ଆଖିରେ ଆଖିରେ ମୁହଁ ହାତ ପାଦ ଦଶିଯାଏ ସକଳର ।
ୁଣିଲ ପଡ଼ାଏ ଶୁଭିଯାଏ କାନେ ସବୁର ଅଧର ବାଣୀ,
କେତେ ହସଖେଳ ମୋହନ-ମମତା ଅନୁଭବେ ହବା ଯାମୀ !

ଗୋଟି ଗୋଟି ହୋଇ କିଏ କାହିଁ ଗଲ ଏକା କରଦେଇ ମତେ,
ଗୃହିଁ ମୁଁ ରହିଚ ବଲ ବନ ନଈ ଏ ପାହାଡ଼ ପରବତେ ;
ଗୃରଆଡ଼େ ଗୃହେଁ ମିରବେ ମଉନେ ଏ କୁଟୀରେ ବସି ଏକା,
ଲୋଡ଼ିହୁଏ କେତେ ହୁଅନା ଅବା କା'ଭୁଲେ ଟିକିଏ ଦେଖା ।
ଥିଲାବେଳେ ଥିଲ କି ଶିଖି ଦେଇ ମେ ହସ ଖେଳ କଉତୁକେ,
ତହିଁରୁ ଝୋପାଏ ପାଆନ୍ତୁ ହେଲେ ଏ ମରୁ ସ୍ୱଜନ ବୁକେ !

ପଶିଲେ ଏ ଘରେ ପଶି ମୁଁ ପାରୁନ ରହି ମୁଁ ପାରୁନ କ୍ଷଣେ,
ଗୃହିଁ ମୁଁ ପାରୁନ ଲୁହ ଛଳ ଛଳ ହୋଇ ଆସେ ହ' ନୟନେ !
ବୁକୁର ଯେ କେଉଁ ଗୋପନ ପୁରର କି ଆଘାତ ଯେ ଉଠେ ବାଜି,
ହଜିଇ ବସିଚ କେତେ ଯୁଗ ପାଇଁ କି ଶିଖି ବଉଭବ ରାଜି !
କିପର ଆଜି ଏ ସ୍ୱଜନ କୁଟୀରେ ଏକାକୀ ପାରବ ରହି ?
କିଏ କାହିଁ ଗଲ ଜୀବନ ଦୋସର ଏତେ ଯେ ମମତା ବନ୍ଧି ।

କିପରି ଆଜ ଏ ବିଜନ କୁଟୀରେ ଏକାକୀ ପାରିବ ରହି ?
ଗୋଟି ଗୋଟି ହୋଇ ପଡ଼ିଯାଏ ମନେ ସବୁରି ପରାଣ ଛୁଇଁ
କିବା ଦିନରାତି ପ୍ରତି କ୍ଷଣମାତ୍ରର ଗୋଟି ଗୋଟି କେତେ କଥା
ହୃଦୟ ଫଳକେ ଉଇଁ ଉଇଁ ଆସ ଦେଇ କି ମଧୁର ବ୍ୟଥା !
ହୃଦୟ ବେଦୀରେ ବସାଇଛ କିଏ କେତେ ଯେ ସୋହାଗ ଭରେ
ମୁଛୁଛି ପାରିଲେ ପାରିବ ମୁଛୁଛି ? ମନେ ହୁଏ ନାହିଁ ଥରେ ।

•

ବାପ ମାଆ ଭାଇ ଭଉଣୀ ଏ ଯେତେ ଶୋଣିତ ମମତା ଏଡ଼ି
ବାନ୍ଧି ପାରିଚ ପଡାଇ ସେ କେଉଁ ପରାଣ ମୋହନ ବେଡ଼ି !
ଦିନେ ନ ଦେଖିଲେ ଆରଦିନ କିବା ଅପଲକେ ଅଛ ଚାହିଁ
ସଖା ସହୋଦର ପରିଷ ପରିଷ ଆଜକି ଫେରିବେ ନାହିଁ ?
ଦୂରୁ ଆସିବାର ଫେର ଏ କୁଟୀରେ ଚାହିଁ ଦେଲେ ବାତାୟନେ,
କି ଶିଶୁ ବିଭବ ପାଇବାର ପର ଅନୁଭବ ଜଣୁ ଜଣେ !

କି ମୋହନ ହସ ଫୁଟାଇ ଅଧରେ କି ମୋହନ ବାଣୀ ଭାଷି,
ସୁଖ ଓ ଦୁଃଖ ପରିଷ ଯାଆ ମୋ ଗୋଟି ଗୋଟି ତୁମେ ଆସି !
ଆଣିଥାଏ ବାନ୍ଧି କଦଳୀ କମଳା ହାତେ ଦିଏ ତବ ଭରି
ଦର ଫକୋଟେ କେ' କେତେ ନେଇଚ ନିଜରୁ ନିଜର କରି !
କିପରି ଆଜ ଏ ବିଜନ କୁଟୀରେ ଏକାକୀ ପାରିବ ରହି ?
ଗୋଟି ଗୋଟି ହୋଇ ପଡ଼ିଯାଏ ମନେ ସବୁରି ପରାଣ ଛୁଇଁ !

କିପରି ଆଜ ଏ ବିଜନ କୁଟୀରେ ଏକାକୀ ପାରିବ ରହି ?
କା' ପୁଲକ ଶିଶୁ ଚିକକ ଭିତରେ ମୁଗ୍‌ଧ ମୁଁ ଯିବ ହୋଇ !
କାହା ଗଉରବେ ଉଲୁସି ଉଠିବ ବିଷୋର ପରାଣ ଭାଇ ?
ପୋଛିଦେବ ଯେବେ ନୟନୁ ବୋହିବ ଅକଳନ ବାରି ଧାରା ।
କାହାଲାଗି ପାତି ରଖିବ ଏ ବୁକୁ କଏ ଗଲ କେଉଁ ଆଡ଼େ ?
କେତେ ମୁଁ ଖୋଜୁଛି କରମେ ବିହାମେ ନୟନ ଲୋତକ ଧାରେ ।

କେତେ ମୁଁ ଦେଖୁଛି ପରାଣ ମୋହନ ସପନ ତୁମରି ଲାଗି,
ନିମିଷୁ ନିମିଷେ କେତେ ଆପଣାର ପରି ଉଠୁଅଛ ଜାଗି !

ତୁମରେ ନେଇ ମୋ ଏ ଜୀବନ ଗଢ଼ା ତୁମ ବିନେ କାହିଁ ମୁହିଁ ?
କିଏ ଅଛି ମୋର ଏ ବୁକୁତନ୍ତ୍ରୀ ସବୁଗେ ପାରିବ ଛୁଇଁ ?
କେ ମୋରେ ବୁଝିବ, ବୁଝିବ ମୁଁ କାରେ ସୁଖ ଦୁଃଖ ନିଯାତନେ,
ପରାଣର ସୁଧା କେ' କାରେ ବାଢ଼ିବ ନିମିଷକ ଆଳାପନେ !

ଯେତେ ଯେତେ ଦିନ ବିତି ଯାଉଥିବ କାଳର କପାଳ ତଳେ,
ସେତେ ସେ ଅଜ୍ଞାତ ମୋହନୁ ମୋହନ ଦିଶୁଥିବ ନୟନରେ !!
ପ୍ରତି ଲୁହ ଠୋପା ଭିତରେ ତୁମେ ଯେ ଆସୁଥିବ ତଳି ତଳି
ଯିଏ ଯହିଁ ଥାଅ ମୋ ବୁକୁ ଶୋଣିତ ଆଦର କନକ-କଳି ,
କିପରି ଆଜି ଏ ବିଜନ କୁଟୀରେ ଏକାକୀ ପାରିବି ରହି,
ଜା' ପୁଲକ ଶିହ୍ରି ଟିକକ ଭିତରେ ମୁଗ୍ଧ ମୁଁ ଯିବି ହୋଇ !

କିପରି ଆଜି ଏ ବିଜନ କୁଟୀରେ ଏକାକୀ ପାରିବି ରହି ?
କିଏ ସେ ଶୁଣିବ ? କାହା କାନେ ଏ ମୋ ବାରତା ମୁଁ ଯିବି କହି ?
ଯିଏ ଯହିଁ ତୁମେ ଯାଇଛ ତ ଭୁଲି ଯାଅ ଗୋଟି ଗୋଟି ହୋଇ
ପଡ଼ି ରହିଥିବି, ପାରିବି କି ରହି ? ମୋ ବ୍ୟଥା ଟିକକ ବହି !
ବୁଲି କି ପାରିବ ମନ ବିନୋଦନେ ଏ ଚିର ସବୁଜ ଭୂଇଁ
ଯେ ଶିହ୍ରି ପରାଣେ ଆହରି ପାରିଚ, ଆଉ ଚ ପାରିବି ମୁହିଁ ?

ମୋର ହୋଇ ଯେବେ ରହିଚ କେଉଁଠି ଜାଣି କି ପାରୁଚ ମତେ ?
ଏ ହୁଆର ପ୍ରତି ରେଣୁରେ ରେଣୁରେ କି ଭଳି ମିଶିଛ ସତେ !
ଏ ଜୀବନେ କେବେ ଦେଖା ହୋଇପାରେ ଅଥବା ନ ହୋଇପାରେ,
ତୁମେ ମୁହିଁ କିଏ କେଉଁଠି ରହିବା ସେ କେଉଁ ସରଣୀ ଧାରେ;
ଏ କୁଟୀର ଯାହା ଏତେ ମମତାର ଦିଶେ ପ୍ରତିମାଟି ପରି,
କାଳର କପାଳେ ନିଭିଯାଇ ପାରେ ଭୂତଳ ଶୟନ କରି ।

ହେଲେ ତୁମ ମୋହ ଭିତରେ ଯେ ଟିକ ପରାଣର ଦିଆନିଆ
ପାଲଟି ପାରିବ ମରୁ କି ସହଜେ ଜାଳି ଉହ ଉହ ନିଆଁ ?
ତୁମେ କାହିଁ ଯିବ, ମୁହିଁ କାହିଁ ଯିବି, ଯିବ ଏ କୁଟୀର କାହିଁ,
ତୁମେ ମୋ ଭିତରେ, ମୁଁ ତୁମ ଭିତରେ ସତେ କି ରହିବା ନାହିଁ ??
କିପରି ଆଜି ଏ ବିଜନ କୁଟୀରେ ଏକାକୀ ପାରିବି ରହି ?
କିଏ ସେ ଶୁଣିବ ? କାହା କାନେ ଏ ମୋ ବାରତା ମୁଁ ଯିବି କହି !

---

# ଆସିଥିଲି

ସେ ଦିନ ମୁଁ ଆସିଥିଲି ଚାଲିଗଲି ଫେରିଗଲି
ମାନହୀନ ହୋଇ,
ମୋର ଯେହେତୁ ଏ ମାଟି ଉପରେ
ଆସିବାର ରହିବାର ଅଧିକାର ନାହିଁ !
ଏଇ ବନ ପାହାଡ଼ ପ୍ରାନ୍ତର
ସୀମାହୀନ ଶ୍ୟାମଳ ସମ୍ପଦେ
ନମିଷେ ମୁଁ ସୁହାଗେ ବାହାର
ପରିଚିତ ବନ୍ଧୁଜନ ଭୁଲେ
ହେଲି ନାହିଁ ହେଲେ କଥା ପଦେ !
କିଏ ମୋରେ ଆପଣାର କରି
ଡାକିଲେନି,
ପାରିଲେନି ଡାକି
ସବୁରିକୁ ସନ୍ତୁଷ୍ଟ ନୟନେ ଚାହିଁ
ଯାଉଥିଲି ସକଳର
ଆଦର ଓ ମମତାରେ ମାଗି !

ଆସିଥିଲି, ଆସିଥିଲି,
ଗୋଟିଏ ମୁହୂର୍ତ୍ତି ହେଲେ ରହିଥାନ୍ତି !
ମୋର ଆସିବାର
ଅମୃତ ଉଦ୍ଦେଶ୍ୟରେ
କିଏ କଲା ବିଷର ଉଦ୍‌ଗାର ?
ନୀରବେ ଲୋତକଟିଏ
ଲୋଚନୁ ନିଗାଡ଼ି—
—ସବୁରି ଅଜ୍ଞାତେ
ପାଦଚାଲି ଫେରିଗଲି,
ଚାହିଁଲିନି ଲେଉଟି ମୁଁ,
ଦେଖିଅଛୁ ଏ ପଥ ପ୍ରାନ୍ତର,
ଦେଖିଛି ଏ ବନକୁଞ୍ଜ ଭୂମି,
ଦେଖିଛି ଏ ଶିଖରୀ ଶିଖର,

ହୃଦୟର ନିବିଡ଼ ବନ୍ଧନେ
ମୋ ଜୀବନ ବନ୍ଧା ଯାହା ସାଥେ !

ସେ ଦିନ ମୁଁ ଆସିଥିଲି
ଗୋଟିଏ ମୁହୂର୍ତ୍ତ ପାଇଁ,
ଟିକିଏ ସମ୍ମାନ ଦେଇ,
ଟିକିଏ ସେନେହ ଦେଇ
ଟିକିଏ ଆପଣାର କରି,
କେହି ମୋରେ
ପାଖରେ ତ ବସାଇଲେ ନାହିଁ !
ଗୋଟିଏ ଅରକ୍ଷ ନିଃସ୍ୱ ପ୍ରାଣୀ ପରି
ରହିଥିଲି ଗୃହିଁ !!

ଆସିଥିଲି ହସିବାକୁ ମନ ବିନୋଦନେ,
ଆସିଥିଲି ଜୀବନକୁ କରିବାକୁ ରସବନ୍ତ
କାହାର ବା ପ୍ରୀତିକ ବଚନେ,
ଆସିଥିଲି କାହାଠାରୁ
ଆଶାର ମୋହନ ବାଣୀ
ଶୁଣିବାର ଲାଗି,

ଆସିଥିଲି ଫେରିଗଲି
କିନ୍ତୁ ଚିରଦିନ ପାଇଁ
ନଥିଲି ମୁଁ ଫେରି !
ଆସିଥିଲି ଫେରିଗଲି ଫେରିଗଲି, ଫେରିଗଲି,
ମୋର ଯେହେତୁ ଏଇ ମାଟି ନୁହେ
ନୁହେ ଘର ହସଖେଳ ଆନନ୍ଦ ଉତ୍ସବ
ଜୟ ପରାଜୟ
ମୋର ଏକାନ୍ତ ନିଜର ।
ମୁଁ ଯେହେତୁ କେଉଁ ଦୂରଗୃହ ବିହଗଟି ପରି
ଆସିଅଛୁ ଉଡ଼ି
ନିମିଷକ ପରେ
ଉଡ଼ିଯିବ କେଉଁ ଦୂର ଦେଶାନ୍ତର !

ଆସିଥିଲି ଫେରିଗଲି,
କାହାଠାରୁ ଫେରିଗଲି ?
କାହା ପାଇଁ ଆସିଥିଲି
କାହାର ଆକର୍ଷଣ
ମୋରେ କରିଥିଲା ଅନ୍ଧ ଓ ପାଗଳ
କା'ପାଇଁ କରିବି ଦୁଃଖ ?
ଆସିଥିଲି ଫେରିଗଲି
ଫେରି କି ପାରିଲି ?
ଯାହାର ହୃଦୟ ତନ୍ତ୍ରୀରେ
ବାଜେ ମୋର ବୀଣା
ନିରନ୍ତର !!

ଆସିଥିଲି, ଫେରିଗଲି, ଫେରିଗଲି, ଫେରିଗଲି,
ମୋର ପ୍ରାଣଭରା ଅଭିମାନ ;
ସ୍ୱଜନ ବନ୍ଧୀଟି ପରି
ରହିଲି ଯେ କେତେକାଳ
ପାଇଲିନି ଆଦର ସମ୍ମାନ !
ଆସିଥିଲି ଫେରିଗଲି, ଫେରିଗଲି
ମୃତ ବା ମୁମୂର୍ଷୁ ପରି ଫେରିଗଲି,
ତୁମେ ସବୁ ଫେରିଯିବ,
ତୁମେ କେଉଁଆଡ଼େ ଫେରିଯିବ, ହନେ
ମୁଁ କିନ୍ତୁ ପାରିବ ନାହିଁ ଫେରି
ମୁଁ ରହିଥିବି, ମୋର ଗୃହପାଖେ
ଏ ପାହାଡ଼ ପ୍ରାନ୍ତର
ଏ ବନ କୁଞ୍ଜଲତା
ଏହି ପଥଘାଟ
ଏ ସାଇ ପଡ଼ିଶା ଗାଁଆ
ଏଇ ହସ ଖେଳ ବିଜୟ ଗୌରବ
ଏଇ ପ୍ରିୟଜନ ପରିଜନ
ରହିଥିବେ ଘେରି !

ଆସିଥିଲ ଆସିଥିଲ
ଫେରିଗଲ ଫେରିଗଲ
କିନ୍ତୁ ପାରିଲନି ଫେରି,
ପାରିବନି ଫେରି
କାହାର ଏ ଆକର୍ଷଣ ?
କାହାର ବିରାଟ ବିପୁଳ ସ୍ପର୍ଶ
—ଭିତରେ ମୁଁ କାହା ସ୍ୱପ୍ନ ଦେଖୁଥିବି
କିଏ ମତେ ଚିରଦିନ
ଏ ଘର ବିସ୍ତାରେ ଅନନ୍ତ ମମତା ଦେଇ
ରହିଥିବ ବେଢ଼ି !
ପାରିବନି ଫେରି !
ପାରିବନି ଫେରି ?
ଆସିଥିଲ ଏ ମାଟିର ବିଲ ବଣ ଗଛପତ୍ର
ପାହାଡ଼ ପ୍ରାନ୍ତରେ
ଜୀବନ୍ତ ଜୀବନ୍ତ ହୋଇ
ଉଠିବାକୁ ଜାଗି !

ଆସିଥିଲ ଆସିଥିଲ
ଆସି ତ ନଥିଲ
କେଉଁ ଦୂରଭିସନ୍ଧିର
ବିଷ ପାଶ ଧରି,
ମୋରେ କିମ୍ପା ଗୃହିଁଲନି ?
ମୁଁ ତୁମର ଶତ୍ରୁ ନୁହେଁ
ମିତ୍ର ନୁହେ
କିନ୍ତୁ ଏ ମହା ବିଶ୍ୱର
ଅନନ୍ତ ଜୀବନ ମେଳେ
ଗୋଟିଏ ତ କ୍ଷୁଦ୍ର ରେଣୁ
ଠିକ୍ ତୁମ ପରି !

ଆସିଥିଲ ! ଆସିଥିଲ ! ଫେରିଗଲ ! ଫେରିଗଲ ।
କିନ୍ତୁ ମୁଁ
ନଆଣାରେ ନ ଥିଲ ତ ଫେରି,

କାହିଁକି ବା ଆସିବନି ଆଶା ?
ମୋହ ଲାଗି ସ୍ରୋତ ଅମୃତର
ଯେବେ କେଉଁ ଗୋପନ ପର୍ବଣ ପୁରେ
ଅବିରତ ଯାଉଅଛୁ ଖେଳି !

———

# କିଏ ଶୁଣୁଛି ତା ଡାକ

ଧୂଳି ବାଲି ଲେପ ଖଙ୍କାର ଉପରେ
ଗୁରୁଣ୍ଡି ଗୁରୁଣ୍ଡି ଗୃଲିଚି ସେ ରାସ୍ତାର ଛକକୁ
ଯେଉଁଠି ମଟର ବସ ହୋଇଅଛୁ ଠିଆ
ମାଗିବ କାହାକୁ କିଛୁ
ହାତ ପାତି
ତାର ଦୁନିଆରେ କେହି ନାହିଁ
ସାହା ସାଥୀ ।

ହାଡ଼ଆଣୀଟି ଓଲାଉଚି ରାସ୍ତା ହାତେ ଧରି ଝାଡ଼ୁ
ସବୁ ଧୂଳି ବାଲି ଉଡ଼ି ଉଡ଼ି
ପଡ଼ୁଚି ତା' ଦେହେ ମୁଣ୍ଡେ
'ଓହୋ ! ରହିଯା ଟିକିଏ'
କିଏ ଶୁଣୁଚି ତା' କଥା ?
ହାଡ଼ଆଣୀ ଭାଳିଥିବ—
ଗୋଟିଏ ଜନ୍ତୁ ବରିଡ଼ କୁକୁର ପରି
ଗୃଲିଚି ରାସ୍ତାରେ ଅବା !
—ଓହୋ ! ରହିଯା ଟିକିଏ
ହଦମୁଣ୍ଡ ହୋଇଗଲି ବାଲି ସରସରି
ନିଃଶ୍ୱାସ ବି ରୁନ୍ଧି ହୋଇଯାଏ ।
ଉତ୍ତର ଆସୁଚି
'ତୋ ପାଇଁ କାମ ବନ୍ଦ
କରିବି ନା କଣ ?
ନ ଆସେ ଇ'ବାଟେ''

ବସ୍ତିର ପଙ୍ଗୁ ଅସମର୍ଥ ରୁଗ୍ଣ ବୁଢ଼ାଟି
ସେଇ ରାସ୍ତାର ଧୂଳି ବାଲିରେ ପୋତି ହୋଇ
ବସି ରହୁଚ, ଶୀର୍ଣ୍ଣ ଆଖି ଦୁଇଟିରୁ
ଲୁହଟିଏ ପୋଛୁ ଦେଇ ;
"ଟିକିଏ ରହ"
ପୁଣି କହୁଚ ଶିଶୁପରି
ବଡ କରୁଣପୂ ଓ କରୁଣ କଣ୍ଠରେ !
ତଥାପି ଧୂଳି ବାଲି
ଭୁହାକୁ ଭୁହା ଉଡ଼ି ଆସୁଚ
ହାଡ଼ଆଣୀର ଉଦ୍ଧତ ଝାଡ଼ୁରେ
ଅସମର୍ଥର ବେଦନାଭରା ଡାକରେ
ଓଜନ ନାହିଁ ପରା !
ସେ ଏ ରାସ୍ତାର ପଥିକ ନୁହେ ।

---

# ଭଗ୍ନ-କୁଟୀର

କାହାର କୁଟୀର ଭାଙ୍ଗି ପଡ଼ିଚ କିଏ ଏଥି ଥିଲା ରହି ?
ଯାଇଚ ସେ କାହିଁ ? ଯାଇଚ ସେ କାହିଁ ? କିଏସେ ପାରିବ କହି ?
ବାରି ପଟେ ତାର ବରକୋଳି ଗଛ କ୍ଷୁଦ୍ର ଗଢ଼ଅଛିଟିଏ,
ଦାଣ୍ଡ ପଟକୁ ପଥର ପାହାଚ ଦୁଦୁଟି ଉଠିଚ ଡିହେ ।
କାନ୍ଥରୁ ଅଧା ଭାଙ୍ଗି ପଡ଼ିଚ ଅଧା ହୋଇଅଛୁ ଠିଆ,
କଣ୍ଟା ମାରସ କାନ୍ଥର ତଳେ ମେଲିଇଚ ତାର ଛାଆ ।
ରହ ଗୃହଆଡ଼େ ବୁଲି ମୁଁ ଯାଉଚ ସତେ କେ ମୋ ଆପଣାର
ରହୁଥିଲା—ଏଥି ସହରେ ଖେଳାଇ କ୍ଷୁଦ୍ର ତା ପରିବାର !
କାନ୍ଥର ଦେହେ ଷଠୀବୁଢ଼ୀ ଘର ଚିହ୍ନାଇ ଦିଏ ମତେ,
ପୁଅ ତାର ଥିଲା, ଝିଅ ତାର ଥିଲା, ଭଜନ ଗୃହଜନ ସତେ !
କାହାର କୁଟୀର ଭାଙ୍ଗି ପଡ଼ିଚ, କିଏ ଏଥି ଥିଲା ରହି ?
ଯାଇଚ ସେ କାହିଁ ? ଯାଇଚ ସେ କାହିଁ ? କିଏସେ ପାରିବ କହି ?

ଦିନ ଥିବ ଦିନେ ହସୁଥିବ ତାର କ୍ଷୁଦ୍ର କୁଟୀର ଏଇ,
ଫାଟି ପଡ଼ୁଥିବ ତା ବାଡ଼ ବଗିଚୁ ଫଳ ଓ ପୁଷ୍ପ ନେଇ ।
ଦୁଧିଆଳୀ ଗାଇ ଥିବେ ଏକ ଦୁଇ ଧଉଳି ବୃନ୍ଦ ନାମେ,
ଥିବେ ତାର ସତେ ଦି'ହଳ ବଳଦ ଯାଉଥିବେ ନିତି କାମେ ।
ଗୋଧନେ ଗୁହାଳ ପୂରି ଉଠୁଥିବ ଚାହାଁ ଦେଲେ ଚାହାଁ ଦେଲେ,
ଝଟା ଫଳଥିବ ଅଗଣା ମଝିରେ ରଞ୍ଜା ଉପରେ ତଳେ ।
ତରୁଣୀ ଭରିଯା ଛୁଆଟିକୁ ତାର କରୁଥିବ କେତେ ଗେଲ,
ବଡ଼ ହେଲେ ଦିନେ ଚଢ଼ିବୁ ବାବୁରେ ଚାହାଁ ଏ ଯାଉଚି ରେଳ !
ଚାହାଁ ଧନମାଳୀ ନନ୍ଦ ସେପାରିକି ଆସୁଛନ୍ତି ତୋର ବାଆ,
ତାଂକୁଇଁ ଚାହାଁ ଠିକ୍ ହାତଠିରେ ଠାରି ଡାକେ ଆ ଆ ।
କାହାର କୁଟୀର ଭାଙ୍ଗି ପଡ଼ିଚି କିଏ ଏଠି ଥିଲା ରହି
ଯାଇଚି ସେ କାହିଁ ? ଯାଇଚି ସେ କାହିଁ ? କିଏ ସେ ପାରିବ କହି ?

ଦିନ ଥିବ ଦିନେ ଏ କାନ୍ଥବାଡ଼ ଏଇ ଅଗଣାର ପରେ
ଜୀବନର ଦୀପ ଜଳି ଉଠୁଥିବ ସକଳ ମୁହୂର୍ତ୍ତରେ ।
ତା ଘର ଘରଣୀ ଚିତା ଲେଖୁଥିବ କାନ୍ଥରେ କେତେ ଦିନେ,
କେତେ କଳ୍ପନା ନାଚି ଯାଉଥିବ ତା ବୁକୁ ଭିତରେ ଦିନେ ।
ଧାନକୋଠି କାହିଁ ଲେଖି ଦେଇ ତହିଁ ଭରି ଦେଉଥିବ ଧାନ,
ପଦ୍ମ କେଉଁଠି ଲେଖୁଥିବ ଭରି ତା ସକଳ ମନପ୍ରାଣ ।
ସାଇ ପଡ଼ିଶାର ସାଥୀ ସଙ୍ଗାତେ ଆଦରେ ସୋହାଗେ ଡାକି,
କହୁଥିବ ଯୋଡ଼େ ହାତୀ ଲେଖି ଦିଅ ଆସିଲାନି ଅଛି ବାକି ।
ଏଇ ଅଗଣାରେ କୁନି ପୁଷିଟିକୁ ଦୁଧ ସତେଇରେ ଦେଇ,
ଦେଖୁଥିବ ସିଏ ଖାଉଚି କିଭଳି ଚାକୁରୁ ଚାକୁରୁ ହେଇ ।
କାହାର କୁଟୀର ଭାଙ୍ଗି ପଡ଼ିଛି କିଏ ଏଥି ଥିଲା ରହି
ଯାଇଚି ସେ କାହିଁ ? ଯାଇଚି ସେ କାହିଁ ? କିଏ ସେ ପାରିବ କହି ?

କାହାର କୁଟୀରୁ ଭାଙ୍ଗି ପଡ଼ିଚି ଚାରିଆଡ଼ ଖାଲି ପଦା,
ସନ୍ଧ୍ୟାରେ ଯହିଁ ବଣର ହିଂସ୍ରଜନ୍ତୁ ହୁଅନ୍ତି ଗଦା ।
ଶ୍ମଶାନ ପରି ରହିଅଛି ପଡ଼ି, ହୋଇ କେତେ ପ୍ରାଣହୀନ !
ବକ୍ଷେ ରଖିଚି ଭରି ଅତୀତର ସ୍ମୃତିଟିକ ଅତି କ୍ଷୀଣ ।
ଦେଖିଥିବ ଏଇ କାନ୍ଥ ଓ ବାଡ଼ ଦେଖିଥିବ ଏଇ ମାଟି,
କେତେ ଜୀବନର ଅମୃତ ଲୀଳା ପଡ଼ୁଥିବ ଏଥି ଫାଟି ।

କେତେ ସେନେହର ହେଉଥିବ ଏଥି ହଆ ନଆ କୁତୁହଳେ,
କେତେ ମାୟା କେତେ ମମତା କିଏସେ ରଖିଥିବ କାହାପରେ !
କେତେ କା ନୟନୁ ଲୁହ ଝରିଥିବ ସିକ୍ତ କରି ଏ ମାଟି,
କିଏ ଯେ କାହାର ହୋଇଥିବ ଏଥି ଜୀବନରୁ ବଳି ସାଥୀ ।
କାହାର କୁଟୀର ଭଙ୍ଗି ପଡ଼ିଛି ଗୃହଆଡ଼େ ଖାଲି ପଦା,
ସନ୍ଧ୍ୟାରେ ଯହିଁ ବଣର ହିଂସ୍ରଜନ୍ତୁ ହୁଅନ୍ତି ଗଦା ।

କାହାର କୁଟୀର ଭଙ୍ଗି ପଡ଼ିଛି ଭୂତର ଆବାସ ପରି,
ରହି ଅଛି ଖାଲି ପଡ଼ି ଅଛି ଖାଲି, ବରଷ ବରଷ ଧରି ।
ଅନ୍ଧାର ଯେବେ ମାଡ଼ି ଆସେ ଗାଏଁ ହୋଇଗଲେ ବେଳବୁଡ଼ ;
ଶୂନଶାନ ଯେବେ ହୋଇଯାଏ ଖାଲି ପଲ୍ଲୀର ଚଉପୁର,
ଠିକ ପିଲାଟିରେ ଡାକି ମାଆ କହେ ଗୃହିଁନା ସେ ଡିହ ଆଡ଼େ,
ଭୂତ ବହାରୁଛି କାଲି ମାରୁଥିଲା ଟେକା ଆମ ସିଝୁ ବାଡ଼େ ।
କିଏ କହେ ତହିଁ ଡାହାଣୀ ଆଲୁଅ ଖାଲି ରାତିଯାକ ଜଳେ,
କିଏ କହେ ତହିଁ କାଣୀଆ ମାଲୀକି ଜଗିଥିଲା କିଏ ଥରେ ।
କାହାର କୁଟୀର ଭଙ୍ଗି ପଡ଼ିଛି, ହୋଇ କେତେ ହୀନମାନ,
ପାଖ ତାର କେହି ମାଡ଼ନ୍ତି ନାହିଁ କେତେ ନିସ୍ତବ୍ଧ ପ୍ରାଣ !
କାହାର କୁଟୀର ଭଙ୍ଗି ପଡ଼ିଛି ଭୂତର ଆବାସ ପରି,
ରହି ଅଛି ଖାଲି, ପଡ଼ି ଅଛି ଖାଲି, ବରଷ ବରଷ ଧରି ।

କାହାର କୁଟୀର ଭଙ୍ଗି ପଡ଼ିଛି, ଗୃହଆଡ଼ ଖାଲି ମେଲା,
ମୁଣ୍ଡିର ଝାଳ ଭୁଣ୍ଡିରେ ମାରି କିଏ କରୁଥିଲା ଖେଳା ?
ଝଡ଼ ବରଷାରେ ଶୀତ କାକରରେ ନିର୍ଧୁମ ଖଟୁବେଳେ ;
ବିଲ ଓ ବାଡ଼ରେ ବଣ ତଇଲରେ କିଏ କାମ କରି ଫେରେ !
ଶାନ୍ତିର ଏଇ ଠିକ ଆଶ୍ରମେ ଆଶ୍ରୟ କିଏ ନେଇ,
ଜୀବନର କେତେ ମୁହୂର୍ତ୍ତ ଏଥି କାଟି ଦେଇଅଛି ସେଇ ।
କେତେ ବିପଦରେ କାହାର ହୋଇଛି ଅର୍ଦ୍ଧ ରାତିରେ ସାହା,
ସ୍ୱାର୍ଥର ଲବେ କଳୁଷ ବାସନା ଉଠେ ନ ବହି ଆହା ।
ସାରା ଜଗତକୁ ବନ୍ଧୁ କରିଛି, କରିଛି ନିଜର ସେଇ,
କହିଲେ କହିବ ଏ ମାଟି ଠିକକ କହିବେନି ଆଉ କେହି ।
କିଏ ସେ ତାହାକୁ ବୁଝୁ ବା ନବୁଝୁ ନାହିଁ ଦେଉ ପ୍ରତିଦାନ,
ସିଏ ବୁଝିଥିଲା ତା' ଶାଇ ପଡ଼ଶା ତାହାର ଗୋଟିକ ପ୍ରାଣ ।

କାହାର କୁଟୀର ଭାଙ୍ଗି ପଡ଼ନ୍ତା କଏ କେଉଁଆଡ଼େ ନାହିଁ,
କାହା ଲାଗି ମୁହିଁ ଠିଆହୋଇ ଏଥି ଝୁରି ହୁଏ କାହିଁ ପାଇଁ ?
କେଉଁ ଅଜ୍ଞାତ ଅଜ୍ଞାତର କୋଳେ ହୋଇଛି ବଲୀନ ସିଏ,
ତଥାପି କାହିଁକି ଇଚ୍ଛା ମୋ ହୁଏ ଜାଣିବାକୁ ସିଏ କଏ ?
ଦେଖି ପାରେ ମୁହିଁ, ଜାଣିପାରେ ମୁହିଁ, ବୁଝିପାରେ ମୁହିଁ ତାରେ,
ହସୁଥିଲା ସିଏ ମୋ ଓଠରେ ହସେ,
କାନ୍ଦୁଥିଲା ସେ, ମୋ ଆଖିର ଲୁହ ଧାରେ !
କଥା କହୁଥିଲା ମୋହରି ଭାଷାରେ ମୋ ବୁକୁର ଆଶା ଧରି,
ବଞ୍ଚି ଥିଲା ସେ ସୁଖେ ଓ ଦୁଃଖେ ଠିକ ମୋହରି ପରି ।
ମୋହ ପରି ସିଏ ଠିକ୍ ମୋହ ପରି ମୋହରି ସିଏତ ଖାଲି,
କିଭଳି ତାହାରେ ଯୁଗ ଯୁଗ ଧରି ହେବନାହିଁ ମୁହିଁ ଭାଳି ?
କାହାର କୁଟୀର ଭାଙ୍ଗି ପଡ଼ିଛି କିଏ କେଉଁଆଡ଼େ ନାହିଁ,
ଭଗ୍ନ ଏ ମାଟି ଭତରୁ ମୁଁ ଦେଖେ ରହିଛି ସେ ମୋହ ପାଇଁ !

---